# ସମୀକ୍ଷାଲୋକ

ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ ପିଏଚ୍. ଡି., ଡି.ଲିଟ୍.
ପୂର୍ବତନ ପ୍ରଫେସର ଓ ବିଭାଗ ମୁଖ୍ୟ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ, ଜ୍ୟୋତିର୍ବିହାର

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

SAMIKSHĀLOKA
by Krushna Chandra Pradhan
Published by Vidyapuri, Balubazar, Cuttack 753 002

ISBN 978-81-7411-431-9

ପ୍ରଥମ ପ୍ରକାଶ ମାର୍ଚ୍ଚ ୨୦୦୨
ଦ୍ୱିତୀୟ ମୁଦ୍ରଣ ଜୁନ୍ ୨୦୧୯

ପ୍ରକାଶକ

ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩ ୦୦୨

ଲିପି ସଂଯୋଜନ

ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩ ୦୦୨

ମୁଦ୍ରଣ
ବିଶ୍ୱନାଥ ଏଣ୍ଟରପ୍ରାଇଜେସ୍
ପ୍ଲଟ ନଂ. 8/E ଚନ୍ଦକା ଇଣ୍ଡଷ୍ଟ୍ରିଆଲ ଏରିଆ
ଭୁବନେଶ୍ୱର ୭୫୧ ୦୨୪

ମୂଲ୍ୟ ଟ ୨୦୦-୦୦

# ସଂକଳନ ସଂପର୍କରେ

ନିରପେକ୍ଷ ଦୃଷ୍ଟିଭଙ୍ଗୀ ସମୀକ୍ଷାର ମହତ୍ତ୍ୱ ବୃଦ୍ଧି କରେ । ସାହିତ୍ୟର ଗୁଣାତ୍ମକ ମୂଲ୍ୟ, ତାର ଉତ୍କର୍ଷ ଓ ଆକର୍ଷର ନିର୍ଣ୍ଣାୟକ ଭୂମିକା ସମୀକ୍ଷାହିଁ ଗ୍ରହଣ କରିଥାଏ । ଯେଉଁ ଭାଷାର ସମୀକ୍ଷା ବା ସମାଲୋଚନା ଯେଉଁ ପରିମାଣରେ ଉନ୍ନତ, ତାର ସାହିତ୍ୟ ସେହି ପରିମାଣରେ ରୁଚିଶୀଳ ଓ ଉନ୍ନତ । ସର୍ଜନଶୀଳ ସାହିତ୍ୟପରି ସମୀକ୍ଷା ମଧ୍ୟ ସାଂପ୍ରତିକ କାଳରେ ମୌଳିକ ସୃଷ୍ଟି ଭାବରେ ଗୃହୀତ । ବିଶ୍ୱର ଅନ୍ୟାନ୍ୟ ସାହିତ୍ୟପରି ଓଡ଼ିଆ ସମାଲୋଚନା ସାହିତ୍ୟ ସେପରି ସମୃଦ୍ଧ ଓ ବଳିଷ୍ଠ ବୋଲି ପ୍ରତ୍ୟୟ ହୁଏ ନାହିଁ । ଏକଦେଶଦର୍ଶିତା, ରୂଢ଼ିବାଦୀ ଚିନ୍ତାଧାରା ଓ ପକ୍ଷପାତିତା ସାହିତ୍ୟର ଗୁଣାତ୍ମକ ମୂଲ୍ୟ ନିର୍ଦ୍ଧାରଣରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ଅନୁମିତ ହୁଏ । ଓଡ଼ିଆ ସମାଲୋଚନା ସାହିତ୍ୟର ଏହି ଅଭାବିତ ଦିଗଟି ମତେ ବହୁବାର ସଚେତନ କରିଛି ଓ ପ୍ରେରଣା ଦେଇଛି ସମାଲୋଚନା ସାହିତ୍ୟ ସୃଷ୍ଟି ପାଇଁ । 'ସମୀକ୍ଷାଲୋକ' ସେହି ପ୍ରତିକ୍ରିୟାର ଏକ ପ୍ରକାଶମାନ ରୂପ ।

'ସମୀକ୍ଷାଲୋକ'ରେ ଭିନ୍ନ ସ୍ୱାଦର ଅଠରଟି ସମୀକ୍ଷା ସଂକଳିତ । 'ଉପେନ୍ଦ୍ର ସାହିତ୍ୟରେ ସଙ୍ଗୀତ ଓ ଚିତ୍ରକଳା' ପ୍ରବନ୍ଧଟି ବ୍ୟତୀତ ଅନ୍ୟ ପ୍ରବନ୍ଧଗୁଡ଼ିକ ଆଧୁନିକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ନେଇ ରଚିତ । ଶେଷ ଚାରୋଟି ପ୍ରବନ୍ଧ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ଚାରୋଟି ପ୍ରତିଷ୍ଠିତ ବାଦ ଉପରେ ଆଧାରିତ ହୋଇଥିବା ସମୟରେ ଫକୀରମୋହନଙ୍କ ସଂପର୍କରେ ଚାରୋଟି; ରାଧାନାଥ, ଗୋଦାବରୀଶ, ବୈକୁଣ୍ଠନାଥ, ସୁଧାଂଶୁବାଳା ଏବଂ ଚନ୍ଦ୍ରଶେଖରଙ୍କ ସୃଷ୍ଟି ସମ୍ବନ୍ଧରେ ଗୋଟିଏ ଲେଖା ସମୀକ୍ଷା ସ୍ଥାନ ପାଇଛି । ବିଂଶ ଶତକର ଓଡ଼ିଆ ଭ୍ରମଣ ସାହିତ୍ୟ, ଆତ୍ମଜୀବନୀ, ଚିଠି ଏବଂ ଡାଏରୀକୁ ଭିତ୍ତିକରି ଚାରୋଟି ପ୍ରବନ୍ଧ ରଚିତ । ଓଡ଼ିଆ ସାହିତ୍ୟର ବିଭିନ୍ନ ଧାରା ତଥା ବ୍ୟକ୍ତି ସୃଷ୍ଟିର ମହତ୍ତ୍ୱ ଆକଳନ ଉଦ୍ଦେଶ୍ୟରେ ଉକ୍ତ ସମୀକ୍ଷାଗୁଡ଼ିକର ପରିକଳ୍ପନା । ସଂକଳିତ ପ୍ରବନ୍ଧଗୁଡ଼ିକ ମଧ୍ୟରୁ କେତୋଟି ପୂର୍ବରୁ 'ଝଙ୍କାର' ସମେତ ଓଡ଼ିଶାର କେତୋଟି ପ୍ରତିଷ୍ଠିତ ପତ୍ରିକାରେ ପ୍ରକାଶିତ । ଏହି ଅବସରରେ ସଂପୃକ୍ତ ପ୍ରକାଶକଙ୍କ ନିକଟରେ କୃତଜ୍ଞ ।

ଗୁଣଗ୍ରାହୀ ପୀତାମ୍ବରବାବୁ ପ୍ରଥମରୁହିଁ ମୋ ପ୍ରତି ଉଦାର । ଓଡ଼ିଶାର ପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ବିଦ୍ୟାପୁରୀର ସେ ହେଉଛନ୍ତି ସ୍ୱତ୍ୱାଧିକାରୀ । ବିନା ଦ୍ୱିଧାରେ ମୋର ଅନ୍ୟାନ୍ୟ ସମାଲୋଚନା ପୁସ୍ତକପରି ଆଜି 'ସମୀକ୍ଷାଲୋକ' ଗ୍ରନ୍ଥଟିକୁ ପ୍ରକାଶ କରୁଥିବାରୁ, ତାଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ ।

ଯେଉଁ ଛାତ୍ରଛାତ୍ରୀ, ଗବେଷକ ଓ ଆଲୋଚକ ମୋ ପ୍ରତି ଅତୀତରେ ଅକୁଣ୍ଠ ଉତ୍ସାହ ପ୍ରଦାନ କରିଛନ୍ତି, ଏହି ପୁସ୍ତକଟି ସେମାନଙ୍କୁ କିଞ୍ଚିତ୍ ସାହାଯ୍ୟ କରିପାରିଲେ, ବିଶେଷ ଖୁସି ହେବି ।

ଲେଖକ

# ସୂଚୀପତ୍ର

# ଉପେନ୍ଦ୍ର ସାହିତ୍ୟରେ ସଙ୍ଗୀତ ଓ ଚିତ୍ରକଳା

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଏକ ବହୁ ଉଚ୍ଚାରିତ ନାମ । ଓଡ଼ିଆ ସାହିତ୍ୟକୁ ସଂସ୍କୃତ ସାହିତ୍ୟର ସମକକ୍ଷ କରିବା ନିମିତ୍ତ ତାଙ୍କର ଉଦ୍ୟମ ସର୍ବାଦୌ ପ୍ରଶଂସନୀୟ । ସଂସ୍କୃତ କାବ୍ୟାଦର୍ଶ ତଥା ଅଳଂକାର ଶାସ୍ତ୍ରର ନୀତିନିୟମ ଅନୁସରଣରେ ଓଡ଼ିଆ କାବ୍ୟସାହିତ୍ୟକୁ ସେ ଯେଉଁ ନୂତନ ମର୍ଯ୍ୟାଦା ପ୍ରଦାନ କଲେ, ସମଗ୍ର ପୂର୍ବାଞ୍ଚଳୀୟ ସାହିତ୍ୟ କ୍ଷେତ୍ରରେ ତାହା ଥିଲା ଅଭୂତପୂର୍ବ । ତାଙ୍କର ବିଦ୍‌ବତ୍ତା, ଗଭୀର ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା, କଳ୍ପନାର ଉତ୍ତୁଙ୍ଗତା ସର୍ବୋପରି ବିମଳ କବିତ୍ୱ ଓଡ଼ିଆ କାବ୍ୟ ସାହିତ୍ୟ କ୍ଷେତ୍ରରେ ଏକ ବିଶିଷ୍ଟ ରୀତିର ପ୍ରବର୍ତ୍ତନ କରିପାରିଥିଲା । ଘୁମୁସରର ପ୍ରାକୃତିକ ପରିବେଶ ଏବଂ ଯଦି କିମ୍ବଦନ୍ତୀକୁ ବିଶ୍ୱାସ କରାଯାଏ 'ରାମତାରକ ମନ୍ତ୍ର' ପ୍ରସାଦେ ସେ ଯେଉଁ ଦୁର୍ଲଭ କବିତ୍ୱର ଅଧିକାରୀ ହେଲେ ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ତାହା ଥିଲା ଏକ ବିସ୍ମୟ । କୁଟିଳ ରାଜନୀତିର ପଙ୍କିଳତାଠାରୁ ନିରାପଦ ଦୂରତାରେ ରହି ସେ ତାଙ୍କର ସମଗ୍ର ଜୀବନ ବାଣୀ ଆରାଧନାରେ ବିତାଇ ଦେଇଥିଲେ । ଉପେନ୍ଦ୍ରଙ୍କ ସୃଷ୍ଟିରେ ବିଭିନ୍ନ କଳାର ଚମତ୍କାର ପରିପ୍ରକାଶ ଘଟିଥିଲେହେଁ ଏଠାରେ କେବଳ ସଙ୍ଗୀତ ଓ ଚିତ୍ରକଳା ସଂପର୍କରେ ଆଲୋଚନା କରିବା ଉକ୍ତ ପ୍ରବନ୍ଧଟିର ଉଦ୍ଦେଶ୍ୟ ।

ସଙ୍ଗୀତ କଳା ମୁଖ୍ୟତଃ ଦୁଇଭାଗରେ ବିଭକ୍ତ । ଯଥା - ଶାସ୍ତ୍ରୀୟସଙ୍ଗୀତ ଓ ଲୋକସଙ୍ଗୀତ । ଶାସ୍ତ୍ରର ନୀତିନିୟମ ଅନୁସରଣରେ ଯେଉଁ ସଙ୍ଗୀତର ସୃଷ୍ଟି, ତାହା ଶାସ୍ତ୍ରୀୟ ସଙ୍ଗୀତ । ଲୋକସଙ୍ଗୀତ ଲୋକ ଜୀବନଧାରାର ବାହକ । ଲୋକମନର ସୌନ୍ଦର୍ଯ୍ୟାତ୍ମକ ଅଭିବ୍ୟକ୍ତି ଏଥିରେ ପ୍ରତିଫଳିତ । ଭାରତୀୟ ସଙ୍ଗୀତଶାସ୍ତ୍ରରେ ଗୀତ, ବାଦ୍ୟ ଓ ନୃତ୍ୟର ସମାହାରକୁ ସଙ୍ଗୀତ ନାମରେ ନାମିତ କରାଯାଇଛି । ପ୍ରାଚୀନ କାଳରେ ସଙ୍ଗୀତର ଅନ୍ୟ ନାମ ଥିଲା ତୌର୍ଯ୍ୟତିକ । 'ଅମରକୋଷ'ର ନାଟ୍ୟବର୍ଗରେ ଏଥିପାଇଁ କୁହାଯାଇଛି - ''ତୌର୍ଯ୍ୟତ୍ରିକଂ ନୃତ୍ୟଗୀତ ବାଦ୍ୟଂ ନାଟ୍ୟମିଦଂତ୍ରୟମ୍'' । ଭାଷାକୋଷ ଅନୁଯାୟୀ, 'ସମ୍'ର ଅର୍ଥ ବାଦ୍ୟ ଏବଂ ନୃତ୍ୟ । ଏହା ସହିତ ଗାନ ବା ଗୀତ ସଂଯୋଜିତ ହୋଇ ସଙ୍ଗୀତ ଶବ୍ଦର ସୃଷ୍ଟି । ଶରୀରର ବିଭିନ୍ନ ଅଂଶ ଯଥା - ହସ୍ତ, ପଦ, ଚକ୍ଷୁ, ମୁଖ ଆଦି ସହିତ ନୃତ୍ୟର

ସଂପର୍କ ରହିଥିବା ସମୟରେ କେବଳ ହସ୍ତ ସହିତ ବାଦ୍ୟ ଏବଂ ନାଭି, କଣ୍ଠ, ମୁଖ ତଥା ହୃଦୟ ସହିତ ଗୀତର ଘନିଷ୍ଠ ସମ୍ବନ୍ଧ ବିଦ୍ୟମାନ ।

ସଙ୍ଗୀତ ମାନବ ମନର ତୀବ୍ର ଅନୁଭୂତିର ପ୍ରକାଶକ ହୋଇଥିବାରୁ, ଏହା ପୂର୍ଣ୍ଣତଃ ଏକ ମାନବୀୟ କଳା । ଏହା ହୃଦୟାବେଗର ଶବ୍ଦ ବ୍ରହ୍ମରୂପ । ମାନବର ସୁଖ, ଦୁଃଖ, ବିସ୍ମୟ ଆଦି ବିଭିନ୍ନ ଭାବାବେଗ ସହିତ ସଙ୍ଗୀତ ସମ୍ବନ୍ଧାନ୍ୱିତ । ସମସ୍ତ କଳାଠାରୁ ସଙ୍ଗୀତକଳା ଶ୍ରେଷ୍ଠ ହୋଇଥିବାରୁ ଶାସ୍ତ୍ରରେ ଏହା ପରାବିଦ୍ୟା ନାମରେ ପରିଚିତ । ଶାର୍ଙ୍ଗଦେବଙ୍କ 'ସଙ୍ଗୀତ ରତ୍ନାକର' ଅନୁଯାୟୀ ନାଦ, ଶ୍ରୁତି, ସ୍ୱର, ସପ୍ତକ, ତାନ, ଅଳଂକାର, ଗ୍ରାମ, ମୂର୍ଚ୍ଛନା, ଜାତି, ମେଳ, ରାଗ, ନୃତ୍ୟ, ରସ, ତାଳ, ବାଦ୍ୟ ଆଦି ସଙ୍ଗୀତର ବିଭିନ୍ନ ଅଙ୍ଗ ।

ଉପେନ୍ଦ୍ରଙ୍କ ସୃଷ୍ଟି ସମୂହରେ ଶାସ୍ତ୍ରୀୟସଙ୍ଗୀତ ଓ ଲୋକସଙ୍ଗୀତର ମିଶ୍ରିତ ରୂପ ପରିଲକ୍ଷିତ ହୋଇଥାଏ । କାରଣ ତାଙ୍କ ସମୟକୁ ଲୋକସଙ୍ଗୀତରେ ମିଶ୍ରିତ ଧାରା ଦେଖାଯାଇଥିଲା । ଚଉପଦୀ, ଚମ୍ପୂ ଆଦି ଓଡ଼ିଶୀ ସଙ୍ଗୀତର ଆଖ୍ୟା ଗ୍ରହଣ କରିଥିଲା । ଶାସ୍ତ୍ରୀୟ ରୀତି ଓ ଲୌକିକ ରୀତି ଅନୁସରଣରେ ଉପେନ୍ଦ୍ର ତାଙ୍କ ସୃଷ୍ଟି ସମୂହରେ ସଙ୍ଗୀତ କଳାର ବିଚାର କରିଛନ୍ତି । ପ୍ରଥମେ ଶାସ୍ତ୍ରୀୟ ରୀତି ଅନୁଯାୟୀ ଉପେନ୍ଦ୍ରଙ୍କ ସୃଷ୍ଟିରେ ପରିଲକ୍ଷିତ ସଙ୍ଗୀତର ସ୍ୱରୂପ ବିଚାର କରାଯାଇପାରେ ।

ସଙ୍ଗୀତ ଶାସ୍ତ୍ର ଅନୁଯାୟୀ ନୃତ୍ୟ, ବାଦ୍ୟ ଓ ଗୀତ **ନାଦର** ଅଧୀନ । ଏହା ସଙ୍ଗୀତର ମୂଳଭିତ୍ତି । ଆହତ ଓ ଅନାହତ ଭେଦରେ ନାଦ ଦୁଇ ଭାଗରେ ବିଭକ୍ତ । ବିନା ଆଘାତରେ ସୃଷ୍ଟ ନାଦ ଅନାହତ ଏବଂ ଦୁଇଟି ବସ୍ତୁ ସଂଘର୍ଷରୁ ସୃଷ୍ଟି ଧ୍ୱନି ଆହତ ନାଦ ପଦବାଚ୍ୟ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବି ଏହି ଆହତ ଓ ଅନାହତ ନାଦ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି -

ଆହତ ନାହତ କେତନେ କ୍ଷମ ଯେ
ମେଦିନୀ-ନନ୍ଦିନୀ ପାବନୀ ଦୀପନୀ ତାରାବଳୀ ଯୁକ୍ତେ ରମ୍ୟ ଯେ

(୩୧/୨୫)

**ସ୍ୱର** ସଙ୍ଗୀତର ଅନ୍ୟତମ ବିଶିଷ୍ଟ ଅଙ୍ଗ । 'ସଙ୍ଗୀତ ଦର୍ପଣ'ରେ ନାଦକୁ ସ୍ୱରଭାବରେ ଗ୍ରହଣ କରାଯାଇ କୁହାଯାଇଛି - 'ସ୍ୱୟଂ ଯୋ ରାଜତେ ନାଦଃ । ସ ସ୍ୱରଃ ପରିକୀର୍ତ୍ତିତଃ' । ସଙ୍ଗୀତକାର ସାତୋଟି ସ୍ୱରକୁ ସଙ୍ଗୀତ କ୍ଷେତ୍ରରେ ବ୍ୟବହାର କରନ୍ତି, ଯାହା ସପ୍ତସ୍ୱର ନାମରେ ପରିଚିତ । ଏହି ସପ୍ତସ୍ୱରଗୁଡ଼ିକ ହେଉଛି - ଷଡ଼ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ । ଅଯୋଧ୍ୟାରେ କୋକିଳମାନଙ୍କର କୁହୁ ସ୍ୱରକୁ ଉପେନ୍ଦ୍ର ସ୍ୱର୍ଗପୁରର ଗାୟକ ଗନ୍ଧର୍ବ ଓ ବିଦ୍ୟାଧରମାନଙ୍କଦ୍ୱାରା ଗାନ କରାଯାଉଥିବା ସପ୍ତସ୍ୱରଠାରୁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି -

"ବିପୁଳ କ୍ଳେଶ ଲଭ୍ୟ ସେ ଏ ଲଭ୍ୟ ଅକ୍ଳେଶେ
ବିଦ୍ୟାଧରୁ ଚଳିପିକ ସପ୍ତସ୍ୱର ଘୋଷେ" (ବୈ.ବି.-୧୬/୬୫)

ସଙ୍ଗୀତଶାସ୍ତ୍ରରେ ବିଭିନ୍ନ ରସପାଇଁ ଭିନ୍ନ ଭିନ୍ନ ସ୍ୱର ବ୍ୟବହାରର ସୂଚନା ଦିଆଯାଇଛି । ହାସ୍ୟ ଓ ଶୃଙ୍ଗାର ରସରେ ମଧ୍ୟମ ଓ ପଞ୍ଚମ ସ୍ୱର; ବୀଭତ୍ସ ଓ ଭୟାନକ ରସରେ ଧୈବତ ସ୍ୱର; କରୁଣ ରସରେ ଗାନ୍ଧାର ଓ ନିଷାଦ ତଥା ବୀର ଓ ରୌଦ୍ର ରସରେ ଷଡ଼୍‌ଜ ଏବଂ ଋଷଭ ସ୍ୱରର ବ୍ୟବହାର କରାଯାଇଥାଏ । ବୈଦେହୀଶ ବିଳାସ କାବ୍ୟରେ ଋଷ୍ୟଶୃଙ୍ଗଙ୍କ ଧ୍ୟାନଭଙ୍ଗ କରି ତାଙ୍କୁ ଶୃଙ୍ଗାର ପୀଡ଼ିତ କରିବା ନିମିତ୍ତ ଜରତାଦି ବେଶ୍ୟାଗଣ ପଞ୍ଚମ ସ୍ୱରରେ ଗୀତ ଗାନ କରିଥିବା ବିଷୟ ଉଲ୍ଲେଖ ରହିଛି -

"ବିଚାରି ରାଗ ସରାଗ ମୁନିର ଜନ୍ମାଉଁ
ବୃଦ୍ଧି ପଞ୍ଚଶରକୁ ପଞ୍ଚମ ସ୍ୱର ଦେଉ ଯେ ।" (୪/୨୧)

ସଙ୍ଗୀତ ଶାସ୍ତ୍ରରେ ସପ୍ତସ୍ୱରକୁ ସାତବର୍ଣ୍ଣ ଓ ସପ୍ତକ ବୋଲି କୁହାଯାଇଥାଏ । 'ନାଟ୍ୟମନୋରମା'ରେ ଏଣୁ କୁହାଯାଇଛି - "ସ୍ୱରୋଗାନ କ୍ରିୟାରମ୍ଭଃ ପ୍ରଯୁକ୍ତୋ ବର୍ଣ୍ଣ ଉଚ୍ୟତେ" । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ନାୟକକୁ ଦେଖିବା ଉଦ୍ଦେଶ୍ୟରେ ନଗର ରମଣୀଗଣ ବୋଲାବୋଲି ହୋଇ କୋଠା ଉପରକୁ ଯିବାବେଳେ ସେମାନଙ୍କ କଣ୍ଠ ସ୍ୱରକୁ ନାରଦଙ୍କ ବୀଣାରେ ବାଦନ ହେଉଥିବା ସାତବର୍ଣ୍ଣ (ସପ୍ତସ୍ୱର) ରୂପେ ତର୍କଣା କରାଯାଇଛି -

"ପାତ୍ର ସାମନ୍ତ ବଲ୍ଲଭୀ ଏକାଳେ ଶୋଭିତ କରୁଁ
ବେଗେ ବ୍ୟବହାର ସାରି ଗମପଦ ନିଜେ ପ୍ରଚାରୁଁ ପ୍ରଚାରୁଁ
ହେ ସାଧୁ । ନାରଦ ବୀଣା ବଜାଇ
ଊର୍ଦ୍ଧ୍ୱେ ଗମନ ଘେନି ମନେ ଚାହିଁଲେ ସାତବର୍ଣ୍ଣ ମଗ୍ନ ହୋଇ ।" (୩୦/୧୬)

ସଙ୍ଗୀତ ଶାସ୍ତ୍ରରେ ସପ୍ତକର ସାତୋଟି ଶୁଦ୍ଧସ୍ୱର ବାଇଶଗୋଟି ଶ୍ରୁତି ଉପରେ ସ୍ଥାପିତ କରିବାକୁ 'ଗ୍ରାମ' କୁହାଯାଇଥାଏ । ପ୍ରତି ଗ୍ରାମର ଘୋର, ମନ୍ଦ୍ର ଓ ତାର - ଏହିପରି ତିନୋଟି ବିଭାଗ ରହିଛି । ଉପେନ୍ଦ୍ରଙ୍କ କୋ.ବ୍ର.ସୁ. କାବ୍ୟର ଏକ ସ୍ଥାନରେ ବିଭିନ୍ନ ଗ୍ରାମ ଓ ସ୍ୱରର ସୂଚନା ଦିଆଯାଇ ଲେଖାଯାଇଛି -

"ତାର ମନ୍ଦର ଘୋର ଗ୍ରାମ ସାରରେ ପୁଣି ଇନ୍ଦ୍ରପ୍ରସ୍ଥ ସମ ଯେ
ନିଷାଦ ଋଷଭ ପ୍ରଚାର ସେବିତ ଅଟେ ଗାନ୍ଧାର ମଧ୍ୟମ ଯେ
ଷଡ଼୍‌ଜ । ସୁଧଇବତ ପଞ୍ଚମ ଯେ
ମଞ୍ଜୁ ଚିତ୍ରକଳା ଚିତ୍ରପଦା ଧ୍ରୁବପଦା ପଞ୍ଚାଳୀ ସଙ୍ଗମ ଯେ" (୩୧/୨୬)

ସଙ୍ଗୀତରେ 'ତାଳ'ର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହା ଗୀତ, ନୃତ୍ୟ, ବାଦ୍ୟର ଆଧାର ଭୂମି । 'ନାଟ୍ୟମନୋରମା' ଅନୁଯାୟୀ ସମୟର ସମତା ରକ୍ଷା ସହ ଗୀତର ମାଧୁର୍ଯ୍ୟ ବୃଦ୍ଧି କରିବା 'ତାଳ'ର ପ୍ରଧାନ ଲକ୍ଷ୍ୟ -

ସମୟସ୍ୟ ସମତ୍ୱେନ ରଞ୍ଜକତ୍ୱେନ ଚାଧିକମ୍
ତାଳୟ ତ୍ୟେଷ ସଙ୍ଗୀତଂ ଯସ୍ତୋଳ ନିଗଦ୍ୟତେ ।

ପ୍ରାଚୀନ ସଙ୍ଗୀତ ଶାସ୍ତ୍ରମାନଙ୍କରେ ୧୧୦ ପ୍ରକାର ତାଳ ସଂପର୍କରେ ଉଲ୍ଲେଖ ଥିଲେ ହେଁ ବାସ୍ତବରେ ଆଦି, ଯତି, ନିଃସାରୀ, ମଣ୍ଠ, ଝମ୍ପକ, ରୂପକ, ତ୍ରିପୁଟ, ଅଡ଼ତ଼, ଏକତାଳୀ, କୁଡ଼ୁକ ଆଦି ଦଶଟି ତାଳ ମୁଖ୍ୟ । ଉପେନ୍ଦ୍ରଙ୍କ ସୃଷ୍ଟି ସମୂହରେ ବ୍ୟବହୃତ କେତୋଟି ତାଳ ସଂପର୍କରେ ନିମ୍ନରେ ସୂଚନା ପ୍ରଦାନ କରାଗଲା -

| | | |
|---|---|---|
| ପଟତାଳ | - | 'ଗ' କାର ଚୌପଦୀ - ନଂ ୪ - ଦୂତୀ ନିବେଦନ |
| ପଡ଼ିତାଳ | - | 'ସ' କାର ଚୌପଦୀ - ପ୍ରୋଷିତା ଭର୍ତ୍ତୃକା |
| | | 'କ' କାର ଚୌପଦୀ - ଭ୍ରମର ଚୁମ୍ବନ ଲକ୍ଷଣ |
| ପହପଟ ତାଳ | - | 'କ' କାର ଚୌପଦୀ - ବଳିତ ଚୁମ୍ବନ ଲକ୍ଷଣ |
| ଏକ ତାଳି | - | 'ପ' କାର ଚୌପଦୀ - ନଂ ୨, ୬ |
| | | 'ଚ' କାର ଚୌପଦୀ - ନଂ ୨ |
| ରୂପକ ତାଳ | - | 'ସ' କାର ଚୌପଦୀ - ନଂ ୪ |
| ଦ୍ରୁତ ପଡ଼ିତାଳ | - | 'ଚ' କାର ଚୌପଦୀ - ରତିଭୀତାନୁରାଗ |
| ତ୍ରିପୁଟା ତାଳ | - | 'ପ' କାର ଚୌପଦୀ - ନଂ ୧, ୬ |
| ସରିମାନ ତାଳ | - | 'ଗ' କାର ଚୌପଦୀ - ନଂ ୧ |

ଉପେନ୍ଦ୍ର ତାଙ୍କ କାବ୍ୟର ବିଷୟ ବର୍ଣ୍ଣନା ପ୍ରସଙ୍ଗରେ କେତେକ ସ୍ଥଳରେ ବିଭିନ୍ନ ତାଳ ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି । ଏହି ପରିପ୍ରେକ୍ଷୀରେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଗୋଟିଏ ପଦ ଉଦ୍ଧାର କରାଯାଇପାରେ -

''ସେ କଇଳାସ ତାଳରେ ପ୍ରକାଶ ଆଦି ଯତିମନ ମୋହି ଯେ
ଶୋଭିନୀ ସାରୀସିଦ୍ଧ ମଠାଲିଙ୍ଗନ ଙ୍କାନ ଝମ୍ପାରୂପକହିଁ ଯେ
ତ୍ରିପୁଟା ଏକତାଳୀଯୁକ୍ତ କାହିଁ ଯେ
ସରିମାନ ଅଡ଼ତ଼ ଶିବ ବଚନରେ ଗଉରୀ ପ୍ରକଟ ଯହିଁ ଯେ ।'' (୩୧/୨୩)

ଗୀତର ବିଭାଗୀକରଣ ବେଳେ ଦେଶୀଗୀତ ସଂପର୍କରେ ଉଲ୍ଲେଖ କରାଯାଇଥାଏ । ଏହାକୁ ମୁଖ୍ୟତଃ ଶାସ୍ତ୍ରପ୍ରଧାନ ଓ ଭାବପ୍ରଧାନ - ଏହିପରି ଦୁଇଭାଗରେ ବିଭକ୍ତ

କରାଯାଇଛି । ଶାସ୍ତ୍ରୀୟ ନିୟମର ବଶବର୍ତ୍ତୀ ଗୀତ ଶାସ୍ତ୍ରପ୍ରଧାନ ଦେଶୀଗୀତ ଏବଂ ନୀତିନିୟମ ମୁକ୍ତଗୀତ ଭାବପ୍ରଧାନ ଦେଶୀଗୀତ ଭାବେ ପରିଚିତ । ଏହାକୁ ମଧ୍ୟ କେହି କେହି ଲୋକଗୀତ କହିଥାନ୍ତି । ଭଞ୍ଜସାହିତ୍ୟରେ ବହୁ ଲୋକଗୀତର ଉଲ୍ଲେଖ ରହିଛି । ବିଶେଷକରି ମଙ୍ଗଳଗୀତ ଓ ଗନ୍ଧଷଣ ଗୀତର ବହୁଳ ପ୍ରୟୋଗ ଭଞ୍ଜସାହିତ୍ୟରେ ପରିଲକ୍ଷିତ । ବିବାହଉତ୍ସବ ସମୟରେ ଗଣିକାମାନଙ୍କ ଦ୍ୱାରା ବହୁକ୍ଷେତ୍ରରେ ମଙ୍ଗଳଗୀତ ଗାନ କରାଯାଇଥିବାର ଦେଖିବାକୁ ମିଳେ -

''ଗଣକଗଣ ମଙ୍ଗଳାଷ୍ଟକ ପଢୁଛନ୍ତି
ମଙ୍ଗଳଗୀତ ଗାବନ୍ତି ଗଣିକା ଯୁବତୀ ଯେ ।'' (ଲା.ବ.-୩୦/୪୩)

'ପ୍ରେମ ସୁଧାନିଧି' କାବ୍ୟରେ ସଖିଗଣ କାବ୍ୟନାୟିକାର ବିବାହ ସମୟରେ ଗନ୍ଧଷଣ ଗୀତ ଗାନ କରିଛନ୍ତି -

''ସାତ ସାତ କୁମ୍ଭ କୁମ୍ଭେ ତୋଳିଲେ ଜଳ
ଚଣ୍ଡୀ ଚଣ୍ଡୀ ଗନ୍ଧଷଣେ ଗୀତ ମଙ୍ଗଳ ।'' (୧/୩୫)

## ବାଦ୍ୟ

ସଙ୍ଗୀତର ଅନ୍ୟତମ ମୁଖ୍ୟ ଉପାଦାନ ବାଦ୍ୟ । ନୃତ୍ୟ ଓ ଗୀତକୁ ଶ୍ରୁତିମଧୁର କରିବା କ୍ଷେତ୍ରରେ ବାଦ୍ୟର ଅବଦାନ ଅତୁଳନୀୟ । ତାଳର ଆଧାର ବାଦ୍ୟ । ସଙ୍ଗୀତ ଶାସ୍ତ୍ରରେ ତତ୍, ସୁଷୀର, ଆବଦ୍ଧ ଓ ଘନ ଭେଦରେ ବାଦ୍ୟ ଚାରିଭାଗରେ ବିଭକ୍ତ । ଏମାନଙ୍କର ପ୍ରୟୋଗ କୌଶଳ ମଧ୍ୟ ଭିନ୍ନ ଭିନ୍ନ । ଉପେନ୍ଦ୍ରଙ୍କ କାବ୍ୟରେ ପରିଲକ୍ଷିତ ଅଧିକାଂଶ ବାଦ୍ୟ ଓଡ଼ିଶାର ଜନସାଧାରଣଙ୍କ ନିକଟରେ ପରିଚିତ । ଉପେନ୍ଦ୍ର ମଧ୍ୟ କେତେକ ବାଦ୍ୟକୁ ନାରୀ ଅଙ୍ଗ ସହିତ ତୁଳନା ସମୟରେ ଉପମା ଭାବରେ ବ୍ୟବହାର କରିଛନ୍ତି । ଯେପରି କାବ୍ୟନାୟିକାର ଚିବୁକ, କଣ୍ଠ ଆଦିକୁ ବୀଣା ସହିତ ତୁଳନା କରିଛନ୍ତି -

''ଚିବୁକେ ଭ୍ରମରୀ ଲେଖିଲେ ସମ ସେହିକ୍ଷଣ ଜାତ କରାଇ ଭ୍ରମ
କଣ୍ଠେ ନିଷ୍ଠେ ବୀଣା ଅଛି ତାହାର । ଫୁଲ୍ଲିମାଳି ଗଣେଶ୍ୱରଯେ X X ।''
(ରସଲେଖା - ୧୩/୧୦-୧୧)

ଉପେନ୍ଦ୍ରଙ୍କ କାବ୍ୟାବଳୀରେ ଆବଦ୍ଧ ବାଦ୍ୟର ପ୍ରଚୁର ବ୍ୟବହାର ପରିଲକ୍ଷିତ । ଦୁନ୍ଦୁଭି ହେଉଛି ସେହିପରି ଏକ ବାଦ୍ୟ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ବିବାହ ଉତ୍ସବରେ ଅନ୍ୟାନ୍ୟ ବାଦ୍ୟ ମଧ୍ୟରେ ଦୁନ୍ଦୁଭି ବାଦ୍ୟ ବାଜିଥିବାର ସୂଚନା ରହିଛି ।

''କିବା ନାଗରା ଦୁନ୍ଦୁଭି ପଟହାଦି ନାଦେ
କର୍ଣ୍ଣହୀନ ଫଣୀନେତ୍ରେ ଶବଦ ସଂପାଦେ ।'' (୩୩/୪୦)

ଶ୍ରୀଜଗନ୍ନାଥଙ୍କ ସ୍ନାନପୂର୍ଣ୍ଣିମା ଓ ରଥଯାତ୍ରା ସମୟରେ ମେଘା, ମୃଦଙ୍ଗ, ମର୍ଦ୍ଦଳ, କଂସାଳ, ତାଳ, କର୍ଣ୍ଣାଳ, ପଟହ ଆଦି ବାଦ୍ୟ ବାଜିଥିବା ସଂପର୍କରେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଉଲ୍ଲେଖ ଅଛି -

''ପଡ଼ିଲା ତୂଳୀ ପାହାଡ଼ା ବିଜୟ ନିମିତ୍ତେ
ବାଜିଲା ମେଘା ମୃଦଙ୍ଗ ମର୍ଦ୍ଦଳ ସହିତେ ହେ ।
କଂସାଳ ତାଳ କର୍ଣ୍ଣାଳ ପଟହ ଝର୍ଝରା
ମୋ ପରେ ବିଜେ କରିବେ ଭାବି ତୋଷ ଧରା ।'' (୧/୨୮-୨୯)

ନାରୀ ଅଙ୍ଗ ବର୍ଣ୍ଣନାରେ ମଧ୍ୟ ମର୍ଦ୍ଦଳ ଉପମା ଓ ରୂପକ ଭାବରେ ବ୍ୟବହୃତ । ଡମ୍ବରୁ ବାଦ୍ୟଟି ମୁଖ୍ୟତଃ ନାରୀର କଟୀ ବର୍ଣ୍ଣନାରେ ବ୍ୟବହୃତ -

''କଳା ନିତମ୍ବ ପୃଥୁ ଚକ୍ରବର୍ତ୍ତୀ ବେଗେ ଅବିବେକ ଗଲା ନିବର୍ତ୍ତି
କରି ନୂପୁର ତୁରକୁ ବାଜିଣୀ କଟୀ ଡମ୍ବରୁରେ ଘଣ୍ଟି ସାଜିଣୀ ।''
(କୋ.ବ୍ର.ସୁ. - ୩/୧୦)

''ବାନ୍ଧିବାକି ପୁଚ୍ଛେ
ଏହା ଡମ୍ବରୁ ମଧ୍ୟେ ଘଣ୍ଟି ସ୍ୱଚ୍ଛେ ।'' (କୋ.ବ୍ର.ସୁ. - ୧୯/୧୫)

ସେହିପରି ବିବାହ ତଥା ଜଗନ୍ନାଥଙ୍କ ବିଭିନ୍ନ ଉତ୍ସବରେ ମୃଦଙ୍ଗ ବାଦ୍ୟ ବ୍ୟବହାର ହୋଇଥିବାର ଉଲ୍ଲେଖ ଅଛି -

''ବୀଣାରବା ତାଳ ତାଳ ମୃଦଙ୍ଗ ମର୍ଦ୍ଦଳ ।
ସ୍ୱରମଣ୍ଡଳ ଅମୃତୀ ବାଏ ଗୁଣୀକୁଳ ଯେ ।'' (ଲା.ବ. - ୩୦/୪୨)

ଅନୁରୂପଭାବେ ଆବଦ୍ଧବାଦ୍ୟାନ୍ତର୍ଗତ ପଟହ ବାଦ୍ୟର ବହୁଳ ଉଲ୍ଲେଖ ଉପେନ୍ଦ୍ରଙ୍କ କାବ୍ୟରେ ପରିଲକ୍ଷିତ । ନାୟକନାୟିକାମାନଙ୍କର ବିବାହୋତ୍ସବ, ରାଜ୍ୟାଭିଷେକ, ଜଗନ୍ନାଥଙ୍କ ବିଭିନ୍ନ ଯାତ୍ରାରେ ଏହି ବାଦ୍ୟର ବ୍ୟବହାର ହୋଇଛି ।

''ସ୍ୱର ଶଙ୍ଖ ଶଙ୍ଖ ବାଜେ ଅସଂଖ୍ୟ ମାଧୁରୀ
ଘଣ୍ଟ ପଟହ କଂସାଳ ତାଳତୂରୀ ଭେରୀ ।'' (ଲା.ବ. - ୩୦/୪୦)

ଉପେନ୍ଦ୍ରଙ୍କ କାବ୍ୟାବଳୀର ଆବଦ୍ଧ ବାଦ୍ୟପରି ବହୁ **ସୁଷିର** ବାଦ୍ୟର ଉଲ୍ଲେଖ ରହିଛି । ସାଧାରଣତଃ ଫୁଙ୍କଦ୍ୱାରା ଯେଉଁ ବାଦ୍ୟରୁ ସ୍ୱର ବା ନାଦ ଉତ୍ପନ୍ନ ହୁଏ, ତାହାକୁ ସୁଷିର ବାଦ୍ୟ କୁହାଯାଏ । ଶିଙ୍ଗା, କାହାଳୀ, ତୂରୀ, ମହୁରି, ଭେରୀ, ମଧୁରୀ, ଶଙ୍ଖ, ବଂଶୀ ଆଦି ଏହି ସୁଷିର ବାଦ୍ୟାନ୍ତର୍ଭୁକ୍ତ । ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରେ ଏହି ବାଦ୍ୟ ସଂପର୍କରେ ଉଲ୍ଲେଖ ରହିଛି -

''ବକ ଶଙ୍ଖ ଦାତ୍ୟୂହ ମଧୁରୀ କଙ୍କ ଭେରୀ
ବର୍ଷା ଭୂଟମକ ନାଦେ ଦଶଦିଶି ପୂରି ଯେ ।'' (ବୈ.ବି. - ୧୪/୩୦)

ଉପେନ୍ଦ୍ରଙ୍କ କାବ୍ୟରେ ମଧ୍ୟ **ଘନବାଦ୍ୟ**ର ବହୁଳ ବ୍ୟବହାର ପରିଲକ୍ଷିତ । ମୁଖ୍ୟତଃ କଂସା ନିର୍ମିତ ବାଦ୍ୟ ଘନବାଦ୍ୟ ନାମରେ ପରିଚିତ । ଜୟଘଣ୍ଟ, ଘଣ୍ଟ, ଝାଞ୍ଜ, ଘୁଙ୍ଗୁର, କିଙ୍କିଣୀ, ନୂପୁର, କାଂସ୍ୟ ଆଦି ଏହାର ଅନ୍ତର୍ଭୁକ୍ତ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଏକ ସ୍ଥାନରେ ଏହି ବାଦ୍ୟର ବର୍ଣ୍ଣନା ଦିଆଯାଇ ଲେଖାଯାଇଛି -

''କଂସାଳ, ତାଳ, କର୍ଣ୍ଣାଳ, ପଟ୍ଟହ, ଝର୍ଝରା
ମୋ ପରେ ବିଜେ କରିବେ ଭାବି ତୋଷ ଧରା ।'' (୧/୨୯)

ଉପେନ୍ଦ୍ରଙ୍କ କାବ୍ୟରେ ଓଡ଼ିଶାରେ ବ୍ୟବହୃତ ଅନ୍ୟ ଏକ ପରିଚିତ ବାଦ୍ୟ ରାମତାଳି ବା ରାମକାଠି ସଂପର୍କରେ ଉଲ୍ଲେଖ କରାଯାଇଛି । ବାର ଅଙ୍ଗୁଳି ବିଶିଷ୍ଟ ଦୁଇଟି ଚତୁଷ୍କୋଣାକାର କାଠରେ ବାଦ୍ୟଟି ନିର୍ମିତ । 'ବୈଦେହୀଶ ବିଳାସ' କାବ୍ୟରେ ଶ୍ରୀରାମଙ୍କ ଯୁଦ୍ଧଜୟ ପରେ ବାନରସୈନ୍ୟଗଣ ରାମତାଳି ବାଦ୍ୟ ବଜାଇଥିବାର ସୂଚନା ରହିଛି -

''ବାତପୋତ ତରୁ ସ୍ଫୁଟ ପ୍ରାୟ ସର୍ବେ ଏ କାଳେ ରଘୁନନ୍ଦନ
ବେଳାସ୍ତ ଅନାଇ ଦ୍ୱିବିନ୍ଦକୁ ପେଷି ବାହୁଡ଼ାଇ ନେଲେ ସୈନ୍ୟ ସେ
ବାଜୁଅଛି ରାମତାଳି । ବେଗେ ସୁବେଳରେ ମିଳି ହେ ।'' (୪୦/୪୧)

ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରେ ବ୍ୟବହୃତ ବାଦ୍ୟଗୁଡ଼ିକ ତତ୍କାଳୀନ ଓଡ଼ିଶାରେ ଯେ ପ୍ରଚଳିତ ଥିଲା ଏହା ନିଃସନ୍ଦେହରେ ଗ୍ରହଣ କରାଯାଇପାରେ ।

## ନୃତ୍ୟ

ମାନବ ଭାବପ୍ରବଣ ମନର ଆଙ୍ଗିକ ପରିପ୍ରକାଶହିଁ ନୃତ୍ୟ । ଶାରୀରିକ ଚାଳନାର କଳାତ୍ମକ ଅନୁକୃତି ଏଥିରେ ପ୍ରକାଶ ଲାଭ କରିଥାଏ । ଆଦିମଣିଷ ପ୍ରକୃତିର ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ପ୍ରଥମେ ନାଚିଛି ଓ ପରେ ଗାଇଛି । ନୃତ୍ୟ ମୁଖ୍ୟତଃ ଶାସ୍ତ୍ରୀୟ ଏବଂ ଲୋକନୃତ୍ୟ ଭେଦରେ ଦ୍ୱିବିଧ । ଉପେନ୍ଦ୍ରଙ୍କ ସୃଷ୍ଟି ସମୂହରେ ଏବଂବିଧ ଦୁଇପ୍ରକାର ନୃତ୍ୟ ପରିଲକ୍ଷିତ । ମାହାରୀ ନୃତ୍ୟ, ଦେବଦାସୀ ନୃତ୍ୟ, ଘଣ୍ଟିନାଚ, କେଳାକେଳୁଣୀ ନାଚ, ବାଉଁଶ ନାଟ, ରଣପା ନାଚ, ଦଣ୍ଡନାଟ, ଶିକାର ନାଟ ଆଦି ବହୁ ଶାସ୍ତ୍ରୀୟ ଓ ଲୋକନାଟର ଚମତ୍କାର ପରିପ୍ରକାଶ ଘଟିଛି ଉପେନ୍ଦ୍ରଙ୍କ ସୃଷ୍ଟିରେ । ପ୍ରସଙ୍ଗକ୍ରମେ ଏଠାରେ ତାଙ୍କ ସୃଷ୍ଟିରୁ ଅଳ୍ପ କେତୋଟି ନାଟର ଅବତାରଣା କରାଗଲା ।

**ମୟୂର ନୃତ୍ୟ** - ବର୍ଷା ଆଗମନରେ ମୟୂର ପୁଚ୍ଛ ଟେକି ତାଳ ଅନୁସାରେ ନୃତ୍ୟ କରିଥାଏ । ସେହି ନୃତ୍ୟ ଅନୁସରଣରେ ଯେଉଁ ନାଚ ହୋଇଥାଏ, ତାକୁ ମୟୂର ନୃତ୍ୟ କୁହାଯାଏ । 'ବୈଦେହୀଶ ବିଳାସ' କାବ୍ୟର ଏକ ସ୍ଥାନରେ କବି ଏହି ନୃତ୍ୟ ସଂପର୍କରେ ସୂଚନା ପ୍ରଦାନ କରି ଲେଖିଛନ୍ତି -

''ବିଜୁଳି ଲକ୍ଷ ବଡ଼ଭୀ ଲଙ୍ଘି କେତନ
ବରହ ଟେକି ଅନାଉ କେକୀ ନର୍ତ୍ତନ ।'' (୫/୨୭)

**ଘଣ୍ଟିନାଟ** - ଆଦିବାସୀ ମୃଗ ଶିକାର ଉଦ୍ଦେଶ୍ୟରେ ଯିବା ସମୟରେ ଘଣ୍ଟିବାଦନ କରିଥାନ୍ତି । ଘଣ୍ଟି ଶବ୍ଦରେ ମୁଗ୍ଧ ହୋଇ ମୃଗ ଚାହିଁବାମାତ୍ରେ ସେମାନେ ତାର ଶିକାର କରିଥାନ୍ତି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ନାୟକ ପୁଷ୍ପକେତୁ ନାୟିକାର ଭୁବନମୋହିନୀ ରୂପସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ଯେଉଁ ଚିନ୍ତା ପ୍ରକଟ କରିଛି, ସେଥିରେ ଏହି ଘଣ୍ଟିନାଟର ସୂଚନା ମିଳିଥାଏ -

''ମୋହନ ସ୍ୱର ପୂର୍ଣ୍ଣ କୃଷ୍ଣ ବେଣୁରେ କୃଷ୍ଣକେଶୀ ବଚନରେ
ପଶୁ ପାଷାଣର ବଶତରଳକୁ କରୁଥିବ ରଚନରେ
ସେ ସ୍ୱରେ । ବୋଲନ୍ତାଇ ବଡ଼ ନୋହିଁ
ଆଖେଟ ଘଣ୍ଟିନାଦେ ଚନ୍ଦ୍ର ଦର୍ଶନେ ବଶ ତରଳିତ ସେହି ।'' (୩୦/୨୯)

**କେଳୁଣୀ ନାଚ** - ନାଚ ସମୟରେ କେଳୁଣୀ ଚିତ୍ ହୋଇ ମାଟିରେ ଶୋଇ ଗୋଡ଼ ତଳେ ହାତରଖି ବନ୍ଧ ଭାଙ୍ଗିଥାଏ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଚଂପା ନଗରୀର ବହିଃଦ୍ୱାର ସମ୍ମୁଖରେ ଥିବା ସ୍ତମ୍ଭର ଶୋଭା ବର୍ଣ୍ଣନ ଅବକାଶରେ ଏହି କେଳୁଣୀ ନାଚ ସଂପର୍କରେ ସୂଚାଇଛନ୍ତି -

''ଉତ୍ତାନ-ହଟେ କେରଳୀ କି ରାଜେ ।
କଳଶ କୁଚ ଦ୍ରୋଣ ସ୍ତମ୍ଭ ଭୁଜେ
ଶୁଭେ ନାରୀପଦ-ନୂପୁର ବାଦ୍ୟ ।
ସମ୍ଭବେ ଯହିଁ ଭଲା ଭଲା ପଦ ।'' (୨/୧୫)

**ରଣପା ନାଟ** - ସାଧାରଣତଃ ରଣପାନୃତ୍ୟକାରୀ ବିଚିତ୍ର ପୋଷାକ ପରିଧାନ କରିଥାନ୍ତି । ଦେହରେ ବିଭୂତି ଓ କପାଳରେ କାଳୀଚିତା ଗ୍ରହଣ କରି ହସ୍ତରେ ବାଉଁଶ ଓ ଢୋଲ ଧରି ଗ୍ରାମ ଦାଣ୍ଡରେ ଯାଆନ୍ତି । ଏହାର ଏକ ବାସ୍ତବ ଚିତ୍ର ଦେଇ ଉପେନ୍ଦ୍ର ଲେଖିଛନ୍ତି -

''ଭାଲେ କାଳୀଚିତା କେ ବିଭୂତି ଭୂଷା ଦେହୀ ଯେ
ବହିଛନ୍ତି ସେ ଦୀର୍ଘ ଶଳାକା ଆଦି ଢୋଲ
ଘଟ ନାଟ ଅରଟାରଣପା ଯେ ମଞ୍ଜୁ ଯେ
ମଧ୍ୟବର୍ତ୍ତୀ ପ୍ରେମରୂପା ନାମେ ନଟୀ ସାର
ବୟସରେ ଷୋଡ଼ଶୀ ବେଶରେ ମନୋହର ଯେ ।''

ଏତଦ୍‌ବ୍ୟତୀତ 'ଲାବଣ୍ୟବତୀ' କାବ୍ୟରେ ବାଜିକର ସିଂହଳ ଦ୍ୱୀପରେ ଭୋଜବିଦ୍ୟା ପ୍ରଦର୍ଶନ ପ୍ରସଙ୍ଗ ଅବତାରଣାରେ ବାଉଁଶନାଟ ସଂପର୍କରେ ବର୍ଣ୍ଣନା ରହିଛି । ଉତ୍କଳୀୟ

ସମାଜରେ ଅନ୍ୟାନ୍ୟ ନାଟପରି 'ରାମଲୀଳା' ଓ 'କୃଷ୍ଣଲୀଳା' ବିଶେଷ ଭାବରେ ଆଦୃତ ଲାଭ କରିଥିଲା । ଏହାର କେତେକ ସୂଚନା ଉପେନ୍ଦ୍ରଙ୍କ କାବ୍ୟାବଳୀରେ ପରିଲକ୍ଷିତ ହୋଇଥାଏ । 'ଲାବଣ୍ୟବତୀ' କାବ୍ୟର ପଞ୍ଚଦଶ ଛାନ୍ଦର ୨୦ରୁ ୩୦ ପଦ ମଧ୍ୟରେ ଐନ୍ଦ୍ରଜାଲିକ ବିନୋଦ ସିଂହଳ ନରେଶଙ୍କୁ ଭୋଜବିଦ୍ୟା ମାଧ୍ୟମରେ 'ରାମଲୀଳା' ପ୍ରଦର୍ଶନ କରାଇଛି । ସେହିପରି 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ସଖୀମାନେ କାବ୍ୟନାୟିକାଙ୍କୁ ବନ ବର୍ଣ୍ଣନା ମାଧ୍ୟମରେ 'ବ୍ରଜଲୀଳା' ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି -

> ''ଶୁଣରେ ରୁଚି ରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁପମରେ
> କୁଞ୍ଜରେ ଲଳିତା ବିଶାଖା କ୍ରୀଡ଼ିତ ଇନ୍ଦୁରେଖା ଚିତ୍ରାରମ୍ୟରେ
> ଅଛି ସୁଦେବୀ । ପୁଣ ତୁଙ୍ଗବିଦ୍ୟା ନିପୁଣେ
> ଭାବନ୍ତି ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ
> ମଞ୍ଜରୀ-ବାର ସେବିତ ନିରନ୍ତର ଅଶେଷ ଗୋପରେ ସେ ଶୋଭେ
> ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛି ଦଇବେ ବେଣୁଧ୍ୱନି ଶୁଭେ ।
> ଆମ୍ଭ ପ୍ରବେଶେ । ସୁମନ ସୁଦାମ ହୋଇବ
> କିଙ୍କିଣୀ ପ୍ରବଳବଳ ହୋଇକରି ନାନା ବିଳାସେ ପ୍ରକଟିବ ।'' (୧୦/୭-୮)

ଅନୁରୂପ ଭାବେ 'ରସିକ ହାରାବଳୀ'ର ତୃତୀୟ ଛାନ୍ଦରେ ଜଗନ୍ନାଥଙ୍କ ଚନ୍ଦନଯାତ୍ରା ବର୍ଣ୍ଣନା ଅବକାଶରେ ମାହାରୀ ନୃତ୍ୟ ସଂପର୍କରେ ଉପେନ୍ଦ୍ର ସୂଚନା ପ୍ରଦାନ କରିଛନ୍ତି । ଏତଦ୍‌ବ୍ୟତୀତ ତାଙ୍କ କାବ୍ୟର ବିଭିନ୍ନ ସ୍ଥଳରେ ଆଙ୍ଗିକ, ବାଚିକ, ଆହାର୍ଯ୍ୟ, ସାତ୍ତ୍ୱିକ ଆଦି ଅଭିନୟ ସଂପର୍କରେ ଶାସ୍ତ୍ରୀୟ ବିଧି ଅନୁଯାୟୀ ଆଲୋଚନା ହୋଇଛି । ପୁନରାୟ ନୃତ୍ୟକାରୀମାନଙ୍କର କେଶବିନ୍ୟାସ, ଅଳଂକାର ଓ ବସନଭୂଷଣର ଯେଉଁ ସ୍ୱାତନ୍ତ୍ୟ ପରିଲକ୍ଷିତ ହୋଇଥାଏ, ତାର ଚମତ୍କାର ବର୍ଣ୍ଣନା ତାଙ୍କ କାବ୍ୟଗୁଡ଼ିକରେ ପରିଲକ୍ଷିତ ହୁଏ । ସଙ୍ଗୀତର ବିଭିନ୍ନ ରାଗ-ରାଗିଣୀ ସମ୍ବନ୍ଧରେ ସେ ଯେଉଁ ତାତ୍ତ୍ୱିକ ଆଲୋଚନା କରିଛନ୍ତି, ସେଥିରୁ ସଙ୍ଗୀତ ଶାସ୍ତ୍ର କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ ଥିବା ବିଷୟ ଅନୁମିତ ହୁଏ । ତେଣୁ ଉପେନ୍ଦ୍ରଙ୍କ କାବ୍ୟ-କବିତାଗୁଡ଼ିକରେ ସଙ୍ଗୀତ କଳାର ଅନୁପମ ଆଲେଖ୍ୟ ଯେପରି ସ୍ଫୁଟିତ କହିବା ଅନାବଶ୍ୟକ ମାତ୍ର ।

## ଚିତ୍ରକଳା

''ମାନବୀୟ ଭାବ, ବିଚାର, ଅନୁଭୂତି ଓ ପ୍ରତିକ୍ରିୟାର ରୈଖିକ ପରିପ୍ରକାଶ ହେଉଛି ଚିତ୍ରକଳା । ଚିତ୍ରକଳାର ମାଧ୍ୟମ ହେଉଛି ରେଖା ବା ରଙ୍ଗ । ଏହାର ଭାଷା ମୂକ ଭାଷା, କିନ୍ତୁ ଏହି ଭାଷା ମୂକ ବୋଲି ଏହାକୁ ଦେଶ, କାଳ ଓ ଭାଷା କିମ୍ବା ବର୍ଣ୍ଣଭେଦ ବାନ୍ଧି ରଖିପାରେ

ନାହିଁ । ଏଣୁ ଚିତ୍ରର ଭାଷା ଧ୍ୱନିହୀନ ହେଲେହେଁ ସଧ୍ୱନିତ ଏବଂ ଅଭିବ୍ୟଞ୍ଜିତ ।'' (ଦାସ ତାରିଣୀଚରଣ - କଳା ଓ ସାହିତ୍ୟ, ପୃ-୨୯, ୧୯୭୪) ଏହି ଚିତ୍ରକଳାର ପ୍ରକାଶ ଭଙ୍ଗୀ ବିଭିନ୍ନ । କେତେବେଳେ ଏହା ଲୋକଚିତ୍ର, ଭିତ୍ତିଚିତ୍ର, ପଟ୍ଟଚିତ୍ର, ଚିତ୍ରପଟ ବା ଅନ୍ୟ କେତେବେଳେ ପୋଥିଚିତ୍ର ମଧ୍ୟ ଦେଇ ଆତ୍ମପ୍ରକାଶ କରେ । ସଙ୍ଗୀତ କଳାପରି ଉପେନ୍ଦ୍ରଙ୍କର ଚିତ୍ରକଳା ସଂପର୍କରେ ମଧ୍ୟ ଗଭୀର ପ୍ରବେଶ ରହିଥିଲା । ଉପେନ୍ଦ୍ରଙ୍କ ସୃଷ୍ଟିରେ ଚିତ୍ରକଳାର ଏହି ବିଭିନ୍ନ ବିଭାବ କିପରି କମନୀୟ ରୂପରେ ଆତ୍ମପ୍ରକାଶ କରିଛି, ନିମ୍ନ ଆଲୋଚନାରୁ ତାହା ପ୍ରତିପାଦିତ ହୋଇପାରିବ ।

**ଲୋକଚିତ୍ର** - ଲୋକଚିତ୍ର ସ୍ୱତଃସ୍ଫୂର୍ତ୍ତ । ଏହାର ସମୟ ନିରୂପଣ କରିବା ସମ୍ଭବ ନୁହେଁ । ପଲ୍ଲୀ ଜନତା ହୃଦୟାନୁଭବର ଏହା ଏକ ସାକାର ରୂପ । ବିଭିନ୍ନ ପର୍ବପର୍ବାଣି, ଓଷାବ୍ରତ ସମୟରେ ପଲ୍ଲୀ ଲଳନା ଝୋଟି, ମୁରୁଜ, ପିଠଉ ଆଦିଦ୍ୱାରା କାନ୍ଥ, ଚଟାଣ ଆଦି ଚିତ୍ରିତ କରିଥାନ୍ତି । ଏତଦ୍‌ବ୍ୟତୀତ ନିଜ ଶରୀର ତଥା ବିଭିନ୍ନ ପିଠାପଣାରେ ପଲ୍ଲୀଲଳନାର ଚିତ୍ରକଳା ଫୁଟିଉଠେ । ତାକୁ ଏହା କେହି ଶିକ୍ଷା ଦେଇ ନ ଥାଏ । ସ୍ୱତଃସ୍ଫୂର୍ତ୍ତ ଭାବେ ତାର ଭାବପ୍ରବଣ ମନରୁ ଏହା ଝରି ଆସିଥାଏ । ବିଭିନ୍ନ ସାମାଜିକ ଉତ୍ସବ, ବିଶେଷକରି ବିବାହାଦିରେ ଗୃହର କାନ୍ଥ, ଅଗଣା ଆଦିକୁ ଚିତ୍ର ବିଚିତ୍ର କରାଯାଇଥାଏ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟର ଅନେକ ସ୍ଥଳରେ ଏହିପରି ବହୁ ଲୋକଚିତ୍ର ପ୍ରକାଶିତ । ସୁଭଦ୍ରାଙ୍କ ବିବାହ ସମୟରେ ଏହିପରି ଚିତାମାନ ଅଙ୍କନ କରାଯାଇଥିବାର ସୂଚନା ଦିଆଯାଇଛି -

''ସଚିତ୍ର କରନ୍ତି ଭିତ୍ତିମାନ ଚିତ୍ରକାରେ ।'' (ସୁ.ପ.-୧୬/୮)

ଉତ୍କଳୀୟ ରମଣୀ ସୌନ୍ଦର୍ଯ୍ୟ ବୃଦ୍ଧିପାଇଁ ଶରୀରର ବିଭିନ୍ନ ସ୍ଥାନକୁ ହଳଦୀ, ହରିତାଳୀ ଆଦି ଦ୍ୱାରା ଚିତ୍ର ବିଚିତ୍ର କରିଥାନ୍ତି । ଉପେନ୍ଦ୍ର ଭଞ୍ଜ 'ଲାବଣ୍ୟବତୀ' କାବ୍ୟରେ ମାଲ୍ୟାଣୀର ରୂପ ବର୍ଣ୍ଣନା ଅବକାଶରେ ଏହାର ସୂଚନା ପ୍ରଦାନ କରିଛନ୍ତି -

''ସ୍ତନ ଉର୍ଦ୍ଧ୍ୱେ, କଣ୍ଠତଳେ, ମଣିବନ୍ଧ, କରମୂଳେ, ପାଦପରେ
ଚିବୁକରେ, କି ମନୋହର ଯେ X X
ହରିତାଳୀ କାଳୀଚିତା ଉକୁଟାଇଛି
ବନିତା ଦେହତ ଅତ୍ୟନ୍ତ ଗୋରା, ତହିଁକି ତୋରା ଯେ''

(ଲା.ବ.-୧୩/୧୬-୧୭)

ମଞ୍ଜୁଆତି ପତ୍ରରେ ହାତ ଏବଂ ନଖକୁ ରଙ୍ଗାଇବାର ପରଂପରା ଏବେ ମଧ୍ୟ ଆମ ସମାଜରେ ରହିଛି । ଉପେନ୍ଦ୍ରଙ୍କ ସମୟରେ ଏହି ପରଂପରାରେ କୌଣସି ବ୍ୟତିକ୍ରମ ଘଟି ନ ଥିଲା । ସୁଭଦ୍ରାଙ୍କ ସଖୀମାନଙ୍କ ବେଶ ବର୍ଣ୍ଣନାରୁ ଏହାର ସୂଚନା ମିଳିଥାଏ -

''ସଞ୍ଚ ନିତମ୍ବ ବିମ୍ବ ହୋଇ ପୀବର କୂପକ ଘେନି କିରୁଚି
ସୂତ ଦମ୍ଭଚ୍ଛେଦ ଚକ୍ର ଥୋଇଲା କି କାମ ତର୍ଜନାରେ ଆଞ୍ଚି
ସପ୍ତଳା କଳୀକି ଦଳିଲା କରଜ ମଞ୍ଜୁ ମଞ୍ଜୁଆତି ରସେ
ସରଙ୍ଗ ହେବାରୁ କରବୀର କଳୀ ଝଳି ସବୁ ରୂପ ଦିଶେ ।'' (ସୁ.ପ.-୨/୧୧)

ଏତଦ୍‌ବ୍ୟତୀତ 'ସୁଭଦ୍ରାପରିଣୟ' କାବ୍ୟରେ ନାରୀମାନଙ୍କର ବାହୁଦ୍ୱୟର ଶୋଭାବର୍ଦ୍ଧନ ପାଇଁ ହରିତାଳୀ କାଳିରେ ଛବି ଅଙ୍କନ, 'ଲାବଣ୍ୟବତୀ'ରେ ପ୍ରେମରୂପା ନଟୀର ଅଞ୍ଜନ ଚିତ୍ରରେ ହାତପାପୁଲିକୁ ରଞ୍ଜନ କରିବା ଆଦି ବର୍ଣ୍ଣନାରୁ ଲୋକଚିତ୍ରର ଲୋକପ୍ରିୟତା ସଂପର୍କରେ ଧାରଣା ଲାଭ ହୋଇଥାଏ । ଅନ୍ୟତ୍ର ଅଳତାଦ୍ୱାରା ପାଦରଞ୍ଜନ କରିବାର ବହୁ ଉଦାହରଣ ଦେଖିବାକୁ ମିଳେ । ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ନାରୀଗଣ ମକରୀ ଚିତାର ବ୍ୟବହାର କରୁଥିବା ବିଷୟ ଜଣାଯାଏ । କସ୍ତୁରୀ ବା କଳାରଙ୍ଗର ଲେପଦ୍ୱାରା ନାରୀମାନେ ନିଜ ଶରୀରରେ ଯେଉଁ ଚିତା ଅଙ୍କନ କରନ୍ତି, ତାହା ମକରୀ ଚିତା ଭାବରେ ପରିଚିତ । ଚିବୁକରେ ଭ୍ରମର ଚିତ୍ର ଅଙ୍କନ କରିବାର ପରଂପରା ମଧ୍ୟ ଆମ ସମାଜରେ ପ୍ରଚଳିତ ଥିଲା । ଏହି ପ୍ରକାର ଚିତାକୁ ଭ୍ରମରିକା ଚିତା ବୋଲି କହିଥାନ୍ତି । ଉପେନ୍ଦ୍ରଙ୍କ ଚନ୍ଦ୍ରରେଖା କାବ୍ୟରେ ଏହି ଚିତା ସଂପର୍କରେ ଉଲ୍ଲେଖ ରହିଛି -

''କସ୍ତୂରୀରେ କରି ଲେଖିଲା ମକରୀ
ସୁନିର୍ମଳ ଗଣ୍ଡସ୍ଥଳେ
ଚିବୁକେ ଭ୍ରମରିକା ଲେଖି ଲେଖିଲେ
ପତ୍ରାଳି କୁଚ ଯୁଗଳେ ।'' (୨୭/୨୨)

ଏହାଛଡ଼ା ପଲ୍ଲୀଲଳନା ନିଜ ଶରୀରର ବିଭିନ୍ନ ସ୍ଥାନରେ ଏକପ୍ରକାର କଳାରଙ୍ଗକୁ ଛୁଞ୍ଚି ସାହାଯ୍ୟରେ କୁଟେଇଥାନ୍ତି । କେତେକ ନିଜର ନାମ କୁଟେଇଥିବା ସମୟରେ ଅନ୍ୟ କେତେକ ବିଭିନ୍ନ ପଶୁପକ୍ଷୀ, କୋଠି, ତ୍ରିଭୁଜ ଆଦି ଅଙ୍କନ କରିଥାନ୍ତି । 'ଲାବଣ୍ୟବତୀ' କାବ୍ୟରେ ନଟୀପ୍ରେମରୂପାର ବର୍ଣ୍ଣନା ଦେବା ସମୟରେ କବି ଏ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି -

''କୁଟାଇଛି ଚିବୁକେ ମକ୍ଷିକା ଚାରୁଚିତ୍ର
ଓଷ୍ଠେ ମଧୁ ସଞ୍ଚିବାକୁ ସେ ଉପସ୍ଥିତ ଯେ ।'' (୧୫/୧୦)

**ଭିତ୍ତିଚିତ୍ର** - କାନ୍ଥରେ ବିଭିନ୍ନ ପ୍ରକାର ଚିତ୍ର ଅଙ୍କନ ମାଧ୍ୟମରେ ଉତ୍କଳୀୟ ଶିଳ୍ପୀ ନିଜର କଳାକୁଶଳତା ପ୍ରଦର୍ଶନ କରିଥାନ୍ତି । ବିଶେଷ ଭାବରେ ରାମାବତାର, ଦଶାବତାର, ଗଜ ଉଦ୍ଧାରଣ, ସାଗରମନ୍ଥନ ଆଦି ଧର୍ମ ବିଷୟକ ବହୁ ଚିତ୍ର ଭିତ୍ତିରେ ଅଙ୍କନ

କରାଯାଉଥିବାରୁ ଏହାକୁ ଭିତ୍ତି ଚିତ୍ର କହିଥାନ୍ତି । ଉପେନ୍ଦ୍ର ତାଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ନାୟକନାୟିକାଙ୍କ ମିଳନ କକ୍ଷରେ ରାମସୀତାଙ୍କ ଚିତ୍ର ଅଙ୍କନ କରାଯାଇଥିବା ବିଷୟ ଉଲ୍ଲେଖ କରିଛନ୍ତି -

''ମଣ୍ଡିଲୁ ଏମନ୍ତପୁର୍ ଖଣ୍ଡିଲୁ ସଂଶୟ
ନବଙ୍ଗନା ହିତେ ଯୁବା ପ୍ରମୋଦ ଉଦୟ ଯେ
ଗୋପୀକୃଷ୍ଣ ଲୀଳା ଚିତ୍ର ନାହିଁ ଯହିଁ ଦେଖା
ସୀତାରାମ ପ୍ରଦୀପ ନିୟମ ଆଦି ଲେଖା ।'' (୩୪/୨)

'ସୁଭଦ୍ରା ପରିଣୟ' କାବ୍ୟରେ ଅର୍ଜୁନଙ୍କୁ ସୁଭଦ୍ରାଙ୍କ ପ୍ରତି ଆକୃଷ୍ଟ କରିବା ନିମିତ୍ତ ରତିଦେବୀଙ୍କ ପରାମର୍ଶକ୍ରମେ କେତେକ ଯୌନ ଉଦ୍ଦୀପକ ଚିତ୍ର ଅଙ୍କନ କରାଯାଇଥିବା ବିଷୟ ଉପେନ୍ଦ୍ର ଉଲ୍ଲେଖ କରିଛନ୍ତି -

''ସରିତେ ତରଣୀ ପରେ ପରାଶର ଦାସ କୁମାରୀର ପୀରତି
ସ୍ନାନସାରି ଆସୁ ପଥରେ ପବନ ବାନରୀ କି ମାଗେ ସୁରତି
ସମାଧି ହତେ, ସେ ବିଶ୍ୱାମିତ୍ର ମେନା ରତି
ସମୀପେ ଅହଲ୍ୟାର ହୋଏ ବିନୟ ଇନ୍ଦ୍ରଧରି ଛନ୍ନ ମୂରତି
ସୁର ସଭାରେ ଉର୍ବଶୀ ହରେ ଧାତା ଯହୁଁ ପଞ୍ଚଶର ପ୍ରହାରି
ଶଙ୍କିଯାଇ କାମେ ଭାନୁଜା ଚରଣେ ଭାନୁଜା ତଟେ ଧରେ ହରି
ସାମ୍ୟ ଜରତା, ସଙ୍ଗେ ରକ୍ଷ୍ୟଶୃଙ୍ଗ ବିହରି
ସୁସାଧୁ ବିଧୁ ପାତକକୁ ନ ଡରି ଅମର ଗୁରୁନାରୀ ହରି ।'' (୧୦/୨୩-୨୪)

'ପ୍ରେମସୁଧାନିଧି' କାବ୍ୟରେ ମଧ୍ୟ ଚଉଷଠି ବନ୍ଧ ଯୁକ୍ତ ଭିତ୍ତିଚିତ୍ର ଅଙ୍କନ କରାଯାଇଥିବା ବିଷୟରେ କବି ସୂଚନା ପ୍ରଦାନ କରିଛନ୍ତି ।

**ପଟ୍ଟଚିତ୍ର** - ଅତୀତରେ ପଟ୍ଟଚିତ୍ର ଥିଲା ଓଡ଼ିଶାର ଏକ ଲୋକପ୍ରିୟ ଚିତ୍ରକଳା । କନା ଉପରେ ବିଭିନ୍ନ ପ୍ରକାର ଲେପ ଦେଇ ଏକପ୍ରକାର ମସୃଣ ଭୂମି ସୃଷ୍ଟି କରାଯାଏ, ଯାହାକୁ ପଟ୍ଟ କୁହାଯାଏ । ଏହା ଉପରେ ବିଭିନ୍ନ ରଙ୍ଗର ଚିତ୍ର ଅଙ୍କନ କରାଯାଉଥିବାରୁ ତାର ନାମ ପଟ୍ଟଚିତ୍ର । (ସେନାପତି **ରବୀନ୍ଦ୍ର ମୋହନ** - ଓଡ଼ିଶାର କଳା, ପୃ-୭, ୧୯୯୩) ଅନ୍ୟ କେତେକଙ୍କ ମତରେ ସମସ୍ତ **ଚିତ୍ର ମଧ୍ୟରେ ଏହା** ଶ୍ରେଷ୍ଠ ହୋଇଥିବାରୁ ଏହାର ନାମ ପଟ୍ଟଚିତ୍ର । ଗୃହସଜ୍ଜା ପାଇଁ ଏହି ଚିତ୍ରର ବହୁଳ ବ୍ୟବହାର କରାଯାଉଥିଲା । ଉପେନ୍ଦ୍ର ଭଞ୍ଜଙ୍କ ସମୟରେ ଏହାର ପ୍ରଚଳନ ଥିବାରୁ ସେ ତାଙ୍କର ବିଭିନ୍ନ କାବ୍ୟରେ ଏହି ପଟ୍ଟଚିତ୍ର ସଂପର୍କରେ ଉଲ୍ଲେଖ କରିଛନ୍ତି । ଏହି ପ୍ରସଙ୍ଗରେ ଲାବଣ୍ୟବତୀର କେଳିଗୃହ ମଣ୍ଡନ କରିଥିବା ଏକ ପଟ୍ଟଚିତ୍ରର ବର୍ଣ୍ଣନା ଦେଇ ସେ ଲେଖିଛନ୍ତି -

ନନ୍ଦତନୟ ବିନୟ ଭାନୁଜାକୁ ଭାନୁଜା ତଟରେ ଚାହିଁ
କନକ ଜିତାଙ୍ଗୀ ଜନକ ସୁତାକୁ ରାମଚନ୍ଦ୍ର ଚାଟୁଆଇ ସେ ସ୍ୱଚ୍ଛ
ଶିବ ଗୋଡ଼ାଇ ମୋହିନୀ ପଛ ଇନ୍ଦ୍ର ସୂର୍ଯ୍ୟ ଧୈର୍ଯ୍ୟ କରେ ତୁଚ୍ଛ
ମାୟାନାରୀ ରୂପରେ ଶ୍ରୀବତ୍ସ
କିନ୍ନରୀ ସଙ୍ଗରେ କୁବେର ବିହରି ବାନରୀ ସଙ୍ଗରେ ବାତ
ଶୋଭାଧନ୍ୟ ମେନା ମୀନାକ୍ଷୀକି ଚାହିଁ ବିଶ୍ୱାମିତ୍ର ତପ ହତ ଏ ବିଧି
ଚିତ୍ରମାନ ହୋଇଅଛି ସିଦ୍ଧି ଆଣି ଛିଟ ଯବନିକା ବାନ୍ଧି
କଲେ ପ୍ରାଙ୍ଗଣେ ଶୋଭାକୁ ବୃଦ୍ଧି । (୩୧/୨୧-୨୨)

**ଚିତ୍ରପଟ** - ବସ୍ତ୍ର ବା ବିଭିନ୍ନ ଚମଡ଼ା ଉପରେ ଯେଉଁ ଚିତ୍ର ଅଙ୍କନ କରାଯାଇଥାଏ, ତାହାକୁ ଚିତ୍ରପଟ କୁହାଯାଏ । ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରେ ପାତ୍ରପାତ୍ରୀ ନିର୍ବାଚନ ନିମିତ୍ତ ଚିତ୍ରପଟର ସାହାଯ୍ୟ ଗ୍ରହଣ କରାଯାଇଛି । 'ଲାବଣ୍ୟବତୀ'ର ଚିତ୍ରପଟ ବିଭିନ୍ନ ସ୍ଥାନରେ ବୁଲାଯାଉଥିବା ସମୟରେ ସେହି ଚିତ୍ରପଟ ସଂଦର୍ଶନରେ ବିଭିନ୍ନ ବ୍ୟକ୍ତିଙ୍କ ମଧ୍ୟରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଛି, ତାର ଚମତ୍କାର ବର୍ଣ୍ଣନା ଦେଇ ଉପେନ୍ଦ୍ର ଲେଖିଛନ୍ତି -

"ଚନ୍ଦ୍ର ତା କ୍ଷୀଣ କଳଙ୍କ ତହିଁକି ସୁଖ ।
ଅଶ୍ୱିନୀକୁମାର ହେଲେ କୁରଙ୍ଗ ମୁଖ
କୁସୁମ ଧନୁ ଅତନୁ ଅଛି ଆଉ କେ ।
ଚିତ୍ରପଟ ଦେଖାଇବା ମାନବ ଲୋକେ
ତୁଣ୍ଡ ନରବର ପନ୍ତି କରିବା ଆଣି ।
ଇଚ୍ଛାବର ବରୁ ପଛେ ରମଣୀ ମଣି ।" (୮/୭-୯)

ସେହିପରି ପିତାମାତାଙ୍କ ନିର୍ଦ୍ଦେଶକ୍ରମେ 'ପ୍ରେମସୁଧାନିଧି'ରେ ନାୟକନାୟିକାଙ୍କ ଚିତ୍ର ଅଙ୍କନ କରାଯାଇଛି । ଏତଦ୍‌ବ୍ୟତୀତ ଉପେନ୍ଦ୍ରଙ୍କ ସମୟରେ ତାଳପତ୍ର ଉପରେ ଲୁହା ଲେଖନୀ ସାହାଯ୍ୟରେ ବିଭିନ୍ନ ଚିତ୍ର ଅଙ୍କନ କରାଯାଉଥିଲା । ଏହାକୁ ପୋଥିଚିତ୍ର କୁହାଯାଉଥିଲା । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଏହାର କେତେକ ସୂଚନା ଦିଆଯାଇଛି । ଉପେନ୍ଦ୍ରଙ୍କ 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ଏହିପରି ବହୁ ଚିତ୍ର ମଧ୍ୟରେ ଅକ୍ଷର ସନ୍ନିତ କରାଯାଇ ଚିତ୍ରବନ୍ଧ ସୃଷ୍ଟି ହୋଇଛି । 'ଚିତ୍ରପଟ'ର ଏହା ଏକ ପ୍ରକୃଷ୍ଟ ଉଦାହରଣ ହୋଇପାରେ ।

ଉପରୋକ୍ତ ଆଲୋଚନା ପରିପ୍ରେକ୍ଷୀରେ ଏହା ସ୍ପଷ୍ଟ ହୋଇଥାଏ ଯେ, ଉଭୟ ସଙ୍ଗୀତକଳା ଓ ଚିତ୍ରକଳା କ୍ଷେତ୍ରରେ ଉପେନ୍ଦ୍ରଙ୍କର ଗଭୀର ଅବଧାରଣା ରହିଥିଲା । ପୁନରାୟ ତାଙ୍କ ସମୟରେ ସଙ୍ଗୀତକଳା ଓ ଚିତ୍ରକଳା ଉତ୍କର୍ଷ ଲାଭ କରିଥିବାରୁ ସେ ତାଙ୍କର ବିଭିନ୍ନ ସୃଷ୍ଟିରେ ଏହାର ପ୍ରଚୁର ଦୃଷ୍ଟାନ୍ତ ଛାଡ଼ିଯାଇଛନ୍ତି । ତେଣୁ ଉପେନ୍ଦ୍ର କେବଳ ଜଣେ ବିଶିଷ୍ଟ କବି ନୁହନ୍ତି, ଏକାଧାରରେ ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ ଓ ଚିତ୍ରକର ମଧ୍ୟ ।

# ଶତାବ୍ଦୀର ରେବତୀ

ରେବତୀ ନାମ ଶୁଣିବାମାତ୍ରେ ପାଠକମାନେ ଫେରିଯାଆନ୍ତି ଶହେ ବର୍ଷ ତଳର ପାଟପୁର ଗାଁର ସେହି ସରଳତରଳ କିଶୋରୀଟି ପାଖକୁ ; ଫକୀରମୋହନଙ୍କ ମାନସ-କନ୍ୟା ତଥା ଶ୍ୟାମବନ୍ଧୁ ପଟ୍ଟନାୟକଙ୍କ ଏକମାତ୍ର କନ୍ୟା ରେବତୀ ନିକଟକୁ । 'ଉତ୍କଳ ସାହିତ୍ୟ' ପତ୍ରିକାର ଅକ୍ଟୋବର ୧୮୯୮ ସଂଖ୍ୟାରେ ଏହି କ୍ରାନ୍ତିକାରୀ ସୃଷ୍ଟିଟି ଆତ୍ମପ୍ରକାଶ କରିବା ପରେ ଓଡ଼ିଆ କ୍ଷୁଦ୍ର ଗଳ୍ପ ସାହିତ୍ୟର ଦିଗନ୍ତ ବହୁବର୍ଣ୍ଣା ହୋଇ ଉଠିଥିଲା । ପ୍ରଥମ ଓଡ଼ିଆ ସାର୍ଥକ କ୍ଷୁଦ୍ରଗଳ୍ପର ଗୌରବ ବହନ କରିଥିବା କ୍ଲାସିକ୍ ସୃଷ୍ଟି 'ରେବତୀ' ଏବେ ବି ଓଡ଼ିଆ ସାହିତ୍ୟରେ ଅନତିକ୍ରମଣୀୟ ହୋଇ ରହିଯାଇଛି । ଇତିମଧ୍ୟରେ ଗୋଟିଏ ଶତାବ୍ଦୀ ବିତିଯାଇଛି । 'ରେବତୀ'ର ଅନୁସରଣରେ ବହୁ ରେବତୀ ଆତ୍ମପ୍ରକାଶ କରିଛନ୍ତି । ରମ୍ୟରଚନା, କବିତା ଓ କ୍ଷୁଦ୍ରଗଳ୍ପମାନଙ୍କରେ ରେବତୀମାନେ ଆତ୍ମପ୍ରକାଶ କରିଛନ୍ତି ନୂଆ ଢଙ୍ଗ, ନୂଆ ରୂପ, ନୂଆ ରୁଚିରେ । ପାଠକମାନଙ୍କୁ କିଛି ସମୟ ପାଇଁ ଚମକାଇ ଦେଇଛନ୍ତି ! ମାତ୍ର ଫକୀରମୋହନଙ୍କ ରେବତୀ ପରି କେହି ଅନ୍ତରରେ ଏମିତି ଅଲିଭାଗାରଟିଏ ସୃଷ୍ଟି କରିପାରିଛନ୍ତି ବୋଲି ମନେ ହୁଏନା । ୧୮୯୮ ମସିହାରେ ପରାଧୀନ ଭାରତ ଏବଂ ୨୦୦୦ ମସିହାର ସ୍ୱାଧୀନ ଭାରତ ମଧ୍ୟରେ ପାର୍ଥକ୍ୟ ଅନେକ । ଦୁଇ ଦୁଇଟି ବିଶ୍ୱଯୁଦ୍ଧ, ବିଜ୍ଞାନର ଅଭୂତପୂର୍ବ ବିକାଶ ମଣିଷକୁ କରିଛି ଆତ୍ମସଚେତନ । ଭାରତର ସ୍ୱାଧୀନତା ଲାଭ, ଚୀନ ଏବଂ ପାକିସ୍ଥାନ ସହିତ ଯୁଦ୍ଧ ଭାରତୀୟଙ୍କୁ ଆତ୍ମପ୍ରତିଷ୍ଠା ଓ ସ୍ୱାବଲମ୍ବୀ ହେବାକୁ ପ୍ରେରଣା ଦେଇଛି । ୧୯୩୬ ମସିହାରେ 'ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ' ଗଠନ ଓଡ଼ିଆମାନଙ୍କୁ ସ୍ୱାଭିମାନୀ କରିଛି । ନାରୀଶିକ୍ଷା ପାଇଁ ସମାଜରେ ଅନୁକୂଳ ମତ ପ୍ରକାଶ ପାଇଛି । ଶିକ୍ଷା, ସରକାରୀ ସେବା ଏବଂ ନିର୍ବାଚନମାନଙ୍କରେ ନାରୀମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ କରାଯାଇଛି । ଆଜି ଆଉ ନାରୀ ଅସୂର୍ଯ୍ୟଂପଶ୍ୟା ନୁହେଁ । ପ୍ରତିକ୍ଷେତ୍ରରେ ପୁରୁଷ ସହିତ ପ୍ରତିଯୋଗିତାରେ ସେମାନେ ଅବତୀର୍ଣ୍ଣା । କଳ୍ପନା ଚାୱଲାଙ୍କ ପରି ଭାରତରେ ଜନ୍ମଗ୍ରହଣ କରିଥିବା ନାରୀ ସଫଳତାର ସହିତ ମହାକାଶ ଯାତ୍ରା କରି ଫେରି ଆସି ପାରିଲେଣି । ଆଜି ନାରୀ ପାଇଁ କୌଣସି ଲକ୍ଷ୍ମଣରେଖା ନାହିଁ । ଏହା ସତ୍ତ୍ୱେ ଆମ ସମାଜରେ ନାରୀଧର୍ଷଣ, ନାରୀ ନିର୍ଯାତନା, ଯୌତୁକ ଜନିତ ହତ୍ୟା, ଛାଡ଼ପତ୍ର ସଂଖ୍ୟା ବୃଦ୍ଧି ପାଇ ଚାଲିଛି । ଯେଉଁ ଅସହାୟତା ମଧ୍ୟରେ

ଫକୀରମୋହନଙ୍କ ରେବତୀ ସନ୍ତୁଳିତ ହୋଇଥିଲା, ସେଥିରୁ ଏହି ଶହେବର୍ଷର ରେବତୀମାନେ ସମ୍ପୂର୍ଣ୍ଣ ମୁକ୍ତ ବୋଲି ମନେହୁଏନା । ନାରୀ ପ୍ରତି ପୁରୁଷ ସମାଜର ଭୋଗାସକ୍ତ ଦୃଷ୍ଟିଭଙ୍ଗୀରେ କିଛି ପରିବର୍ତ୍ତନ ହୋଇ ନାହିଁ । ଏବେବି ପରିବାରରେ କନ୍ୟା ସନ୍ତାନଟିଏ ବୋଝ ରୂପେ ପରିଗଣିତା । ତଥାପି କିଛି କ୍ଷେତ୍ରରେ ନାରୀ ସମସ୍ୟା ସମାଧାନ ହୋଇଛି । ତେଣୁ ଫକୀରମୋହନ ତାଙ୍କ ସମୟର ସମାଜ ଓ ପରିବେଶକୁ ଆଖିରେ ରଖି ରେବତୀ ଚରିତ୍ରକୁ ଗଢ଼ିଥିବା ପରି, ବର୍ତ୍ତମାନର ଲେଖକ ନିଜର ସମୟ ଓ ପରିବେଶ ଅନୁଯାୟୀ ସେମାନଙ୍କର ରେବତୀମାନଙ୍କୁ ଚିତ୍ରଣ କରିବାକୁ ଚେଷ୍ଟା କରିଛନ୍ତି । ପରିବର୍ତ୍ତିତ ସମୟର ବିଭିନ୍ନ ସମସ୍ୟା ଏବଂ ଅବସ୍ଥା ମଧ୍ୟରୁ ଏମାନେ ଜନ୍ମଲାଭ କରିଥିବାରୁ, ସେମାନେ ହୁଏତ କିଛି ପରିମାଣରେ ଭିନ୍ନ ମନେ ହୁଅନ୍ତି । ତଥାପି ମାନସିକ ସ୍ତରର ପରିବର୍ତ୍ତନ ଅତ୍ୟନ୍ତ ମନ୍ଥର । ଏଠାରେ କେବଳ ରେବତୀ ସମ୍ପର୍କୀୟ ଗଳ୍ପମାନଙ୍କ ଉପରେ ହିଁ ଆଲୋଚନା କରାଯାଇଛି ଓ ସେହି ଦୃଷ୍ଟିରୁ ହିଁ ବିଚାର ହୋଇଛି ।

> But off some shining April morn
> Is Darkened in an hour
> And blackest Griefs O'er joyous home
> Alas ! unseen may lower
>
> Rev. J.H. Gurher

"ଲୋ ରେବତୀ - ଲୋ ନିଆଁ, ଲୋ ଚୁଲି" । -

୧୮୯୮ ମସିହାରେ ପ୍ରକାଶିତ 'ରେବତୀ' ଗଳ୍ପର ପ୍ରଥମରୁ ଉପରୋକ୍ତ ଉଦ୍ଧୃତିଟି ପ୍ରଦାନ କରାଯାଇଥିଲା । ଏହି ଉଦ୍ଧୃତି ମଧ୍ୟରେ 'ରେବତୀ' ଗଳ୍ପର ଅନ୍ତର୍ନିହିତ ଭାବସତ୍ତାଟି ଉଦ୍‌ଭାସିତ । "କିନ୍ତୁ ହାୟ ! ଏପ୍ରିଲର ସେହି କ୍ଷଣସ୍ଥାୟୀ ଉଜ୍ଜ୍ୱଳ ସକାଳ ଅଳ୍ପକ୍ଷଣ ମଧ୍ୟରେ ଅନ୍ଧକାରରେ ମଗ୍ନ ହୋଇଗଲା । ଆଃ - ଆନନ୍ଦ ଉଦ୍‌ଫୁଲ୍ଲିତ ଅଙ୍ଗନ ମଧ୍ୟକୁ ଅବତରଣ କଲା ଅନ୍ଧାରର ଦୁଃଖ । ଅଦୃଷ୍ଟର ଏହାହିଁ ତ ଅବାରିତ ସତ୍ତା" । ଫକୀରମୋହନ ତାଙ୍କର ବହୁ ସୃଷ୍ଟ ଚରିତ୍ରକୁ ଏମିତି ଭାଗ୍ୟ ହସ୍ତରେ କ୍ରୀଡ଼ନକ କରାଇ ଦେଇ ଶେଷରେ ଏମିତି ଏକ କରୁଣ ପରିଣତିରେ ପାଠକକୁ ନିମଜ୍ଜନ କରାଇ ଦିଅନ୍ତି, ଯେଉଁଥିରୁ ମୁକୁଳିବା ବେଶ୍ କଷ୍ଟକର ହୋଇପଡ଼େ । ଏହିଠାରେ ହିଁ ଫକୀରମୋହନଙ୍କ ସୃଷ୍ଟିର ବୈଶିଷ୍ଟ୍ୟ ନିହିତ । ଫକୀରମୋହନଙ୍କ 'ରେବତୀ' ଗଳ୍ପର ଦୁଇଟି ମୁଖ୍ୟ ବିଭବ ହେଉଛି, ସାମାଜିକ କୁସଂସ୍କାର ଓ ବାସୁଦେବ ଏବଂ ରେବତୀଙ୍କ ନିର୍ମଳ ପ୍ରେମର ଦାରୁଣ ପରିଣତି । ଗଳ୍ପରେ ସର୍ବମୋଟ ପାଞ୍ଚୋଟି ଚରିତ୍ରଙ୍କ ଉପସ୍ଥିତି ଥିଲେ ହେଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରେବତୀ ଓ ଜେଜୀମା'ର ସତ୍ତାହିଁ ଉପଲବ୍ଧି କରାହୋଇଛି । ଗଳ୍ପର ପ୍ରଥମାଂଶରେ ଶ୍ୟାମବନ୍ଧୁ ଓ ବାସୁଦେବଙ୍କ ଭୂମିକା

ଗୁରୁତ୍ୱପୂର୍ଣ୍ଣ । ମାତ୍ର ରେବତୀ ଗଳ୍ପର କେନ୍ଦ୍ରୀୟ ଚରିତ୍ର ହୋଇଥିବାରୁ ଶେଷ ପର୍ଯ୍ୟନ୍ତ ତାର ଗୁରୁତ୍ୱ ରହିଛି । ଲୋକଦୃଷ୍ଟିରେ ଉଭୟ ଶ୍ୟାମବନ୍ଧୁ ଓ ବାସୁଦେବ ନିର୍ମଳ ଭାବମୂର୍ତ୍ତିସମ୍ପନ୍ନ । ''ଶ୍ୟାମବନ୍ଧୁ ବଡ଼ ସିଧାସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାଆନ୍ତି'' । ସେ ପ୍ରାଚୀନପନ୍ଥୀ କିମ୍ବା ନାରୀଶିକ୍ଷାର ବିରୋଧୀ ନୁହନ୍ତି । ସମୟର ପରିବର୍ତ୍ତିତ ପରିସ୍ଥିତିକୁ ହୃଦୟଙ୍ଗମ କରିବାର ଦୃଷ୍ଟିଶକ୍ତି ତାଙ୍କର ରହିଛି । ସେଥିପାଇଁ ପ୍ରାଚୀନପନ୍ଥୀ ବୁଢ଼ୀମାର - ''ହଁରେ ଶ୍ୟାମ-ରେବୀ ପାଠ ପଢ଼ିବ - ପାଠ କଣରେ, ତିରିଲା ଝିଅର ପାଠ ପଢ଼ା କ'ଣ,'' କୁ ବିନୟର ସହିତ ଏଡ଼ାଇ ଯାଇ ରେବତୀ ପାଠପଢ଼ାର ବ୍ୟବସ୍ଥା କରିଛନ୍ତି । ମଣିଷ ଚିହ୍ନିବାର ଦୃଷ୍ଟିଶକ୍ତି ଥିବାରୁ ରେବତୀ ପାଇଁ ବାସୁ ଉପଯୁକ୍ତ ପାତ୍ର ବୋଲି ସ୍ଥିର କରିଛନ୍ତି । ସବୁ ଦୃଷ୍ଟିରୁ ବିଚାର କଲେ ଶ୍ୟାମବନ୍ଧୁ ଜଣେ ଆଦର୍ଶ, ପରୋପକାରୀ ଚରିତ୍ର, ଉପଯୁକ୍ତ ପୁତ୍ର ଓ ସ୍ନେହୀ ପିତା । ଜେଜୀମା' ପ୍ରାଚୀନତାର ପ୍ରତୀକ । ନାରୀ ଶିକ୍ଷାର ବିରୋଧୀ । ତା ମତରେ ନାରୀର ସଂଜ୍ଞା ହେଉଛି - ''ମାଇକିନିଆ ଝିଅଟା ପାଠ କ'ଣ ? ରନ୍ଧାବଢ଼ା ଶିଖ, ପିଠାପଣା କରିବା ଶିଖ, ଝୋଟି ଦିଆ ଶିଖ, ଦହିମୁହାଁ ଶିଖ, ପାଠ କଣ ?'' ଏହି କୁସଂସ୍କାର ଯୋଗୁଁ ସବୁ ବିପଦର କାରଣ ସ୍ୱରୂପ ରେବତୀର ପାଠ ପଢ଼ାକୁ ହିଁ ଦାୟୀ କରିଛି । ତା' ମତରେ ''ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା, ସବୁର ମୂଳ କାରଣ ରେବତୀ । x x x ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାନ୍ଧି ଘେନିଗଲା ।'' ଏହା ସତ୍ତ୍ୱେ ରେବତୀ ଓ ବାସୁଦେବ ପ୍ରତି ତା ହୃଦୟରେ ସ୍ନେହ ପରିପୂର୍ଣ୍ଣ । ବାସୁଦେବର ପାଞ୍ଚ ଦିନ ଅନୁପସ୍ଥିତ ରହିବା ଶୁଣି ଉପଦେଶ ଦେଇଛି ''ବାପା, ଖରାରେ ବୁଲିବୁ ନାହିଁ, ଦେହପାକୁ ଚାହିଁବୁ, ବେଳରେ ଦି'ଟା ମୁହଁରେ ଦେବୁ'' । ବାସୁଦେବର ଅକାଳ ମୃତ୍ୟୁ ପାଇଁ ରେବତୀର ପାଠପଢ଼ାକୁ ଦାୟୀ କରିଛି । ବୁଢ଼ୀର ମନ୍ତବ୍ୟ ''ଆହା ବାପ, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରେଇଲୁରେ । ଅର୍ଥାତ୍ ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼େଇବାରୁ ମରିଗଲା ।'' ରେବତୀର ଜ୍ୱର ପାଇଁ ମଧ୍ୟ ଏହି ପାଠପଢ଼ା ଦାୟୀ । ଏହା ସତ୍ତ୍ୱେ ରେବତୀ ଦୁଃଖରେ ସେ ମ୍ରିୟମାଣା । ସନ୍ନିପାତରେ ରେବତୀର ପ୍ରଳାପ ତା ମନରେ ଆଶା ସୃଷ୍ଟି କରିଛି । ରେବତୀର ପଥି ପାଇଁ ଫୁଟା ଡାଳ ବଦଳରେ ହରିସାହୁ ଦୋକାନରୁ ଚାଉଳ, ଜାଇ, ଲୁଣ ଧରି ଆସିଛି । ମାତ୍ର ରେବତୀର ନିର୍ଜୀବ ଦେହ ଦେଖି ସ୍ୱତଃ ତାର ପ୍ରାଣ ଉଡ଼ିଯାଇଛି । ଏକ କରୁଣାନ୍ତକ ପରିବେଶରେ ଗଳ୍ପର ପରିସମାପ୍ତି ଘଟିଛି । ବୁଢ଼ୀର ''ଲୋ ରେବତୀ, ଲୋ ରେବୀ, ଲୋ ନିଆଁ, ଲୋ ଚୁଲି'' ଡାକ ମଧ୍ୟରେ ତା ହୃଦୟର କରୁଣା, ସ୍ନେହ ଓ ପ୍ରେମ ଉଚ୍ଚାରିତ । ଗଳ୍ପର ନାୟିକା ରେବତୀ । ପାଠପଢ଼ିବା ପାଇଁ ଆଗ୍ରହର ସୀମା ନାହିଁ । ବାସୁଦେବଠାରୁ ସୀତାନାଥବାବୁଙ୍କ ପ୍ରଥମ ପାଠ ବହି ଖଣ୍ଡେ ପାଇ ଆନନ୍ଦରେ କୁରୁଳି ଉଠିଛି । ଖୁବ୍ କମ୍ ଦିନରେ ଗୁଡ଼ାଏ ପାଠ ପଢ଼ି ପକାଇଛି ବାସୁଦେବ ନିକଟରୁ । ମାତ୍ର ଯେଉଁଦିନ ବୁଢ଼ୀମା' ସଙ୍ଗରେ ଶ୍ୟାମବନ୍ଧୁ

ବାସୁଦେବ ସହିତ ରେବତୀର ବିବାହ ସମ୍ବନ୍ଧରେ ଆଲୋଚନା କଲେ, ସେହିଦିନ ହଠାତ୍ ରେବତୀ କିଶୋରୀଟିଏଁରୁ ଯୁବତୀଟିରେ ପରିଣତ ହୋଇଗଲା । ''ବାପା ଆଗରେ ବାସୁଭାଇ ପଢ଼ାଇଦେଲେ କିପରି ତାକୁ ଗୋଟାଏ ଲାଜ ମାଡ଼େ, ମୁଣ୍ଡ ତଳକୁ ପୋତି ଦେଇ ଦୁଇ ଓଠ ବୁଜି ହସ ଲୁଚାଏ । ଏଣିକି ବାସୁ ପଢ଼େଇ ଦେଲେ କେତେବେଳେ ତୁନି ତୁନି ପଢ଼େ, କେତେବେଳେ ହୁଁ ହୁଁ କରେ, ପଢ଼ା ସରିଲେ ପାଟି ବୁଜି ହସି ହସି ଘରକୁ ପଳେଇ ଯାଏ ।'' ବାସୁଦେବ ପାଇଁ ତା ପ୍ରତୀକ୍ଷାର ଶେଷ ନାହିଁ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡ କବାଟ ଧରି ବାସୁ ପାଇଁ ଅପେକ୍ଷା କରିଥାଏ । ବାସୁ ଆସିବାମାତ୍ରେ ଘରକୁ ପଳାଏ । ହଠାତ୍ ଏହି କଳକଳ ଛଳଛଳ କିଶୋରୀଟିଏ ନୀରବି ଯାଇଛି ପିତାମାତାଙ୍କ ଦାରୁଣ ମୃତ୍ୟୁରେ । ତା' ପାଇଁ ''ସୂର୍ଯ୍ୟରେ ଆଲୁଅ ନାହିଁ । ରାତିରେ ଅନ୍ଧାର ନାହିଁ ।'' ସମସ୍ତ ଜଗତ ଶୂନ୍ୟ । କେବଳ ବାସୁଦେବର ଆଶ୍ରାରେ ହିଁ ବଞ୍ଚି ରହିଛି । ଯେଉଁଦିନ ବାସୁଦେବ ମୁହଁରୁ ପାଞ୍ଚଦିନ ରହିପାରିବ ନାହିଁ ଶୁଣିଲା, ଗଭୀର ଦୁଃଖରେ ମ୍ରିୟମାଣ ହୋଇପଡ଼ିଲା ସେ । ଭାଗ୍ୟେ କବାଟ ଧରିଥିଲା, ନଚେତ ପଡ଼ିଯାଇଥାନ୍ତା । ବାସୁର ବିଦାୟ ନେବା ମୁହୂର୍ତ୍ତ ଭାରି କରୁଣ । ଏକ ଧ୍ୟାନରେ ବାସୁକୁ ଚାହିଁ ରହିଛି । ଆଖିର ପିଞ୍ଛଡ଼ା ପଡୁ ନାହିଁ । ବାସୁ ଯିବାର ଛ' ଦିନ ଦାଣ୍ଡ ଦୁଆରେ ଦୁଇଥର ମୁହଁ ମାରିଛି । ଯେଉଁ ମୁହୂର୍ତ୍ତରେ ବାସୁଦେବର ମୃତ୍ୟୁଖବର ତା ପାଖରେ ପହଞ୍ଚିଛି ସେ ସମ୍ପୂର୍ଣ୍ଣ ଜଡ଼ ଓ ନିର୍ବାକ୍ ହୋଇପଡ଼ିଛି । ଜୀବନର କଳ କଳ ସ୍ରୋତଟିଏ ନିଥର ହୋଇ ଯାଇଛି । ରେବତୀର ଜୀବନ ଶୋକର ଏକ କରୁଣ ମହାକାବ୍ୟ । ଅପୂର୍ଣ୍ଣତାର ହାହାକାର ମଧ୍ୟରେ ଆକାଶର ତାରାଟିଏ ହୋଇପଡ଼ିଛି । ନିଃସଙ୍ଗତାହିଁ ତାର ଭବିତବ୍ୟ । ସ୍ୱପ୍ନ ଦେଖିବା ଆରମ୍ଭରୁ ହିଁ ସ୍ୱପ୍ନହରା । ସ୍ମୃତିକୁ ପାଥେୟ କରି ବଞ୍ଚିବା ମଧ୍ୟ ତାର ଭାଗ୍ୟରେ ନାହିଁ । ରେବତୀର ସୌନ୍ଦର୍ଯ୍ୟ, ନିଃସଙ୍ଗତା ଓ ଅସହାୟତାର ପଟାନ୍ତର ନାହିଁ । ରେବତୀ ଜୀବନର ଏହି ଅସହାୟତା ଓ କରୁଣତା ଓଡ଼ିଆ ସାହିତ୍ୟରେ ଏକାଧିକ ରେବତୀ ସୃଷ୍ଟି କରିବାକୁ ପ୍ରେରଣା ଦେଇଛି ।

ସମୟର ପରିବର୍ତ୍ତିତ ଧାରାରେ ରେବତୀର ନାମ, ରୂପ, ଅଙ୍ଗ ଓ ଚରିତ୍ରରେ ମଧ୍ୟ କେତେକ ପରିବର୍ତ୍ତନ ଦେଖାଦେଇଛି । ଗାଳ୍ପିକା ବୀଣାପାଣି ମହାନ୍ତିଙ୍କ 'ଅନ୍ଧକାରର ଛାଇ' ଗଳ୍ପରେ ରେବତୀର ଅନ୍ୟ ଏକ ସତ୍ତା ଉପଲବ୍ଧ । ଏ ସମ୍ପର୍କରେ ଗାଳ୍ପିକାଙ୍କର ବକ୍ତବ୍ୟ 'ଅନ୍ଧକାରର ଛାଇ' ଗଳ୍ପଟି ମୋର ଏକ ପ୍ରତ୍ୟକ୍ଷ ଅନୁଭୂତି । ଫକୀରମୋହନଙ୍କ 'ରେବତୀ' ଗଳ୍ପ ହୁଏତ ଏକ ଭିତ୍ତିଭୂମି ଭାବରେ କାର୍ଯ୍ୟ କରିଛି[୮] । ରେବତୀ ସମୟର ଓଡ଼ିଶାର ଶିକ୍ଷା ସମସ୍ୟା କୋଇଲି ସମୟକୁ ବହୁପରିମାଣରେ ବଦଳିଯାଇଛି । ଶିକ୍ଷାଗ୍ରହଣ କ୍ଷେତ୍ରରେ ରେବତୀ ଓ କୋଇଲିର ମାନସିକତ୍ୱ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ପାର୍ଥକ୍ୟ ରହିଛି ଜେଜୀମା' ଓ କୋଇଲିର ମା'ଙ୍କ ମନ ମଧ୍ୟରେ । ରକ୍ଷଣଶୀଳତା ଓ ସାମାଜିକ କୁସଂସ୍କାର ଯୋଗୁଁ ଜେଜୀମା' ରେବତୀର ପଢ଼ାକୁ ବିରୋଧ କରନ୍ତି । କୋଇଲି ମା ବିରୋଧ କରେ

ଆର୍ଥିକ ଅସ୍ୱଚ୍ଛଳତା ପାଇଁ । ଏହା ସତ୍ତ୍ୱେ ଡ୍ରିଲର ବାଜା ବାଜିବାମାତ୍ରେ କୋଇଲି ଘରୁ ବାହାରି ଆସେ । ସାମାନ୍ୟ ସମୟ ପାଇଲେ ଚିରାବହିରୁ କିଛି ପଢ଼ିବାକୁ ଚେଷ୍ଟା କରେ । ମାର ଶତ ନିର୍ଯାତନା ତାକୁ ପାଠପଢ଼ାରୁ ନିବୃତ୍ତ କରିପାରି ନାହିଁ । ଘରର ସମସ୍ତ କାର୍ଯ୍ୟ ମଧ୍ୟରେ ଯେଉଁ ଟିକକ ସମୟ ପାଏ, ତାର ଉପଯୋଗ କରେ ପାଠପଢ଼ାରେ । କୋଇଲି ମା'ର ପାଠ ସମ୍ପର୍କରେ ମତ ହେଉଛି - ''ମୁଁ ପା ତା'ରି ବୟସରେ ତା' ବୋପା ହାତ ଧରି ଏଠିକି ଅଇଲି - ପନ୍ଦର ପ୍ରାଣୀଙ୍କୁ ରାନ୍ଧି ବାଢ଼ି, ଘଷି ପାରି, ଧାନ ମକଚି, ଘର ଦୁଆର ନିପିପୋଛି ମୋତେ ମରିବାକୁ ବେଳ ନ ଥିଲା - ମୁଁ ଡିରିଲି କରୁଥିଲି କେତେବେଳେ ନା ବହି ସିଲଟ ଧରିଲି କେତେବେଳେ ।''[୨] କୋଇଲି ରେବତୀ ଠାରୁ ଅଧିକ ଅସହାୟା । ରେବତୀ ବାପାମା'ଙ୍କର ଏକମାତ୍ର କନ୍ୟା; ମାତ୍ର କୋଇଲିର ଆହୁରି ତିନି ତିନୋଟି ଭାଇଭଉଣୀ । ମା'ଠାରୁ ସାମାନ୍ୟ ଟିକେ ସ୍ନେହ ମଧ୍ୟ ପାଇ ନାହିଁ । ବାପା ବହୁଦିନରୁ ଗୃହତ୍ୟାଗୀ । ତେଣୁ ପିତୃସ୍ନେହରୁ ବଞ୍ଚିତା । ଜେଜୀମା ଅଭିମାନରେ ଓ ଅସହାୟ ଭାବରେ ଡାକ ଛାଡୁଥିଲେ, ''ଲୋ ରେବୀ- ଲୋ ନିଆଁ- ଲୋ ଚୁଲି । କୋଇଲି ମା' କ୍ରୋଧରେ ଜର୍ଜରିତ ହୋଇ ରଡ଼ି ଛାଡ଼େ- ''କୋଇଲି ଲୋ- ଲୋ ସବାଖାଇ, ଛତର ଖାଇ..... ଆଇଲୁନା- ଫେରନା ଦେଖିବୁ ମୋତେ ଲୋ କୋଇଲି ।'' ବିବାହ କ'ଣ ଜାଣି ନ ଥିବା ସମୟରେ, ୩୫ ବର୍ଷର ପ୍ରଥମ ସ୍ତ୍ରୀ ମରିଥିବା ଏବଂ ପିଲା ଥାଇ ଦ୍ୱିତୀୟ ସ୍ତ୍ରୀକୁ ତ୍ୟାଗ କରିଥିବା ମଦ୍ୟପ ଲକ୍ଷ୍ମଣ ସଙ୍ଗରେ ତା ମା ବିବାହ କରି ଦେଇଥିଲା । ପରିଣାମରେ ବିବାହର ଆଠଦିନ ମଧ୍ୟରେ କୋଇଲି ହୋଇଛି ନିଖୋଜ (ମୃତ) । ଗୋଟିଏ ନିରୀହା ବାଳିକା ଗରିବ ମା'ର ଅପରିଣାମଦର୍ଶିତା ପାଇଁ ପ୍ରାଣବଳି ଦେଇଛି । ଝିଅର ଶୋଚନୀୟ ମୃତ୍ୟୁରେ ପାଗଳୀ ହୋଇଛି । ରେବତୀ ଓ କୋଇଲିର ଦୁଃଖ ମଧ୍ୟରେ ପାର୍ଥକ୍ୟ ସୁନିର୍ଦ୍ଦିଷ୍ଟ । ରେବତୀର ଦୁଃଖ ବିଧିନିର୍ଦ୍ଦିଷ୍ଟ । ମାତ୍ର କୋଇଲିର ଦୁଃଖ ସମାଜସୃଷ୍ଟ । ପାରମ୍ପରିକ ସାମାଜିକ ବ୍ୟବସ୍ଥା ନିକଟରେ କୋଇଲି ବଳି ପଡ଼ିଛି । ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ଆଖିଆଗରେ ଥିବାରୁ 'ଅନ୍ଧକାରର ଛାଇ' ଫକୀରମୋହନଙ୍କ 'ରେବତୀ' ସମକକ୍ଷ ହୋଇପାରି ନାହିଁ ।

ମାସିକ ପତ୍ରିକା 'ନବରବି'ର ୧୯୭୫ ମସିହା ଜାନୁଆରୀ ସଂଖ୍ୟାରେ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ 'ଝିଅ ଇସ୍କୁଲ' ପ୍ରକାଶିତ ଓ ୧୯୯୮ରେ ଅସିତ ମହାନ୍ତିଙ୍କ ସଂଯୋଜନାରେ ପ୍ରକାଶିତ 'ରେବତୀ ରେବତୀ' ପୁସ୍ତକରେ ମଧ୍ୟ ଗଳ୍ପଟି ସ୍ଥାନିତ । 'ଝିଅ ଇସ୍କୁଲ'ର ନାୟିକା ସୁଲତା ଠିକ୍ ଅର୍ଥରେ 'ରେବତୀ' ନ ହୋଇପାରେ । ମାତ୍ର ଏଥିରେ ନାରୀ ଶିକ୍ଷା ପ୍ରତି ଜନମାନସରେ ଯେଉଁ ଆଗ୍ରହ ଓ ଆନ୍ତରିକତା ପ୍ରକାଶ ପାଇଛି, ତାହା ଫକୀରମୋହନୀୟ । ଲେଖକୀୟ ବକ୍ତବ୍ୟରେ ଶ୍ରୀ ତ୍ରିପାଠୀ କହିଛନ୍ତି ''ଫକୀରମୋହନଙ୍କ 'ରେବତୀ' ଗଳ୍ପ ମୋତେ ମୁଗ୍ଧ କରିଥିଲା । ଗୋଟିଏ ଭଲ ଗଳ୍ପରେ ଯାହା କିଛି ଥିବା କଥା, ସେସବୁ ରେବତୀରେ ଅଛି । ମାତ୍ର 'ଝିଅ ଇସ୍କୁଲ' ଲେଖିଲା ବେଳେ ତାହା ମତେ ଆକ୍ରାନ୍ତ

ବା ପ୍ରଭାବିତ କରି ନ ଥିଲା । କାରଣ 'ଝିଅ ଇସ୍କୁଲ' ଗଳ୍ପଟିର ଆଧାର ଅନ୍ୟ କିଛି ।'' ସୁଲତା ସ୍ୱାଧୀନତା ପରବର୍ତ୍ତୀ ଭାରତର ଝିଅ । ଭାରି ସ୍ମାର୍ଟ । ନବଘନ ମାଷ୍ଟ୍ରେ ତାକୁ ଘରେ ପଢ଼େଇ ଦେଇଯାଆନ୍ତି । ତାଙ୍କର ଡବ ଡବ ଆଖିରୁ ସୁଲତା କେତେ କ'ଣ ପଢ଼ିଯାଏ । ଗନ୍ଧର୍ବ ବି ଭଲ ପାଏ ସୁଲତାକୁ । ସୁଲତା ସପ୍ତମ ଶ୍ରେଣୀଯାଏ ପଢ଼ିଛି । ଆହୁରି ପଢ଼ିଥାନ୍ତା । ଗାଁରେ ଝିଅ ଇସ୍କୁଲ ନାହିଁ । ମାତ୍ର ତା ବୋଉର ଉକ୍ତି ରେବତୀର ଜେଜୀମା ଅନୁରୂପ । ତା' ବୋଉ କହେ ''ଅଧିକ ପାଠ ପଢ଼ିଲେ ଝିଅମାନେ କୁଆଡ଼େ ଖରାପ ହୋଇଯାଆନ୍ତି ।''[୩] ସୁଲତା ଡ୍ରାମାରେ ହିରୋଇନ୍ ପାର୍ଟ କରେ । ରେବତୀ ପରି ''କା ଆଗେ କରିବି ଗୁହାରି'' ନ ଗାଇ ଗାଇଥାଏ ''ବାଟ ଛାଡ଼ ସୁହଟ ନାଗର, ଯମୁନା ଯିବି ନୀର ଆଣି ।'' ତା' ଅଭିନୟରେ ମନ୍ତ୍ରୀ ମୁଗ୍ଧ । ମନ୍ତ୍ରୀଙ୍କର ପ୍ରଶଂସାସୂଚକ ବାକ୍ୟ ''ରାଧା ପାର୍ଟ କରୁଥିବା ଝିଅଟି ଖୁବ୍ ଟେଲେଣ୍ଟେଡ୍ ଜଣାପଡୁଛି'' ଉକ୍ତିରୁ ଏହା ସ୍ପଷ୍ଟ । ତେଣୁ ରେବତୀକୁ ସୁଲତା ହେବାକୁ ଲାଗିଛି ପ୍ରାୟ ୭୭ ବର୍ଷ । ଏହା ମଧ୍ୟରେ ଆମ ସାମାଜିକ ସ୍ଥିତିରେ ପରିବର୍ତ୍ତନ ଆସିଛି । ସୁଲତାର ବାପାମାନଙ୍କର ନାରୀ ଶିକ୍ଷା ପ୍ରତି ଆଗ୍ରହ ପ୍ରକାଶ ପାଇଛି । ସେଥିପାଇଁ 'ଝିଅ ଇସ୍କୁଲ' ପ୍ରତିଷ୍ଠାର ପ୍ରସ୍ତାବ ମନ୍ତ୍ରୀଙ୍କ ଆଗରେ ଉତ୍ଥାପିତ ହୋଇଛି । ଶ୍ରୀଯୁକ୍ତ ତ୍ରିପାଠୀ ରେବତୀ ଗଳ୍ପଦ୍ୱାରା ପ୍ରଭାବିତ ହୋଇଥାନ୍ତୁ କି ନ ଥାନ୍ତୁ ରେବତୀ ସମୟର ସାମାଜିକ ଓ ଶିକ୍ଷାଗତ ଅବସ୍ଥାରେ ଗୁଣାତ୍ମକ ପରିବର୍ତ୍ତନ ଆସିଛି ବୋଲି ସେ ସ୍ପଷ୍ଟ ସୂଚାଇ ଦେଇଛନ୍ତି । ରେବତୀ ବେଳେ ଯାହା ଥିଲା ଅକଳ୍ପନୀୟ, ଏତେବେଳକୁ ତାହା ବେଶ୍ ସହଜସାଧ୍ୟ ହୋଇପଡ଼ିଲାଣି । ଆଉ ରେବତୀମାନେ ଘରକୋଣରେ ଆବଦ୍ଧ ନ ରହି ପୁଅମାନଙ୍କ ସହିତ ମଞ୍ଚ ଉପରେ ଅଭିନୟ କଲେଣି । ରେବତୀକାଳୀନ ସାମାଜିକ ଚିନ୍ତାଧାରାର ପରିବର୍ତ୍ତନ ସୁଲତାରେ ସେଥିପାଇଁ ସ୍ପଷ୍ଟ ।

ଜଗଦୀଶ ମହାନ୍ତିଙ୍କ 'ରେବତୀ' ରଚନାବେଳକୁ ସମୟ ଆଉ ଦୁଇପାଦେ ଆଗେଇ ଯାଇଛି । ସମସାମୟିକ ସମାଜର ଯଥାର୍ଥତା ଏଥିରେ ଥିଲେ ହେଁ ଫକୀରମୋହନଙ୍କ ରେବତୀକୁ ଏହା ଅନୁସରଣ କରିଛି । ବିଶେଷ ଭାବରେ ପ୍ରେମର ପରିବର୍ତ୍ତିତ ସ୍ୱରୂପ ଏଥିରେ ସ୍ପଷ୍ଟ । ରେବତୀର ଶ୍ୟାମବନ୍ଧୁଙ୍କ ପରି ଜଗଦୀଶଙ୍କ ଶ୍ୟାମବନ୍ଧୁ ଖୁବ୍ ଭଲ ଲୋକ । ପରକୁ ସାହାଯ୍ୟ କରିବାରେ ଆଦୌ କୁଣ୍ଠା ନାହିଁ ତାଙ୍କର । ସେ ଟ୍ରାନ୍ସପୋର୍ଟ କମ୍ପାନୀର ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟର । ଶିକ୍ଷା ବିକାଶର ପକ୍ଷପାତୀ । କଲେଜ କମିଟିର ମେମ୍ବର ମଧ୍ୟ । ମାତ୍ର ତାଙ୍କ ପତ୍ନୀ ନାରୀ ଶିକ୍ଷାର ଘୋର ବିରୋଧୀ । ଜେଜୀମାକାଳୀନ ଚିନ୍ତାଧାରାରୁ ମୁକ୍ତ ନୁହନ୍ତି । ତାଙ୍କ ମତରେ, ''ଝିଅ ଘିଅ । ଭଲ ପଢ଼ିଲେ କୋଉ ଚାକିରି କରି ଆମକୁ ପୋଷିବ ଯେ ।''[୪] ମହାନ୍ତିଙ୍କ ଝିଅ ରେବତୀ । ବୟସ ଷୋହଳ । ହାଇସ୍କୁଲରେ ପଢ଼େ । ତା'ର ଗୋଟେ ପ୍ରେମିକ ଅଛି । ନାମ ବାସୁଦେବ । ମିଡ଼ିଲ ସ୍କୁଲର ଶିକ୍ଷକ । ଏତେବେଳକୁ ଝିଅମାନେ ପ୍ରେମ କରିବାକୁ ଶିଖିଗଲେଣି । ପ୍ରେମିକଠାରୁ ଲଭ୍ ଲେଟର ଆଣିବା ଓ ଦେବା ଚଳିଲାଣି । ସ୍କୁଲକୁ ଯିବା

ସମୟରେ ପରସ୍ପରକୁ କଣେଇ ଚାହିଁ ହସି କେତେ ମନକଥା କହିଦେଲେଣି । ନିଛାଟିଆ ସ୍ଥାନରେ ପ୍ରେମପତ୍ର ଦିଆନିଆ । ଫକୀରମୋହନଙ୍କ ରେବତୀ ପରି ଲାଜକୁଳୀ ନୁହନ୍ତି । ବାସୁଦେବକୁ ନେଇ ସ୍ୱପ୍ନ ଦେଖିବାର ସୌଭାଗ୍ୟ ଫକୀରମୋହନଙ୍କ ରେବତୀର ନ ଥିଲା । ମାତ୍ର ଜଗଦୀଶଙ୍କ ରେବତୀ, ''ବହୁତ ଉପନ୍ୟାସ ପଢ଼ିଚି । ପ୍ରେମିକ ପ୍ରେମିକାଙ୍କର ପ୍ରେମର ସ୍ୱପ୍ନରେ ମାତି ଉଠେ । ଆହା, ତାର ପ୍ରେମିକ, ସେଇ ମିଡ଼ିଲ ସ୍କୁଲର ବାସୁ ମାଷ୍ଟର ଉପନ୍ୟାସର ନାୟକ ହୁଅନ୍ତା କି । ବାସୁ ମାଷ୍ଟର ଜ୍ୱରରେ ପଡ଼ିଥାନ୍ତା । ରେବତୀ ତା ଘରକୁ ଯା'ନ୍ତା । ବାସୁ ମାଷ୍ଟରକୁ ଉଠେଇ ତା ପାଟିରେ ଅଙ୍ଗୁର କୋଳି ଭରି ଦିଅନ୍ତା । ବାସୁ ମାଷ୍ଟର ରେବତୀର ଛାତିକୁ ଆଉଜି ପଡ଼ିଲାବେଳେ ତାର ଉଚ୍ଚ ଛାତି ଦବିଯାନ୍ତା । ଲାଜେଇ ଯା'ନ୍ତା ରେବତୀ ।''[୫] ଶ୍ୟାମବନ୍ଧୁ ଝିଅର ଗଢ଼ଣ ପାଇଁ ଚିନ୍ତିତ ଥିବାରୁ ତା ବିବାହ ପାଇଁ ପାତ୍ର ଖୋଜିବାରେ ବ୍ୟସ୍ତ । ମାତ୍ର ବାସୁଦେବଙ୍କ ପରି ମିଡ଼ିଲ ସ୍କୁଲର ଶିକ୍ଷକ ତାଙ୍କର ପସନ୍ଦ ନୁହନ୍ତି । ରେବତୀ ବାପାଙ୍କ ପାଇଁ ଅପେକ୍ଷା ନ କରି ପ୍ରେମିକ ବାସୁଦେବଙ୍କ ସହିତ ସ୍କୁଲରୁ ସାଇକେଲରେ ବସି ଫେରାର ହୁଏ ଏବଂ କଟକର ଲଜିଙ୍ଗ୍‌ରେ କେତୋଟି ରାତି ବିନା ଦ୍ୱିଧାରେ କଟାଇ ଦିଏ । ବାପାଙ୍କ ସହିତ ଘରକୁ ଫେରି ଆସିଲା ପରେ ମାମୁଘରେ ରହି ଭୁବନେଶ୍ୱରର କଣ୍ଟ୍ରାକ୍ଟର ବରକୁ ବିବାହ କରି ଚାଲିଯାଏ । ମଫସଲରୁ ସହରକୁ ଯିବା ପରେ ଟିଭି, ଫ୍ରିଜ୍, ଗ୍ୟାସଚୁଲି, ସୋଫା, ଡନଲପ୍ ବେଡ୍ - କେତେ ନୂଆ ଜିନିଷ ସହିତ ପରିଚିତ ହୁଏ । ବର୍ତ୍ତମାନର ରେବତୀ ଭାବେ ''ଦଶବର୍ଷ ତଳେ ସେ ବାସୁମାଷ୍ଟର ପାଇଁ ପାଗଳ ହେଇ ଯାଇଥିଲା । ଅଥଚ ବାସୁମାଷ୍ଟରକୁ ଜୀବନରେ ପାଇଥିଲେ ବହୁତ କିଛି ତା' ପାଖରେ ଅଜଣା ରହିଯାଇଥାନ୍ତା । ସେ ଏହି ଭଙ୍ଗା ଦଦରା ଚାଳଘରେ, ଯେଉଁଠି ବର୍ଷାଦିନେ ପାଣି ଗଳେ, ଚୁଲୀରେ ବାଉଁଶପତ୍ର ଭରି ଫୁଙ୍କୁ ଫୁଙ୍କୁ ଆଖିର ଲୁହ ନାକରେ ତୋଳୁଥାନ୍ତା । ଏସବୁ ବାହାରେ ଯେ ଗୋଟିଏ ଦୁନିଆ ଅଛି - ସୁଖ ସୁବିଧା ଆନନ୍ଦର ସଂସାର - ସୋଫା, ଫ୍ରିଜ୍, ବଂଲୋ ଓ ମୋଟର ସାଇକେଲର ଦୁନିଆ ଏସବୁ ଅଜଣା ରହନ୍ତା ।''[୬] ଦୁଇଟି ପିଲାର ମା ହେଲା ପରେ ସେ ଫ୍ୟାମିଲି ପ୍ଲାନିଂ କରି ନେଇଛି । ବର୍ତ୍ତମାନ ଆଉ ମା' ହେବା ଦାୟରୁ ମୁକ୍ତ । ମାଷ୍ଟର ବାସୁଦେବ ପ୍ରତି ତାର ପ୍ରକୃତ ଆନ୍ତରିକ ଭଲପାଇବା ନ ଥିଲା । ଗୋଟିଏ ଖିଆଲ, କ୍ଷଣିକ ଉତ୍ତେଜନା ଏବଂ ନବଯୌବନ ତାକୁ ଉତ୍ତଳା କରିଥିଲା କିଛି ସମୟ ବାସୁ ମାଷ୍ଟର ପାଇଁ । ଦେହଭୋଗ ଥିଲା ଏହାର ଲକ୍ଷ୍ୟ । ଜଗଦୀଶଙ୍କ ରେବତୀ ପ୍ରେମିକା, ପ୍ରେମିକାରୁ ଗୃହିଣୀ ଓ ସନ୍ତାନସମ୍ଭବା । ଏହା ସତ୍ତ୍ୱେ ମାନସିକ ଅସହାୟତାରୁ ସେ ମୁକ୍ତ ନୁହେଁ । ବେଳେବେଳେ ଏମିତି କିଛି ସମୟ ପାଇଁ ସେ ତାର ପୁରୁଣା ଦିନଗୁଡ଼ିକ ନିକଟକୁ ଫେରିଯିବାକୁ ଚାହେ । ''ଆହା, ସେ ତ୍ରାର ହାଇସ୍କୁଲର ଦିନଗୁଡ଼ାକୁ ଫେରିଯାଆନ୍ତା କି ! ରାତିରେ ଲଣ୍ଠନ ଆଲୁଅରେ, ବହି ଭିତରେ ବାସୁ ମାଷ୍ଟରଙ୍କ ଚିଠି ରଖି, ମନ ଭିତରେ ଭୟ, ଉତ୍କଣ୍ଠା ଓ ରୋମାଞ୍ଚ ରଖି ପଢ଼ିଥାନ୍ତା କି ? ସ୍କୁଲଫେରନ୍ତା ରାସ୍ତାରେ କେତୋଟି ମୁହୂର୍ତ୍ତ

ପାଇଁ ବାସୁଭାଇକୁ ଦେଖି ତାର ଛାତିରେ ଛନକା ପଶିଯାଆନ୍ତା ପୁଣି ଥରେ କି ।''[୭] ଜଗଦୀଶ ପରିବର୍ତ୍ତିତ ସମୟ ସ୍ରୋତରେ ରେବତୀକୁ ମଡର୍ଣ୍ଣ କରିବାକୁ ଯାଇ ମାନସିକ ବିକାରଗ୍ରସ୍ତ କରିଛନ୍ତି । ଅସହାୟତାର ବୁଢ଼ିଆଣୀ ଜାଲରେ ତାକୁ ଏମିତି ଅଣନିଃଶ୍ୱାସୀ କରି ପକାଇଛନ୍ତି ଯେ, ଫକୀରମୋହନଙ୍କ ରେବତୀ ନିକଟରେ ସେ ହୀନପ୍ରଭ ହୋଇପଡ଼ିଛି । ରଚନାଶୈଳୀରେ ଫକୀରମୋହନଙ୍କ ପ୍ରଭାବ ସ୍ପଷ୍ଟ । ଏହା ସତ୍ତ୍ୱେ ସମସାମୟିକ ରେବତୀମାନଙ୍କ ମାନସିକତା ବର୍ଣ୍ଣନା କରିବା କ୍ଷେତ୍ରରେ ଜଗଦୀଶ ବହୁ ପରିମାଣରେ ସଫଳ ।

ହୃଷୀକେଶ ପଣ୍ଡାଙ୍କ 'ରେବତୀ' ପ୍ରଥମେ ୧୯୮୩ ମସିହାରେ 'ଅମୃତାୟନ'ରେ ପ୍ରକାଶିତ । ଏବେ ତାହା ରେବତୀ ରେବତୀ ପୁସ୍ତକରେ ସଂକଳିତ । ଶ୍ରୀଯୁକ୍ତ ପଣ୍ଡାଙ୍କ ରେବତୀ ଭିନ୍ନ ମାନସିକତାରୁ ଜନ୍ମ । ଏ ସମ୍ପର୍କରେ ତାଙ୍କର ବକ୍ତବ୍ୟ 'ମୂଳ ରେବତୀ' ନାରୀ ଶିକ୍ଷା ବିଷୟରେ ନୁହେଁ । ରେବତୀ ଏହାର ନାୟିକା ନୁହେଁ । ଏହା ନିଃସଙ୍ଗତା ବିଷୟରେ ଓ ବୁଢ଼ୀମା ଏହାର ପ୍ରଧାନ ଚରିତ୍ର ।[୮] ଶ୍ରୀଯୁକ୍ତ ପଣ୍ଡାଙ୍କ ପୂର୍ବରୁ କୌଣସି ରେବତୀ କଲେଜ ମାଟି ମାଡ଼ି ନ ଥିଲେ; ଯଦିଓ ପାଠ ପ୍ରତି ସମସ୍ତଙ୍କର ଦୁର୍ବଳତା ରହିଥିଲା । ତାଙ୍କ ରେବତୀ କଲେଜ ଶିକ୍ଷା ପରେ ବିଶ୍ୱବିଦ୍ୟାଳୟ ଶିକ୍ଷାଲାଭ କରି ଅଧ୍ୟାପିକା ହୋଇଛି । ଗବେଷଣା କରି ପିଏଚ.ଡି. ଲାଭ କରିଛି । ଅଧିକ ଜ୍ଞାନ ଉଦ୍ଦେଶ୍ୟରେ ଆମେରିକା ଯାଇଛି । ଗଳ୍ପରେ ରେବତୀ ବାପାଙ୍କ ନାମ ନାହିଁ, କିନ୍ତୁ ଅସ୍ତିତ୍ୱ ରହିଛି । ସେ ସହରର ମୁକ୍ତିଆର, ଥିଲାବାଲା । ଗାଁ ଲୋକ ତାଙ୍କୁ ଭୟ କରନ୍ତି । ରେବତୀର ଉଚ୍ଚଶିକ୍ଷା ଲାଭ ପରେ ତା ବାପା ବର ଖୋଜିବା ବନ୍ଦ କରି ଦେଇଥିଲେ । କାରଣ ତାକୁ ବାହା ହେବାର ଯୋଗ୍ୟତା ଥିବା ଲୋକ ତାଙ୍କ ଜାଣିବାରେ କେହି ନ ଥିଲେ ।[୯] ରେବତୀର ମା ମଧ୍ୟ ଜଣେ ଫୁଲେଇ ଚରିତ୍ର । ଗଳ୍ପରେ ବାସୁଦେବ ନାମରେ ଗୋଟିଏ ଚରିତ୍ର ରହିଛି । ମାତ୍ର ସେ ରେବତୀର ପ୍ରେମିକ ନୁହେଁ । ଯୋଗ୍ୟତା, ଶିକ୍ଷା ସବୁ ଦୃଷ୍ଟିରୁ ରେବତୀର ବହୁ ତଳେ ସେ । ରେବତୀକୁ ପାଇବାର ଆଗ୍ରହ ତାର ଥିଲା । ସେଥିପାଇଁ ବହୁ କଷ୍ଟରେ ବି.ଏ. ପାସ୍ କରିଛି । ତା ସହିତ ବିବାହ ପ୍ରସ୍ତାବ ଶୁଣି ରେବତୀ ଏତେ ଜୋର୍‌ରେ ମୁହଁ ଛିଞ୍ଚାଡ଼ିଦେଲା ଯେ, ସେ ଆଉ ରେବତୀକୁ ବିବାହ କରିବାର ସ୍ୱପ୍ନ ନ ଦେଖି ତା ବିରୁଦ୍ଧ ଆଲୋଚନାରେ ସକ୍ରିୟ ଅଂଶ ଗ୍ରହଣ କଲା । ରେବତୀକୁ ନେଇ ତା ଗ୍ରାମର ପିଲା ଗର୍ବ କରୁଥିଲେ । ଏହା ସତ୍ତ୍ୱେ ତାର ବିବାହ କରି ନ ପାରିବାର କାରଣ ଯୋଗୁଁ ତା ସମ୍ପର୍କରେ ସମାଲୋଚନା କରିବା ପାଇଁ ଗାଁ ପିଲାଙ୍କୁ କିଛି ଖୋରାକ ମିଳି ଯାଇଥିଲା । ମୁଁ'ର ଭାଷାରେ ''ଅଃ, ପାଠ ପଢୁଛି ବୋଲି ଏତେ ଫୁଟାଣି, କାଇଁ ଦେଖି ଏତେ ପାଠ ପଢୁଚି ତ, ବାହା ତ.ହୋଇପାରୁନି ।'' ବିବାହ ନ ହେବା ନାରୀର ଯେ ସବୁଠାରୁ ବଡ଼ ଅଯୋଗ୍ୟତା, ତାହା ଆମ ସମାଜରେ ଏବେ ବି ସ୍ୱୀକୃତ । ମହୁମାଛି ସମ୍ପର୍କରେ ଗବେଷଣା କରୁଥିବା ସମୟରେ ସେ ଗାଁକୁ ଆସିଛି ଦମ୍ଭ ଓ ଗର୍ବର ସହିତ । ସେ ଯେ ଗାଁର

ସବୁଠାରୁ ଯୋଗ୍ୟତମ ବ୍ୟକ୍ତି, ଏହା ତା ଚାଲିରୁ ପ୍ରମାଣିତ ହେଉଥିଲା । ସମୟର ପରିବର୍ତ୍ତନ ସହିତ ରେବତୀର ମାନସିକ ଅବସ୍ଥାରେ ପରିବର୍ତ୍ତନ ଦେଖାଯାଇଛି । ତିନିବର୍ଷ ପରେ ଆମେରିକାରୁ ଫେରି ଗାଁକୁ ଆସିବା ସମୟରେ ଆଖିରେ ଥିଲା ତାର ସ୍ୱପ୍ନ । ଅଧ୍ୟୟନ ଓ ଗବେଷଣା ସମୟରେ ଜୀବନର ଯେଉଁ ଦିଗଟି ଆବିଷ୍କାର କରିବାକୁ ସେ ସମୟ ପାଇ ନ ଥିଲା, ତାହାକୁ ଖୋଜି ଖୋଜି ସେ ଗାଁରେ ପହଞ୍ଚିଛି । କିଛି ଦିନ ପଲ୍ଲୀର ଶାନ୍ତିରେ ନିଜକୁ ହଜାଇ ଦେବାକୁ ଉଦ୍‌ଗ୍ରୀବ ସେ । ମାତ୍ର ପଲ୍ଲୀର ଶାନ୍ତି, ଶୋଭନୀୟତା ଓ ସୌନ୍ଦର୍ଯ୍ୟ ଏତେବେଳକୁ ବିନଷ୍ଟ । ସ୍କୁଲ ପାଖ ପୋଖରୀରେ କଇଁ ଫୁଲ ନାହିଁ । ଆଖଡ଼ାଘର ଦାଣ୍ଡରେ କୁମାର ପୂର୍ଣ୍ଣମୀରେ କଇଁଫୁଲ ପାଖୁଡ଼ା, ଡେଙ୍ଗ, ଚାଉଳ ଚୂନା, ଅଙ୍ଗାର, ଇଟାଗୁଣ୍ଡ, ଅବିର ଝୋଟି କିମ୍ବା ଭୋଗ ନାହିଁ । ଢୋଲ, ମୃଦଙ୍ଗ, ହାରମୋନିୟମର ସହାୟତାରେ ଚମ୍ପୂ, ଓଡ଼ିଶୀ ଆଉ ଭଜନ ଶୁଣାଯାଉ ନାହିଁ । ଆଖଡ଼ା ଘରକୁ ନେଇ ମକଦ୍ଦମା ଚାଲିଛି । ଗାଁର ମଶାଣି ଚକ୍ରପାଣି ଟାଉଟର ନିଜ ନାଁରେ ପଟ୍ଟା କରେଇ ନେଇଛି । ଗାଁର ପରିବେଶ ଓ ବ୍ୟକ୍ତିଚରିତ୍ର ମଧ୍ୟ ବଦଳିଯାଇଛି । ସବୁଠାରୁ ଦୁଃଖ ଲାଗିଥିଲା ରେବତୀକୁ, ଲଣ୍ଡା ବରଗଛ ଦେଖି । ତାରି ଭିତରେ ସେ ଅନୁଭବ କରୁଥିଲା ନିଜର ହତାଶ ଜୀବନକୁ । ବିଛଣାରେ ପଡ଼ି କଇଁ କଇଁ କାନ୍ଦୁଥିବା ସମୟରେ ସେ ଅନୁଭବ କରୁଥିଲା, ତାର ଖଣ୍ଡ ଖଣ୍ଡ ଭଙ୍ଗା ସ୍ୱପ୍ନଗୁଡ଼ିକୁ । ସେ ଅନୁଭବ କରୁଥିଲା, ତା ପାଇଁ ଏମିତି କେହି ଜଣେ ଅପେକ୍ଷା କରି ନାହିଁ ଯାହା ପାଇଁ ସେ ପ୍ଲେନ୍ ଟିକେଟଟି ଫେରେଇ ଦେବ । ଟ୍ରେନ୍‌ର ପ୍ଲାଟଫର୍ମରେ ଭିଡ଼ ଠେଲି ତାକୁ ଚିହ୍ନି ହସି ହସି ଗଡ଼ିଯିବ । ଅଧ୍ୟୟନ ସମୟରେ ସାଥୀର ପ୍ରୟୋଜନ ନ ଥିଲା; ମାତ୍ର ସାଥୀଟିଏ ଖୋଜିଲା ସମୟରେ ସାଥୀଟିଏ ନ ଥିଲା । ମାନସିକ ସ୍ତରରେ ଅସହାୟା ଏହି ରେବତୀ ଅନ୍ୟମାନଙ୍କଠାରୁ ବେଶ୍ ବାରି ହୋଇ ପଡ଼େ । ରେବତୀ ଗାଁ ଛାଡ଼ି ଯିବା ସମୟରେ ଜଣାଯାଉଥିଲା, ଏହା ବୋଧହୁଏ ରେବତୀର ଗାଁ ପାଇଁ ଶେଷଥର । ତେଣୁ ମୁଁ'ର ଅନୁଭବ - ''ମୋତେ କିନ୍ତୁ ଲାଗିଲା ଯେ, ରେବତୀ ଆଉ ଆସିବ ନାହିଁ । ସେ ଯୋଉ ଲୋକକୁ ଖୋଜୁଥିଲା, ସେ ଲୋକଟି ନିଶ୍ଚିତ ଭାବରେ ଆମ ଗାଁରେ ନ ଥିଲା ।'' ସମ୍ବେଦନଶୀଳ ମୁଁ ଚରିତ୍ରଟି (ପରୋକ୍ଷରେ ଗାଳ୍ପିକ ହୋଇପାରନ୍ତି) ରେବତୀର ଅସହାୟତାରେ ଅଧିକ ମର୍ମାହତ । ତା'ରି ଭାଷାରେ - ''ରେବତୀ ଲୋ, ମୋତେ ଦେଇଦେ ତୋର ଅସହାୟତା, ତୋର ବୟସ, ତୋର ନିର୍ଜନତା, ତୋର ବାର୍ଦ୍ଧକ୍ୟ, ତୋର ହାତଗୋଡ଼ର ସବୁ ଶିକୁଳି । ମୁଁ ତତେ କଇଁ ଫୁଲ ଦେବି, ମହୁମାଛି ଦେବି, ମୋର ଯାବତୀୟ ଖୁସି ଦେବି, ମୋର ନିର୍ବୋଧତା ଦେବି ।''[୧୦] ଅପ୍ରାପ୍ତି ହିଁ ରେବତୀର ଭାଗ୍ୟ, ନିଃସଙ୍ଗତାହିଁ ତା ଜୀବନର ସମ୍ବଳ । ଭାରତୀୟ ସାମାଜିକ ପରିବେଶରେ ରେବତୀ ତେଣୁ ନିଜକୁ ଖାପ ଖୁଆଇ ନ ପାରି ଫେରିଯାଉଛି ଆମେରିକା, ଯେଉଁଠାରେ ଜୀବନର ସଂଜ୍ଞା, ନିଃସଙ୍ଗତା ଆଉ ଜୀବନର ମାନେ ସାଥୀହୀନତା । ଗାଳ୍ପିକ ପଣ୍ଡା ସମସ୍ତ ଚେଷ୍ଟା ସତ୍ତ୍ୱେ

ନିଜ ରେବତୀକୁ ଏହି ନିଃସଙ୍ଗତାରୁ ଉଦ୍ଧାର କରିପାରି ନାହାନ୍ତି ଯେଉଁ ଅସହାୟତା ଫକୀରମୋହନଙ୍କ ରେବତୀକୁ ଜଡ଼ସଡ଼ କରିଥିଲା, ତାହା ସଞ୍ଚରି ଆସିଛି ହୃଷୀକେଶଙ୍କ ରେବତୀ ପାଖକୁ । ଫକୀରମୋହନଙ୍କ ରେବତୀର ଶେଷ ପରିଣାମ ମୃତ୍ୟୁ ନିଃସଙ୍ଗତାଜନିତ କାରଣରୁ । କିନ୍ତୁ ହୃଷୀକେଶଙ୍କ ରେବତୀ ଏହି ନିଃସଙ୍ଗତାକୁ ସାମ୍ନା କରି ନ ପାରି ପଳାୟନବାଦୀ ସାଜିଛି । ଏଥିରେ ସମସ୍ୟା ରହିଛି; ସମାଧାନ ନାହିଁ । ସମୟ, ପରିବେଶ ଦୃଷ୍ଟିରୁ ଶ୍ରୀ ପଣ୍ଡାଙ୍କ ରେବତୀର ପୃଥିବୀ ଫକୀରମୋହନଙ୍କ ରେବତୀର ପୃଥିବୀଠାରୁ ଅଧିକ ସମସ୍ୟା ବିଜଡ଼ିତ ।

କବିତା ବାରିକଙ୍କ 'ରେବତୀ' ପ୍ରଥମେ 'ସୁଚରିତା'ରେ ୧୯୮୫ ମସିହାରେ ପ୍ରକାଶ ପାଇଥିଲା । ପରିବର୍ତ୍ତିତ ସମୟର ସ୍ୱରୂପ ପ୍ରକାଶ କରିବାକୁ ଯାଇ ଗାଳ୍ପିକା ରେବତୀକୁ ପୁରୁଷ କାମନାର ଶିକାର କରାଇଛନ୍ତି । ନାରୀ ପ୍ରତି ପୁରୁଷ ସମାଜର ଦୃଷ୍ଟିଭଙ୍ଗୀରେ ଯେଉଁ ପରିବର୍ତ୍ତନ ଘଟିଛି ତାହା ପ୍ରତିପାଦିତ ହେବା ସଙ୍ଗେ ସଙ୍ଗେ ନାରୀ ଜୀବନର ଅସହାୟତା ମୁଖ୍ୟ ସ୍ଥାନ ଲାଭ କରିଛି । ରେବତୀ ହାଇସ୍କୁଲର ଛାତ୍ରୀ । ବାସୁସାର୍‌ଙ୍କୁ ସେ ପ୍ରେମ କରେ । ବାପା ଶ୍ୟାମବନ୍ଧୁଙ୍କର ଏଥିରେ ସ୍ୱୀକୃତି ରହିଛି । ମାଟ୍ରିକ୍ ପରୀକ୍ଷା ପରେ ବିବାହ ହେବାର ସମୟ ଧାର୍ଯ୍ୟ । ବାସୁର ବହୁ ସ୍ମୃତି ରେବତୀ ନିକଟରେ ବର୍ତ୍ତମାନ । ସମସ୍ତେ ଶୋଇଗଲା ପରେ ବାସୁ ସାର୍‌ଙ୍କ ପାଖକୁ ଚିଠି ଲେଖି ବସେ ରେବତୀ । ଲେଖୁ ଲେଖୁ ଇନ୍ଦ୍ରଧନୁର କେତେ କେତେ ସ୍ୱପ୍ନ ବୁଣି ହେଇଯାଏ ତାର ମନ ଭିତରେ । ଛାଇ ଅଳସ ନିଦ ଭିତରେ ସେ ଦେଖେ ପକ୍ଷିରାଜ ଘୋଡ଼ାରେ ରାଜକୁମାର ସାଜି ବାସୁ ସାର୍ ତାକୁ ଚନ୍ଦ୍ରଲୋକକୁ ନେଇ ଯାଉଛନ୍ତି । ଟିକି ଟିକି ତାରା ଫୁଲମାନେ ସେମାନଙ୍କୁ ସ୍ୱାଗତ ଜଣାଉଛନ୍ତି ।[୧୧] ବାସୁ ସାର୍ ମଧ ଦେଖା ହେବା ମାତ୍ରେ କବିତ୍ୱ କରନ୍ତି । ପ୍ରେମକାହାଣୀ କହି ପ୍ରେମରାଜ୍ୟକୁ ଭସାଇ ନିଅନ୍ତି ଓ ତେଲ ଲୁଣ ସଂସାର କଥା ଗପନ୍ତି । ବହି ଭିତରେ ଚିଠି ଦିଆନିଆ । ତା ଢଙ୍ଗରଙ୍ଗ ଜେଜୀମା'କୁ ଅଡୁଆ ଲାଗେ । ପୁରୁଣା କାଳିଆ ଲୋକ । ଫକୀରମୋହନଙ୍କ ଜେଜୀମା'ର ମାନସିକତାରୁ ମୁକ୍ତ ନୁହେଁ । ନାତୁଣୀର ପାଠପଢ଼ାକୁ ସେ ମଧ ପ୍ରଥମରୁ ବିରୋଧ କରେ । ପରିବର୍ତ୍ତିତ ସମାଜର ମଣିଷ ଶ୍ୟାମବନ୍ଧୁ ଝିଅ ପାଠପଢ଼ାର ପକ୍ଷପାତୀ । ବାସୁ ଆଗରେ ରେବତୀର ଛନ ଛନ କନ କନ ଚାହାଣି ଜେଜୀମା'କୁ କେମିତି କେମିତି ଲାଗେ । ତା ସହ ବାହାଘର ହେବା କଥା ଶୁଣି ତ ସେ ଆଜିକାଲି ଛୋପରୀ, ଫୁଲେଇ ଏମିତି କେତେ କ'ଣ ରେବତୀକୁ ନାଁ ଦେଇ ଡାକେ । ଲୋ ରେବୀ, ଲୋ ନିଆଁ, ଲୋ ଚୁଲି ପାଉଁଶ, ଏମିତି ଯାହା ଯେତେବେଳେ ପାଟିକି ଆସିଲା କହିବାକୁ ଭୁଲେ ନାହିଁ ।[୧୨] ଏହା ସତ୍ତ୍ୱେ ରେବତୀ ଓ ବାସୁର ଯୋଡ଼ି ମାନିବ ବୋଲି ମନେ ମନେ ଖୁସି ହୁଏ । ମାତ୍ର ପରୀକ୍ଷାର ଶେଷ ଦିନ ଯେତେବେଳେ ସାହି ଟୋକାଙ୍କଦ୍ୱାରା ସେ ଧର୍ଷିତା ହେଲା, ତାର ସ୍ୱପ୍ନର ପୃଥିବୀ ଅଚାନକ ପରିବର୍ତ୍ତିତ ହୋଇଗଲା । ଜେଜୀମା'ର ଠାକୁର ବାସନ ମାଜିବା ଏବଂ ଠାକୁରଘରକୁ ଯିବା ତାକୁ ମନା

ହେଲା । ସାଇପଡ଼ିଶାଙ୍କ ଫୁସୁର ଫାସର, ପିଲାମାନଙ୍କର କୌତୂହଳ ଚାହାଣି, ଯୁବକ ଯୁବତୀଙ୍କର ଆଖିମିଟିକା ହସ, ସାନ ଭଉଣୀର ଛାଡ଼ ଛାଡ଼ ଭାବ, ବାପାଙ୍କର କଥା ''ରେବତୀ ତିନି ପାଞ୍ଚିରୁ ଗଲା । ତାକୁ ଆଉ କିଏ ବାହା ହେବ । ସେ ଏଣିକି ବୋଝ । ତା ଛଡ଼ା ସେ ଘରେ ରହିଲେ ସାନଟାର ବି ବାହାଘର ହୋଇ ପାରିବନି ।'' ରେବତୀକୁ ନିଜ ଜୀବନ ପ୍ରତି ବୀତସ୍ପୃହ କରିଦେଲା । ସବୁଠାରୁ ବେଶି ବାଧିଥିଲା ବାସୁ ସାରଙ୍କ କଥା । ତାର ଧାରଣା ଥିଲା ପ୍ରେମ ଦେହସର୍ବସ୍ୱ ନୁହେଁ, ଆତ୍ମସର୍ବସ୍ୱ । ସେ ଆତ୍ମାରେ ପବିତ୍ର । ମାତ୍ର ତାକୁ ଘରେ ଦେଖିବା ମାତ୍ରେ ବାସୁ ସାର୍ ସାପ ଦେଖିଲା ପରି ଚମକି ପଡ଼ିଥିଲେ ଆଉ କହିଥିଲେ, ''ତମର ଏଠିକୁ ଆସିବାଟା ଠିକ୍ ହୋଇ ନାହିଁ ରେବତୀ । ଲୋକ କହିବେ କଣ ? ତମେ ଇଜ୍ଜତ ହରାଇଲ ସିନା, ମୋର ତ ଗୋଟାଏ ସାମାଜିକ ସମ୍ମାନ ଅଛି ।'' ସେଦିନ ପାଟପୁର ରେବତୀ ବାସୁଭାଇର ପାଞ୍ଚଦିନ ପାଇଁ ଅନୁପସ୍ଥିତ ରହିବା ଶୁଣି ପଡ଼ିଯାଇଥାନ୍ତା । ହେଲେ ଭାଗ୍ୟକୁ କବାଟ ଧରିଥିଲା । ମାତ୍ର କବିତାଙ୍କ ରେବତୀ ସାର୍‌ଙ୍କ ଅପମାନଜନକ କଥା ଶୁଣି ''ଆକାଶରୁ ପଡ଼ିଲା ଭଳି ରେବତୀ ସତେ କି ଖସିପଡ଼ିଲା । କବାଟଟା ଧରି ନେଇ ନ ଥିଲେ ଗଛ କାଟିଲା ଭଳି ପଡ଼ିଯାଇଥାନ୍ତା ।''[୧୩] ତାର ପରିଚିତ ପୃଥିବୀ ହଠାତ୍ ଅପରିଚିତ ହୋଇ ପଡ଼ିବାରୁ ଆତ୍ମହତ୍ୟା ହିଁ ତା ଜୀବନର ଶ୍ରେୟ ହୋଇପଡ଼ିଲା । ଏମିତି ଅସହାୟ ଭାବରେ ରେବତୀର ମୃତ୍ୟୁ ହୁଏତ ତା ପାଇଁ ପାଠକ ପ୍ରାଣରେ ସମ୍ବେଦନା ସୃଷ୍ଟି କରିପାରେ । ମାତ୍ର ଆଗାମୀ ଦିନ ପାଇଁ ତାର ବାର୍ତ୍ତା କ'ଣ ? ଏମିତି ଅସହାୟ ଭାବରେ ରେବତୀମାନେ ମରୁଥିବେ ? ପୁରୁଷ ସମାଜ ବିରୋଧରେ କୌଣସି ଅଭିଯୋଗ ନ ଥିବ ? ସେହି ଏକ ଅସହାୟତା କବିତାଙ୍କ ରେବତୀକୁ ଜାବୋଡ଼ି ଧରିଛି । ଆଗାମୀ ପାଇଁ କିଛି ନୂତନତ୍ୱ ନାହିଁ ରେବତୀ ଜୀବନରେ । ପୁରୁଷର ଭୋଗ ପାଇଁ ସତେ ଯେପରି ତାର ସୃଷ୍ଟି । ଧର୍ଷିତାମାନେ ଏବେ ତ ପୁରୁଷ ସମାଜ ବିରୋଧରେ ସ୍ୱର ଉତ୍ତୋଳନ କରିପାରିଲେଣି। ଏହାକୁ ନେଇ ଗୋଟିଏ ଇସ୍ୟୁ ମଧ୍ୟ ହୋଇପାରେ । ତେବେ କବିତାଙ୍କ ରେବତୀ ଏପରି ଭୀରୁତାକୁ ଆଶ୍ରାକରି ମୃତ୍ୟୁବରଣ କଲା କାହିଁକି ? ଏହି ଦୃଷ୍ଟିରୁ କବିତାଙ୍କ ରେବତୀ ବରଂ ସମୟର କିଛି ପୂର୍ବକୁ ଫେରିଯାଇଛି, ଯେଉଁ ସମୟରେ ନାରୀମାନେ ପୁରୁଷ ସମାଜ ବିରୋଧରେ ସ୍ୱର ତୋଳିବାକୁ ଭୟ କରୁଥିଲେ । ନିଜ ଚରିତ୍ରର ଅସହାୟତାକୁ କ୍ଷମା ଦେବାପାଇଁ ଆତ୍ମହତ୍ୟା କରୁଥିଲେ । ଏହା ସତ୍ତ୍ୱେ ସାମ୍ପ୍ରତିକ ବିକାରଗ୍ରସ୍ତ ସମୟର ଏକ ଚମକକୁ ରୂପ ଦେବାରେ ଗାଳ୍ପିକା ସାର୍ଥକ ହୋଇଛନ୍ତି; ମାତ୍ର ଫକୀରମୋହନଙ୍କ ରେବତୀ ନିକଟରେ ପହଞ୍ଚି ପାରି ନାହାନ୍ତି । ଶିକ୍ଷାର ବିକାଶଦ୍ୱାରା ରେବତୀମାନଙ୍କର ଯେ କୌଣସି ମାନସିକ ବିକାଶ ହୋଇପାରି ନାହିଁ, ତାହା ସେ ପ୍ରମାଣିତ କରିଛନ୍ତି । ସମାଜର ଅନ୍ୟାୟ ଓ ଅନୀତି ବିରୋଧରେ ସ୍ୱର ଉଠାଇବାକୁ ଯେଉଁ ମାନସିକ ଦୃଢ଼ତା ଆବଶ୍ୟକ, ତାହା କବିତାଙ୍କ ରେବତୀ ନିକଟରେ ନାହିଁ ।

ରେବତୀର ଅନ୍ୟ ଏକ ଭିନ୍ନ ରୂପ ଦେଖାଯାଏ ସ୍ୱୟଂବରା ପଟ୍ଟନାୟକଙ୍କ 'ରେବତୀ' ଗଳ୍ପରେ । ଏହା ପ୍ରଥମେ 'ଝଙ୍କାର'ରେ ୧୯୯୪ ମସିହା ସେପ୍ଟେମ୍ବର ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ପୂର୍ବବର୍ତ୍ତୀ ରେବତୀମାନଙ୍କ ପରି ପଟ୍ଟନାୟକଙ୍କ ରେବତୀ ଆଦୌ ଭୀରୁ ବା ଦୁର୍ବଳା ନୁହେଁ । ସେ ନିଜ ବୋଝ ନିଜେ ବହନ କରିବାକୁ ସମର୍ଥ । ଏଥିରେ ନାରୀ ମନସ୍ତତ୍ତ୍ୱର ଭିନ୍ନ ଏକ ଦିଗ ଆଲୋଚିତ । ରେବତୀ ପିଲାଟି ଦିନରୁ ପ୍ରତିକୂଳ ପରିସ୍ଥିତିରେ ସଂଗ୍ରାମ କରି ନିଜର ସ୍ଥିତି ଜାହିର୍ କରିଛି । ନିଜ ତିଆରି ରାସ୍ତାରେ ବାଟ ଚାଲିବାକୁ ଶିଖିଛି । ଦାରିଦ୍ର୍ୟ ବିରୋଧରେ ସଂଗ୍ରାମ କରି ତାର ନିଜ ପ୍ରତି ଆତ୍ମବିଶ୍ୱାସ ବୃଦ୍ଧି ପାଇଛି । ସେ ବାସ୍ତବତା ଉପରେ ବିଶ୍ବାଂସୀ । ତେଣୁ ଭାବପ୍ରବଣତା ଏକ ବିଳାସ ବୋଲି ସେ ମନେ କରେ । ଜେଜୀମା'ର ସେ ଆଶା ଓ ଭରସା । ପୁରୁଷ ଉପରେ ନିର୍ଭରଶୀଳ ହେବାକୁ କୁଣ୍ଠିତ । ଫକୀରମୋହନଙ୍କ ରେବତୀଠାରୁ ବହୁ ଦୃଷ୍ଟିରୁ ଏ ସ୍ୱତନ୍ତ୍ର । ତା' ହାଇସ୍କୁଲର ବିଜ୍ଞାନ ଶିକ୍ଷକ ବାସୁଦେବ । ପରବର୍ତ୍ତୀ ସମୟରେ ସେ ଜଣେ ଆଇ.ଏ.ଏସ୍. ଅଫିସର । ବାରବର୍ଷ ବୟସରୁ ବାପ ମାଙ୍କୁ ହରାଇ ଟିଉସନ କରି ପାଠ ପଢ଼ିଛି ରେବତୀ । ଶିକ୍ଷୟିତ୍ରୀ ହେଲା ପରେ ପୋଷ୍ଟଗ୍ରାଜୁଏଟ୍ କରି ଅଧ୍ୟାପିକା ହୋଇଛି । ପିଏଚ୍.ଡି. କରିଛି । ଜୀବନରେ କାହା ଉପରେ ଭରା ଦେଇ ଚାଲିବାରେ ସେ ବିଶ୍ୱାସୀ ନୁହେଁ । ଏହାସତ୍ତ୍ୱେ ଜେଜୀମା' ନିକଟରେ ସେ ସେହି ପିଲା । ସାମାନ୍ୟ କଥାରେ ଲୋ ରେବୀ, ଲୋ ନିଆଁ, ଲୋ ଚୁଲି ବୋଲି ଗାଳି ଶୁଣିଛି । ବିଜ୍ଞାନ ସାର୍ ଆଇ.ଏ.ଏସ. ପାଇବା ପରେ ତାକୁ ନେଇ ଦାମ୍ପତ୍ୟଜୀବନ ଗଢ଼ିବାର ନିଷ୍ପତ୍ତି ନେଇଛନ୍ତି । ମାତ୍ର ତାଙ୍କୁ ନିରାଶ ହେବାକୁ ପଡ଼ିଛି । ନାରୀ ପ୍ରତି ତାଙ୍କର ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀ ଯୋଗୁଁ ରେବତୀ ନିକଟରୁ ସେ ଆଘାତ ପାଇଛନ୍ତି । ଜେଜୀମା'ର ଅନ୍ଧବିଶ୍ୱାସ, ପାରମ୍ପରିକ ଧରାବନ୍ଧା ପଦ୍ଧତି ଓ ପୁରୁଷ ପ୍ରତି ଥିବା ଦୃଷ୍ଟିଭଙ୍ଗୀ ବିରୋଧରେ ରେବତୀ କହିଛି - ଜୀବନ ପାଇଁ ବାସୁ ସାର୍‌ଙ୍କ ପ୍ରୟୋଜନ ନିହାତି ନୁହେଁ ଲୋ ଜେଜୀ । ନିଜ ପାଦରେ ନିଜେ ଛିଡ଼ା ହୋଇ ଶିଖିବା ଦରକାର । ବଞ୍ଚିବା ପାଇଁ ଯେଉଁ ତ୍ୟାଗ, ନିଷ୍ଠା ଆଉ କର୍ତ୍ତବ୍ୟର ସମୁଦ୍ର ପାର ହେବାକୁ ପଡ଼େ, କେଉଁ ବାସୁ ସାର୍ ହାତ ଧରି ସେ ସମୁଦ୍ରକୁ ପାରି କରେଇ ଦେବେନି, ସେଥିପାଇଁ ନିଜର ଉଦ୍ୟମ ହିଁ ଏକାନ୍ତ ଆବଶ୍ୟକ । ଆଉ ଜୀବନରେ ଜଣେ ସାଥୀର ଆବଶ୍ୟକତା ତୁ କହିବୁ । ''ତୋ ବାସୁସାର୍ କେତେ ଦିନ ତୋ ହାତ ଧରି ତୋ ସାଙ୍ଗରେ ଚାଲିଲା ଏ ପୃଥିବୀରେ, ତୁ ତ ପୁଣି ଏକା ଏକା ବଞ୍ଚିଛୁ ଆଜିଯାଏ ।''[୧୪] ରେବତୀକୁ ନୂଆ ରୂପରେ, ନୂଆ ଭାବରେ ଆବିଷ୍କାର କରିଥିବା ଯୋଗୁଁ ଗାଳ୍ପିକା ନିଶ୍ଚିତଭାବରେ ପ୍ରଶଂସାର ଯୋଗ୍ୟା । ସ୍ୱୟଂବରାଙ୍କ ରେବତୀ ଅନ୍ତତଃ ସମୟର ଅସହାୟତାରେ ଜଡ଼ସଡ଼ ନୁହେଁ । ସେଥିପାଇଁ ସେ ସମୟ ସ୍ରୋତର ପ୍ରତିକୂଳରେ କେବେ ହାରିବାକୁ ଶିଖି ନାହିଁ । ଏକ ଦୃପ୍ତ ଆବେଗରେ ଅନ୍ୟମାନଙ୍କ ନିକଟରେ ଉଦାହରଣଟିଏ ହୋଇ ରହିଯାଇଛି ।

୧୯୯୪ ମସିହା 'ସମାବେଶ'ର ପୂଜା ସଂଖ୍ୟାରେ ପ୍ରକାଶିତ ତରୁଣକାନ୍ତି ମିଶ୍ରଙ୍କ 'ରେବତୀ' ଅନ୍ୟତମ ସଫଳ ଗଳ୍ପ । ସତ୍ୟ ଘଟଣା ଉପରେ ଏହା ଆଧାରିତ ବୋଲି ଗାଳ୍ପିକ ନିଜ ବକ୍ତବ୍ୟରେ ସ୍ୱୀକାର କରିଛନ୍ତି । ''ଏକଥା ଅବଶ୍ୟ ସତ୍ୟ ଯେ, ଏ ଗପଟି ଲେଖିଲାବେଳେ ମୋର ଅବଚେତନରେ ଫକୀରମୋହନଙ୍କ 'ରେବତୀ' ଛପି ରହିଥିଲା - ଶୁଖିଯାଇଥିବା ଧାରେ ଲୁହ ପରି, କିନ୍ତୁ ମୋ କାହାଣୀର ରେବତୀ ଖାଲି କଳ୍ପନା ନୁହେଁ । ମୁଁ ତାକୁ ଦେଖିଛି ଅତି ନିକଟରୁ ।''[୧୫]

ଏହି ଗଳ୍ପରେ ରେବତୀ ଅଛି । ବାସୁଦେବ ନାହିଁ । ରେବତୀର ବାପାଙ୍କ ନାମ ବନବାସୀ, କଳାହାଣ୍ଡିର ସୁରଙ୍ଗିପଦରରେ ବାସ କରୁଥିବା ଆଦିବାସୀଟିଏ । ରେବତୀର ମା ଭାଲୁ କାମୁଡ଼ାରେ ମରିଛି । ଘରେ ଦି'ଟା ବାଳୁଙ୍ଗା ଭାଇ, କୌଣସି କାମକୁ ନୁହନ୍ତି । ଫକୀରମୋହନଙ୍କ ରେବତୀ କରଣ ଘରର ଝିଅ । କିନ୍ତୁ ତରୁଣକାନ୍ତିଙ୍କ ରେବତୀ ଆଦିବାସୀ ଝିଅ - ଝରଣା ପରି କଳ କଳ, ଛଳ ଛଳ । ତାର ପାଠପଢ଼ାରେ ଭାରି ମନ, କିନ୍ତୁ ''ଗାଁ ସ୍କୁଲରେ ମାଷ୍ଟର ନାହିଁ । ମାଷ୍ଟର ଟୋକାଟି ଛୁଟିରେ ଯାଇଛି ଦି ବରଷ ତଳେ, ଏ ଯାଏ ଫେରି ନାହିଁ । ସେ ଦିନଠୁ ଇସ୍କୁଲ ଘରର ତାଲା ବନ୍ଦ ।''[୧୬] ସେଦିନ କଲିକତା ସୀତାନାଥ ଲେନ୍‌ର ମାଖନଲାଲ ସହିତ ଅଚାନକ ସାକ୍ଷାତ୍ ହୋଇଥିଲା ବନବାସୀର । ପ୍ରଲୋଭନର ଜାଲ ଫାନ୍ଦି ଦେଇଥିଲା ମାଖନ୍‌ଲାଲ ଓ ନିରୀହ ପକ୍ଷୀଟି ପରି ସେଥିରେ ଛନ୍ଦି ହୋଇ ପଡ଼ିଥିଲା ବନବାସୀ । ସରକାରଙ୍କ ଯୋଜନାରେ ନାରୀ ପ୍ରଗତି ପାଇଁ ବିଭିନ୍ନ ପଦକ୍ଷେପ ସମ୍ବନ୍ଧରେ ସେଦିନ ତା' ନିକଟରୁ ଶୁଣିଥିଲା ବନବାସୀ । ଝିଅପିଲାମାନଙ୍କୁ ନାଚ ଗୀତ ଶିଖାଇବା ଓ ଆକ୍ଟିଙ୍ଗ କରାଇବା ମଧ୍ୟ ଏହି ଯୋଜନାର ଅନ୍ତର୍ଗତ । ସେଥିପାଇଁ ଝିଅ ପିଲାଙ୍କ ଉନ୍ନତିକଳ୍ପେ କଲିକତାରେ ଅନେକ ନାଚ ଇସ୍କୁଲ ଖୋଲିଛି । ମାଖନ୍‌ଲାଲ ଲୋଭ ଦେଖାଇଥିଲା - ''ନା-ନାଚ ନ ଜାଣିଥିଲେ ବି ଚଳିବ । ଆମେ ସବୁ ଶିଖେଇବୁ । ତା ପରେ ସେ କଲିକତାର ଡ୍ରାମା ହଲ୍‌ରେ ନାଚିବ, ଆକ୍ଟିଙ୍ଗ କରିବ । ନାଚ ଶିଖିଲାବେଳେ ଖାଇପିଇ ପାଇବ ଶହେ ଟଙ୍କା କରି, ଟ୍ରେନିଂ ସରିଲେ ପନ୍ଦର ଶହ ଟଙ୍କା ମାସକୁ x x x

ବିସ୍ମିତ ବନବାସୀର ଉତ୍ତେଜିତ ହାତ ପାପୁଲିରେ ଝଡ଼ିପଡ଼ିଲା ଆଠଟି ଶହେଟଙ୍କିଆ ନୋଟ୍ । ମାଖନ୍‌ଲାଲ କହିଲା - ଏବେ ପାଇଁ ଏତିକି । ଝିଅ ଯଦି ଭଲ ନାଚିପାରେ ତ ତିନିମାସକୁ ତିନିମାସ ଆଗତୁରା ଟଙ୍କା ମିଳିବ । ଯଦି କିଛି ମେଡାଲ କି ପ୍ରାଇଜ୍ ପାଏ ତ ସିଏ ବି ତୁମର ।[୧୭] ନାଚ ଶିଖିବା ପାଇଁ କଲିକତା ଯିବା କଥା ଶୁଣି ସେଦିନ ରେବତୀ ଉତ୍ତେଜନା, ଆଶଙ୍କା ଓ ସ୍ୱପ୍ନରେ ବିଭୋର ହୋଇ ପଡ଼ିଲା । ''ପିଲାଟି ଦିନରୁ ରେବତୀର ନାଚଗୀତରେ ବଡ଼ ସଉକ । ଅପେରା କି ଯାତ୍ରା ଦେଖି ଆସି ଘରେ ସେ ମନକୁ ମନ ଅଭିନୟ କରେ । କେତେବେଳେ ଯଶୋଦା ତ କେତେବେଳେ ରାଧା ତ କେତେବେଳେ ପୁଣି ମହିଷମର୍ଦ୍ଦିନୀ ଦୁର୍ଗା ।'' ରେଳରେ କଲିକତା ଯିବା ସମୟରେ ଆଖିରେ ସ୍ୱପ୍ନ

ଭରିଯାଇଥିଲା । ସହରରେ ଓହ୍ଲାଇବା ପରେ ତାର ଚିକିମିକି ରୂପ, ଲୋକଗହଳି, ଅସଂଖ୍ୟ ଗାଡ଼ି ମୋଟର ଦେଖି ଭୟ ପାଇଥିଲା । ତେଣୁ ବାପାକୁ ଚୁପ୍‌ଚୁପ୍ କହିଥିଲା "ବାପା ଆମେ ଫେରିଯିବା x x x ମତେ ଡର ଲାଗୁଚି । ବନବାସୀକୁ ବି କେମିତି ଡର ଡର ଲାଗୁଥିଲା । ଅଜଣା ଅନିଶ୍ଚିତ ଭୟ । ନିହାତି ନିରୂପାୟ ଅବସ୍ଥାରେ ବନବାସୀ ରାଜି ହୋଇଯାଇଥିଲା ମାଖନ୍‌ଲାଲର କଥାରେ । ଦପ୍ ଦପ୍ ଗୋଟେ ଆଶଙ୍କା, ଅନିର୍ଦ୍ଦିଷ୍ଟ ଗୋଟେ ସନ୍ଦେହ ଅବଶ୍ୟ ଦାନା ବାନ୍ଧୁଥିଲା ତା ମନରେ । କିନ୍ତୁ ଭୋକ, ଅଭାବ ଓ ଅସହାୟ ଦିନଗୁଡ଼ିକର ଆତଙ୍କ ସାମ୍ନାରେ ସେ ଦୁର୍ବଳ ହୋଇ ପଡ଼ିଥିଲା ।"[୧୮] ସୀତାନାଥଲେନ୍‌ର ଅନ୍ଧାରୁଆ ଗଳି ଭିତରେ ତାର ସନ୍ଦେହ ଯେ ସତ୍ୟ ହେବାକୁ ଯାଉଛି, ସେ ଅନୁମାନ କରିପାରୁଥିଲା । ଶମ୍ଭୁ ଓ ମାଖନ୍‌ଲାଲଙ୍କ କଥାରୁ ହଠାତ୍ ତେର ବର୍ଷର ଝିଅ ରେବତୀ ତରୁଣୀଟିଏରେ ପରିଣତ ହୋଇଯାଇଥିଲା । ଶମ୍ଭୁର 'ତୋ ଫ୍ରକ୍‌ଟି ଖୋଲିବୁଟି' ବାକ୍ୟରେ ସେ ଜାଣି ଯାଇଥିଲା, ତାକୁ ଏଠାକୁ ଆଣିବାର ଉଦ୍ଦେଶ୍ୟ, ଆଉ ଜାଣିଥିଲା ମଧ୍ୟ ପ୍ରତିବାଦର କୌଣସି ମୂଲ୍ୟ ନାହିଁ । ତେଣୁ ଘର ଭିତରକୁ ଆସ୍ତେ ପଶିଲା ରେବତୀ । ତା ଆଗରୁ ସେ ଥରେ ଖାଲି ଚାହିଁଦେଲା ବନବାସୀକୁ, ତା ବାପାକୁ । ଏବେ ରେବତୀର ଆଖିରେ ତେର ବର୍ଷର ବାଳିକାଟିଏ ନ ଥିଲା, ତା ଆଖରେ ରବର କଣ୍ଢେଇ, ଚିଡ଼ିଆଖାନା କି ଚିମୁଟାଏ ଆଚାରର ଅଭିଳାଷ ନ ଥିଲା । ଏବେ ତା ଆଖିରେ ଥିଲା ଚିରନ୍ତନ ସ୍ତ୍ରୀ ଲୋକଟିଏ, ଯାହାର ବୟସ ଆଉ କେବେ ମାପିବା ଦରକାର ପଡ଼ିବ ନାହିଁ ।[୧୯] ରେବତୀ ଅନୁମାନ କରି ନେଇଥିଲା ତାର ବର୍ତ୍ତମାନର ଭାଗ୍ୟ ଓ ଭବିଷ୍ୟତର ରୂପରେଖକୁ । ହଠାତ୍ ନାରୀଟିଏରେ ପରିଣତ ହୋଇଥିବା ତେରବର୍ଷର କିଶୋରୀ ରେବତୀ ଏହି ହତଭାଗ୍ୟ ପୁରୁଷ ସମାଜକୁ କ୍ଷମା କରି ଦେଇଥିଲା । ତା'ମନରେ ନ ଥିଲା ଦୁଃଖ, କ୍ଷୋଭ କିମ୍ବା ଅନୁଶୋଚନା । କଳାହାଣ୍ଡିର ପିଲା ବିକ୍ରି ଘଟଣାହିଁ ଏହି ଗଳ୍ପର ପୃଷ୍ଠଭୂମି । ପିତାମାତାଙ୍କର ଆର୍ଥିକ ଦୁରବସ୍ଥା ଓ ପିଲାମାନଙ୍କ ଅସହାୟତା ଏହାର ମୌଳିକ ଉପାଦାନ ହେଲେହେଁ ରେବତୀର କଳାଗତ ମୂଲ୍ୟ ଅତୁଳନୀୟ । ଫକୀରମୋହନଙ୍କ 'ରେବତୀ' ପାଠକ ପ୍ରାଣକୁ ଯେଉଁ ପରିମାଣରେ ଆବିଷ୍ଟ ଓ ଆଚ୍ଛନ୍ନ କରେ, ତରୁଣକାନ୍ତିଙ୍କ ରେବତୀ ମଧ୍ୟ ସେହି ପରିମାଣରେ ଆବିଷ୍ଟ କରିଥାଏ ।

୧୯୯୪ ମସିହା 'ସମାବେଶ' ପୂଜା ସଂଖ୍ୟାରେ ପ୍ରକାଶିତ ଶଶି ରଥଙ୍କ ଉପନ୍ୟାସିକା 'ରେବତୀ' ଓଡ଼ିଶାର ବିଶିଷ୍ଟ ରାଜନୀତିଜ୍ଞ ସ୍ୱର୍ଗତ ବିଜୁ ପଟ୍ଟନାୟକଙ୍କ ନାରୀଜାଗରଣ ଓ ନାରୀ ପ୍ରଗତିର ମାନିଫେଷ୍ଟୋକୁ ଆଧାର କରି ରଚିତ । ଏଥିରେ ସର୍ବମୋଟ ସାତଜଣ ରେବତୀ ଦେଖାଯାଆନ୍ତି । ପ୍ରଥମ ରେବତୀ ବାସୁଦେବ ଦାସର ବିଧବା ପତ୍ନୀ, ଗୋଟିଏ ସନ୍ତାନର ଜନନୀ । ଆର୍ଥିକ ଦୁରବସ୍ଥା ତଥା ପୁଲିସ ଓ କୁଳିନେତାଙ୍କ ଅଶ୍ଳୀଳ ଆଚରଣରେ ମୁହ୍ୟମାନା । ଦ୍ୱିତୀୟ ରେବତୀ ଚାକିରିଆ ବାସୁଦେବ ଜେନାର ପତ୍ନୀ ଓ ଯୌତୁକ ପାଇଁ ବାରମ୍ବାର ନିର୍ଯାତିତା, ତୃତୀୟ ରେବତୀ ଶ୍ୟାମବନ୍ଧୁ ମିଶ୍ରଙ୍କ ସୁନ୍ଦରୀ, ଶିକ୍ଷିତା,

ବେକାରୀ କନ୍ୟା । ଚତୁର୍ଥ ରେବତୀ ମୂଳ ଲାଗୁଥିବା ଜଣେ ବୃଦ୍ଧା । ଏହି ଅସହାୟା ନାରୀମାନଙ୍କର ସମ୍ମାନ ଓ ବିକାଶ ପାଇଁ ପୁଷ୍ପଲଙ୍କ ବିଭିନ୍ନ ଯୋଜନା ପ୍ରଣୟନ କରିଛନ୍ତି । ରାଜନୀତିକ କ୍ଷମତାପ୍ରାପ୍ତି ଏବଂ ସ୍ୱଚ୍ଛଳ ଜୀବନଯାପନ ପାଇଁ ନିର୍ବାଚନ ଠାରୁ ଚାକିରି ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ସେମାନଙ୍କ ପାଇଁ କୋଡ଼ିଏ ପ୍ରତିଶତ ସ୍ଥାନ ସଂରକ୍ଷଣ କରାଯାଇଛି । ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ବିଭିନ୍ନ ଦାୟିତ୍ୱ ଦେବା ପାଇଁ ମନ୍ତ୍ରିପରିଷଦରେ ପୁଷ୍ପାଳକ ଦାବି କରିଛନ୍ତି । କ୍ଷମତା ହସ୍ତାନ୍ତର ଏବଂ ବିଭିନ୍ନ ଯୋଜନାରେ ନାରୀମାନଙ୍କୁ ସୁବିଧା ସୁଯୋଗ ପ୍ରଦାନ ପରେ ସେ ଭେଟିଥିଲେ ଅନ୍ୟ ତିନିଜଣ ରେବତୀଙ୍କୁ; ଯଥା - ରେବତୀ ବାରା, ରେବତୀ ମହାନ୍ତି ଓ ରେବତୀ ମର୍ଦ୍ଦରାଜଙ୍କୁ । ସେ ଅନୁଭବ କରିଛନ୍ତି ତାଙ୍କର ସମସ୍ତ ଯୋଜନା ବ୍ୟର୍ଥ ହୋଇଛି । ପୁରୁଷର ଦାସତ୍ୱରୁ ଏମାନେ ମୁକ୍ତ ନୁହନ୍ତି । ପୁରୁଷ ସମାଜ ପ୍ରତି କ୍ଷେତ୍ରରେ ବାଧାପ୍ରଦାନ କରି ସେମାନଙ୍କ ପ୍ରଗତିର ଦ୍ୱାରକୁ ରୁଦ୍ଧ କରିଦେଇଛନ୍ତି । ନାରୀ ସମାଜ ପ୍ରତି ପୁରୁଷସମାଜର ସମ୍ବେଦନା କେବଳ ଲୋକଦେଖାଣିଆ । ଇଚ୍ଛାଶକ୍ତିର ଅଭାବ ପୁଷ୍ପାଳକଙ୍କ ଏହି ରାଜନୀତିକ ମତବାଦକୁ ବିଡ଼ମ୍ବିତ କରିଛି । ରଥଙ୍କ ଉପନ୍ୟାସିକାଟି ପ୍ରଚାର ଧର୍ମୀ ହୋଇଥିବାରୁ ଏବଂ ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିବିଶେଷଙ୍କ ମତକୁ ଗୁରୁତ୍ୱ ପ୍ରଦାନ କରିଥିବାରୁ ତାର କଳାଗତ ମୂଲ୍ୟ ହରାଇଛି ।  ଦୃଷ୍ଟିଭଙ୍ଗୀରେ ବାସ୍ତବତା ରହିଛି ମାତ୍ର ତାର ପ୍ରତିଷ୍ଠା ପାଇଁ ଯେତିକି ଦୂରଦୃଷ୍ଟି ଆବଶ୍ୟକ ତାହା ରହିପାରି ନାହିଁ । ଶଶି ରଥଙ୍କ 'ଅନ୍ୟ ଜଣେ ରେବତୀ' ପ୍ରକାଶ ପାଏ 'ଝଙ୍କାର'ରେ ୧୯୯୭ ମସିହା ଜୁନ୍ ମାସରେ । ଉପନ୍ୟାସିକା 'ରେବତୀ'ଠାରୁ ଏହି ଗଳ୍ପଟି ଅଧିକ ପରିମାଣରେ ସାର୍ଥକ । ନାରୀର ଅସହାୟତା, ଶିକ୍ଷା, ନିର୍ଯାତନା, ସମସ୍ୟା ଓ ମୁକ୍ତି ସମ୍ପର୍କରେ ଏଥିରେ କେତେକ ସୂଚନା ରହିଛି । ଗଳ୍ପର ନାୟିକା ରେବତୀ ପ୍ରଥମରୁ ବିବାହିତା ଚାକିରିଆ ବାସୁଦେବର ସ୍ତ୍ରୀ । ଘରେ ଶାଶୁ, ଶଶୁର, ଦିଅର ଏବଂ ପରେ ଆସିଛି ଗୋଟିଏ ଯାଆ । ଏହି ଗଳ୍ପର ଅନ୍ୟତମ ବିଶିଷ୍ଟ ଚରିତ୍ର ଦିଗନ୍ତ ରେବତୀ ପ୍ରଥମରୁ ଶାଶୁଦ୍ୱାରା ନିର୍ଯାତିତା । ବିବାହର ସାତବର୍ଷ ପରେ ମଧ୍ୟ ଦୁଇ ଦୁଇ ଥର ସନ୍ତାନ ନଷ୍ଟଜନିତ କାରଣରୁ ପରିବାରକୁ ଗୋଟିଏ ସନ୍ତାନ ଦେଇପାରି ନାହିଁ । ସେ ତେଣୁ ଶାଶୁଙ୍କ ରୋଷର ଶିକାର । ବାସୁଦେବର ବିମଳ ପ୍ରେମ ଓ ସ୍ନେହ ପାଇ ସେ ଗର୍ବିତ । ଆଦର୍ଶ ବଧୂ ରୂପେ ଶାଶୁଙ୍କର ନିର୍ଯାତନା ସ୍ୱାମୀଙ୍କ ନିକଟରେ ପ୍ରକାଶ କରିବାକୁ କୁଣ୍ଠିତା । ସୁଖର ଦିନଗୁଡ଼ିକର ଅବସାନ ଘଟିଛି ବାସୁଦେବର ଦୁର୍ଘଟଣାଜନିତ ମୃତ୍ୟୁରେ । ଏହାପରେ ଶାଶୁଙ୍କର କଟୂକ୍ତି ଶାଣଦିଆ ତରବାରି ପରି ବିଦ୍ଧ କରିଛି ତାର ଅନ୍ତରକୁ । ଶାଶୁଙ୍କ ଗାଳି ''ଆଲୋ ହେ ମହାରାଣୀ, ଆଲୋ ହେ ରେବତୀ, ରେବୀ, ଜୁଇଗାଡ, ଚୁଲି ପାଉଁଶ''କୁ ନୀରବରେ ସହିଯାଇଛି । ଦିଗନ୍ତର ପ୍ରଚେଷ୍ଟାରେ ବାସୁଦେବର ଚାକିରି ରେବତୀକୁ ମିଳିଯିବା ପରେ ଆଶା କରିଥିଲା, ଯନ୍ତ୍ରଣାର ଅବସାନ ଘଟିବ । ମାତ୍ର ତାହା ହୋଇ ନାହିଁ । ଅଫିସ ଓ ଘରର ସମସ୍ତ କାର୍ଯ୍ୟ ସତ୍ତ୍ୱେ ତା ପାଇଁ ଶାଶୁଙ୍କ ହୃଦୟରେ ସାମାନ୍ୟତମ କରୁଣା ସୃଷ୍ଟି ହୋଇ ନାହିଁ । ଦିଅରର

ବିବାହ ପ୍ରସ୍ତାବ ଶୁଣି ଜଣେ ସାଥୀ ମିଳିଯିବ ବୋଲି ଖୁସି ହୋଇଥିଲା । ମାତ୍ର ବିବାହ ସମୟରେ ସେ ବିଧବା ହୋଇଥିବାରୁ ତା ଉପରେ ଯେଉଁ ମାନସିକ ନିର୍ଯାତନା କରାଗଲା, ସେହି ଦୁଃଖରେ ସେ ଅଫିସ୍ ଚାଲିଯାଇଥିଲା । ଦିଗନ୍ତ ବାସୁଦେବର ବନ୍ଧୁଭାବରେ ତାର କିଛି ଦୁଃଖକୁ ଆପଣେଇ ନେବାକୁ ଚେଷ୍ଟା କରିଥିଲା । ବିବାହ ପରେ ଯାଆର କ୍ରୁର ବ୍ୟବହାର ତାକୁ ଅଧିକ କ୍ଷତାକ୍ତ କରିଥିଲା । ଦିଅରର ସନ୍ତାନକୁ କୋଳ କରିବାକୁ ଯାଇ ସେ କଦର୍ଯ୍ୟ ବ୍ୟବହାର ପାଇଥିଲା ଶାଶୁ ଏବଂ ଯାଆଠାରୁ । ଅସହ୍ୟ ପରିବେଶରୁ ମୁକ୍ତି ପାଇଁ ଦିଗନ୍ତକୁ ଅନୁରୋଧ କରିଥିଲା ଭଡ଼ା ଘରଟିଏ ଠିକ୍ କରି ଦେବା ପାଇଁ । ଦିଗନ୍ତର ସହାନୁଭୂତି ମଧ୍ୟରେ ସେ ଅନୁଭବ କରିଥିଲା ବାସୁଦେବର ସ୍ନେହ ଓ ପ୍ରେମକୁ । ଦିଗନ୍ତର ମାତୃହରା ସନ୍ତାନଟି ପ୍ରତି ତା ହୃଦୟରେ ଶୂନ୍ୟସ୍ଥାନଟିଏ ମଧ୍ୟ ସୃଷ୍ଟି ହୋଇ ଯାଇଥିଲା । ସେଦିନ ଅସହାୟ 'ରେବତୀ'କୁ ପ୍ରଶ୍ନ କରିଥିଲା ଦିଗନ୍ତ "ତୁମେ ଏଇ ଘରେ ରହିପାରିବ ! ଛୋଟୁର ମା ହୋଇ ? x x x ସେଦିନ ତୁମେ କହୁଥିଲ ନା, ମୋତେ ଦେଖିଲେ, ବାସୁକୁ ଦେଖିଲା ପରି ତୁମର ମନେ ହୁଏ । ମୋତେ ବାସୁସ୍ଥାନରେ, ରୂପରେ ଗ୍ରହଣ କରିବାରେ ତୁମର କୁଣ୍ଠା ଅଛି କି ?"[୨୦] ଶଶୁରଙ୍କ ଅନୁମତି ପାଇଁ ଚାଲିଯାଇଥିଲା ରେବତୀ ଏବଂ ସେଠାରୁ ଫେରିଲାବେଳେ ତାର "ମନ ଥିଲା ତୁଳା ପରି ହାଲ୍କା ଓ ଶରୀର ଥିଲା ମେଘମୁକ୍ତ ଆକାଶ ପରି ପରିଚ୍ଛନ୍ନ ।" ଦ୍ୱିତୀୟ ବିବାହ କରି ହୁଏତ ରେବତୀ ସାହସିକତାର ପ୍ରମାଣ ଦେଇଛି; ମାତ୍ର ଅନ୍ୟାନ୍ୟ ରେବତୀ ପରି ସେ ମଧ୍ୟ ସମୟର ଅସହାୟତାରେ ବନ୍ଦୀ । ସେ ସ୍ୱାବଲମ୍ବନଶୀଳା ହୋଇ ପାରି ନାହିଁ, ନିଜର ଚାକିରି ସତ୍ତ୍ୱେ । ସେଥିପାଇଁ ସେ ଚାହିଛି ଏକ ଆଶ୍ରୟ । ଦିଗନ୍ତ ହୋଇଛି ତାର ଆଶ୍ରୟଦାତା । ନିର୍ଯାତନା ଓ ଅନ୍ୟାୟର ପ୍ରତିରୋଧ କରିବାର ଶକ୍ତି ତାର ନାହିଁ । ଶେଷ ପର୍ଯ୍ୟନ୍ତ ସେ ନିଜ ଗୋଡ଼ରେ ଠିଆ ହେବାର ସାମର୍ଥ୍ୟ ଲାଭ କରିପାରି ନାହିଁ । ତେଣୁ ଆଗାମୀ ଭବିଷ୍ୟତ ପାଇଁ ଅନ୍ୟ ରେବତୀମାନଙ୍କ ପାଇଁ ଶଶି ରଥଙ୍କ ବକ୍ତବ୍ୟ ସ୍ପଷ୍ଟ ହୋଇପାରି ନାହିଁ ।

ବ୍ରଜେନ୍ଦ୍ରନାଥ ଗିରିଙ୍କ 'ରେବତୀ' ଗଳ୍ପଟି ପ୍ରକାଶ ପାଏ 'ପ୍ରଜାତନ୍ତ୍ର ସାପ୍ତାହିକୀ' ୧୧-୧୭ ମଇ ୧୯୯୭ ମସିହାରେ । ରେବତୀ ସମ୍ପର୍କରେ ଗାଳ୍ପିକଙ୍କର ବକ୍ତବ୍ୟ ହେଉଛି, "ଆମ ସମାଜରେ ରେବତୀ ବାରମ୍ବାର ଜନ୍ମ ନେଉଛି ଓ କିଛିନା କିଛି ଅନ୍ଧବିଶ୍ୱାସର ଶିକାର ହେଉଛି । ଏଣୁ ସେମିତି ଏକ ଚରିତ୍ରକୁ ଚିତ୍ରିତ କରିବାର କଳ୍ପନା ଜାଗ୍ରତ ହେଲାବେଳକୁ ସ୍ୱତଃ ଆଖି ଆଗରେ ଦିଶିଯାଏ ଫକୀରମୋହନଙ୍କ 'ରେବତୀ' ସତେ ଯେମିତି ସେ ଆଗରେ ଚାଲିଛି ବାଟ କଢ଼େଇ କଢ଼େଇ ।"[୨୧] ବ୍ରଜେନ୍ଦ୍ରନାଥଙ୍କ 'ରେବତୀ' ଫକୀରମୋହନଙ୍କ 'ରେବତୀ'ର କାର୍ବନ କପି । ପାର୍ଥକ୍ୟ ରହିଛି କେବଳ ସମୟ ଓ ପରିବେଶର । ରେବତୀର ବାପା ଶ୍ୟାମବନ୍ଧୁ ଜଣେ ସରକାରୀ କିରାଣି । ପରିବାରରେ ତାଙ୍କର ସ୍ତ୍ରୀ, ବୁଢ଼ୀ ମା' ଓ ଏକମାତ୍ର କନ୍ୟା ରେବତୀ । କିରାଣିରୁ ଉଠି ବଡ଼ବାବୁ ସେ । ଲାଞ୍ଚ ନେବା ତାଙ୍କ ଦୃଷ୍ଟିରେ ଅପରାଧ

ନୁହେଁ । ଅଧ୍ୟାପକ ବାସୁଦେବ ରେବତୀର ଟିଉସନ ମାଷ୍ଟର । ବାସୁ ମଧ୍ୟ ଶ୍ୟାମବନ୍ଧୁଙ୍କ ପରି କରଣ । ଏକଦା ଲନ୍‌ରେ ବସି ବାସୁ ରେବତୀକୁ ପାଠ ପଢ଼ାଇବା ସମୟରେ ଶ୍ୟାମବନ୍ଧୁ ବାସୁକୁ ରେବତୀକୁ ସ୍କୁଟର ଚାଳନା ଶିଖାଇ ଦେବାକୁ କହିଛନ୍ତି । ଆନନ୍ଦରେ ରେବତୀ ଘରେ ଏହା ପ୍ରଚାର କରିବାରୁ ଜେଜୀମା କହିଛି - ''ସ୍କୁଟର କଣ ଲୋ ! ଯାହା ଦି'ଅକ୍ଷର ପଢ଼ିଲୁ, ଏଣିକି ରନ୍ଧାବଢ଼ା ଶିଖ, ପିଠା ପଣା କରି ଶିଖ । ଝୋଟିଦିଆ ଶିଖ୍ । ଦହିମୁହାଁ ଶିଖ । ସ୍କୁଟର କ'ଣ ହେବଲୋ ।'' ରେବତୀ କିନ୍ତୁ ସ୍କୁଟର ଶିଖିଲା । ଦିନେ ଖାଇଲାବେଳେ ବୁଢ଼ୀମା' ଶ୍ୟାମବନ୍ଧୁଙ୍କୁ ବାସୁର ଜାତି କଥା ପଚାରିବାରୁ ସେ କହିଲେ, ଭଲ କରଣ । ''ରେବତୀ ପାଖରେ ବସି ଖାଉଥିଲା । ସେଇ ଦିନରୁ ସେ କଣ ବୁଝିଲା କେଜାଣି, ବାସୁଦେବ ପଢ଼ାଇବାକୁ ଆସିଲେ ଆଉ ତା ମୁହଁକୁ ଚାହିଁଲା ନାହିଁ । କେତେବେଳେ ତୁନି ହୋଇ ପଢୁଥିଲା ତ କେତେବେଳେ ଖାଲି ହୁଁ ମାରୁଥିଲା । ପୁଣି କେତେବେଳେ ଦୁଇ ଓଠକୁ ଚାପି ହସ ଲୁଚାଉଥିଲା ତ କେତେବେଳେ ଚଟାଣରେ ଅଯଥାରେ ନଖରେ ଗାର ଟାଣୁଥିଲା ।'''' ସ୍କୁଟର ଦୁର୍ଘଟଣାରେ ଶ୍ୟାମବନ୍ଧୁ ଓ ତାଙ୍କ ସ୍ତ୍ରୀଙ୍କ ମୃତ୍ୟୁ ପରେ ଅଫିସ ତହବିଲ ତୋସରପାତ ଅଭିଯୋଗରେ ତାଙ୍କର ଜମିବାଡ଼ି, ବ୍ୟାଙ୍କ୍ ବାଲାନ୍‌ସ, ଜର୍ସିଗାଈ ନିଲାମ କରି ନିଆଗଲା । ବାସୁଦେବର ସାହାଯ୍ୟ ସହଯୋଗରେ ବୁଢ଼ୀମା' ଓ ରେବତୀ ବଞ୍ଚିଲେ ସତ, କିନ୍ତୁ ତାଠାରୁ ଗୋଟିଏ ପଇସା ମଧ୍ୟ ନିଅନ୍ତି ନାହିଁ । ରେବତୀର ସ୍କୁଟରଚଢ଼ା ସମସ୍ତ ଦୁର୍ଗତିର କାରଣ ବୋଲି ଜେଜୀମା'ର ଧାରଣା ହୋଇଛି । ପରୀକ୍ଷା ଖାତା ମୂଲ୍ୟାୟନ ପାଇଁ ବାସୁଦେବ ଦୂର କଲେଜ ଯିବା ଏବଂ ଦୁର୍ଘଟଣାରେ ତାର ମୃତ୍ୟୁ ଘଟଣାରେ ଫକୀରମୋହନଙ୍କ ଅନୁରୂପ ଦୁର୍ଦ୍ଦଶା ହୋଇଛି ବ୍ରଜେନ୍ଦ୍ରଙ୍କ 'ରେବତୀ'ର । ଜ୍ୱର ଓ ସନ୍ନିପାତରେ ପୀଡ଼ିତା ରେବତୀ ମୁହଁରେ ଆହାର ଦେବା ଉଦ୍ଦେଶ୍ୟରେ ଜେଜୀମା ସୁନା କାଚ ପଟେ ବିକ୍ରି କରି ଫଳ ସହିତ ଘରକୁ ଫେରି ଦେଖେ ରେବତୀର ଜୀବନହୀନ ଶରୀର ଓ ସେହିଠାରେ ତାର ମଧ୍ୟ ଜୀବନ ନାଟକର ଅବସାନ ଘଟେ । ବ୍ରଜେନ୍ଦ୍ରଙ୍କ 'ରେବତୀ'ରେ ଆଦୌ ବୈଚିତ୍ର୍ୟ ନାହିଁ । ପରିବର୍ତ୍ତିତ ସମୟାନୁଯାୟୀ ସେ ରେବତୀକୁ ସ୍କୁଟର ଚଢ଼ା ଶିଖାଇଛନ୍ତି, ବାସୁଦେବକୁ ଅଧ୍ୟାପକଟିଏ କରିଛନ୍ତି ଓ କିରାଣି ଶ୍ୟାମବନ୍ଧୁଙ୍କୁ ସିନେମା ଦେଖାଇବାର ଅଭ୍ୟାସ କରାଇଛନ୍ତି । ଯେଉଁ ସମୟରେ ରେବତୀ ଜନ୍ମ ନେଲେ ମଧ୍ୟ ଅସହାୟତାକୁ ସାଥୀ କରି ମୃତ୍ୟୁବରଣ କରିବା ତାର ଭବିତବ୍ୟ ବୋଲି ଗାଳ୍ପିକ ସୂଚାଇଛନ୍ତି । 'ନୂଆ ବୋତଲରେ ପୁରୁଣା ମଦ' - ଏହାହିଁ ହୋଇଛି ବ୍ରଜେନ୍ଦ୍ର ଗିରିଙ୍କ 'ରେବତୀ'ର କଥାନକ ।

ଅଭୟ ବାରିକଙ୍କ 'ରେବତୀ' ଭିନ୍ନ ସ୍ୱାଦ ଓ ଭିନ୍ନ ରୁଚିର । ଏହା ପ୍ରଥମେ ୧୯୯୭ ମସିହା ସେପ୍ଟେମ୍ବର ମାସ 'କଥା'ରେ ଆତ୍ମପ୍ରକାଶ କରେ । ରେବତୀ ସମ୍ପର୍କରେ ତାଙ୍କର ସ୍ୱଷ୍ଟୋକ୍ତି ହେଉଛି, ''ଫକୀରମୋହନଙ୍କ 'ରେବତୀ' ମୋ ଅନ୍ତଃସତ୍ତା ଭିତରେ ପ୍ରବିଷ୍ଟ ହୋଇ

ନ ଥିଲେ ବା ମୋ ଚେତନା ଜଗତକୁ କିଛି କାଳ ଧରି ଆବୋରି ବସି ନ ଥିଲେ, ଭାବୁଛି ମୋ 'ରେବତୀ'ର ଜନ୍ମ ହୋଇ ନ ଥାନ୍ତା । ତେବେ 'ରେବତୀ'ର ଅନ୍ତିମ ପର୍ଯ୍ୟାୟରେ ରେବତୀର ଜେଜୀମା' ଚରିତ୍ରଟି ମୋତେ କାହିଁକି ରେବତୀଠୁଁ ବେଶି ଚହଲେଇ ଦେଇଥିଲା ଆଦ୍ୟ ପଠନଠୁଁ, ସେଇଥିପାଇଁ ମୋ ରେବତୀର ଚାରିତ୍ରିକ ଉନ୍ମେଷର ଚାବିକାଠି ମୁଁ ତାରି ହାତରେ ଧରେଇ ଦେଇଛି ।''[୨୩] ଅନ୍ୟ ରେବତୀଠୁଁ ଅଭୟଙ୍କ ରେବତୀ ଯେ ଟିକେ ନିଆରା ତାହା ସହଜରେ ବାରି ହୋଇପଡ଼େ । ରେବତୀର ବାପା ଶ୍ୟାମବନ୍ଧୁ ସରପଞ୍ଚ ନିର୍ବାଚନରେ ସମସ୍ତ ସଂପତ୍ତି ହରାଇଛନ୍ତି । ଶେଷ ନିର୍ବାଚନରେ ମାତ୍ର ତିନିଖଣ୍ଡ ଭୋଟରେ ହାରିବାରୁ ହାର୍ଟ ଆଟାକ୍‌ରେ ପ୍ରାଣତ୍ୟାଗ କରିଛନ୍ତି । ସେହି ଚିନ୍ତାରେ ରେବତୀର ମା ମଧ ଯାଇଛନ୍ତି । ବାସୁଦେବକୁ ଗାଳ୍ପିକ ଜଣେ ସୁବିଧାବାଦୀ ରାଜନୀତିକ ନେତା ରୂପେ ଚିତ୍ରଣ କରିଛନ୍ତି । ସମୟ ଓ ସୁଯୋଗକୁ ଆଖିରେ ରଖି ଦଳ ବଦଳ କରିବା ତାର ଧର୍ମ । ରେବତୀ ରାଜଧାନୀରେ ସ୍ନାତକୋତ୍ତର ଡିଗ୍ରୀ ହାସଲ ପରେ ଓକିଲାତି ପାସ୍ କରିଛି । ବାସୁଦେବର ସହାୟତାରେ ଗ୍ରାମ ନିକଟରେ ଥିବା ଘରୋଇ କଲେଜରେ ଅଧାପିକାଟିଏ ହୋଇଛି । ରାଜଧାନୀରେ ଅଧ୍ୟୟନ ସମୟରେ ତାର ରାଜନୀତିକ ଚେତନା ଜାଗ୍ରତ ହୋଇଛି । ଏହି ସୁଯୋଗରେ ସେ ମଧ କେତେକ ରାଜନୈତିକ ନେତାଙ୍କର ସାହଚର୍ଯ୍ୟ ଲାଭ କରି ଭବିଷ୍ୟତ ରାଜନୀତି ପାଇଁ ଏକ ମୂଳଦୁଆ ପକାଇ ପାରିଛି । ରେବତୀକୁ ଲାଭ କରିବା ପାଇଁ ପ୍ରଥମରୁ ହିଁ ଉତ୍ସୁକ ହୋଇଥିଲା ବାସୁଦେବ । ବାସୁଦେବର ଚିନ୍ତା ରେବତୀକୁ ଯେ ଆଦୌ ଗ୍ରାସ କରି ନାହିଁ, ତାହା ନୁହେଁ, ଅଧ୍ୟୟନ ଯୋଗୁଁ ସେ ଜାଣି ଜାଣି ନିଜକୁ ଏଥିରୁ ଦୂରେଇ ରଖିଛି । ବାସୁଦେବ ପ୍ରତି ରେବତୀ ସ୍ନେହ ଓ ଭକ୍ତି ପ୍ରଦର୍ଶନରେ ଆଦୌ କାର୍ପଣ୍ୟ କରି ନାହିଁ । ଅଥଚ କୌଣସି କାରଣରୁ ମନାନ୍ତର ଯୋଗୁଁ ବାସୁଦେବ ରେବତୀର ଚରିତ୍ର ସଂହାର କରିଛି । ନିର୍ବାଚନରେ ପରାଜିତ ହୋଇ ପ୍ରତିକ୍ରିୟାଶୀଳ ହୋଇଛି । ଏହା ସତ୍ତ୍ୱେ ବାସୁଦେବ ପ୍ରତି ରେବତୀ ହୃଦୟରେ ଘୃଣା କିମ୍ବା ଦ୍ୱେଷ ନାହିଁ । ସଭାରେ ଖୋଦ୍ ମୁଖ୍ୟମନ୍ତ୍ରୀଙ୍କ ଉପସ୍ଥିତିରେ ବାସୁଦେବକୁ ସେ ନିଜର ଭାଇ ଓ ପ୍ରଥମ ଗୁରୁର ମର୍ଯ୍ୟାଦା ଦେଇଛି । ବିରକ୍ତିରେ ମୁଖ୍ୟମନ୍ତ୍ରୀ ସଭାମଞ୍ଚ ପରିତ୍ୟାଗ କରିଛନ୍ତି । ସାମ୍ପ୍ରତିକ ସମାଜରେ ଶିକ୍ଷା ସମସ୍ୟା ଓ ଘରୋଇ କଲେଜ ଅଧାପକ ଏବଂ ଅଧାପିକାଙ୍କ ଶୋଚନୀୟ ଅବସ୍ଥା ସମ୍ପର୍କରେ ରେବତୀ ତା ବକ୍ତବ୍ୟରେ ଯାହା ପ୍ରକାଶ କରିଛି, ତାହା ବହୁପରିମାଣରେ ସତ୍ୟ । ଶିକ୍ଷାର ଗୁଣାତ୍ମକ ବିକାଶ ନ ହୋଇପାରିଲେ ସାମାଜିକ ପ୍ରଗତି ବାଧାପ୍ରାପ୍ତ ହେବାର ସମ୍ଭାବନାକୁ ରେବତୀ ହୃଦୟଙ୍ଗମ କରିପାରୁଥିବା ସମୟରେ ଖୋଦ୍ ମୁଖ୍ୟମନ୍ତ୍ରୀ ଏହି ସମସ୍ୟାର ଗୁରୁତ୍ୱ ଉପଲବ୍ଧି କରି ନ ପାରିବା ଦୁଃଖଦ ଘଟଣା । ରାଜନୀତିର ଅର୍ଥ ନୁହେଁ ବିରୋଧୀ ଦଳର ଚରିତ୍ର ସଂହାର ଏବଂ ବ୍ୟକ୍ତିଗତ ସ୍ୱାର୍ଥର ପରିପୂରଣ । ସାମ୍ପ୍ରତିକ ରାଜନୀତିର କଳୁଷିତ ବାତାବରଣ ରେବତୀକୁ ରୁଦ୍ଧଶ୍ୱାସ କରିଛି । ଲୋକପ୍ରତିନିଧି ଭାବରେ ନିଜ ଦାୟିତ୍ୱ ତୁଲାଇବାର ସ୍ୱାଧୀନ

ଅଧିକାର ପାଇ ନ ଥିବାରୁ ସେ ଏଥିରୁ ମୁକ୍ତି ଚାହିଛି । ସେହି ଅବଶୋଷ ତାକୁ ବୁଦ୍ଧି ଦେଇଥିବା ସମୟରେ ଜେଜୀମା କୋଳରେ ମୁଣ୍ଡ ଲୁଚାଇ ଦେଇ ଅନୁଶୋଚନାର ଅଶ୍ରୁ ଢାଳିଛି, ଆଉ କିଛି ସମୟ ପାଇଁ ବାସୁଭାଇର ଅଭାବ ଅନୁଭବ କରିଛି । ଶେଷ ସମୟରେ ଜେଜୀମା'ର ବିୟୋଗ ତାକୁ ଅସହାୟା କରିଛି । ଏହି ଗଳ୍ପର ଅନ୍ୟତମ ବିଶେଷତ୍ୱ ହେଉଛି ସାମ୍ୱାଦିକଙ୍କ ପ୍ରଶ୍ନ ଛଳରେ ଜେଜୀମା'ଙ୍କ ବିଷୟ କଥନ । ଅଭୟଙ୍କ ଜେଜୀମା ଅନ୍ୟ 'ଜେଜୀମା'ଙ୍କ ପରି ଅନ୍ଧବିଶ୍ୱାସ ଓ ସାମାଜିକ କୁସଂସ୍କାରର ବଶବର୍ତ୍ତୀ ନୁହେଁ । କୌଣସିଠାରେ ନାରୀଶିକ୍ଷାକୁ ବିରୋଧ କରି ନାହିଁ କିମ୍ବା ଶିକ୍ଷା ଲାଭ ସମୟରେ ନାରୀର ବିବାହକୁ ଉଚିତ ମନେ କରି ନାହିଁ । ସାମ୍ପ୍ରତିକ କଳୁଷ ରାଜନୀତିକୁ ସେ ହୃଦୟର ସହିତ ଗ୍ରହଣ କରିପାରି ନାହିଁ । ସେ ବିଂଶ ଶତାବ୍ଦୀର ଯଥାର୍ଥ ଜେଜୀମା । ରେବତୀର ଚରିତ୍ର ସମ୍ପର୍କୀୟ କୁତ୍ସାରଟନାକୁ ସେ ଖଳ ଲୋକଙ୍କ ଦୁଷ୍ଟ ପ୍ରକୃତି ଭାବରେ ଗ୍ରହଣ କରିଛି । ରେବତୀ ପାଇଁ ତା ଅନ୍ତରରେ ସ୍ନେହ, ପ୍ରେମ ଓ ସମ୍ବେଦନା ଭରପୂର । ନାତୁଣୀର ପ୍ରଗତିରେ ବେଶ୍ ଉତ୍‌ଫୁଲ୍ଲିତ । ମାତ୍ର ସମସ୍ତ କ୍ଷମତା ଓ ସମ୍ମାନକୁ ରେବତୀ ଜାଣି ଜାଣି ପାଦରେ ଏଡ଼ାଇ ଦେଇଥିବାରୁ ସେ ଦୁଃଖିତ । ତେଣୁ ରାତିରେ ଜେଜୀମା କହୁଥିଲା - ''ରେବଲୋ, ତୋର ସେ ନିଆଁ ପାଉଁଶ ଗୁଣ ଜମାରୁ ଗଲାନିଲୋ । ତୋର କି ଦର୍କାର ଥିଲା ସେ ଅକାଳ କୁଷ୍ମାଣ୍ଡ ବାସୁଆଟାକୁ ଏତେ ଟେକିବାର ? କଅଣ ପାଇଲୁ ସେଥିରୁ ? କେତେ କିଏ କୁଆଡ଼େ ଆଇଥେଲେ, ତୋ ଭାଷ୍ୟ ଟିକେ ଶୁଣିଥାନ୍ତେ । ତୁ ଆଉ କୁଆଡୁ କୋଉଠୁ କିଛି ପାଇଲୁନି, ସେଇ ନିଆଁ ଗୋଜିଣାଠୁଁ ଆରମ୍ଭ କଲୁ । ତା'ଠି ସାରିଲୁ । ବଡ଼ା ତରକାରିକୁ ପୋଡ଼ିଦେଲୁ ଲୋ ଟୋକୀ ! ବୋପା ଯାହା ପାରି ନ ଥିଲା, ତା ତ ପାଇଥେଲୁ । ହାତଛଡ଼ା କରିଦେଲୁ ସବୁ ।''[୨୪] ସେହି ଆଘାତ ହିଁ ଜେଜୀମା ମୃତ୍ୟୁର କାରଣ । ଏହା ସତ୍ତ୍ୱେ ସମୟର ଅସହାୟତାରୁ ତାଙ୍କ ରେବତୀ ମୁକ୍ତ ନୁହେଁ । ସାମ୍ପ୍ରତିକ ରାଜନୀତିରେ ମୂଲ୍ୟବୋଧ ହ୍ରାସ ଯୋଗୁଁ ନାରୀ ଯେତେ ଶିକ୍ଷିତ ଓ ପ୍ରଗତିଶୀଳ ହେଲେ ମଧ୍ୟ ପୁରୁଷ କାମନାର ଶିକାର ହେବାକୁ ବାଧ୍ୟ । କନ୍‌ଫିଡେନସିଆଲ ଚାମ୍ବରରେ ରେବତୀମାନେ ଏମିତି କ୍ଷମତାଧାରୀଙ୍କ ନିକଟରେ ନିଜକୁ ସମର୍ପି ଦେବାକୁ ବାଧ୍ୟ ହୁଅନ୍ତି । ଅଭୟଙ୍କ ମନ୍ତ୍ରୀ ରେବତୀର ମଧ୍ୟ ଏପରି ତିକ୍ତ ଅନୁଭୂତି ରହିଛି । ନାରୀଟିଏ ଯାହା ହେଲେ ବି ଏବଂ ଯେତେ ଶିକ୍ଷା ଓ କ୍ଷମତାର ଅଧିକାରୀ ହେଲେ ବି ସତେ ଯେପରି ପୁରୁଷର ଉପଭୋଗ ପାଇଁ ତାର ସୃଷ୍ଟି । ରାଜନୀତିର ଏହି ପଲ୍ୱଳ ଭିତରେ ରେବତୀମାନଙ୍କର ମୁକ୍ତି କାହିଁ ? ରାଜନୀତିର ସେହି କୃତ୍ରିମ ଓ ସମ୍ମାନହାନିକର ଖୋଳରୁ ମୁକ୍ତି ଲାଭ କରିଥିବାରୁ ରେବତୀ ଆଶ୍ୱସ୍ତ । ତା ଭାଷାରେ - ''ସେ ଯେମିତି ଗୋଟେ ରାକ୍ଷସର ପାଟିଭିତରୁ ଖସି ଆସିଛନ୍ତି । ଗୋଟେ ଝିଟିପିଟିର ଲାଳୁଆ ଜିଭ ଭିତରୁ ସେ ଯେମିତି ମୁକୁଳି ଆସିଛି ଛୋଟ କୀଟଟିଏ ଭାବରେ ।''[୨୫] ଅଭୟଙ୍କ ରେବତୀ ପରିବର୍ତ୍ତିତ ସମୟଧାରାରେ ନିଜ ପାଇଁ ଗୋଟିଏ ସ୍ୱତନ୍ତ୍ର ବୃତ୍ତ ରଚନା କରିବାକୁ ସମର୍ଥ ହୋଇପାରିଛି ।

୧୪ । ୧ । ୧୯୮୮ 'ସମ୍ବାଦ'ରେ ପ୍ରକାଶ ପାଇଥିବା ଜ୍ୟୋତ୍ସ୍ନା ରାଉତରାୟଙ୍କ 'ରେବତୀର ନୂଆ ମୁହଁ' ଗଳ୍ପରେ ରେବତୀ ସେହି ମାନସିକ ଅସହାୟତାରୁ ସଂପୂର୍ଣ୍ଣ ମୁକ୍ତ ନୁହେଁ । ତାଙ୍କ 'ରେବତୀ' ଆଖିରେ ମଧ୍ୟ ପାଠ ପଢ଼ିବାର ସ୍ୱପ୍ନ ଥିଲା । ଭାବୀ-ସ୍ୱାମୀ ଏବଂ ଶାଶୁଙ୍କ ସମକ୍ଷରେ ଶିକ୍ଷକ-ବାପା (ଯିଏ ଶିକ୍ଷାର ମର୍ଯ୍ୟାଦା ଜାଣନ୍ତି) କହିଥିଲେ, ''ପିଲାଟା ବି.ଏ. ପରୀକ୍ଷା ଦେଇସାରୁ, ଦେଖିବା ।'' ଭାବୀ-ଅଧ୍ୟାପକ-ସ୍ୱାମୀ ସେତେବେଳେ କହିଥିଲେ, ''ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ ଆଜ୍ଞା; ରେବତୀ ବି.ଏ. ପରୀକ୍ଷା ନିଶ୍ଚୟ ଦେବ । ମୁଁ ତାକୁ ପଢ଼େଇବି, ସବୁପ୍ରକାର ସାହାଯ୍ୟ କରିବି ।''[୨] ସେତେବେଳେ ଶାଶୁ ଏବଂ ଭାବୀ-ସ୍ୱାମୀଙ୍କ ଆଖିରେ ଥିଲା ରେବତୀର ଆଖିଝଲସା ରୂପ । ଅଧ୍ୟାପକ ଜ୍ୱାଇଁଙ୍କ କଥାରେ ବିଶ୍ୱାସ କରି (ଅଧ୍ୟାପକମାନେ ଅନ୍ତତଃ ଶିକ୍ଷାର ମର୍ଯ୍ୟାଦା ଜାଣିଥାନ୍ତି ବୋଲି ଆଶା କରାଯାଇପାରେ) ଶିକ୍ଷକ-ପିତା ବିବାହ ଦେଇଥିଲେ ରେବତୀକୁ । ସମୟକ୍ରମେ ରେବତୀ ଅନ୍ତଃସତ୍ତ୍ୱା ହେଲା ପରେ ସ୍ୱାମୀ ଆଶ୍ୱାସନା ଦେଇଥିଲେ, ''ସନ୍ତାନ ଜନ୍ମ ହେଲା ପରେ ବୋଉ ଘର ଦେଖିବ, ପିଲା ଦେଖିବ, ତମେ ପରୀକ୍ଷା ଦେଇ ଦେବ ।'' ବିଶ୍ୱାସକୁ ପୁଞ୍ଜିକରି ବଞ୍ଚିଥିଲା ରେବତୀ । ସନ୍ତାନଟି ଛଅମାସର ହେଲା ପରେ ମଧ୍ୟ ତା' ପାଠ କଥା କେହି ନ ଉଠାଇବାରୁ ସେ ବାଧ୍ୟ ହୋଇ ଉତ୍‌ଥାପନ କରିଥିଲା । ବିସ୍ଫୋରଣ ଘଟିଥିଲା ଘରେ । ଶାଶୁ କହିଥିଲେ, ''ଆହୁରି ପାଠ ପଢ଼ିବୁ ନିଆଁଲାଗି ? ଘର ସଂସାର କରି, ପିଲାଛୁଆର ମା ହେଲା ପରେ ପାଠପଢ଼ା । ରୋଷେଇ କରିବ କିଏ, ଘର ସମ୍ଭାଳିବ କିଏ ?'' ସ୍ୱାମୀ ମଧ୍ୟ ଶାଶୁଙ୍କ କଣ୍ଠରେ କଣ୍ଠ ମିଳେଇ କହିଲେ, ''ପାଠ ..... ଏଠି କଣ ବାପା ଜାଗିରି ପଡ଼ିଛି । ଖାଇ ପିଇ ପାଠ ପଢ଼ିବ । ପାଠ ପଢ଼ିବା ନାଁ ଧରିଲେ ମୋ ଘରୁ ବାହାରି ଯା -''[୨] । ଏହା ସତ୍ତ୍ୱେ ସେ ମାତ୍ର ଦୁଇମାସ ସମୟ ଚାହିଁଥିଲା । ପୁଅ ସହିତ ବାପାଙ୍କ ନିକଟକୁ ଯିବାର ପ୍ରସ୍ତାବ ଦେଇଥିଲା । ବୋହୂକୁ ଦାସୀ ଆସନରେ ଦେଖୁଥିବା ସ୍ୱାମୀ ଓ ଶାଶୁ ଏହାକୁ କିପରି ସହଜରେ ବା ଗ୍ରହଣ କରିପାରନ୍ତେ । ଶାଶୁ କହିଲେ, ପୁଅକୁ ନେବୁ ପୋଡ଼ାମୁହିଁ, ଏକା ଯା - ମୋ ପୁଅର ପୁଅକୁ ନେବୁ ? ତୋର ଏଡ଼େ ସାହସ ? ଭାତ ଥିଲେ କେତେ କୁଆ ଆସିବେ - ସ୍ୱାମୀ ମଧ୍ୟ କହିଲେ, ପୁଅକୁ ଛଡ଼ାଯିବ ନାହିଁ - ଏକୁଟିଆ ଯାଆ । ସମୟର ଆହ୍ୱାନକୁ ଶୁଣିପାରିଥିବା ରେବତୀ ଶପଥ ନେଇଥିଲା ଏହି ବାଧାକୁ ଅତିକ୍ରମ କରିଯିବାକୁ । ଏଠି ନାରୀକୁ କେହି ସ୍ୱାଧୀନ ଭାବରେ ବଞ୍ଚିବାକୁ ଦିଅନ୍ତି ନାହିଁ । ତା ବ୍ୟକ୍ତିତ୍ୱର ବିକାଶରେ ସହାୟତା କରନ୍ତି ନାହିଁ । ଏଥିରୁ ମୁକ୍ତି ପାଇବାକୁ ହେଲେ ନାରୀକୁ ହିଁ ସଂଗ୍ରାମ କରିବାକୁ ପଡ଼ିବ । ତେଣୁ ଘରୁ ଗୋଡ଼ କାଢ଼ିଲା ରେବତୀ । ଟାଉନ୍ ବସରେ ଦେଖିଲା ତା ପରି ଅନେକ ରେବତୀ କିଏ ପାଠପଢ଼ା ସାରି ତ ଅନ୍ୟ କିଏ ଚାକିରି ସାରି ଫେରୁଛି । କ୍ଷଣକ ପାଇଁ ନିଃସଙ୍ଗତା ତାକୁ ଜାବୋଡ଼ି ଧରିଲା । ମନେ ପଡ଼ିଗଲା ଫକୀରମୋହନଙ୍କ ରେବତୀ କଥା - ପାଠ ପଢ଼ିବାକୁ କେତେ ବିକଳ ହୋଇଥିଲା ସେ; କିନ୍ତୁ ଶେଷରେ ମରିଗଲା । ରେବତୀ

ଭଳି କ'ଣ ସେ ନିଃଶେଷ ହୋଇଯିବ ? ବର୍ଷାଭିଜା ପବନରେ ତାର ଅବସାଦ ଦୂର ହୋଇଗଲା । ନିଜ ମନର ଦୃଢ଼ ଶକ୍ତି କହୁଥିଲା - ନା, ତୁ ଅସହାୟା ନୁହଁ । ତା' କାନ ପାଖରେ କିଏ ଚୁପି ଚୁପି କହୁଥିଲା ''ରେବତୀ, ରେବତୀ, ଠିକ୍ କରିଚୁ । ନିଜର ଆତ୍ମସମ୍ମାନ ପାଖରେ, ନିଜର ସ୍ୱାଧୀନ ଇଚ୍ଛା ପାଖରେ, ନିଜର ସ୍ୱତନ୍ତ୍ର ସତ୍ତା ପାଖରେ ସ୍ୱାମୀ, ସନ୍ତାନ, ପରିବାର କିଛି ନୁହେଁ, ଶହେବର୍ଷ ତଳେ ମୁଁ ଯାହା ପାରି ନ ଥିଲି ତୁ ତାହା ପାରିଛୁ - ମୁଁ ଆଉ କାନ୍ଦୁ ନାହିଁ, ତୁ ମୋର ଉତ୍ତରଣ ଘଟାଇଛୁ ।'' ଗାଳ୍ପିକା ସାମ୍ପ୍ରତିକ ସମାଜର ରକ୍ଷଣଶୀଳ ମନୋଭାବରୁ ରେବତୀକୁ ମୁକ୍ତ କରି ତାକୁ ସ୍ୱାଧୀନଚେତା କରାଇଛନ୍ତି । ରେବତୀମାନଙ୍କର ଜନ୍ମ କେବଳ ସନ୍ତାନ ପ୍ରସବ ବା ଗୃହର ଦାସତ୍ୱ ଗ୍ରହଣ ନୁହେଁ; ତାର ଏକ ସ୍ୱତନ୍ତ୍ର ସତ୍ତା ରହିଛି, ସେ ମଧ୍ୟ ପୁରୁଷ ପରି ଶିକ୍ଷା ଗ୍ରହଣର ସମାନ ଅଧିକାର ପାଇଛି, ତାହାହିଁ ଗାଳ୍ପିକା ନିଜ ରେବତୀ ମାଧ୍ୟମରେ ପ୍ରତିପାଦନ କରିଛନ୍ତି । ଆଗାମୀ ରେବତୀମାନଙ୍କ ପାଇଁ ଏହା ନିଶ୍ଚିତ ଭାବରେ ଏକ ବଳିଷ୍ଠ ପ୍ରତିଶ୍ରୁତି ।

ରଣଜିତ୍ ପଟ୍ଟନାୟକଙ୍କ ଆଉ ଏକ ରେବତୀକୁ ଦେଖିବାକୁ ମିଳେ ତା ୨୫ । ୧ । ୯୮ ରିଖ ରବିବାର 'ପ୍ରଜାତନ୍ତ୍ର' ପୃଷ୍ଠାରେ । ଶ୍ରୀ ପଟ୍ଟନାୟକଙ୍କ ରେବତୀ ପାଟପୁର ଗାଁ ସରସୀରେ ଢଳ ଢଳ ହେଉଥିବା ନୀଳ କଇଁଟିଏ ନୁହେଁ, ଉଗ୍ର ଆଧୁନିକା । ବି.ଏ. ଫେଲ ହୋଇଥିଲେ ହେଁ ଭାରି ସ୍ମାର୍ଟ । ତାକୁ ଜନ୍ମ ଦେବା ପରେ ତା ମା ମରିଛି । ବାର ଚଉଦ ବର୍ଷ ବୟସରେ ବ୍ୟବସାୟୀ ପିତା ପଦ୍ମଲୋଚନକୁ ହରାଇ ଜେଜୀମାଙ୍କ ନିକଟରେ ବଢ଼ିଛି । ଜେଜୀମା, 'ରେବତୀ' ବୋଲି ମାନ୍ଧାତା ଅମଳର ପୁରୁଣାକାଳିଆ ନାଁଟି ଦେଇଥିବାରୁ ସେ ଭାରି ଖପ୍ପା । ତେଣୁ ସ୍ୱଳ୍ପଶିକ୍ଷିତ ଗାଁ ଯୁବକମାନେ ମିସ୍ ରୁବି ଡାକିଦେଲେ ଆନନ୍ଦରେ କୁରୁଳି ଉଠେ ସେ । ଗାଁର ଯୁବକମାନଙ୍କ ସହିତ ତାର ଅବାଧ ମିଳାମିଶାକୁ ଜେଜୀମା ଠିକ୍ ଦୃଷ୍ଟିରେ ଦେଖି ନ ପାରିଲେ ହେଁ, ଏଥିରେ ତାର ଖାତିର ନାହିଁ । ନିଜକୁ ଫିଲ୍ମ ଇଣ୍ଡଷ୍ଟ୍ରିରେ ଆସିଷ୍ଟାଣ୍ଟ ଡାଇରେକ୍ଟର ଭାବରେ ପରିଚୟ ଦେଇଥିବା କନ୍ଦର୍ପ ସହିତ ତାର ସମ୍ପର୍କ ଗଢ଼ି ଉଠିଛି ଭିନ୍ନ ଦୃଷ୍ଟିରୁ । ହଠାତ୍ ଦିନେ ରେବତୀ ଆଟାଚି ସଜାଡ଼ି ରାହାରିଲାବେଳକୁ ଜେଜୀମାର 'କୁଆଡ଼େ' ପ୍ରଶ୍ନର ଉତ୍ତର ଦେଇ କହିଛି, ''ତୋ ଘୋଡ଼ା ମୁହଁକୁ ଅନାଇ ଏ ଗାଁରେ ପଡ଼ି ରହିବା କିଛି ମାନେ ନାହିଁ । ଏଇ ଗାଁରେ ମୋ ପ୍ରତିଭା ଫୁଟିପାରୁନି । ଆସିଷ୍ଟାଣ୍ଟ ଡାଇରେକ୍ଟର କନ୍ଦର୍ପ ସାଙ୍ଗରେ ମୁଁ ଚାଲିଲି ଓଲିଉଡ଼'' ମିସ୍ ରୁବି ରହୁଥିବା ଅନ୍ଧାରୁଆ ଲଜ୍‌ଟି କେତେଦିନ ଚଳଚଞ୍ଚଳ ହୋଇଉଠିଲା ପ୍ରଯୋଜକ, ନିର୍ଦ୍ଦେଶକ ଓ ବର୍ଷୀୟାନ ଅଭିନେତାଙ୍କ ଆଗମନରେ । ରୁବି ମଧ୍ୟ ଅଭିନେତ୍ରୀ ହେବାର ସ୍ୱପ୍ନରେ ବିନା ଦ୍ୱିଧାରେ ନିଜକୁ ବିଛାଇ ଦେଲା । ତାର ସେହି ଉତ୍ସର୍ଗୀକୃତ ଶରୀର ବିନିମୟରେ 'ଫଟା କପାଳରେ ନାଲି ସିନ୍ଦୂର' ଚଳଚ୍ଚିତ୍ରରେ ଅର୍ଦ୍ଧାବୃତ ଶରୀରରେ ଗୋଟିଏ ସଂଳାପ 'ହାଏ ଡାର୍ଲିଂ' କହିବାର ସୁଯୋଗ ଲାଭ କଲା । ହଠାତ୍ ଦିନେ ଲଜ୍ ବନ୍ଦ ହୋଇଗଲା ଓ ମିସ୍ ରୁବି ପାଞ୍ଚମାସର ଗର୍ଭ ଧରି ଫେରିଆସିଲା ନିଜ ଗାଁ

ନୀଳକଣ୍ଠପୁର । ଜେଜୀମା ଶୁଣିଲା ରେବତୀର ଇତିହାସ । ସେଦିନ ରାତିରେ ଚୁଟୁକା ଔଷଧର ପ୍ରତିକ୍ରିୟାରେ ଚଳଚ୍ଚିତ୍ର ଅଭିନେତ୍ରୀ ମିସ୍ ରୁବି ଓରଫ ରେବତୀ ସବୁଦିନ ପାଇଁ ହଜିଗଲା । ଗାଳ୍ପିକ ପଟ୍ଟନାୟକ ଆଧୁନିକତାର ପକ୍ଷପାତୀ । ମାତ୍ର ଆଧୁନିକତା ନାମରେ ସ୍ୱେଚ୍ଛାଚାରର ତୀବ୍ର ବିରୋଧୀ । ଚଳଚ୍ଚିତ୍ରର ନିଶା ସାମ୍ପ୍ରତିକ ରେବତୀମାନଙ୍କୁ ନିଜର ଐତିହ୍ୟ ଓ ସଂସ୍କୃତିଠାରୁ ଦୂରେଇ ନେଇ ସେମାନଙ୍କୁ କିପରି ଅଧୋପତିତ କରୁଛି ତାହା ଏହି ଗଳ୍ପ ମାଧ୍ୟମରେ ପ୍ରତିପାଦିତ । ତେଣୁ ଗଳ୍ପର ଉପସଂହାରରେ ସ୍ୱୀୟ ବକ୍ତବ୍ୟ ଉପସ୍ଥାପନ କରି ଗାଳ୍ପିକ କହିଛନ୍ତି - ''ରେ-ରେ-ରେବତୀ ! ଓଢ଼ଣା ଭିତରେ ନ ରହିଲୁ କିଆଁ ? ଓଢ଼ଣା ବାଧା ନୁହେଁ ତୋ ଉତ୍ତରଣରେ । ଓଢ଼ଣା ତୋ ମୂଲ୍ୟବୋଧ - ଓଢ଼ଣା ତୋ ସମ୍ଭ୍ରମର ପ୍ରତୀକ । କି କଲୁରେ ରେବତୀ - ରେ- ରେ- ରେବତୀ ।'' ତଥାପି ରଣଜିତ୍‌ଙ୍କ ରେବତୀ ସମୟର ସେହି ଅସହାୟତାରୁ ମୁକ୍ତ ନୁହେଁ । ପୁରୁଷ କାମନାର ଶିକାର ହେବା ତା ଭାଗ୍ୟରେ ଲେଖା । ଗଳ୍ପକଳା ଦୃଷ୍ଟିରୁ ଏହାର ସଫଳତା ପ୍ରଶ୍ନବାଚୀ ସୃଷ୍ଟି କରେ । ଜବରଦସ୍ତ ସ୍ୱୀୟ ଉଦ୍ଦେଶ୍ୟ ପ୍ରତିପାଦିତ କରିବା ରେବତୀର ଲକ୍ଷ୍ୟ । ପ୍ରାଚୀନତାର ସେହି ଓଢ଼ଣା ମଧ୍ୟରେ ଭାରତୀୟ ସଂସ୍କୃତିରେ ପରିବର୍ଦ୍ଧିତ ମାର୍ଜିତ ରେବତୀ ପାଇଁ ତାଙ୍କର ଆକୁଳ ଆଗ୍ରହ ଥିଲେ ହେଁ ଉପସ୍ଥାପନଗତ ତ୍ରୁଟି ଏହାର କଳାଗତ ମୂଲ୍ୟ ହ୍ରାସ କରିଛି ।

ପ୍ରଜାତନ୍ତ୍ର ତା ୧୭ । ୫ । ୯୮ ରିଖ ରବିବାରରେ ଯତୀନ୍ଦ୍ର ପ୍ରସାଦ ପାଢ଼ୀଙ୍କ ଅନ୍ୟ ଏକ ଗଳ୍ପ 'ରେବତୀ-୧୯୯୮' ପ୍ରକାଶ ଲାଭ କରିଛି । ସେ ଏଥିରେ ତିନୋଟି ରେବତୀଙ୍କ ବିଷୟରେ ଉଲ୍ଲେଖ କରିଛନ୍ତି । ପ୍ରଥମ ରେବତୀ ସେନାପତି ଗୋଟିଏ ଖବରକାଗଜର ପରିଚାଳନା ସମ୍ପାଦିକା । ଆଦର୍ଶ ଓ ରୁଚି ଉପରେ ତାର ଗୁରୁତ୍ୱ ନାହିଁ । ପୋଜିସନ ଓ ଷ୍ଟାଟସ୍ ହିଁ ତା ନିକଟରେ ବଡ଼ । ତେଣୁ ସମ୍ପାଦକଙ୍କ ପୋଜିସନ ପାଇଁ ସେ ତାଙ୍କ ସଙ୍ଗେ ଫେରାର୍ । ଦ୍ୱିତୀୟଟି ରେବତୀ ମିଶ୍ର ଯିଏ କୁଷ୍ଠାଶ୍ରମରେ ଚାକିରି କରେ । ଆଦର୍ଶ ଓ ମୂଲ୍ୟବୋଧକୁ ନେଇ ବଞ୍ଚି ରହିଥିବା ନାରୀଟିଏ । ପିଲାଟି ଦିନରୁ ପ୍ରତିକୂଳତା ବିରୋଧରେ ସଂଗ୍ରାମ କରି ପରିବାରର ସମ୍ପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଛନ୍ତି । ସ୍ନେହୀ ଓ ପରୋପକାରୀ, ସ୍ୱାବଲମ୍ବନଶୀଳା । କୁଷ୍ଠ ରୋଗୀମାନଙ୍କ ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଅନ୍ୟମାନଙ୍କ କଥା ଚିନ୍ତା କରୁ କରୁ ନିଜକୁ ଭୁଲିଛନ୍ତି । ଏକ ଆଦର୍ଶ ପ୍ରତିଷ୍ଠା ପାଇଁ ସେ ସଂଗ୍ରାମଶୀଳ । ଦାରିଦ୍ର୍ୟର ସୀମାରେଖା ତଳେ ବସବାସ କରୁଥିବା ଝିଅଟି ତୃତୀୟ ରେବତୀ । ମା ଉପରେ ବଳାତ୍କାର ଉଦ୍ୟମ କରି ବ୍ୟର୍ଥ ହୋଇଥିବା କେତେକ ନିଶାଖୋରଙ୍କ କାମନାର ଅଗ୍ନିରେ ଧର୍ଷିତା ହୋଇ ପ୍ରାଣ ବିସର୍ଜନ କରିଥିବା ଏହି ରେବତୀଟି ପାଇଁ ସମାଜର ଦରଦ ଭରପୂର । ମାତ୍ର ପ୍ରତିକାର ପାଇଁ ଆନ୍ତରିକତାର ଅଭାବ । ଆମ ସାମାଜିକ ଜୀବନର ତିନୋଟି ଦିଗର ପ୍ରତିନିଧି ଏହି ତିନୋଟି ରେବତୀ । ପ୍ରଥମ ଶ୍ରେଣୀୟା ରେବତୀ ଷ୍ଟାଟସ୍ ଓ ପୋଜିସନ୍ ପାଇଁ ଲାଳାୟିତ, ଦ୍ୱିତୀୟ ଶ୍ରେଣୀର ରେବ୍ତୀ ସ୍ୱାଧୀନତା ଓ ମୂଲ୍ୟବୋଧ ଉପରେ ଗୁରୁତ୍ୱ

ଦେବା ସଙ୍ଗେ ସଙ୍ଗେ ଦଳିତମାନଙ୍କ ସେବା ପାଇଁ ଉତ୍ସର୍ଗୀକୃତା । ତୃତୀୟ ଶ୍ରେଣୀର ରେବତୀ ଦାରିଦ୍ର୍ୟ ମଧ୍ୟରେ ଅସହାୟା । ଗାଳ୍ପିକ ପାଢ଼ୀ ଏହି ତିନି ଶ୍ରେଣୀର ରେବତୀଙ୍କୁ ଲୋକଲୋଚନକୁ ଆଣି ସ୍ୱକାଳ ସଚେତନତାର ନିଦର୍ଶନ ପ୍ରଦାନ କରିଛନ୍ତି ।

ଏତଦ୍‌ବ୍ୟତୀତ ଅସିତ୍ ମହାନ୍ତିଙ୍କ ସଂଯୋଜନାରେ ପ୍ରକାଶିତ 'ରେବତୀ ରେବତୀ'ରେ ଆଉ କେତେକ ନୂତନ ରେବତୀ ଆତ୍ମପ୍ରକାଶ କରିଛନ୍ତି । ବାସନ୍ତୀ ପାଣିଗ୍ରାହୀଙ୍କ 'ଭିନ୍ନ ପୃଥିବୀ : ଅନ୍ୟ ରେବତୀ', ରାମଚନ୍ଦ୍ର ସାହୁ (ରତ)ଙ୍କ 'ରେବତୀ ଫେରିଆସିଛି', ପ୍ରତାପ ବିଶ୍ୱାଳ, ଅଞ୍ଜଳି ପାଢ଼ୀ, ରଜନୀକାନ୍ତ ମହାନ୍ତି, ପୁଷ୍ପାଞ୍ଜଳି ନାୟକ ଆଦିଙ୍କ 'ରେବତୀ'ଙ୍କ ମଧ୍ୟରୁ କେତେକ ପାରମ୍ପରିକ ଶଗଡ଼ ଗୁଳାକୁ ଆଦରି ନେଇଥିବା ସମୟରେ, ଅନ୍ୟ କେତେକ ନୂତନ ଚମକ ସୃଷ୍ଟି କରିବାର ଉଦ୍ୟମ କରିଛନ୍ତି । ସବୁ 'ରେବତୀ' ଯେ ଯୁଗଚେତନାର ଯଥାର୍ଥ ବାହକ, କୁହାଯାଇ ନ ପାରେ । ବାସନ୍ତୀ ପାଣିଗ୍ରାହୀ ପ୍ରଥମରୁ ତାଙ୍କ 'ରେବତୀ'କୁ ଏକ ଅସହାୟା ନାରୀ ରୂପେ ଚିତ୍ରଣ କରିଛନ୍ତି । ସତେଯେପରି ନାରୀ ହୋଇ ଜନ୍ମିବା ଏକ ଅଭିଶାପ । ଝିଅଟିଏ ବୋଲି ବାପା ମା' ପାଠ ପଢ଼ାଇ ନାହାନ୍ତି । ସମସ୍ତଙ୍କ ନ ଚାହିବାରୁ ସେ ଜନ୍ମ ନେଇଥିବାରୁ ତା' ପ୍ରତି ସ୍ନେହ ଓ ଆଦରର ଅଭାବ । କନ୍ୟାଭ୍ରୂଣ ନଷ୍ଟ କରିବାକୁ ଯାଇ ମା ପଦ୍ମାବତୀଙ୍କ ମୃତ୍ୟୁ ଏବଂ ବାପାଙ୍କ ଉପରେ ଚଉଧୁରୀ ପୁଅର ମଟର ସାଇକେଲ ଚଢ଼ିଯିବାରୁ ସେ ଅକର୍ମଣ୍ୟ ହେବା ପରେ ପରିବାରର ସମସ୍ତ ବୋଝ ନିଜ ମୁଣ୍ଡ ଉପରକୁ ଟେକି ନେଇଛି ଏହି ଅବହେଳିତା କନ୍ୟାଟି । ବିବାହ ପରେ, ଏପରିକି ସରପଞ୍ଚ ହେବା ପରେ ମଧ୍ୟ ଶାଶୁଘରେ ତା ନିର୍ଯାତନାର ଅନ୍ତ ନାହିଁ । ସରପଞ୍ଚ ଭାବରେ ତା କ୍ଷମତାର ଅପପ୍ରୟୋଗ କରି ସ୍ୱାମୀ ଓ ଶଶୁର ସରକାରୀ ଅର୍ଥ ଆତ୍ମସାତ୍ କରିଛନ୍ତି । ଶାଶୁଘରୁ ବିତାଡ଼ିତା ହେଲା ପରେ ତାର ଶେଷ ଆଶ୍ରୟ ଚାଳଘରଟିକୁ ପୋଡ଼ି ଦିଆଯାଇଛି ଓ ସେ ହୋଇଛି ନିରୁଦ୍ଦିଷ୍ଟା । ବାସନ୍ତୀଙ୍କ 'ରେବତୀ' ସର୍ବଦା ନାରୀର ସୀମାବଦ୍ଧତା ମଧ୍ୟରେ ସଂକୁଚିତା । ରାମଚନ୍ଦ୍ର ସାହୁ (ରତ)ଙ୍କ 'ରେବତୀ ଫେରିଆସିଛି' ଗଳ୍ପରେ ଗାଳ୍ପିକଙ୍କର ସାମାଜିକ ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଅସ୍ପଷ୍ଟ । ରେବତୀର ଶିକ୍ଷା ପାଇଁ ନା ଅଛି ଆଗ୍ରହ କିମ୍ବା ନିଜକୁ ପ୍ରତିଷ୍ଠା କରିବାକୁ ନା ଅଛି ଉଦ୍ୟମ । ରେବତୀର ନୀରବ ପ୍ରତିକ୍ରିୟା କେବଳ ତାଙ୍କ ବାପାଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ । ସେଥିପାଇଁ ଅଧାବାଟରୁ ସେ ପୁଣି ଫେରିଆସିଛି ତା ଜେଜୀମା' ନିକଟକୁ । ପ୍ରତାପ ବିଶ୍ୱାଳଙ୍କ 'ରେବତୀ' ଗଳ୍ପର ପୃଷ୍ଠଭୂମିରେ ରହିଛି ସେହି ଯୁଗ ଯୁଗର ଯନ୍ତ୍ରଣା, ଅନ୍ଧବିଶ୍ୱାସ ଓ ସାମାଜିକ ରୀତିନୀତି । 'ରେବତୀ' ସମାଜରେ ଯେଉଁ ନୂତନ ଚିନ୍ତାଧାରା ଓ ଜାଗରଣ ସୃଷ୍ଟି କରିବାକୁ ଚାହିଛି, ତାହା ପାରମ୍ପରିକ ସାମାଜିକ ବ୍ୟବସ୍ଥା ଗ୍ରହଣ କରିପାରି ନାହିଁ । ପାଣିରେ ବୁଡ଼ିଯାଉଥିବା ଶିଶୁଟିକୁ ଉଦ୍ଧାର କରିବାକୁ ଯାଇ ବାସୁଦେବର ପ୍ରାଣ ବିସର୍ଜନର କାରଣସ୍ୱରୂପ ବୁଢ଼ୀ ପାଠକୁ ହିଁ ଦାୟୀ କରିଛି । ବୁଢ଼ୀର ଧାରଣା, ସେ ପାଠପଢ଼ିବାରୁ ନଡ଼ିଆ ଗଛ ପକାଇଲା ଓ ସେହି କାରଣରୁ

ମୃତ୍ୟୁବରଣ କଲା । ଏସବୁ ମୂଳରେ ସେ 'ରେବତୀ'କୁ ହିଁ ଦାୟୀ କରିଛି । ରେବତୀର ସଂସ୍କାର ମନୋବୃତ୍ତି ଅନ୍ୟମାନଙ୍କ ନିକଟରେ କୁସଂସ୍କାର ଭାବରେ ଗୃହୀତ ହୋଇଛି । ବ୍ରାହ୍ମଣୀ ଝିଅ ରେବତୀ ବୁଢ଼ୀ ଘରେ ପଖାଳ ଖାଇବା ଘଟଣାକୁ ବୁଢ଼ୀ ସହଜରେ ଗ୍ରହଣ କରିପାରି ନାହିଁ । ଆଧୁନିକ ଚିନ୍ତାଧାରା ଯୁଗେ ଯୁଗେ ପ୍ରଚଳିତ ସାମାଜିକ ରୀତିନୀତିଦ୍ୱାରା ସମାଲୋଚିତ ହୋଇଛି । ରେବତୀ ସେହି ପ୍ରାଚୀନ ଅନ୍ଧବିଶ୍ୱାସକୁ ଭାଙ୍ଗିଦେବାକୁ ଚେଷ୍ଟାକରି ବାସୁଦେବ ଘରେ ପଖାଳ ଖାଇଛି । ବୟସ୍କମାନଙ୍କୁ ପାଠ ପଢ଼ାଇବାର ଦାୟିତ୍ୱ ଗ୍ରହଣ କରିଛି ଓ ଅଧିକ ଯୌତୁକ ଦାବି କରୁଥିବା ବରକୁ ବିବାହ ନ କରି ଫେରିଆସିଛି । ତଥାପି ରେବତୀ ମନର କେଉଁ କୋଣରେ କୁସଂସ୍କାର ଛାଇଟିଏ ରହିଯାଇଥିଲା । ନଚେତ୍ ସେଦିନ ବାସୁଦେବର ଜାତି ଓ ଅଜାତି ସମ୍ପର୍କୀୟ ପ୍ରଶ୍ନରେ ରେବତୀ ନୀରବ ରହିଲା କାହିଁକି ? କାହିଁକି ଭାବିଲା ''ଏତେ ଛୋଟ ସରଳ ପ୍ରଶ୍ନଟାଏ ସିନା ? କିନ୍ତୁ ଏହାର ଉତ୍ତର ବଡ଼ ଜଟିଳ ।'' ତେଣୁ ଶ୍ରୀ ବିଶ୍ୱାଳ ଯୁଗ ଯୁଗ ଧରି ପ୍ରଚଳିତ ସାମାଜିକ ବ୍ୟବସ୍ଥା ବିରୋଧରେ ରେବତୀକୁ ସଂଗ୍ରାମ କରାଇବାକୁ ସମ୍ପୂର୍ଣ୍ଣ କ୍ଷମତା ଦେଇପାରି ନାହାନ୍ତି । ଏହା ସତ୍ତ୍ୱେ ତାଙ୍କ ରେବତୀର ପ୍ରଗତିବାଦୀ ଚିନ୍ତାଧାରା ପ୍ରଚଳିତ ସମାଜକୁ ଏକ ନୂତନ ଆହ୍ୱାନ ଯେ ଦେଇଛି, ଅସ୍ୱୀକାର କରାଯାଇ ନ ପାରେ ।

ଅଞ୍ଜଳି ପାଢ଼ୀଙ୍କ 'ରେବତୀ'ରେ ପାରମ୍ପରିକ ସାମାଜିକ ବ୍ୟବସ୍ଥା ବିରୋଧରେ ଦୃପ୍ତ ଆହ୍ୱାନ ରହିଛି । ପାଢ଼ୀଙ୍କ 'ରେବତୀ'ର ମା' ଏବଂ ଜେଜୀମା ଗୋଟିଏ ଶ୍ରେଣୀଭୁକ୍ତ; ନାରୀ ଶିକ୍ଷାର ବିରୋଧୀ । ମାତ୍ର ଶ୍ୟାମବନ୍ଧୁ ପ୍ରଗତିବାଦୀ । ସାଇକେଲରେ ରେବତୀ ସ୍କୁଲକୁ ଯିବା ଜେଜୀମା ପସନ୍ଦ କରିପାରନ୍ତି ନାହିଁ । ବିରକ୍ତ ହୋଇ କୁହନ୍ତି, ''କି ଉଦ୍ଦଣ୍ଡୀ ଝିଅଲୋ ! ମିଶିପଙ୍କ ପରି ସାଇକେଲ ଚଢୁଛି ।'' କିନ୍ତୁ ରେବତୀ କୁହେ, ''ଗାଡ଼ି ଚଢ଼ିବି, ପୋଲିସରେ ଭର୍ତ୍ତି ହେବି ।'' ରେବତୀ ଆଗରେ ପ୍ରାଚୀନତା ଓ ଆଧୁନିକତାର ଦ୍ୱନ୍ଦ୍ୱ । ମା' କହେ, ''ଗୁରୁଜନଙ୍କୁ ମୁହଁ ଉଠାଇ କଥା କହିବୁ ନାହିଁ । ଝିଅ ପିଲା, କାହାର ଦୋଷ ଗୁଣ ଧରିବୁ ନାହିଁ । ନାରୀ ଜାତି ସହିଗଲେ ପରିବାରରେ ମଙ୍ଗଳ ହୁଏ ।'' କିନ୍ତୁ ତାର ଗୁରୁମା' କହନ୍ତି, ''ଅନ୍ୟାୟକୁ ସହିବା ଅର୍ଥ ମଣିଷତ୍ୱର ଅବମାନନା କରିବା ।'' କେଉଁ କଥାଟା ଠିକ୍ । ରେବତୀର ଛୋଟିଆ ମୁଣ୍ଡଟି ପ୍ରଶ୍ନର ଜାଲରେ ଛନ୍ଦି ହୋଇଯାଏ [୨୮] । ରେବତୀ ସ୍କୁଲ ଛାଡ଼ି କଲେଜକୁ ଗଲା ପରେ ତାର ପରିଚୟ ହୋଇଛି ଅଧ୍ୟାପକ ବାସୁଦେବ ସହିତ । ମାମୁଘରକୁ ଯିବା ସମୟରେ ରେବତୀର ମା ଏବଂ ବାପାଙ୍କର ଦୁର୍ଘଟଣାରେ ମୃତ୍ୟୁହେବାରୁ ରେବତୀର ପାଠପଢ଼ା ଏଥିପାଇଁ ଦାୟୀ ବୋଲି ଜେଜୀମା ଭାବିଛି । ତେଣୁ ସେ ଗାଳି ଦେଇ କହୁଥିଲା ''ଲୋ ରେବ- ଲୋ ଚୁଲି- ଲୋ ନିଆଁ । ମରଣ ହେଉନି ତୋ ପାଠପଢ଼ାକୁ । ବଉଁଶ ବୁଡ଼ାଇଲୁ ।''[୨୯] ରେବତୀର କିଛି ଦୁଃଖ ବାସୁଦେବ ବାଣ୍ଟିନେବ ବୋଲି ଭାବିଥିଲା । ମାତ୍ର ସେ ଫେଲୋସିପ୍ ପାଇ ଲଣ୍ଡନ ଚାଲିଗଲା ପରେ ରେବତୀ ମନରେ ଅଙ୍କୁରି ଉଠିଥିବା

ନିରୀହ ସ୍ୱପ୍ନଟି ମଉଳି ପଡ଼ିଲା । ଦୁଃଖ ଓ ଦୁର୍ବିପାକ ମଣିଷର ମନୋଭାବକୁ ଦୃଢ଼ କରେ । ରେବତୀ ଚିନ୍ତା କରିଛି, ଆଜିର ନାରୀକୁ ପ୍ରତିଷ୍ଠିତ ହେବାକୁ ହେଲେ ନିଜ ଗୋଡ଼ରେ ଠିଆ ହେବାକୁ ପଡ଼ିବ । ତାର ସୃଷ୍ଟି ହୋଇଛି ଆତ୍ମପ୍ରତ୍ୟୟ । ତେଣୁ ସେ ଭାବିଛି, ''କେତେ ଦିନ ସେ ପୁରୁଷ କାନ୍ଧରେ ବୋଝ ହୋଇ ରହିବ । କେତେ ଦିନ ବାପ ଭାଇ, ମାମୁ ତାଙ୍କ ଇଚ୍ଛାରେ ସ୍ତ୍ରୀ ଜାତିକୁ ଶାସନ କରିବେ । ସେମାନଙ୍କର କଣ ସ୍ୱତନ୍ତ୍ର ଇଚ୍ଛା ନାହିଁ ? ସେ ଏବେ ନିଜର ଓ ବୁଢ଼ୀମାର ଭାର ନିଜେ ବୋହିପାରିବ ।'' ଏହି ମାନସିକ ଦୃଢ଼ତା ଯୋଗୁଁ ମାମୁ ଖାଲି ହାତରେ ଫେରିଯାଇଥିଲେ ରେବତୀର ଘରୁ । ଏହି ଦୃଷ୍ଟିରୁ ଅଞ୍ଜଳି ପାଢ଼ୀଙ୍କ 'ରେବତୀ' କିଛି ପରିମାଣରେ ସ୍ୱତନ୍ତ୍ର । ରଜନୀକାନ୍ତ ମହାନ୍ତିଙ୍କ 'ରେବତୀ' ପ୍ରଥମରୁ ଯେପରି ନିର୍ଭୀକ, ସାହସୀ ଓ ସ୍ୱାଧୀନ ବୋଲି ମନେହୁଏ, ଗଳ୍ପର ପରିଣତି ବେଳକୁ ଠିକ୍ ବିପରୀତ ଜଣାଯାଏ । ସେ ସ୍କୁଟର ଚଢ଼େ, ଭଲ ପାଠ ପଢ଼େ । ସ୍କୁଲରେ ପଢ଼ିଲାବେଳେ ଏନ୍.ସି.ସି.ରେ ଭର୍ତ୍ତି ହୁଏ, ବ୍ୟାୟାମ କରେ, ଜିମ୍ନାସିୟମରେ କୁସ୍ତି ମଧ୍ୟ ଶିଖେ । କଲେଜରେ ଗୋଟିଏ ପିଲା କମେଣ୍ଟ ମାରିବାରୁ ମାଡ଼ ମାରି ତାକୁ ଡାକ୍ତରଖାନାରେ ପକାଇଛି । ଜଣେ ଅଧ୍ୟାପକ ତାର ଗୋଟିଏ ସହପାଠିନୀକୁ କଦର୍ଯ୍ୟ ଇଙ୍ଗିତ ଦେବାରୁ ତା ପାଟିରେ ଛେପ ପକାଇଛି । ଯେକୌଣସି ପରିସ୍ଥିତି ସହିତ ନିଜକୁ ଖାପ ଖୁଆଇ ଚଳାଇବାରେ ନିଜକୁ ଅଭ୍ୟସ୍ତ କରାଇଥିଲେ ହେଁ, ବାସୁଦେବ ପ୍ରତି ତା ଅନ୍ତରରେ ଦୁର୍ବଳତା ରହିଛି । ଭାରତୀୟ ବାୟୁସେନାରେ ଯୋଗଦେଇ କୃତିତ୍ୱ ଅର୍ଜନ କରିବା ସତ୍ତ୍ୱେ ସମାଜରେ ତାର ପରିଚୟ ଅଣ୍ଡିରାଚଣ୍ଡୀ । ବାସୁଦେବ ସହିତ 'ରେବତୀ'ର ବିବାହ ପ୍ରସ୍ତାବକୁ ସ୍ୱୀକାର ନ କରି ବାସୁଦେବର ମାଈଁ କହିଛନ୍ତି - ''ଗୋଟେ ଅଣ୍ଡିରାଚଣ୍ଡୀ, ଯିଏ ମାଷ୍ଟର ମୁହଁରେ ଛେପ ପକାଇଲା, ଯିଏ ଗୋଟେ ପୁଅଛୁଆକୁ ମାରି ମାରି ଦରମରା କରିଦେଲା, ସେ କଣ ଝିଅ ? ତାକୁ ବୋହୂ କରିବି ତ, ସେ ମୋ ଭଣଜାର ରକ୍ତ ଶୋଷି ନେବ ।''[୩୦] ରେବତୀର ବାହ୍ୟ ରୂପ ଅନ୍ତରାଳରେ ବାସୁଦେବ ପ୍ରତି ଯେଉଁ ପ୍ରେମ ଓ କାରୁଣ୍ୟ ଛପି ରହିଥିଲା, ତାକୁ ଏ ସମାଜ ଚିହ୍ନିପାରିଲା ନାହିଁ । ସମାଜରେ ପରିବର୍ତ୍ତନ ଆଣିବା ପାଇଁ ଓ ଆଗାମୀ ରେବତୀମାନଙ୍କ ନିମିତ୍ତ ସେ ଯେଉଁ ଆଦର୍ଶ ହେବାର ସ୍ୱପ୍ନ ଦେଖୁଥିଲା, ତାହା କାଚ ଘର ପରି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଗଲା । ରେବତୀ ଆଖିର ଲୁହ ସ୍ପଷ୍ଟ କରିଦେଉଥିଲା, ସେ କେତେ ଅସହାୟ ଓ ନିଃସଙ୍ଗ । ତାର ପୁରୁଷୋଚିତ ନିର୍ଭୀକ ଗୁଣପାଇଁ ନିଜ ପ୍ରେମକୁ ବଳିଦେବାକୁ ପଡ଼ିଲା । ରେବତୀମାନେ ଏପରି ସର୍ବଦା ଅସହାୟା ବୋଲି ପରୋକ୍ଷରେ ଗାଳ୍ପିକ ସୂଚନା ଦେଇଛନ୍ତି । ପୁଷ୍ପାଞ୍ଜଳି ନାୟକଙ୍କ 'ରେବତୀ' ସମାଜର ନିମ୍ନ ପରିବାରର ପ୍ରତିନିଧି । ଦାରିଦ୍ର୍ୟ ତା'ର ଚିର ସହଚର । ନିଜର ସ୍ୱାମୀ ଓ ତିନି ତିନୋଟି ପିଲା ଥିବା ସତ୍ତ୍ୱେ ମେସ୍‌ରେ ରହୁଥିବା ତାଠାରୁ ବୟସରେ ସାନ ଯୁବକଟି ସହିତ ଘର ବାନ୍ଧିବାକୁ ପରିବାର ତ୍ୟାଗ କରିଛି ଓ ପ୍ରତ୍ୟାଖ୍ୟାତା ହୋଇ ଆତ୍ମହତ୍ୟା କରିଛି । ସମାଜର ଚରିତ୍ର

ବୁଝିବାରେ ଅସମର୍ଥା ଏହି ରେବତୀମାନେ ବାରମ୍ବାର ପୁରୁଷ କାମନାର ଶିକାର ହୋଇ ଆତ୍ମହତ୍ୟା କରନ୍ତି । ବସ୍ତି ଅଞ୍ଚଳରେ ବସବାସ କରୁଥିବା ରେବତୀମାନଙ୍କର ଜୀବନ ଏକ କରୁଣ ରାଗିଣୀ । ଏମାନଙ୍କ ନିକଟରେ ଶିକ୍ଷା ଏକ ପ୍ରହସନ । ତେଣୁ ସମାଜର କେଉଁ ପ୍ରଗତି ଧାରାରେ ଏମାନେ ନିଜକୁ ସାମିଲ କରିପାରିବେ ? ସମସ୍ତ ଯୋଜନା ସତ୍ତ୍ୱେ, ଯୋଜନା ରୂପାୟନରେ ତ୍ରୁଟି ଯୋଗୁଁ ରେବତୀମାନଙ୍କର ଆର୍ଥିକ ଓ ମାନସିକ ବିକାଶ ହୋଇପାରି ନାହିଁ ବୋଲି ମନେହୁଏ ।

'କଥା' ପତ୍ରିକାର ନବପ୍ରତିଭା ବିଶେଷାଙ୍କ (୧୯୯୮)ରେ ଚିତ୍ତରଞ୍ଜନ ସାମନ୍ତରାୟଙ୍କ 'ପୁନଶ୍ଚ ରେବତୀ' ପ୍ରକାଶିତ । ଏଥିରେ ବାସୁଦେବ, ଶ୍ୟାମବନ୍ଧୁ, ଜେଜୀମା' କିମ୍ବା ରେବତୀ ଚରିତ୍ର ପ୍ରକୃତ ପକ୍ଷେ ନାହାନ୍ତି । ଗାଳ୍ପିକ 'ଭାମଦେଈ'କୁ ରେବତୀର ଛାୟାରେ ଦେଖିବାକୁ ଚେଷ୍ଟା କରିଛନ୍ତି । ସମସାମୟିକ ସମାଜ ପରିପ୍ରେକ୍ଷୀରେ ଆଧୁନିକ ରେବତୀର ଏକ ନୂଆ ରୂପ ଦେବାକୁ ଯତ୍ନ କରିଛନ୍ତି । ଅସୁନ୍ଦରୀ, କାଳୀ, ମୋଟୀ ରେବତୀମାନେ ବିବାହ ବଜାରରେ କେଡ଼େ ଅସହାୟ । ସେମାନଙ୍କର ସ୍ୱାଧୀନତା କିପରି ବିପର୍ଯ୍ୟସ୍ତ ତାର ଏକ ଆକଳନ ପ୍ରସ୍ତୁତି କରାଯାଇଛି ଉକ୍ତ ଗଳ୍ପଟିରେ । ମାତ୍ର ଗଳ୍ପଟିର କଳାତ୍ମକ ମୂଲ୍ୟ ପ୍ରଶ୍ନବାଚୀ ସୃଷ୍ଟି କରେ ପାଠକ ମନରେ । ସମ୍ବେଦନଶୀଳତାର ସାମାନ୍ୟ ରେଖାଟିଏ ମଧ ସୃଷ୍ଟି କରିପାରେ ନାହିଁ ପାଠକ ପ୍ରାଣରେ । ପରନ୍ତୁ ଗାଳ୍ପିକଙ୍କର ଶେଷ ବକ୍ତବ୍ୟ 'ସେକାଳର ରେବତୀ' ପାଠପଢ଼ି ଖୁସି ହେଉଥିଲା ଓ ସେଥି ସକାଶେ ଦଇବ ତା' ଉପରେ ଦାଉ ସାଧିଥିଲା । ମାତ୍ର ଏ ଯୁଗରେ ତାର ଅତୃପ୍ତ ଆତ୍ମା ପୁନର୍ଜନ୍ମ ନେଇ ନିଜ ଇଚ୍ଛାରେ ଗୋଟେ ବିପର୍ଯ୍ୟୟକୁ ଟାଣି ଆଣିଲା । ତେବେ ସେ କାଳର ରେବତୀ ଯେ ଏ କାଳରେ ଦଇବ ବିରୋଧରେ ପ୍ରତିଶୋଧ ନେଇ ଗୋଟେ ପରିବାରକୁ ଉଜାଡ଼ି ଦେଲା ଏହା ନିଃସନ୍ଦେହରେ କୁହାଯାଇପାରେ । ତେବେ ସର୍ବକାଳୀନ ବୁଢ଼ୀମା'ଙ୍କ କୋପ ଦୃଷ୍ଟିରେ ରେବତୀମାନେ କେବେ ଉନ୍ନତି କରିପାରି ନାହାନ୍ତି । ଶେଷରେ ବୁଢ଼ୀମା'ମାନଙ୍କର ଯେ ଏକ ସ୍ଥିର ଇମେଜ ରହିବ ଏହା ନିଶ୍ଚିତ[୩୧] । ସଂପୂର୍ଣ୍ଣ ପ୍ରଚାରଧର୍ମୀ ହୋଇପଡ଼ିଛି । ଗାଳ୍ପିକ ବୋଧହୁଏ ସଚେତନ ନୁହନ୍ତି ଯେ ତାଙ୍କ ପୂର୍ବରୁ ଏକାଧିକ ରେବତୀ ବୁଢ଼ୀମା'ଙ୍କ ନିଷ୍ପତ୍ତି ଓ ରୂଢ଼ିବାଦୀ ଚିନ୍ତାଧାରା ବିରୋଧରେ ସଂଗ୍ରାମ କରି ନିଜକୁ ପ୍ରତିଷ୍ଠିତା କରିପାରିଛନ୍ତି । ସମୟର ଉତ୍ତାଳ ଢେଉ ଓ ପରିବର୍ତ୍ତିତ ସମାଜ ପରିପ୍ରେକ୍ଷୀରେ କୌଣସି ଚିନ୍ତାଧାରା ସ୍ଥାୟୀ ହୋଇପାରି ନ ଥିବାରୁ ବୁଢ଼ୀମା'ର ସ୍ଥିର ଇମେଜ ସଂପର୍କରେ କିପରି ବା ସ୍ଥିର ନିଷ୍ପତ୍ତି ଗ୍ରହଣ କରାଯାଇପାରେ ?

କଥା ୧୯୯୮ରେ ପ୍ରକାଶ ପାଇଥିବା ଆଦିତେଶ୍ୱର ମିଶ୍ରଙ୍କ 'ରେବତୀ' ଏକ ଭିନ୍ନ ସ୍ୱାଦର ଗଳ୍ପ । ଏଥିରେ ଫକୀରମୋହନଙ୍କ ଶ୍ୟାମବନ୍ଧୁ, ଜେଜୀମା, ରେବତୀ, ବାସୁଦେବ ଅଛନ୍ତି, ମାତ୍ର ଭିନ୍ନ ଢଙ୍ଗରେ, ଭିନ୍ନ ରୁଚିରେ । ଆଦିତେଶ୍ୱରଙ୍କ ଶ୍ୟାମବନ୍ଧୁ ସରଳ, ସ୍ୱଚ୍ଛୋଟ ମଣିଷଟିଏ ନୁହେଁ, ବରଂ ଟ୍ରଷ୍ଟ ଫଣ୍ଡରୁ ଗରିବଙ୍କ କଲ୍ୟାଣାର୍ଥେ ଗଚ୍ଛିତ ଅର୍ଥ ଆତ୍ମସାତ୍ କରିଥିବା

ନରପିଶାଚଟିଏ । ଜେଜୀମା ପାରଂପରିକ ରୂଢ଼ିବାଦୀ ନୁହେଁ, ଆଧୁନିକ ଶିକ୍ଷାର ବିରୋଧୀ ନୁହେଁ, ବରଂ ଆଧୁନିକା ରେବତୀମାନଙ୍କ ଠାରୁ ଅଧିକ ଆଧୁନିକା । ତାର ସ୍ୱପ୍ନ ରେବତୀ ଆଇ.ପି.ଏସ. ହେବ, ଦଣ୍ଡା ଧରି ଚୋରମାନଙ୍କୁ ଶାସନ କରିବ । ଏପରିକି ସେ ଆଧୁନିକ କୋଣ୍ଡମର ବ୍ୟବହାର ସଂପର୍କରେ ସଚେତନା, ଭିଡ଼ିଓରେ ରାଜକୁମାର ଫିଲ୍ମ ଦେଖିବାରେ ଅଭ୍ୟସ୍ତା, ଟି.ଭିରୁ ମାଇକେଲ ଜାକ୍ସନ୍‌ଙ୍କ ଗୀତନାଟ ଶିଖିବାରେ ପୂରା ଓସ୍ତାଦ । ଭୁବନେଶ୍ୱରରେ ପାଠ ପଢୁଥିବା ନାତୁଣୀ ରେବତୀ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରେ । ରେବତୀ ମଧ୍ୟ ଉଗ୍ର ଆଧୁନିକା । ଜେଜୀମାର ନୂତନ ସଂସ୍କରଣ । ବିଦେଶୀ ବ୍ରିଡ଼ କୁକୁର ସହିତ ଦୋସ୍ତି, ଯାହା ଆଧୁନିକ ସଭ୍ୟତାର ଏକ ଫେସନ୍ । ଚୋଲି, ଘାଘରା, ଜିନ୍‌ସ, ଜ୍ୟାକେଟ୍, ମିନିସ୍କଟ ଆଦି ତାର ପୋଷାକ । ହୋଟେଲ ଓବରାଇରେ ମଦ୍ୟ ସହିତ ଜୀବନ ଉପଭୋଗ୍ୟ । ମାତ୍ର ବାସୁଦେବ ଶିକ୍ଷିତ କିନ୍ତୁ ପରଂପରା ଓ ସଂସ୍କୃତିର ପୂଜାରୀ । ସମାଜରେ କ୍ୟାନ୍‌ସର ପରି ବ୍ୟାପିଯାଉଥିବା ଦୁର୍ନୀତି ବିରୋଧରେ ପ୍ରତିକ୍ରିୟାଶୀଳ । ଟ୍ରଷ୍ଟଫଣ୍ଡରୁ ଅର୍ଥ ଆତ୍ମସାତ୍ କରିଥିବା ନିଜର ଅନ୍ନଦାତା ଶ୍ୟାମବନ୍ଧୁଙ୍କ ବିଚାରପାଇଁ କଲେକ୍ଟର ଅଫିସ ସମ୍ମୁଖରେ ଆମରଣ ଅନଶନରତ । ସମାଜ ଜୀବନଗ·ପରିବର୍ତ୍ତନ ସହିତ ବ୍ୟକ୍ତି ଚିତ୍ତର ପରିବର୍ତ୍ତନଟିକୁ ଗାଳ୍ପିକ ଦେଖାଇଦେବାକୁ ପ୍ରୟାସ କରିଛନ୍ତି ଉକ୍ତ ଗଳ୍ପରେ । ଫକୀରମୋହନଙ୍କ ପାଟପୁର ଧୀରେ ଧୀରେ ସହର ପାଲଟିଛି । ଝିଅ ସ୍କୁଲ ନ ଥିବା ଗ୍ରାମରେ ଏବେ ଗଣ୍ଡା ଗଣ୍ଡା ସ୍କୁଲ, ଦୁଇଦୁଇଟା ମହାବିଦ୍ୟାଳୟ, ଥାନା, କଲେକ୍ଟର ଅଫିସ୍ ଓ ଆହୁରି କେତେ କ'ଣ । ତେଣୁ ଫକୀରମୋହନଙ୍କ 'ରେବତୀ'ର ସମକାଳୀନ ସାମାଜିକ ବ୍ୟବସ୍ଥା ବର୍ତ୍ତମାନ ସ୍ୱପ୍ନ । ଖାଣ୍ଟି ଓଡ଼ିଆଣୀ ଆଉ କାହାନ୍ତି; ଯେଉଁଠାରେ ଜେଜୀମା'ମାନେ ଜ୍ୟାକ୍‌ସନ୍‌ଙ୍କ ସଙ୍ଗୀତ ଶୁଣିଲେଣି, କଣ୍ଡୋମର ବ୍ୟବହାର ସଂପର୍କରେ ପରିଚିତ ହେଲେଣି । ଗଳ୍ପଟି ପାଠ ପରେ ମନେହୁଏ ସାଂପ୍ରତିକ କ୍ଷୟଗ୍ରସ୍ତ ସମାଜ, ବ୍ୟକ୍ତି ଚରିତ୍ରର ଅଧୋପତନ ଓ ମୂଲ୍ୟବୋଧରେ ଯେଉଁ ସଂକଟ ସୃଷ୍ଟି ହୋଇଛି, ତାର ପରିବର୍ତ୍ତନ ପାଇଁ ଗାଳ୍ପିକ ବାସୁଦେବ ପରି ଶିକ୍ଷିତ ଅଧ୍ୟାପକ ହସ୍ତରେ ବିପ୍ଳବର ଅସ୍ତ୍ରଟି ଧରାଇ ଦେଇଛନ୍ତି । ମାତ୍ର ଏ କ୍ଷେତ୍ରରେ ଗାଳ୍ପିକ କେତେ ପରିମାଣରେ ସଫଳ ହୋଇଛନ୍ତି ? ମନେହୁଏ ବାସୁଦେବର ଭାଗ୍ୟ ଯେପରି କେଉଁ ଯୁଗରୁ ରେବତୀର ଭାଗ୍ୟ ସହିତ ସଂଗ୍ରଥିତ । ବାସୁଦେବ ବିପ୍ଳବୀ, କାରଣ ରେବତୀର ଚାରିତ୍ରିକ ସ୍ଖଳନ ତା' ମନରେ ଆଘାତ ଦେଇଛି । ତାର ସ୍ୱପ୍ନ, ଜୀବନର ମଧୁରତମ ପ୍ରଲୋଭନଟି ହଜିଯିବାର ଆଶଙ୍କା ସୃଷ୍ଟି ହୋଇଛି । ଟ୍ରଷ୍ଟଫଣ୍ଡକୁ ଶୋଷଣ କରୁଥିବା ଶ୍ୟାମବନ୍ଧୁଙ୍କ ପ୍ରତି ପୂର୍ବରୁ ସେ ପ୍ରତିକ୍ରିୟାଶୀଳ ନ ଥିଲା କାହିଁକି ? ସ୍ୱପ୍ନ ଭାଙ୍ଗିଗଲେ, ସ୍ୱାର୍ଥ ପରାଭୂତ ହେଲେ ମଣିଷ ପ୍ରତିକ୍ରିୟାଶୀଳ ହେବା ସ୍ୱାଭାବିକ । ତାହାହିଁ ଘଟିଛି ବାସୁଦେବର ଭାଗ୍ୟରେ । ଅଥଚ ରେବତୀର ପ୍ରତ୍ୟାବର୍ତ୍ତନ, ତାର ଉଷ୍ମ ସ୍ପର୍ଶ ମୁଖାପିନ୍ଧି ଅଭିନୟ କରୁଥିବା ବାସୁଦେବର ପ୍ରକୃତ ଚରିତ୍ରଟିକୁ ସ୍ପଷ୍ଟ କରି ଦେଇଛି । ସମାଜ ପରିବର୍ତ୍ତନର ପ୍ରୟାସୀ, ଦୁର୍ନୀତି

ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ବାସୁଦେବ ପରିଶେଷରେ ପଳାୟନପନ୍ଥୀ ସାଜିଛି । ଶ୍ୟାମବନ୍ଧୁଙ୍କ ପରି ଦୁର୍ନୀତିଗ୍ରସ୍ତ ଅସାମାଜିକ ବ୍ୟକ୍ତିଙ୍କୁ ମୁକାବିଲା କରିବାର ନୈତିକ ସାହସ ହରାଇଛି । ତେଣୁ ଶେଷପର୍ଯ୍ୟନ୍ତ ଗାଳ୍ପିକଙ୍କର ବକ୍ତବ୍ୟ ପାଠକ ନିକଟରେ ଅସ୍ପଷ୍ଟ ରହିଯାଇଛି ।

'କଥା' ନଭେମ୍ବର ୧୯୯୮ରେ ଶୁଭକାନ୍ତ ବେହେରାଙ୍କ 'ଭିନ୍ନ ଏକ ରେବତୀ' କିଛି ନୂଆବାର୍ତ୍ତା ନେଇ ଆତ୍ମପ୍ରକାଶ କରେ । ପ୍ରଥମରୁ ଗାଳ୍ପିକ ରେବତୀର ପରିଚୟ ଦେଇ ଲେଖିଛନ୍ତି "ସେ ଜାଣିଛି ଫକୀରମୋହନଙ୍କ ମାନସକନ୍ୟା ରେବତୀ ସେ ନୁହେଁ । ଫୁଲ ହୋଇ ସେ ଫୁଟି ସାରିଛି । ପାଟପୁରର ରେବତୀ ପରି ସେ କଢ଼ି ଥାଉ ଥାଉ ଝଡ଼ି ପଡ଼ିନି । ସେ ଆଜି ବେଶ୍ ଉଚ୍ଚଶିକ୍ଷିତା । ସମାଜରେ ତାର ନାମ ଅଛି । ଏ ଖଣ୍ଡମଣ୍ଡଳରେ ଜଣେ ଭଲ ଡାକ୍ତରାଣୀ ହିସାବରେ ତାକୁ ସମସ୍ତେ ଚିହ୍ନନ୍ତି ।" (ପୃ-୩୦) ରେବତୀର (ଫକୀରମୋହନଙ୍କ) ଅସହାୟତା ତାକୁ ଗ୍ରାସ କରିପାରିନି । ପୁରୁଷପ୍ରଧାନ ସମାଜରେ ନିଜର ସ୍ଥିତିକୁ କିପରି ଜାହିର କରାଯାଇପାରେ, ସେ ନିଜର ଅନୁଭୂତିରୁ ଶିଖିପାରିଛି । ସେ ପୁରୁଷ ଉପରେ ନିର୍ଭରଶୀଳା ନୁହେଁ । ସେଇଥିପାଇଁ ବିବାହ ପୂର୍ବରୁ ଗର୍ଭବତୀ ହୋଇଥିଲେହେଁ ଭାବୀ-ସ୍ୱାମୀ ସୁରେଶଙ୍କ ପରାମର୍ଶରେ ଗର୍ଭପାତ କରାଇବାକୁ ରାଜିହୋଇ ନାହିଁ । ବରଂ ସ୍ପଷ୍ଟୋକ୍ତି କରିଛି "ସେମାନେ ପରସ୍ପରକୁ ଭଲ ପାଆନ୍ତି, ତେଣୁ ସେଥିରେ କିଛି ପାପ ନାହିଁ । ଏଣୁ ସେ ବୁବୁଲ୍‌କୁ ନିଶ୍ଚୟ ଜନ୍ମ ଦେବ ।" ତାର ଏପରି ନିଷ୍ପତ୍ତି ପାଇଁ ସାମୟିକ ଭାବେ ସମାଲୋଚନାର ଶରବ୍ୟ ହୋଇଥିଲେହେଁ ଶେଷରେ ତାର ହିଁ ଜୟ ହୋଇଛି । ଅସହାୟତାକୁ ଭାଗ୍ୟଲିପି ଭାବରେ ଗ୍ରହଣ କରି ପୁରୁଷର ଔଦ୍ଧତ୍ୟ ଓ ସମାଜର ନାଲି ଆଖି ମଧ୍ୟରେ ନିଜକୁ କେବେ ସନ୍ତୁଳିତ ହେବାକୁ ଦେଇ ନାହିଁ । ଏପରିକି ସ୍ୱାମୀ ସୁରେଶ ଅନ୍ୟ ଏକ ଡାକ୍ତରାଣୀ ସହିତ ପ୍ରେମ ସଂପର୍କ ସ୍ଥାପନ କରି ତାକୁ ଡାଇଭୋର୍ସ କରିବାକୁ ପ୍ରସ୍ତାବ ଦେଇଥିଲେ ହେଁ ସେ ଆଦୌ ଭାଙ୍ଗିପଡ଼ି ନାହିଁ । ବରଂ ନିଜର ବ୍ୟକ୍ତିତ୍ୱକୁ ଜାହିର କରିବାକୁ ଯାଇ କହିଛି, "ଠିକ୍ ଅଛି,. ମୁଁ ପେପରରେ ଦସ୍ତଖତ କରିବାକୁ ପ୍ରସ୍ତୁତ ଅଛି । ତୁମେ ସବୁ ବ୍ୟବସ୍ଥା କର । ମାତ୍ର ତା ପୂର୍ବରୁ ବୁବୁଲ୍‌ର ଭବିଷ୍ୟତ ଓ ଆମର ବ୍ୟାଙ୍କ ଆକାଉଣ୍ଟ ପ୍ରଭୃତିର ଆଇନ୍‌ସମ୍ମତ ବୁଝାମଣା ହୋଇଯିବା ଦରକାର ।" (ପୃ-୩୧) ନାରୀକୁ ଏତେଦିନ ଧରି ଅବଳା ଦୁର୍ବଳା ମନେ କରି ଆସିଥିବା ପୁରୁଷସମାଜର ପ୍ରତିନିଧି ସୁରେଶ ସ୍ତବ୍ଧ ଓ ଚକିତ ହୋଇପଡ଼ିଛି । ପ୍ରତି କ୍ଷେତ୍ରରେ ନାରୀ ନିଜର ମର୍ଯ୍ୟାଦା ଓ ସମ୍ମାନକୁ ନେଇ ଯେ ବଞ୍ଚିବାକୁ ଚାହେଁ, ଏ ଯାବତ୍ ସ୍ୱାର୍ଥପର ପୁରୁଷସମାଜ ତାହା କେବେ କଳ୍ପନା କରିପାରି ନ ଥିଲା । ଫକୀରମୋହନଙ୍କ ରେବତୀ ପରି ସମସ୍ତ ରେବତୀ ଅସହାୟ ପୁରୁଷ ଉପରେ ନିର୍ଭରଶୀଳା- ଏହିପରି ଏକ ମିଥ୍ୟା ଧାରଣା ପୁରୁଷସମାଜକୁ ପ୍ରେରିତ କରିଥିଲା ରେବତୀମାନଙ୍କ ଉପରେ ଅତ୍ୟାଚାର କରିବାକୁ, ତାର ବ୍ୟକ୍ତିତ୍ୱର ପଥ ଅବରୁଦ୍ଧ କରିବାକୁ । ମାତ୍ର ଶୁଭକାନ୍ତଙ୍କ 'ରେବତୀ' ପୁରୁଷ ସମାଜର ଯୁଗଯୁଗର ଏହି ରୂଢ଼ିବାଦୀ ଧାରଣାକୁ

ଭାଙ୍ଗି ଚୂରମାର୍ କରି ଦେଇଛି । ନିଜର ସ୍ଥିତି ପ୍ରତି ସେ ସଚେତନ ହେବା ସଙ୍ଗେ ସଙ୍ଗେ ଆତ୍ମମର୍ଯ୍ୟାଦାର ସହିତ ବଞ୍ଚିବାକୁ ଶିଖିଛି । ବିଂଶ ଶତକର ଅନ୍ୟାନ୍ୟ ରେବତୀମାନଙ୍କ ପାଇଁ ଶୁଭକାନ୍ତଙ୍କ 'ରେବତୀ' ଯେ ଏକ ପ୍ରେରଣାର ଉତ୍ସ, ଅସ୍ୱୀକାର କରାଯାଇ ନ ପାରେ ।

ଆନନ୍ଦିତା ପଟ୍ଟନାୟକଙ୍କ 'ରେବତୀ' ପ୍ରକାଶ ପାଏ ସାପ୍ତାହିକ 'ସମୟ' ୧୧-୧୭ ଏପ୍ରିଲ ୧୯୯୯ ମସିହାରେ । ଏହାର ପୃଷ୍ଠଭୂମିରେ ରହିଛି ଫକୀରମୋହନଙ୍କ 'ରେବତୀ' ଗଳ୍ପଟି । ସେହି ଏକା ନାମ ରେବତୀ, ବାସୁଦେବ, ଜେଜୀମା ଓ ରେବତୀର ବୋଉ । ଶ୍ୟାମବନ୍ଧୁ ଏବଂ ତାଙ୍କ ପତ୍ନୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଆନନ୍ଦିତା ତଥା ଫକୀରମୋହନଙ୍କ 'ରେବତୀ'ର କଥାବସ୍ତୁରେ କୌଣସି ପରିବର୍ତ୍ତନ ନାହିଁ । ଏହା ପରଠାରୁ କଥାବସ୍ତୁଟି ନୂତନ ମୋଡ଼ ଗ୍ରହଣ କରେ । ହାଇସ୍କୁଲ ପରେ ରେବତୀ ପାଠ ପଢ଼େ କଲେଜରେ । ସହରର ସ୍ୱପ୍ନଝରା ରୂପ ତାକୁ ଭୁଲାଇ ଦିଏ ନିଜର ସଂସ୍କୃତିକୁ । ବାସୁଦେବ ସହିତ ନିର୍ବନ୍ଧକୁ ଅସ୍ୱୀକାର କରି ପ୍ରଜାପତି ପରି ଘୂରିବୁଲେ ସହରର ହୋଟେଲ ଓ ସିନେମାହଲ୍‌ରେ । ପ୍ରଥମ ପ୍ରେମର ପୂର୍ଣ୍ଣଚ୍ଛେଦ ପରେ ସହରୀ କଣ୍ଟ୍ରାକ୍ଟରଙ୍କ ଧନାଢ଼୍ୟ ପୁତ୍ରର ଯୌନପାଶରେ ଆବଦ୍ଧ ହୋଇ ଅନ୍ତଃସତ୍ତ୍ୱା ହେବାପରେ ନିଜର ଭୁଲ୍ ବୁଝେ । ମାତ୍ର ସମୟ ଅତିକ୍ରାନ୍ତ । ଅତୀତକୁ ଫେରିବାର ପଥ ଅବରୁଦ୍ଧ । ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ, ବର୍ତ୍ତମାନ ସମ୍ଭାବନାହୀନ । ଜେଜୀମା, ବାସୁଦେବ ଓ ଶ୍ୟାମବନ୍ଧୁଙ୍କ ସ୍ୱପ୍ନ ଟୁକୁରା କରିଥିବା ଆଧୁନିକ ଶିକ୍ଷିତା ରେବତୀ ନିଜର ସ୍ୱପ୍ନକୁ ମଧ୍ୟ ସାକାର କରିପାରେନା । ମୃତ୍ୟୁର ନୀଳିମାରେ ହଜିଯିବା ପୂର୍ବରୁ ସମାଜ ଓ ବ୍ୟକ୍ତିଚରିତ୍ରକୁ ଚିହ୍ନିବାର ଉପଲବ୍ଧି ପାଏ । ସ୍ୱାଧୀନତା ନାମରେ ସ୍ୱେଚ୍ଛାଚାର, ଆଧୁନିକ ସଂସ୍କୃତି ନାମରେ ଅପସଂସ୍କୃତି, ଶିକ୍ଷାନାମରେ ବ୍ୟଭିଚାର ଆମ ସଂସ୍କୃତିର କିପରି ଅବମୂଲ୍ୟାୟନ କରେ ତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଆନନ୍ଦିତାଙ୍କ 'ରେବତୀ' । ଆଧୁନିକ ଜୀବନକୁ ଚିହ୍ନିଥିବା ରେବତୀ ତା ଜୀବନର ଶେଷ ଚିଠି ଲେଖେ ପ୍ରିୟତମ ବାସୁଦେବ ନିକଟକୁ ''ନାରୀ ତ ନିଶ୍ଚିତ ଶିକ୍ଷିତା ହେବା ଦରକାର । ଭବିଷ୍ୟତର ନାଗରିକ ଗଢ଼ିବାର ଦାୟିତ୍ୱ ଯେ ନାରୀର ସେ ଶିକ୍ଷିତ ନ ହେଲେ ଏତେବଡ଼ ଦାୟିତ୍ୱ ସଂପାଦନ କରିପାରିବ ତ ! ହେଲେ ଶିକ୍ଷିତା ହେବାକୁ ଯାଇ ନାରୀତ୍ୱ ଯେମିତି ବିକ୍ରି ନ ହୁଏ । ଭାରତ ମାଟିର ମା ସବୁଦିନ ପବିତ୍ର । ସେଇ ପବିତ୍ରତାହିଁ ତାର ସମ୍ବଳ । ସମାଜର ମାନଦଣ୍ଡ । ଶିକ୍ଷାରେ ଏତିକି ଯୋଡ଼ିଦେବ ବାସୁଦେବ । ତେବେ ଆଧୁନିକତା ନାଁରେ ଡାଏନାମାନେ ଆମର ଆଦର୍ଶ ହେବେ ନାହିଁ । ଶିକ୍ଷିତା ହୋଇ ନିଜେ କଳଙ୍କିତ ହୋଇ ଶିକ୍ଷା କଳଙ୍କିତ ନ ହେଉ ।''[୩୨] ସାଂପ୍ରତିକ ସମାଜର ଅଧୋପତିତ ରେବତୀମାନଙ୍କ ପାଇଁ ଏହାହିଁ ଗାଳ୍ପିକାଙ୍କର ବାର୍ତ୍ତା ।

ରେବତୀର ଭିନ୍ନ ଏକ ରୂପ ଆବିଷ୍କାର କରନ୍ତି ଟିକିଲିବାବୁ ତାଙ୍କ 'ରେବତୀ' ଗଳ୍ପରେ । ଏହି ଗଳ୍ପଟି ଦୈନିକ ସମ୍ବାଦ ତା ୧୯.୦୩.୨୦୦୦ (ରବିବାର)ରେ ପ୍ରକାଶ ପାଏ । ଏଥିରେ ରେବତୀର ଦୁଇଟି ରୂପ ସଂପର୍କରେ ପାଠକ ପରିଚୟ ଲାଭ କରେ । ସ୍ନାତକୋତ୍ତର

ଇତିହାସ ବିଭାଗରେ ଅଧ୍ୟୟନରତ ଅବିବାହିତା ରେବତୀର ସ୍ୱୀକାରୋକ୍ତି ସେଦିନ ଅବିଶ୍ୱସନୀୟ ଭାବରେ ଚମତ୍କୃତ କରିଥିଲା ପ୍ରୌଢ଼ ପ୍ରଫେସର ରଜନୀକାନ୍ତଙ୍କୁ "ସାର୍ ! ଆପଣ ବହୁତ ସୁନ୍ଦର x x ଆପଣ ବହୁତ ଜିନିୟସ୍ x x ମୁଁ ଆପଣଙ୍କୁ ମନଭରି ଭଲପାଏ । ଆପଣଙ୍କ ଭିତରେ ହଜିଯିବାକୁ ଚାହେ ।"[୩୩] ହଠାତ୍ ପ୍ରୌଢ଼ରୁ ଯୁବକ ପାଲଟି ଯାଇଥିବା ପ୍ରଫେସର ରଜନୀକାନ୍ତ ରେବତୀ ମଧ୍ୟରେ ହଜିଯିବାବେଳେ ରେବତୀର ସତର୍କବାଣୀ "ଆଗାମୀ ଫାଇନାଲ୍ ପରୀକ୍ଷାରେ ମୋତେ ଫାଷ୍ଟକ୍ଲାସ ଫାଷ୍ଟ କରାଇବାର ଦାୟିତ୍ୱ ଆପଣଙ୍କର । ନଚେତ୍ ଆଉ ଜଣେ କ୍ଲିଣ୍ଟନ୍ ସୃଷ୍ଟି କରିବାପାଇଁ ମେଡିଆ ତତ୍ପର ହୋଇଉଠିବ ।" ଅତି ଦୟନୀୟ ଭାବେ ନିକ୍ଷେପ କରିଥିଲା ପ୍ରଫେସରଙ୍କୁ ଆକାଶରୁ ଟାଙ୍ଗରା ଭୂମିକୁ । ଏହି ମତଲବୀ ରେବତୀର ଅନ୍ୟ ଏକ ସ୍ୱରୂପ ଦେଖିବାକୁ ମିଳେ ତାର ବୈବାହିକ ଜୀବନରେ । ପତିପରାୟଣତାର ପରିଚୟ ଦେବାକୁ ଯାଇ ଟୁର୍ ଉଦ୍ଦେଶ୍ୟରେ ଯାତ୍ରା କରୁଥିବା ସ୍ୱାମୀକୁ ବଡ଼ କରୁଣ ସ୍ୱରରେ ଅନୁରୋଧ "ଏଇ ଜଲ୍‌ଦି ଫେରିବ ..... ତମ ବିନା କିଛି ଭଲ ଲାଗିବନି" । ଠିକ୍ ପରମୁହୂର୍ତ୍ତରେ ସ୍ୱର ବଦଳିଯାଏ ମି. ମହାନ୍ତିଙ୍କ ଗାଡ଼ି ଦୃଷ୍ଟିର ଅନ୍ତରାଳକୁ ଚାଲିଯିବା ପରେ । ମୋବାଇଲ୍ ଫୋନ୍‌ରେ ମିଃ ରଥଙ୍କୁ ନିମନ୍ତ୍ରଣ କରନ୍ତି ମିସେସ୍ ରେବତୀ ପାଞ୍ଚଦିନପାଇଁ ସ୍ୱାମୀଙ୍କ ଅନୁପସ୍ଥିତରେ କଂପାନୀ ଦେବାପାଇଁ । ଆଧୁନିକ ରେବତୀ ଚରିତ୍ରର ଏହି ଗୋପନ ଦିଗଟି ସବୁ କ୍ଷେତ୍ରରେ ସତ୍ୟ ନ ହେଲେହେଁ କେତେକ କ୍ଷେତ୍ରରେ ଯେ ବାସ୍ତବତାର ନିକଟବର୍ତ୍ତୀ, ଅସ୍ୱୀକାର କରାଯାଇ ନ ପାରେ । ବ୍ୟକ୍ତିଗତ ସ୍ୱାର୍ଥ ଓ ଯୌନଲାଳସା ଆଜିର ରେବତୀମାନଙ୍କୁ କିପରି ବିପଥଗାମୀ କରିଛି, ତାର ଏକା ପରୋକ୍ଷ ଚିତ୍ର ଟିକିଲିବାବୁଙ୍କ 'ରେବତୀ' ।

ଗୋଟିଏ ଶତାବ୍ଦୀ ମଧ୍ୟରେ ଫକୀରମୋହନଙ୍କ ରେବତୀକୁ ଅନୁସରଣ କରି ବହୁ ରେବତୀ ଆତ୍ମପ୍ରକାଶ କରିଛି । ମାତ୍ର ଅଳ୍ପ କେତେ ଜଣଙ୍କୁ ଛାଡ଼ିଦେଲେ ଅଧିକାଂଶ ରେବତୀ ସମୟ ସହିତ ପାଦ ମିଳାଇବାରେ ଅସମର୍ଥ । ସମାଜର ସାମଗ୍ରିକ ବିକାଶଧାରାରେ ଏମାନଙ୍କର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଲି ମନେହୁଏନା । ଆର୍ଥନୀତିକ ବ୍ୟବସ୍ଥା, ନାରୀପ୍ରତି ପୁରୁଷର ଦୃଷ୍ଟିଭଙ୍ଗୀ ଓ ବ୍ୟକ୍ତି ଅସହାୟତାରୁ ନାରୀ ନିର୍ଯାତନାର ସୃଷ୍ଟି । ଅଳ୍ପ କେତୋଟି ଝଲକ ସାମାନ୍ୟ ଆଲୋକିତ ପଥର ସନ୍ଧାନ ଦେବା ସମୟରେ ଅଧିକାଂଶ ରେବତୀ ସେହି ଅନ୍ଧକାରରେ ନିଜ ଭାଗ୍ୟକୁ ନେଇ ପଡ଼ିରହିଛନ୍ତି । ଭାବପ୍ରବଣତା ଓ ମାନସିକ ଅସ୍ଥିରତା ସେମାନଙ୍କର ପଥରୋଧ କରି ଦଣ୍ଡାୟମାନ । ଗୋଟିଏ ଶତାବ୍ଦୀ ଅତିକ୍ରମ କରି ଯାଇଥିଲେ ମଧ୍ୟ ବର୍ତ୍ତମାନର ରେବତୀମାନେ ଫକୀରମୋହନଙ୍କ 'ରେବତୀ'ଠାରୁ ଯେ ଅଧିକ ଦୂରବର୍ତ୍ତୀ, ତାହା ଆଦୌ ମନେହୁଏନା । ଏହା ସତ୍ତ୍ୱେ ମଣିଷର ପ୍ରବୃତ୍ତି ହେଉଛି ଆଶାକୁ ନେଇ ବଞ୍ଚିରହିବା । ଅପେକ୍ଷା କରାଯାଉ ଏକବିଂଶ ଶତାବ୍ଦୀର 'ରେବତୀ'ମାନଙ୍କ ପାଇଁ । କେଉଁପ୍ରକାର ଆତ୍ମବିଶ୍ୱାସ ନେଇ ସେମାନେ ନିଜପାଇଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର

ବୃତ୍ତ ରଚନା କ୍ଷେତ୍ରରେ କିପରି ସମର୍ଥ ହୋଇ ପାରୁଛନ୍ତି, ତାହାହିଁ କହିବେ ଏକବିଂଶ ଶତାବ୍ଦୀର ରେବତୀମାନେ ।

## ସଙ୍କେତ ସୂଚୀ

୧ - ଅନ୍ଧକାରର ଛାଇ - ବୀଣାପାଣି ମହାନ୍ତି - ରେବତୀ ରେବତୀ - ସଂ - ଅସିତ ମହାନ୍ତି । ଲେଖକୀୟ ବକ୍ତବ୍ୟ, ପୃ-୩୦ । ଫ୍ରେଣ୍ଡ୍ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ, ୧ମ ପ୍ର-୧୯୯୮ । ୨ - ଏଜନ୍ - ପୃ-୩୩ । ୩- ଝିଅ ଇସ୍କୁଲ - ପ୍ରଫୁଲ୍ଲ କୁମାର ତ୍ରିପାଠୀ - ଏଜନ୍ ପୃ-୪୧ । ୪- ରେବତୀ - ଜଗଦୀଶ ମହାନ୍ତି - ଏଜନ୍ ପୃ-୫୨ । ୫- ଏଜନ୍ - ପୃ-୫୩ । ୬- ଏଜନ୍ - ପୃ-୬୨ । ୭- ଏଜନ୍ - ପୃ -୬୨ । ୮- ରେବତୀ - ହୃଷୀକେଶ ପଣ୍ଡା । ଲେଖକୀୟ ବକ୍ତବ୍ୟ - ଏଜନ୍ - ପୃ-୬୪ । ୯- ଏଜନ୍ - ପୃ-୬୯-୭୦ । ୧୦- ଏଜନ୍ - ପୃ - ୭୪ । ୧୧- ରେବତୀ - କବିତା ବାରିକ - ଏଜନ୍ - ପୃ-୭୮ । ୧୨- ଏଜନ୍ ପୃ-୭୭-୭୮ । ୧୩- ଏଜନ୍ - ପୃ-୮୦ । ୧୪- ରେବତୀ - ସ୍ୱୟଂବରା ପଟ୍ଟନାୟକ - ଝଙ୍କାର ସେପ୍ଟେମ୍ବର ୧୯୯୪, ପୃ-୫୯୧ । ୧୫- ରେବତୀ - ତରୁଣକାନ୍ତି ମିଶ୍ର । ଲେଖକୀୟ ବକ୍ତବ୍ୟ - ଏଜନ୍ - ପୃ-୮୪ । ୧୬- ଏଜନ୍ - ପୃ-୮୮ । ୧୭- ଏଜନ୍ - ପୃ-୯୦ ।୧୮- ଏଜନ୍ - ପୃ-୯୧ । ୧୯- ଏଜନ୍ - ପୃ-୯୪ । ୨୦- ଅନ୍ୟ ଜଣେ ରେବତୀ - ଶଶି ରଥ । ଏଜନ୍ - ପୃ-୧୬୦ । ୨୧- ରେବତୀ - ବ୍ରଜେନ୍ଦ୍ର ନାଥ ଗିରି - ଏଜନ୍ - ପୃ-୧୦୪ । ୨୨- ଏଜନ୍ - ପୃ-୧୦୮ । ୨୩- ରେବତୀ - ଅଭୟ ବାରିକ - ଏଜନ୍ - ପୃ-୧୬୨ । ୨୪-ଏଜନ୍ - ପୃ-୧୭୨ । ୨୫-ଏଜନ୍ - ପୃ-୧୭୩ । ୨୬- ରେବତୀର ନୂଆ ମୁହଁ - ଜ୍ୟୋସ୍ନା ରାଉତରାୟ - ସମ୍ବାଦ - ୧୪.୧.୯୮. ପୃ-୪ । ୨୭- ଏଜନ୍ - ପୃ-୪ । ୨୮- 'ରେବତୀ' - ଅଞ୍ଜଳି ପାଢ଼ୀ - ଏଜନ୍ - ପୃ-୧୭୮ । ୨୯- ଏଜନ୍ - ପୃ-୧୮୧ । ୩୦- ରେବତୀ - ରଜନୀକାନ୍ତ ମହାନ୍ତି । ଏଜନ୍ - ପୃ-୧୯୭ । ୩୧- ପୁନଶ୍ଚ ରେବତୀ - ଚିତ୍ତରଞ୍ଜନ ସାମନ୍ତରାୟ । କଥା - ନବପ୍ରତିଭା ବିଶେଷାଙ୍କ - ୧୯୯୮-ପୃ-୬୮ । ୩୨- ରେବତୀ - ଆନନ୍ଦିତା ପଟ୍ଟନାୟକ - 'ସମୟ' ୧୧ ଏପ୍ରିଲ - ୧୭ ଏପ୍ରିଲ - ୧୯୯୯ - ପୃ-୪୪ । ୩୩- ରେବତୀ - ଟିକିଲିବାବୁ - ସମ୍ବାଦ - ୧୯.୦୩.୨୦୦୦ ରବିବାର ।

# ପ୍ରସଙ୍ଗ : ଶହେ ପାନ, ଦୁଇଶ ଗୁଆ ଓ କେନ୍ଦୁଝର ପ୍ରଜାମେଳି

୧୮୯୧ ମସିହାରେ ଫକୀରମୋହନ କେନ୍ଦୁଝରରେ ମ୍ୟାନେଜର ଥିବା ସମୟରେ ମେ' ମାସରେ ଏହି ଦ୍ୱିତୀୟ ପ୍ରଜାମେଳି ସଂଘଟିତ ହୋଇଥିଲା । ଫକୀରମୋହନଙ୍କ ଆତ୍ମଜୀବନ ଚରିତର ଊନବିଂଶ ପରିଚ୍ଛେଦରେ ଏ ସଂପର୍କରେ ବିଶଦ ବିବରଣୀ ପ୍ରଦତ୍ତ । ଏହି ପ୍ରସଙ୍ଗଟିକୁ ଆଧାର କରି ପରବର୍ତ୍ତୀ ସମୟରେ ଗବେଷକମାନଙ୍କ ମଧ୍ୟରେ ତୀବ୍ର ମତଭେଦ ପରିଲକ୍ଷିତ ହୋଇଛି । କେତେକ ଫକୀରମୋହନଙ୍କ ପକ୍ଷ ସମର୍ଥନ କରି ଓ ଅନ୍ୟ କେହି ମେଳିର ସର୍ଦ୍ଦାର ଧରଣୀଧର ନାୟକଙ୍କ ପକ୍ଷ ଧରି ବିବାଦର ଘେର ମଧ୍ୟକୁ ଆସିଯାଇଛନ୍ତି । 'ଆତ୍ମଜୀବନଚରିତ'ରେ ପ୍ରଦତ୍ତ ଏହି ପ୍ରସଙ୍ଗଟିକୁ କେହି କେହି ସଂପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ ଭାବେ ଗ୍ରହଣ କରିଥିବା ସମୟରେ ଅନ୍ୟ କେହି ଶତକଡ଼ା ଶହେ ଭାଗ ସତ୍ୟଭାବରେ ଗ୍ରହଣ କରିନେଇଥିବାରୁ ଏପ୍ରକାର ବିବାଦର ସୂତ୍ରପାତ । ଡଃ ଦାଶରଥି ଦାସଙ୍କ ପରି ଆଲୋଚକ ଏହି ଗ୍ରନ୍ଥଟିକୁ ଫକୀରମୋହନଙ୍କ 'ପଞ୍ଚମ ଉପନ୍ୟାସ' ଭାବରେ ଅଭିହିତ କରିଛନ୍ତି । ଡଃ ଅଶୋକ କୁମାର ଦାଶ ଡଃ ଦାଶରଥି ଦାସଙ୍କ ମତକୁ ସମର୍ଥନ କରି ଶହେ ପାନ, ଦୁଇଶ ଗୁଆ ପ୍ରସଙ୍ଗଟିକୁ ସଂପୂର୍ଣ୍ଣ ନିରର୍ଥକ ବୋଲି ପ୍ରତିପାଦିତ କରିବାକୁ ଚେଷ୍ଟା କରିଛନ୍ତି । ଏହାର ପ୍ରତିବାଦରେ ଗବେଷକ ସଚ୍ଚିଦାନନ୍ଦ ମିଶ୍ର 'ଝଙ୍କାର' ପତ୍ରିକାର ଅକ୍ଟୋବର ଓ ଡିସେମ୍ବର ୧୯୯୯ ସଂଖ୍ୟାରେ ଦୁଇଟି ପ୍ରବନ୍ଧ ରଚନା କରି ଏହାର ସତ୍ୟାସତ୍ୟ ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି । ଏତଦ୍‌ବ୍ୟତୀତ ଏ ସଂପର୍କରେ ଅନ୍ୟ କେତୋଟି ବିଶିଷ୍ଟ ଆଲୋଚନା ମଧ୍ୟ ଦେଖିବାକୁ ମିଳେ ।

କେନ୍ଦୁଝର ପ୍ରଜାମେଳି ସଂପର୍କରେ ଯେଉଁମାନେ ଆଲୋକପାତ କରିଛନ୍ତି, ସେମାନଙ୍କୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା - ସାମ୍ବାଦିକ, ଐତିହାସିକ ଓ ସାହିତ୍ୟ ସମୀକ୍ଷକ । 'ଉତ୍କଳଦୀପିକା', 'ସମ୍ବଲପୁର ହିତୈଷିଣୀ'ର ସଂପାଦକ; କୃଷ୍ଣ ସାମଲ, ପ୍ରସନ୍ନ କୁମାର ମିଶ୍ର, ଶିଶିର ପଣ୍ଡା ଆଦି ଐତିହାସିକ; ପଣ୍ଡିତ ମୃତ୍ୟୁଞ୍ଜୟ ରଥ,

ଡଃ ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି, ଡଃ ଦାଶରଥି ଦାସ, ଡଃ ଗଗନେନ୍ଦ୍ର ନାଥ ଦାଶ, ଡଃ ଅଶୋକ କୁମାର ଦାସ, ଗବେଷକ ସଚ୍ଚିଦାନନ୍ଦ ମିଶ୍ର ଆଦି ସାହିତ୍ୟିକ ବିଭିନ୍ନ ଦୃଷ୍ଟିକୋଣରୁ ପ୍ରସଙ୍ଗଟିର ଆଲୋଚନା କରିଛନ୍ତି । ଏପରିକି ପ୍ରାଣନାଥ ପଟ୍ଟନାୟକଙ୍କ ପରି ସମାଜବାଦୀ ନେତା ବିଷୟଟି ସଂପର୍କରେ କେତେକ ସୂଚନା ପ୍ରଦାନ କରିଛନ୍ତି । 'ଝଙ୍କାର' ଜାନୁଆରୀ ୧୯୯୯ ସଂଖ୍ୟାରେ ଡଃ ଅଶୋକ କୁମାର ଦାସଙ୍କ 'ଶହେ ପାନ, ଦୁଇଶ ଗୁଆ ଓ ଧରଣୀଧର କଥା' ପ୍ରବନ୍ଧଟି ପ୍ରକାଶ ପାଇବା ପରେ ଗବେଷକ ସଚ୍ଚିଦାନନ୍ଦ ମିଶ୍ର 'ଝଙ୍କାର' ପତ୍ରିକାର ଅକ୍ଟୋବର ଓ ଡିସେମ୍ବର ୧୯୯୯ ସଂଖ୍ୟାରେ ଯଥାକ୍ରମେ 'ଅଭିଯୁକ୍ତ ସେନାପତିଙ୍କ ଆତ୍ମପକ୍ଷ ସମର୍ଥନ' ଓ 'ବିବ୍ରତ ସେନାପତିଙ୍କ ପାନଗୁଆ ବରାଦ' ପ୍ରବନ୍ଧ ଦ୍ୱୟରେ ଡଃ ଦାଶରଥି ଦାସ ଏବଂ ଡଃ ଅଶୋକ କୁମାର ଦାସଙ୍କ ପ୍ରବନ୍ଧର ପ୍ରତିବାଦ କରିଛନ୍ତି । ପୂର୍ବରୁ ଏହି ପ୍ରସଙ୍ଗଟିକୁ ଉପଜୀବ୍ୟ କରି ଡଃ ଗଗନେନ୍ଦ୍ର ନାଥ ଦାଶ 'ଗୋକର୍ଣ୍ଣିକା' ପୂଜା ବିଶେଷାଙ୍କ, (ଅକ୍ଟୋବର, ନଭେମ୍ବର, ଡିସେମ୍ବର) ୧୯୯୪ରେ ''ଫକୀରମୋହନ ଓ ଧରଣୀଧର'' ଶିରୋନାମାରେ ଏକ ଚମତ୍କାର ପ୍ରବନ୍ଧ ରଚନା କରିଥିଲେହେଁ ଉପରୋକ୍ତ ଆଲୋଚକଗଣ ସେ ସଂପର୍କରେ କୌଣସି ସୂଚନା ଦେଇ ନାହାନ୍ତି । ଡଃ ଦାଶଙ୍କ ଏହି ପ୍ରବନ୍ଧଟି ପ୍ରକାଶ ପାଇବା ପରେ ୧୯୯୫ ମସିହା ମେ ମାସ ୫ ତାରିଖରେ ଧରଣୀଧର କଲେଜ, କେନ୍ଦୁଝରରେ ଧରଣୀଧରଙ୍କ ସଂପର୍କରେ ଏକ ଜାତୀୟ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଉକ୍ତ ଆଲୋଚନା ଚକ୍ରରେ ଉପସ୍ଥିତ ସାହିତ୍ୟିକ ଓ ଐତିହାସିକଗଣ ଉକ୍ତ ପ୍ରବନ୍ଧଟିରେ ସନ୍ନିବେଶିତ ତଥ୍ୟାବଳୀ ସଂପର୍କରେ ବିଶଦ ଆଲୋଚନା କରି ପ୍ରବନ୍ଧଟିର ଗୁଣାତ୍ମକମାନକୁ ପ୍ରଶଂସା କରିଥିଲେ । ଏପରିକି ବାଲେଶ୍ୱରରେ ମଧ୍ୟ ଫକୀରମୋହନଙ୍କ ଜୟନ୍ତୀ ଅବକାଶରେ ଅନୁଷ୍ଠିତ ଆଲୋଚନାଚକ୍ରରେ ଏହି ପ୍ରବନ୍ଧଟି ଥିଲା ବିଶେଷ ଆକର୍ଷଣୀୟ ପ୍ରସଙ୍ଗ । ଡଃ ଗଗନେନ୍ଦ୍ର ଦାଶଙ୍କ ପ୍ରବନ୍ଧଟି ପ୍ରକାଶ ପାଇବାର ଦୀର୍ଘ ପାଞ୍ଚବର୍ଷ ପରେ ଡଃ ଅଶୋକ କୁମାର ଦାସ ଏବଂ ଗବେଷକ ସଚ୍ଚିଦାନନ୍ଦ ମିଶ୍ର ସେହି ବିଷୟଟିକୁ ଉପଜୀବ୍ୟ କରି ପ୍ରବନ୍ଧ ରଚନା କରିଥିଲେହେଁ ଗୁଣାତ୍ମକ ମାନ ଦୃଷ୍ଟିରୁ ବିଚାରକଲେ ଗଗନବାବୁଙ୍କ ପ୍ରବନ୍ଧ ଅଧିକ ବୈଜ୍ଞାନିକ, ତଥ୍ୟନିଷ୍ଠ ଓ ନିରପେକ୍ଷ । ଅଶୋକବାବୁ କିମ୍ବା ସଚ୍ଚିବାବୁ ସେମାନଙ୍କ ପ୍ରବନ୍ଧରେ କୌଣସି ନୂତନ ତଥ୍ୟ ପ୍ରଦାନ କରି ନାହାନ୍ତି ଅଥବା ଦୃଷ୍ଟିଭଙ୍ଗୀରେ ନୂତନତା ପ୍ରଦର୍ଶନ କରି ନାହାନ୍ତି । ପରନ୍ତୁ ଏମାନଙ୍କ ପ୍ରବନ୍ଧରେ କେତେକ କ୍ଷେତ୍ରରେ ତଥ୍ୟଗତ ତ୍ରୁଟି ଓ ଆଲୋଚନାରେ ପକ୍ଷପାତିତାର ସ୍ୱର ବେଶ୍ ସ୍ପଷ୍ଟ । ତୁଳନାତ୍ମକ ଭାବେ ଉପରୋକ୍ତ ଆଲୋଚକ ତ୍ରୟୀଙ୍କ ପ୍ରବନ୍ଧଗୁଡ଼ିକର ବିଶ୍ଳେଷଣ କରି ବିବଦମାନ ଏହି ପ୍ରସଙ୍ଗଟିର ବାସ୍ତବତା ପ୍ରତିପାଦନ କରିବା ଉକ୍ତ ଆଲୋଚନାଟିର ମୁଖ୍ୟ ଉଦ୍ଦେଶ୍ୟ ।

ଡଃ ଦାଶରଥି ଦାସ ତାଙ୍କ ପ୍ରବନ୍ଧ 'ଫକୀରମୋହନଙ୍କ ପଞ୍ଚମ ଉପନ୍ୟାସ' ରେ ଫକୀରମୋହନଙ୍କ ଆତ୍ମଜୀବନ ଚରିତ୍ରଟିକୁ ଏକ ଉପନ୍ୟାସର ଗୌରବ ପ୍ରଦାନ କରିଛନ୍ତି ।

ଅବଶ୍ୟ ଏହା ସତ୍ୟ ଯେ ଉପନ୍ୟାସ କଳାର ସମସ୍ତ ଗୁଣ ଏହି ଗ୍ରନ୍ଥଟିରେ ସୁରକ୍ଷିତ । ଏହା ସତ୍ତ୍ୱେ ଏଥିରେ ବିଭିନ୍ନ ତଥ୍ୟ ଓ ବିବରଣୀର ଅଭାବ ନାହିଁ । ପୃଥିବୀରେ ଏମିତି କୌଣସି ଆତ୍ମଜୀବନୀ ନାହିଁ, ଯେଉଁଥିରେ ପ୍ରଦତ୍ତ ତଥ୍ୟାବଳୀ ଶତକଡ଼ା ଶହେରୁ ଶହେଭାଗ ସତ । ଡଃ ଦାସଙ୍କ ମତରେ ଆତ୍ମଜୀବନଚରିତର ଫକୀରମୋହନ ରକ୍ତମାଂସର ମଣିଷ ନୁହନ୍ତି, ଉପନ୍ୟାସର ଚରିତ୍ର ମାତ୍ର । ଆତ୍ମଜୀବନୀକାର ନିଜ ସୃଷ୍ଟିର ନାୟକ ବୋଲି ତ ସମସ୍ତେ ସ୍ୱୀକାର କରନ୍ତି । ଏତଦ୍‌ବ୍ୟତୀତ ଆତ୍ମଜୀବନଚରିତରେ ବର୍ଣ୍ଣିତ ବହୁ ଘଟଣା କେବଳ ଇତିହାସଦ୍ୱାରା ସମର୍ଥିତ ନୁହେଁ, ସେହି ଘଟଣା ସହିତ ଫକୀରମୋହନ ବ୍ୟକ୍ତିଗତଭାବେ ଓତପ୍ରୋତ ଜଡ଼ିତ । ପ୍ରବନ୍ଧର ପରବର୍ତ୍ତୀ ପର୍ଯ୍ୟାୟରେ 'ଆତ୍ମଜୀବନୀଚରିତ'ରେ ପ୍ରଦତ୍ତ ବିବରଣୀର ଐତିହାସିକ ସତ୍ୟାସତ୍ୟ ସଂପର୍କରେ ଆଲୋକପାତ କରାଯିବାକୁ ଥିବାରୁ ଏଠାରେ ସେ ସଂପର୍କରେ ବିଶେଷ ଆଲୋଚନା କରାଗଲା ନାହିଁ । ଗବେଷକ ସଚ୍ଚିଦାନନ୍ଦ ମିଶ୍ର ମଧ ଡଃ ଦାଶଙ୍କ ପ୍ରବନ୍ଧର ବିଶେଷ ଆଲୋଚନା କରିଛନ୍ତି ତାଙ୍କ ପ୍ରବନ୍ଧ 'ଅଭିଯୁକ୍ତ ସେନାପତିଙ୍କ ଆତ୍ମପକ୍ଷ ସମର୍ଥନ'ରେ ।

ଡଃ ଅଶୋକ କୁମାର ଦାସ ଓ ଗବେଷକ ସଚ୍ଚିଦାନନ୍ଦ ମିଶ୍ର ସେମାନଙ୍କ ଆଲୋଚନାରେ ସତ୍ୟାନ୍ୱେଷଣ ଅପେକ୍ଷା ଆକ୍ରମଣ ଓ ଭାବପ୍ରବଣତାକୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଡଃ ଦାସ ତାଙ୍କ ଆଲୋଚନାରେ ଆତ୍ମଜୀବନଚରିତ (ଊନବିଂଶ ପରିଚ୍ଛେଦ)ରେ ପ୍ରଦତ୍ତ କେତେକ ତଥ୍ୟଗତ ତ୍ରୁଟି ସଂପର୍କରେ ସୂଚନା ପ୍ରଦାନ କରିଥିଲେହେଁ ଫକୀରମୋହନଙ୍କୁ ତୀବ୍ର ଆକ୍ରମଣ କରିବା ହୋଇଛି ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଅନୁରୂପଭାବେ ଗବେଷକ୍ ମିଶ୍ର ଭାବପ୍ରବଣତାର ବଶବର୍ତ୍ତୀ ହୋଇ ପ୍ରତି ଆକ୍ରମଣ କରିଛନ୍ତି ଡଃ ଦାସଙ୍କୁ । ମାତ୍ର ଡଃ ଗଗନେନ୍ଦ୍ର ନାଥ ଦାଶ ନିରପେକ୍ଷତା ଅବଲମ୍ବନପୂର୍ବକ ଉଭୟ ଫକୀରମୋହନ ଓ ଧରଣୀଧରଙ୍କୁ ଆଲୋଚନା କରିବା ସଙ୍ଗେ ସଙ୍ଗେ ଐତିହାସିକ ଘଟଣା ଦୃଷ୍ଟିରୁ ବିଷୟଟିର ମୂଲ୍ୟାୟନ କରିଛନ୍ତି ଏବଂ କେଉଁ ମାନସିକତା ଫକୀରମୋହନ ଓ ଧରଣୀଧରଙ୍କୁ କେନ୍ଦୁଝର ପ୍ରଜାମେଳିରେ ଅବତୀର୍ଣ୍ଣ କରାଇଥିଲା, ତାର ବାସ୍ତବ ପୃଷ୍ଠଭୂମି ସଂପର୍କରେ ସୂଚନା ଦେଇଛନ୍ତି ।

୧୮୯୧ ମସିହା ମେ' ମାସରେ କେନ୍ଦୁଝରରେ ଦ୍ୱିତୀୟ ପ୍ରଜାମେଳି ହେବା ପୂର୍ବରୁ ୧୮୬୭-୬୮ ମସିହାରେ କେନ୍ଦୁଝର ରାଜଗାଦିକୁ ନେଇ ଅନ୍ୟ ଏକ ମେଳି ହୋଇଥିଲା । କେନ୍ଦୁଝରର ମହାରାଜ ଗଦାଧର ଭଞ୍ଜ ୧୮୬୧ ମସିହା ମାର୍ଚ୍ଚ ମାସ ୨୨ ତାରିଖ ଦିନ ପରଲୋକ ପ୍ରାପ୍ତି ହେବାରୁ ଏବଂ ରାଣୀ ବିଷ୍ଣୁପ୍ରିୟା ନିଃସନ୍ତାନ ଥିବାରୁ ମୟୂରଭଞ୍ଜ ରାଜପୁତ୍ର ବୃନ୍ଦାବନ ଚନ୍ଦ୍ର ଭଞ୍ଜଙ୍କୁ ପୋଷ୍ୟପୁତ୍ର ଭାବେ ଗ୍ରହଣ କରିବାକୁ ଚାହୁଥିଲେ । ମାତ୍ର ସୁପରିନ୍‌ଟେଣ୍ଡେଣ୍ଟ କେନ୍ଦୁଝର ରାଜାଙ୍କ ଜଣେ ଫୁଲବିବାହୀ ପୁତ୍ର ଧନୁର୍ଜ୍ଜୟ ନାରାୟଣ ଭଞ୍ଜଙ୍କୁ କେନ୍ଦୁଝର ରାଜ୍ୟର ବୈଧ ଉତ୍ତରାଧିକାରୀ ଭାବେ ସ୍ୱୀକୃତି ପ୍ରଦାନ କରିବାରୁ ଏହାର

ପ୍ରତିବାଦରେ ରାଣୀଙ୍କ ସମର୍ଥନକ୍ରମେ ରତ୍ନା ନାୟକ ନେତୃତ୍ୱରେ ଏକ ପ୍ରଜାମେଳି ସଂଘଟିତ ହୋଇଥିଲା । ବ୍ରିଟିଶ ସରକାର ଏହି ମେଳିକୁ କଠୋର ହସ୍ତରେ ଦମନ କରିବା ସଙ୍ଗେ ସଙ୍ଗେ ମେଳି ସର୍ଦ୍ଦାର ରତ୍ନା ନାୟକ ଓ ତାର ମୁଖ୍ୟ ଚାରିଜଣ ସହଯୋଗୀଙ୍କୁ ମୃତ୍ୟୁଦଣ୍ଡ ଦେଇଥିଲେ । ଅନ୍ୟାନ୍ୟ ୧୭୯ ଜଣ ବିଭିନ୍ନ ଦଣ୍ଡରେ ଦଣ୍ଡିତ ହୋଇଥିଲେ । (BJP - "Political"- Jan 1869, No. 31, Govt. of Bengal to Govt. of India - No. 5988, 23 Dec. 1868) । ଏହାପରେ ଧନୁର୍ଜୟ ଭଞ୍ଜ ନିର୍ବିଘ୍ନରେ ରାଜଗାଦି ଆରୋହଣ କରି ଶୃଙ୍ଖଳିତ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ କରିଥିଲେ । ମାତ୍ର ପରବର୍ତ୍ତୀ କାଳରେ ରାଜା ଅତିଶୟ କୃପଣ ଓ ଅତ୍ୟାଚାରୀ ହୋଇପଡ଼ିଲେ । ଭୂୟାଁ, ଜୁଆଙ୍ଗ ଓ ଅନ୍ୟାନ୍ୟ ଅଧିବାସୀଙ୍କ ଉପରେ ଅନ୍ୟାୟ କରମାନ ଲଦିଦେବାକୁ ଲାଗିଲେ । ପ୍ରଜାଙ୍କ କୃଷିସାମଗ୍ରୀ ବଜାରଦର ଅପେକ୍ଷା ଯଥେଷ୍ଟ କମ୍ ଦରରେ କ୍ରୟ କଲେ । ବେଠିରେ ପ୍ରଜାମାନଙ୍କୁ ଖଟାଇଲେ । ବିନା ମଜୁରିରେ ପ୍ରଜାଙ୍କୁ ଦ୍ରବ୍ୟ ବୋହିବା କାର୍ଯ୍ୟରେ ନିଯୁକ୍ତ କଲେ । (Samal - P. 330) ମାଗଣାରେ ରନ୍ଧନକାଠ ଯୋଗାଣ, ବିନା ପାରିଶ୍ରମିକରେ ରାଜଗୃହ ନିର୍ମାଣ, ରାସ୍ତା ନିର୍ମାଣ, କୂପ ଓ କେନାଲ ଖନନ ଆଦି ଯୋଗୁଁ ଅସନ୍ତୁଷ୍ଟ ପ୍ରଜା ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ନିବେଦନ କରିଥିଲେ । (Panda. P-32) ରାଜାଙ୍କର ଏହିପରି କେତେକ ଅନ୍ୟାୟ କାର୍ଯ୍ୟ ଓ ନିର୍ଯାତନା ଯୋଗୁଁ ୧୮୯୧ ମସିହା ମେ' ମାସରେ କେନ୍ଦୁଝରର ଭୂୟାଁ, ଜୁଆଙ୍ଗ ଆଦି ଏକ ମେଳି କରିଥିଲେ ।

ଭୂୟାଁମାନଙ୍କ ପ୍ରତି କେବଳ ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ନୁହନ୍ତି, ଅମଲାମାନେ ମଧ୍ୟ ଅତ୍ୟାଚାର କରୁଥିଲେ । ଶ୍ରମର ମୂଲ୍ୟ ଦେଉ ନ ଥିଲେ । ଏ ସଂପର୍କରେ ତତ୍କାଳୀନ କମିସନର ଓ ସୁପରିନ୍‌ଟେଣ୍ଡେଣ୍ଟ A.J. Mills ବଙ୍ଗଳା ସରକାରଙ୍କୁ ଲେଖିଥିଲେ : "It is the practice of these people to extract compulsory labour from their subjects or to take a percentage of the earnings ..... to furnish supplies to the Rajahs, officers or the Govt. Servants (Orissa Revenue Records, Vol-79, No-1876 : Mishra - P. 140) ଆସିଷ୍ଟାଣ୍ଟ ମ୍ୟାନେଜର ବିଚିତ୍ରାନନ୍ଦ ଦାସ ଏବଂ କନେଷ୍ଟବଲ ନାରାୟଣ ପୋଇଙ୍କ ଅତ୍ୟାଚାର ତଥା ରାଜା ଧନୁର୍ଜୟ ଭଞ୍ଜଙ୍କ ଅନ୍ୟାୟ କର ବ୍ୟବସ୍ଥାକୁ ବିରୋଧକରି ଭୂୟାଁ ଏବଂ ଜୁଆଙ୍ଗମାନେ କେନ୍ଦୁଝରର 'ପାବନି' ଗ୍ରାମରେ ଏକ ପଞ୍ଚାୟତ ଡକାଇଥିଲେ । ଏହି ସମ୍ବାଦ ପାଇ ରାଜା ବିଚିତ୍ରାନନ୍ଦ ଦାସଙ୍କୁ ସେଠାକୁ ପଠାଇଥିଲେ । ଶ୍ରୀ ଦାସ ପଞ୍ଚାୟତରେ ଉପସ୍ଥିତ କେତେକ ସଦସ୍ୟଙ୍କୁ ବନ୍ଦୀ କରି ଆଣିଲେ । ତନ୍ମଧ୍ୟରୁ କେତେକଙ୍କୁ ମୁକ୍ତ କଲେ ଓ ଅନ୍ୟ କେତେକଙ୍କୁ କାରାଦଣ୍ଡରେ ଦଣ୍ଡିତ କଲେ (ଉତ୍କଳ ଦୀପିକା - ଜୁଲାଇ ୧୧, ୧୮୯୧ - ପୃ - ୨୨୦) । ଏହା ପୂର୍ବରୁ ଧରଣୀଧର ବିନା ଦରମାରେ ପ୍ରାୟ ଦେଢ଼ବର୍ଷକାଳ ସର୍ଭେୟର

କାର୍ଯ୍ୟରେ ରାଜାଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ । ତପ୍‌ରେ ମୟୂରଭଞ୍ଜରେ ୩ । ୪ ବର୍ଷ କାର୍ଯ୍ୟ କରି ନିଜ ଗ୍ରାମ କୁସୁମିତାକୁ ଆସିଥିବା ସମୟରେ ଧନୁର୍ଜୟଙ୍କ ନିର୍ଦ୍ଦେଶରେ କେନ୍ଦୁଝର ଓ ସିଂହଭୂମର ସୀମାବିବାଦ ସମାଧାନରେ ସେଠାରେ କାର୍ଯ୍ୟରତ ହେଲେ । ଏହି ସମୟରେ ସେ ଏକ ସମ୍ବାଦ ପାଇଲେ ଯେ, ତାର ଭାଇ ଏବଂ ଅନ୍ୟ କେତେକ ସଂପର୍କୀୟ ବିନା ଦୋଷରେ ବନ୍ଦୀ ହୋଇ କାରାଗାରରେ ଅଛନ୍ତି । ରାଜାଙ୍କର ଏହି ଅନ୍ୟାୟ କାର୍ଯ୍ୟ ବିରୋଧରେ ସେ ପ୍ରଜାମାନଙ୍କୁ ବିଦ୍ରୋହ କରିବାକୁ ଆହ୍ୱାନ କଲେ । ଜାନୁଆରୀ ୧୮୯୧ରେ ଧରଣୀଧର ରାଜାଙ୍କ ଅତ୍ୟାଚାର ସଂପର୍କରେ କଟକର ସୁପରିଣ୍ଟେଣ୍ଡେଣ୍ଟ, ମୟୂରଭଞ୍ଜର ମ୍ୟାନେଜର ତଥା ବଙ୍ଗଳା ସରକାରଙ୍କୁ ମଧ୍ୟ ଅବଗତ କରାଇଥିଲେ (Mishra - P.151) ସବୁ କ୍ଷେତ୍ରରେ ବିଫଳ ହୋଇ ସେ ରାଜାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କଲେ. ଏବଂ ପ୍ରଜାମାନଙ୍କର ପ୍ରତ୍ୟକ୍ଷ ସମର୍ଥନ ମଧ୍ୟ ପାଇଲେ । ୧୮୯୧ ମସିହା ମେ' ମାସ ୨ ତାରିଖରେ କେନ୍ଦୁଝର, ବଣାଇ ଓ ସିଂହଭୂମର ପ୍ରାୟ ୧୨୦୦ କୋହ୍ଲ ଓ ଭୂୟାଁ ଚମକପୁର ଦଣ୍ଡପାଟରେ ଏକତ୍ରିତ ହୋଇ ସେଠାରେ କେତେକ କନେଷ୍ଟବଳ ଏବଂ ପାଇକମାନଙ୍କୁ ବନ୍ଦୀ କରିଥିଲେ । ଚମକପୁର ଗ୍ରାମ ଲୁଣ୍ଠନ ପରେ କେନ୍ଦୁଝରର ଧରଣୀଧର, ଜୟନ୍ତୀଗଡ଼ର ଦନାଇ ସର୍ଦ୍ଦାର ଏବଂ ସିଂହଭୂମର ନରେନ୍ଦ୍ର ମହାପାତ୍ରଙ୍କ ନେତୃତ୍ୱରେ ପ୍ରାୟ ୫୦୦ ବ୍ୟକ୍ତି କାଳିକାପ୍ରସାଦ ଦଣ୍ଡପାଟରେ ଏକତ୍ରିତ ହେଲେ । ଇତି ମଧ୍ୟରେ ବିପ୍ଳବୀଙ୍କର ସଂଖ୍ୟା ୨୦୦୦ରେ ପହଞ୍ଚି ଯାଇଥିଲା । ସେମାନେ ଚେରଗଡ଼ ଏବଂ ନୟାକଟଠାରେ ଲୁଟ୍‌ତରାଜ କରିବା ସଙ୍ଗେ ସଙ୍ଗେ ଗଡ଼ ସଂଲଗ୍ନ ସମସ୍ତ ପଥ ଅବରୋଧ କରି ଯୋଗାଯୋଗ ବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରିଦେଇଥିଲେ (Mishra - P.152) । ଏହାପରେ କେନ୍ଦୁଝର ବିପ୍ଳବ ଭୀଷଣ ରୂପ ଧାରଣ କଲା ।

ବର୍ତ୍ତମାନ ଫକୀରମୋହନଙ୍କଦ୍ୱାରା ପ୍ରଦତ୍ତ ବିବରଣୀ ଏବଂ ସେହି ବିବରଣୀକୁ ଆଧାର କରି ବିଭିନ୍ନ ଆଲୋଚକଙ୍କ ଆଲୋଚନାଗୁଡ଼ିକୁ ପର୍ଯ୍ୟାଲୋଚନା କରାଯାଇପାରେ । ଫକୀରମୋହନଙ୍କ 'ଆତ୍ମଜୀବନଚରିତ' ଅନୁଯାୟୀ "ମୁଁ ମଫସଲ ଗସ୍ତକୁ ଯାଇ ଆନନ୍ଦପୁର କଚେରିଠାରୁ ପ୍ରାୟ ପାଞ୍ଚମାଇଲ୍ ଦୂର ବୈତରଣୀ କୂଳବର୍ତ୍ତୀ ନୂଆଗଡ଼-ଗ୍ରାମ-ନିକଟସ୍ଥ ଗୋଟିଏ ଆମ୍ବତୋଟାରେ ଡେରାପକାଇ ରହିଥିଲି । ପ୍ରାୟ ରାତି ଏଗାରଟା ସମୟରେ ଆହାରାଦି ସାରି ତମ୍ବୁ ବାରନ୍ଦାରେ ଗୋଟିଏ ଆରାମ ଚୌକିରେ ବସି ଶୀତଳ ବାୟୁ ସେବନ କରୁଥାଏ । ଏମନ୍ତ ସମୟରେ କେନ୍ଦୁଝରଗଡ଼ରୁ ଦୁଇଜଣ ଦୌଡ଼ପାଇକ ମହାରାଜାଙ୍କର ଖଣ୍ଡିଏ ଗୋପନୀୟ ପତ୍ରଧରି ମୋ ନିକଟରେ ଉପସ୍ଥିତ ହେଲେ । ପ୍ରଜା ବିଦ୍ରୋହ ବିବରଣ ସଂକ୍ଷେପରେ ସେହି ପତ୍ରରେ ଲେଖାଥିଲା ।" (ପୃ. ୧୪୭-୪୮) । ଏଥିରେ ଫକୀରମୋହନ କୌଣସି ତାରିଖ ସଂପର୍କରେ ସୂଚନା ଦେଇ ନାହାନ୍ତି । ମାତ୍ର ଆତ୍ମଜୀବନୀର ଅନ୍ୟତ୍ର ସୂଚନା ଦେଇ ଲେଖିଛନ୍ତି "ତୃତୀୟ ଦିବସ ରାତ୍ରି ୯ ଘଣ୍ଟା ସମୟରେ ମୋହର

ଦୈନିକ କାର୍ଯ୍ୟ ସମାପ୍ତ କରି ଆହାର କରିବାକୁ ଯାଉଅଛି, ଏମନ୍ତ ସମୟରେ ମହାରାଜା, ଏସିଷ୍ଟେଣ୍ଟ ମେନେଜର ବିଚିତ୍ରାନନ୍ଦ ଦାସ ଓ କେତେଜଣ ବିଶ୍ୱାସୀ ପାଖଲୋକଙ୍କ ସହିତ ତିନିଗୋଟା ହାତୀରେ କଚେରିଠାରେ ଉପସ୍ଥିତ ହେଲେ ।'' (ପୃ ୧୪୮) । ଐତିହାସିକ ପ୍ରସନ୍ନ କୁମାର ମିଶ୍ର Orissa Records, Keonjhar Papers ରୁ ବିବରଣୀ ସଂଗ୍ରହ କରି ଲେଖିଛନ୍ତି x x x Such a state of object Panic forced the Raja to leave his Garh on 7th May 1891 for a self shelter at Anandpur, 52 miles from Keonjhar (P.152) । ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ଚିଠି ପାଇବାର ତୃତୀୟ ଦିନ ରାଜା ଆନନ୍ଦପୁରରେ ପହଞ୍ଚିଥିଲେ । ରାଜାଙ୍କର ପହଞ୍ଚିବାର ତାରିଖଟି ମେ' ମାସ ୭ ହେଲେ, ରାଜାଙ୍କ ପ୍ରଥମ ଚିଠି ସେ ପାଇଥିବେ ୫ ତାରିଖରେ। ସଚ୍ଚିବାବୁଙ୍କ ଗଣନା ଏ କ୍ଷେତ୍ରରେ ସଂପୂର୍ଣ୍ଣ ସତ୍ୟ । (ଝଙ୍କାର, ଡିସେମ୍ବର ୯୯-ପୃ-୧୧୮୭) ଶ୍ରୀଯୁକ୍ତ ମିଶ୍ର ୧୧ ତାରିଖ ପର୍ଯ୍ୟନ୍ତ ଘଟଣାଗୁଡ଼ିକୁ ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ତାରିଖ ପରେ ତାରିଖ ସଜାଇ ରଖିଛନ୍ତି । ରାଜା ଧନୁର୍ଜୟ ଫକୀରମୋହନଙ୍କୁ ସଙ୍ଗରେ ନେଇ ଗଡ଼ଜାତ ମହଲର ସୁପରିଣ୍ଟେଣ୍ଡେଣ୍ଟ ଜି. ଟୟନବୀଙ୍କୁ ସାକ୍ଷାତ୍ କରିଥିଲେ ମେ' ମାସ ୧୨ ତାରିଖରେ । ଟୟନବୀ ବଙ୍ଗଳା ସରକାରଙ୍କୁ ମେଳି ସଂପର୍କରେ ଜଣାଇଥିଲେହେଁ ସରକାର ପ୍ରଥମେ ଏଥିରେ ହସ୍ତକ୍ଷେପ କରିବାକୁ ରାଜି ନ ଥିଲେ । ମାତ୍ର ରାଜା ନିଜ ସଂପର୍କୀୟଙ୍କ ସୁରକ୍ଷା ପାଇଁ ଅନୁରୋଧ କରିବା ସହିତ ସମସ୍ତ ଖର୍ଚ୍ଚ ବହନ କରିବାକୁ ପ୍ରତିଶ୍ରୁତି ଦେବାରୁ ସରକାର ମେଳିଦମନ ନିମିତ୍ତ ରାଜି ହୋଇଥିବା ବିଷୟ Orissa Records, Keonjhar Papers, Vol-612ରେ ଥିବା G. Toynbee, 13th May 1891 ଚିଠିରୁ ଜଣାପଡ଼େ (Mishra - P.152) ଡଶନଙ୍କ ନେତୃତ୍ୱରେ ୧୫୦ ଜଣ ସଶସ୍ତ୍ର ପୋଲିସ୍ ମେ' ୧୪ ତାରିଖ ଦିନ ସିଂହଭୂମରୁ କେନ୍ଦୁଝର ଯାଇଥିଲେ । ବାଲେଶ୍ୱର ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଧୀନରେ ଆଉ ଏକ ପୋଲିସ୍ ବାହିନୀ କଟକରୁ ସାହାଯ୍ୟ ନିମିତ୍ତ ଯାଇଥିଲେ । ଚାଇଁବସାରେ ଅବସ୍ଥାନ ସମୟରେ ଡଶନ୍ ଏକ ଟେଲିଗ୍ରାମ୍ ପାଇଥିଲେ ଟୟନବୀଙ୍କ ଠାରୁ । ଉକ୍ତ ଟେଲିଗ୍ରାମ୍‌ରେ କେନ୍ଦୁଝର ଶୀଘ୍ର ଯିବାପାଇଁ ଏବଂ ମେଳିଆ ଓ ତାଙ୍କ ନେତାମାନଙ୍କୁ ଆତ୍ମସମର୍ପଣ କରାଯିବା ନିମିତ୍ତ କୁହାଯିବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଏହି ନିର୍ଦ୍ଦେଶାନୁଯାୟୀ ଡଶନ୍ ଚାଇଁବସାଠାରେ ଏକ ଘୋଷଣାପତ୍ର ପ୍ରକାଶ କରିଥିଲେ । ପୁନରାୟ ମେଳିଆମାନଙ୍କର ଦମନପାଇଁ ଜଙ୍ଗଲ ବିଭାଗର ଡେପୁଟି କନ୍‌ଜରଭେଟର Charles Willingstone ତାଙ୍କୁ ସାହାଯ୍ୟ କରୁଥିଲେ । ୧୮୯୧ ମସିହା ମେ' ୧୫ ତାରିଖରେ ବଙ୍ଗଳା ସରକାରଙ୍କ ଟୟନବୀଙ୍କ ପାଖକୁ ଏକ ପତ୍ରରୁ ଏହା ଜଣାଯାଇଥାଏ । ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ଧନୁର୍ଜୟ ନାରାୟଣଙ୍କ ସହିତ ସେ ଟୟନବୀଙ୍କୁ ସାକ୍ଷାତ୍ କରିବା ପରେ ଆନନ୍ଦପୁର ଫେରିଥିଲେ । ସେଠାରେ ସେ ପାଇକ ସଂଗ୍ରହରେ

ଗୋଟିଏ ଦିନ ବିତାଇ ତା'ପରଦିନ ସେ ଓ ମହାରାଜା ଆନନ୍ଦପୁରରୁ କେନ୍ଦୁଝରଗଡ଼ ଅଭିମୁଖେ ଯାତ୍ରାକଲେ; ତା'ପରଦିନ ଅର୍ଥାତ୍ ୧୮୯୧ ମେ' ମାସ ରବିବାର ସକାଳେ ସେମାନେ ଘଟଗାଁରେ ପହଞ୍ଚି ଖବର ପାଇଲେ ମେଳିଆମାନେ ମେ' ମାସ ୧୨ ତାରିଖ ଶନିବାର ଦିନ କେନ୍ଦୁଝରଗଡ଼ ଆକ୍ରମଣ କରିଛନ୍ତି । ଇତିହାସ ଓ ସରକାରୀ ରେକର୍ଡ଼ ସହିତ ଫକୀରମୋହନଙ୍କର ଏହି ବିବରଣୀ ସଂପର୍କ ରକ୍ଷାକରି ପାରୁ ନାହିଁ । ପାଇକଠାରୁ ଫକୀରମୋହନ ଯେଉଁ ଚିଠି ପାଇଥିଲେ ତାହା ହେଉଛି ଏହିପରି "ଆଜି ମଇମାସ ୧୨ ତାରିଖ ଶନି ଛ' ଘଡ଼ି ସମୟ ପ୍ରାୟ ପାଞ୍ଚଶତ ଭୂୟାଁ ଆସି ଗଡ଼ ଘେରିଥିଲେ । ଗଡ଼ ଭିତରକୁ ପଶିବା ସକାଶେ ଉଦ୍‌ଯୋଗ କରିବାରୁ ଆମ୍ଭେମାନେ ଗଡ଼ ପାଚେରି ଉପରେ ଥାଇ ବନ୍ଧୁକ ଫଏର କଲୁଁ । ଭୂୟାଁମାନେ ଭୟରେ ପଳାଇଯାଇ ରାଇସୁଆଁ ମୁକାମରେ ଅଡ଼ା ବାନ୍ଧି ରହିଛନ୍ତି (ପୃ-୧୬୨) । ସରକାରୀ ରେକର୍ଡ଼ ଅନୁଯାୟୀ ଫକୀରମୋହନଙ୍କଦ୍ୱାରା ପ୍ରଦତ୍ତ ଚିଠିର ବିବରଣୀ ସତ୍ୟ, ମାତ୍ର ତାରିଖ ଏବଂ ବିଦ୍ରୋହୀଙ୍କ ସଂଖ୍ୟା ତ୍ରୁଟିପୂର୍ଣ୍ଣ । ଜୟକୃଷ୍ଣ ସାମଲଙ୍କ ମତରେ "Before Dawson reached Keonjhar, he received information that the disturbance in Keonjhar was more serious than at first supposed. It was reported that the insurgents, numbering about 2,000 attacked the Keonjhar Garh on 15th May, but had been repulsed by the king's people. (P.331) । ମାତ୍ର ପ୍ରସନ୍ନ କୁମାର ମିଶ୍ର Orissa Records, Keonjhar Papers ର ପାଲଲହଡ଼ା ମ୍ୟାନେଜର ୨୪ ମେ, ୧୮୯୧ରେ ଟୟନବୀଙ୍କ ଚିଠି ଅନୁଯାୟୀ ଲେଖିଛନ୍ତି - "On 16th May 1891, they attempted to enter into the palace of the Raja at Keonjhar, but were severely resisted by the guards commanded by Kshetribar Singh. In that encounter twelve insurgents and one paik of the Raja were killed. Although the insurgents were disheartened due to their failure, they had not completely lost hope. They renewed and intensified their insurrectionary activities and closed all dak communications between Keonjhar and Pallehra. They did not allow anybody to go from one state to another and were determined not to allow the Raja to occupy the gadi once again. The strength of the insurgents gradually increased from ten to twenty thousands by 24th May 1891 (P.153).

ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ସେ ମେ ୧୪ ତାରିଖ ସୋମବାର ଦିନ ମେଳିଆମାନଙ୍କଦ୍ୱାରା ବନ୍ଦୀ ହେଲେ ଏବଂ ବନ୍ଦୀ ଅବସ୍ଥାରେ ଭୋଳାନାଥ ଖମାରିଆଙ୍କ ନିକଟକୁ ଚିଠି ଲେଖିଲେ ମେ' ୧୬ ତାରିଖରେ । ବନ୍ଦୀ ହେବାର ଅଷ୍ଟମଦିନ (୨୧ ତାରିଖ) ଡଶନଙ୍କ ଏକ ଚିଠି ନେଇ ଇନିସ୍‌ପେକ୍ଟର ଶଶିଭୂଷଣ ଧରଣୀଧରଙ୍କ ନିକଟରେ ପହଞ୍ଚିଲେ ଓ ବନ୍ଦୀହେବାର ନବମଦିନ ଅର୍ଥାତ୍ ୨୨ ତାରିଖରେ ଧରଣୀଧର ଡଶନଙ୍କଦ୍ୱାରା ବନ୍ଦୀହେଲେ । ଫକୀରମୋହନଙ୍କ ଏହି ବିବରଣୀଗତ ତ୍ରୁଟିକୁ ଡଃ ଅଶୋକ କୁମାର ଦାସ ଜାନୁୟାରୀ (୧୯୯୯) ମାସ 'ଝଙ୍କାର'ରେ ପ୍ରକାଶ କରିଛନ୍ତି । ମାତ୍ର ତାଙ୍କର ବହୁପୂର୍ବରୁ ଡଃ ଗଗନେନ୍ଦ୍ର ନାଥ ଦାଶ 'ଫକୀରମୋହନ ଓ ଧରଣୀଧର' ପ୍ରବନ୍ଧରେ ଏହା କହିସାରିଛନ୍ତି । ତାଙ୍କର ଉକ୍ତି ହେଉଛି "୧୮୯୧ ଜୁଲାଇ ୨୨ ତାରିଖରେ 'ସମ୍ବଲପୁର ହିତୈଷିଣୀ'ରେ ଓ 'ଉତ୍କଳ ସାହିତ୍ୟ'ର ୨୨/୫, ୧୩୨୫ ଭାଦ୍ର ସଂଖ୍ୟାରେ ମୃତ୍ୟୁଞ୍ଜୟ ରଥଙ୍କଦ୍ୱାରା ଉଦ୍ଧୃତ 'ଉତ୍କଳ ଦୀପିକା'ର ବିବରଣୀ ଅନୁଯାୟୀ ଫକୀରମୋହନ ମେ' ୧୯ ତାରିଖରେ ବନ୍ଦୀ ହେଲେ ଓ ବନ୍ଦୀ ଭାବରେ ଦଶଦିନ କଟାଇ ମେ' ୨୯ ତାରିଖରେ ବନ୍ଦୀରୁ ମୁକ୍ତ ହେଲେ । ପୁଣି ସରକାରୀ କାଗଜପତ୍ର ଅନୁଯାୟୀ ମହାରାଜା (ଓ ଫକୀରମୋହନ) କଟକରେ ଟୟନବୀଙ୍କୁ ସାକ୍ଷାତ୍ କଲେ ମେ' ୧୨ ତାରିଖରେ (ଟୟନବୀ ଏହା ନିଜେ ଲିପିବଦ୍ଧ କରିଛନ୍ତି) । ଡଶନ ଚାଇଁବସାରୁ କେନ୍ଦୁଝର ଗଡ଼ ଅଭିମୁଖେ ଯାତ୍ରାରମ୍ଭ କଲେ ମେ' ୨୧ ତାରିଖରେ; ସେ ଇନିସ୍‌ପେକ୍ଟର ଶଶିଭୂଷଣଙ୍କୁ ଧରଣୀଧରଙ୍କ ନିକଟକୁ ପଠାଇଲେ ମେ' ୨୪ ତାରିଖରେ; ଶଶିଭୂଷଣ ଧରଣୀଧରଙ୍କ ନିକଟରୁ ଫେରିଆସି ତାଙ୍କୁ ଭେଟିଲେ ମେ' ୨୭ ତାରିଖରେ ଓ ଶେଷରେ ସେ ଧରଣୀଧରଙ୍କୁ ବନ୍ଦୀ କଲେ ତଥା ଫକୀରମୋହନଙ୍କୁ ବନ୍ଦୀରୁ ମୁକ୍ତ କଲେ ମେ' ୨୯ ତାରିଖରେ (ଡଶନ ଏହା ନିଜେ ଲିପିବଦ୍ଧ କରିଛନ୍ତି ଧରଣୀଧର ବନ୍ଦୀ ହେବାର ମାତ୍ର ଦୁଇଦିନ ପରେ ଅର୍ଥାତ୍ ଜୁନ୍ ୧ ତାରିଖରେ) । (ପୃ-୧୫) ଡଃ ଅଶୋକ କୁମାର ଦାସ ଫକୀରମୋହନଙ୍କ ବିବରଣୀ ଉପରେ ନିର୍ଭର କରି ଲେଖିଛନ୍ତି "ତେଣୁ ସେ ୧୪ ତାରିଖ ଦିନ ଧରାପଡ଼ି ବନ୍ଦୀ ହୋଇଥିବା ସତ୍ୟ ହୋଇପାରେ । (ପୃ-୧୪୯୨) ମାତ୍ର ଡଃ ଦାସଙ୍କ ଏହି ଅନୁମାନ ତ୍ରୁଟିପୂର୍ଣ୍ଣ । ଅନ୍ୟାନ୍ୟ କେତେକ ପ୍ରମାଣରୁ ମଧ୍ୟ ଡଃ ଗଗନେନ୍ଦ୍ର ନାଥ ଦାଶ ଫକୀରମୋହନଙ୍କ ବନ୍ଦୀର ସମୟ ୧୯ ତାରିଖ ବୋଲି ଯାହା କହିଛନ୍ତି, ତାହା ସତ୍ୟ । 'ଉତ୍କଳ ଦୀପିକା' ମଧ୍ୟ ଫକୀରମୋହନ ମେ' ୧୯ ତାରିଖରେ ବନ୍ଦୀ ହୋଇଥିବା ସ୍ୱୀକାର କରନ୍ତି । ଡଃ ଦାସ ଏ ସଂପର୍କରେ ଆଉ କେତେକ ପ୍ରମାଣ ଦିଅନ୍ତି ।" ମହାରାଜା ଓ ଫକୀରମୋହନଙ୍କ ସହ ଆନନ୍ଦପୁରରୁ ବାହାରି ଓ ପରେ ଫକୀରମୋହନଙ୍କ ସହ ମେଳିଆମାନଙ୍କ ଦ୍ୱାରା ବନ୍ଦୀହୋଇ ଦୁଇଦିନ ପରେ ଛାଡ଼ ପାଇଥିବା ଜଣେ ପାଇକ ଧନୁ ଅମାନ୍ତର ବୟାନ୍ ଅନୁଯାୟୀ ଫକୀରମୋହନ (ଓ ଧନୁ ଅମାନ୍ତ) ବନ୍ଦୀ ହେଲେ ମଙ୍ଗଳବାର ଦିନ । ଏ ବୟାନର ତାରିଖ ମେ' ୨୪ ତାରିଖ ଓ

ଏହା ସରକାରୀ କାଗଜପତ୍ରର ଅନ୍ତର୍ଭୁକ୍ତ । ମେ' ମାସର ୧୯ ତାରିଖ ମଙ୍ଗଳବାର ପଡ଼ିଥିଲା । ଅର୍ଥାତ୍ ଉତ୍କଳ ଦୀପିକାର ବିବରଣୀ ଓ ଧନୁ ଅମାନ୍ତର ବୟାନ ମିଶି ଯାଉଛି । ପୂର୍ବେ କୁହାଯାଇଛି ମହାରାଜା ଓ ଫକୀରମୋହନ କଟକରେ ଟୟନବୀଙ୍କ ସହ ମେ' ୧୨ ତାରିଖରେ ସାକ୍ଷାତ୍ କରିଥିବାରୁ ଫକୀରମୋହନ ଯେ ମେ' ୧୪ ତାରିଖରେ ନୁହେଁ, ତାର ୪।୫ ଦିନ ପରେହିଁ ମେଳିଆମାନଙ୍କଦ୍ୱାରା ବନ୍ଦୀ ହୋଇଥିବେ । ତେଣୁ ମନେହୁଏ 'ଉତ୍କଳଦୀପିକା' ପ୍ରଦତ୍ତ ତାରିଖ ଏ କ୍ଷେତ୍ରରେ ଠିକ୍ ଓ ଫକୀରମୋହନ ମେ' ୧୯ ତାରିଖରେ ବନ୍ଦୀ ହୋଇଥିଲେ । ତା' ହୋଇଥିଲେ କେବଳ ତାରିଖ ନୁହେଁ, ଫକୀରମୋହନଙ୍କ ପ୍ରଦତ୍ତ ଦିନର ସଂଖ୍ୟା ଭ୍ରମାତ୍ମକ । କାରଣ ସେ ମେ' ୧୯ ତାରିଖରେ ବନ୍ଦୀହୋଇ ମେ' ୨୯ ତାରିଖରେ ମୁକ୍ତ ହୋଇଥିଲେ । ଅର୍ଥାତ୍ ସେ ଆଠଦିନ ନୁହେଁ, ଦଶଦିନ ବନ୍ଦୀ ଥିଲେ ଓ ନବମଦିନ ନୁହେଁ ଏକାଦଶ ଦିନ ବନ୍ଦୀରୁ ମୁକ୍ତି ଲାଭ କରିଥିଲେ । କେବଳ ସେତିକି ନୁହେଁ ଧନୁ ଅମାନ୍ତର ବୟାନ୍ ଅନୁଯାୟୀ ସେ କେନ୍ଦୁଝରଗଡ଼ ଯିବା ବାଟରେ ଘଟଗାଁରେ ମଧ୍ୟ ରାତିଟିଏ କଟାଇଥିଲେ ଯାହା ତାଙ୍କ 'ଆତ୍ମଜୀବନଚରିତ'ରେ ଉଲ୍ଲିଖିତ ନାହିଁ । ଏହି ଗୋଟିଏ ଅଧିକା ଦିନକୁ ହିସାବକୁ ନେଲେ ସେ ଆନନ୍ଦପୁର ଛାଡ଼ିବା ଓ ବନ୍ଦୀହେବା ମଧ୍ୟରେ ବାଟରେ ତିନିରାତି କଟାଇଥିଲେ । ସେ ଯଦି ମେ' ୧୯ ତାରିଖରେ ବନ୍ଦୀହେଲେ, ତେବେ ସେ ଆନନ୍ଦପୁର ଛାଡ଼ିଥିବେ ମେ' ୧୬ ତାରିଖ ଶନିବାର ଦିନ । ଫକୀରମୋହନ କହନ୍ତି ଯେ ''ଶନିବାର ପ୍ରାତଃକାଳ ପୂର୍ଣ୍ଣ ବାରବେଳା ସମୟରେ ସେ ମହାରାଜାଙ୍କ ଗହଣରେ ଆନନ୍ଦପୁରରୁ କେନ୍ଦୁଝର ଗଡ଼ ଅଭିମୁଖେ ଯାତ୍ରାରମ୍ଭ କରିଥିଲେ ।'' ଫକୀରମୋହନଙ୍କ ବିବରଣୀରେ ଶନିବାର ଏଠାରେ ଠିକ୍ (ପୃ-୧୬) ଡଃ ଅଶୋକ କୁମାର ଦାସ ଫକୀରମୋହନଙ୍କ ବାର ଏବଂ ତାରିଖର ତ୍ରୁଟି ସଂପର୍କରେ ଉଲ୍ଲେଖ କରିବାକୁ ଯାଇ କହିଛନ୍ତି - ''ଫକୀରମୋହନଙ୍କ ତଥ୍ୟ ଅନୁସାରେ ଏ ପତ୍ରଟିରେ ୧୨ ତାରିଖ ଶନିବାର ବୋଲି ଯାହା ସେ ଲେଖିଛନ୍ତି, ତାହା ମଧ୍ୟ ମିଛ । କାରଣ ଗଣନା କରି ମୁଁ ଦେଖିଛି, ୧୮୯୧ ମସିହା ମଇ ୧୨ ତାରିଖଟି ପଡ଼ିଥିଲା ମଙ୍ଗଳବାର ଦିନ; ଶନିବାର ନୁହେଁ । ତେଣୁ ଏ ପତ୍ରଟି ମଧ୍ୟ ଫକୀରମୋହନଙ୍କ ଚମତ୍କାର କଳ୍ପନାଛଡ଼ା କ'ଣ କୁହାଯାଇପାରେ ? (ପୃ-୧୪୯୧) । ଡଃ ଅଶୋକ କୁମାର ଦାସ ଏଠାରେ କୌଣସି ନୂତନ ତଥ୍ୟ ପ୍ରଦାନ କରି ନାହାନ୍ତି । ବରଂ ତାଙ୍କ ପୂର୍ବରୁ ଡଃ ଗଗନେନ୍ଦ୍ର ନାଥ ଦାଶ ଗଣନାକରି ପ୍ରକୃତ ବାର ଏବଂ ତାରିଖ ସଂପର୍କରେ ସୂଚନା ଦେଇ ସାରିଛନ୍ତି । ତାଙ୍କ ମତରେ ''ସେହିପରି ଗଡ଼ ଆକ୍ରମଣ ଏହି ଶନିବାର ଦିନ ହୋଇଥିଲା ବୋଲି ଯାହା ସେ କହନ୍ତି ତା' ମଧ୍ୟ ଠିକ୍ । କିନ୍ତୁ ଏ ଶନିବାର ମେ' ୧୨ ତାରିଖରେ ପଡ଼ିଥିବାର ଯାହା ସେ କହନ୍ତି ତା' ଭ୍ରମାତ୍ମକ । ଏ ଶନିବାର ପ୍ରକୃତରେ ମେ' ୧୬ ତାରିଖରେ ପଡ଼ିଥିଲା । ପୁଣି ସେ ବନ୍ଦୀ ହେବାର ଅଷ୍ଟମ ଦିନ ଅର୍ଥାତ୍ ମେ' ୨୬ ତାରିଖ ଦିନ ଶଶିଭୂଷଣଙ୍କ ସହ ତାଙ୍କର ସାକ୍ଷାତ୍ ହୋଇଥିବା କଥାଟି ମଧ୍ୟ ବୋଧହୁଏ ଠିକ୍ ।

(ପୃ-୧୬) ଏପରିକି ଫକୀରମୋହନଙ୍କ ବିବରଣୀ ଉପରେ ନିର୍ଭରକରି ଜଗନ୍ନାଥ ପ୍ରସାଦ ଦାସ ଏବଂ ପ୍ରସନ୍ନ କୁମାର ମିଶ୍ର ସେମାନଙ୍କର ଆନନ୍ଦପୁର ଯାତ୍ରା ତଥା ବନ୍ଦୀ ହେବାର ସମୟ ସଂପର୍କରେ ଯେଉଁ ଭ୍ରମାତ୍ମକ ସିଦ୍ଧାନ୍ତ ଦେଇଛନ୍ତି, ଡଃ ଦାସ ତାକୁ ସୂଚିତ କରିଛନ୍ତି ଉକ୍ତ ପ୍ରବନ୍ଧଟିରେ । (ପୃ-୧୬) ତାଙ୍କ ମତରେ ''ସରକାରୀ କାଗଜପତ୍ରର ଅନ୍ତର୍ଗତ ମେ' ୧୭ ତାରିଖର ଉଭୟ ବୈକୁଣ୍ଠଭୁକ୍ତାଙ୍କ ବୟାନ ଓ ଜମାଦାର କବୀର ଖାଁଙ୍କ ରିପୋର୍ଟ ଅନୁଯାୟୀ ମେଳିଆମାନେ ଏଦିନର ପୂର୍ବଦିନ ଅର୍ଥାତ୍ ମେ' ୧୬ ତାରିଖରେ କେନ୍ଦୁଝରଗଡ଼ ଆକ୍ରମଣ କରିଥିଲେ (ପାଲଲହଡ଼ାର ଅସ୍ଥାୟୀ ମ୍ୟାନେଜର ଅବଶ୍ୟ ଏହି ବୟାନ୍ ଓ ରିପୋର୍ଟ ଉପରେ ନିର୍ଭର କରିଥିଲେହେଁ ମେ' ୧୮ ତାରିଖ ଅର୍ଥାତ୍ ସୋମବାର ଦିନ ଟୟନବୀଙ୍କ ନିକଟକୁ ଚିଠି ଲେଖି ଭ୍ରମକ୍ରମେ ଗତ ଶୁକ୍ରବାର ଅର୍ଥାତ୍ ମେ' ୧୫ ତାରିଖରେ ମେଳିଆମାନେ କେନ୍ଦୁଝରଗଡ଼ ଆକ୍ରମଣ କରିଥିଲେ ବୋଲି ଜଣାଇଥିଲେ) । ବୋଧହୁଏ ଏଇ ସରକାରୀ କାଗଜପତ୍ର ଭିତ୍ତିରେ ପ୍ରସନ୍ନକୁମାର ମିଶ୍ର ତାଙ୍କ ପୁସ୍ତକର ଗୋଟିଏ ଅନୁଚ୍ଛେଦରେ କହନ୍ତି ଯେ, ''ମେଳିଆମାନେ ୧୬ ତାରିଖରେ କେନ୍ଦୁଝର ଗଡ଼ ଆକ୍ରମଣ କରିଥିଲେ ।'' କିନ୍ତୁ ଏଇ ଅନୁଚ୍ଛେଦର ଠିକ୍ ପର ଅନୁଚ୍ଛେଦରେ ଫକୀରମୋହନଙ୍କ ପ୍ରଦତ୍ତ ବିବରଣୀ ଉପରେ ନିର୍ଭର କରି ସେ କହନ୍ତି ''ମେଳିଆମାନେ ମେ' ୧୨ ତାରିଖରେ ଗଡ଼ ଆକ୍ରମଣ କରିଥିବାର ସମ୍ବାଦ ମହାରାଜା ଆନନ୍ଦପୁରଠାରେ ମେ' ୧୩ ତାରିଖରେ ବା ମେ' ୧୪ ତାରିଖରେ ପାଇଥିଲେ ।'' ଏ ମଧ୍ୟରେ ପରସ୍ପର ବିରୋଧ ନାହିଁକି ? ଫକୀରମୋହନ ପ୍ରଦତ୍ତ ତାରିଖ ଭୁଲ୍ । ଯେତେଦୂର ଜଣାଯାଏ ମେଳିଆମାନେ କେନ୍ଦୁଝରଗଡ଼ ଆକ୍ରମଣ କରିଥିଲେ ମେ' ୧୬ ତାରିଖରେ ଓ ମହାରାଜା କେନ୍ଦୁଝର ଯିବା ବାଟରେ ଘଟଗାଁଠାରେ ଏ ସମ୍ବାଦ ତା' ପରଦିନ ଅର୍ଥାତ୍ ମେ' ୧୭ ତାରିଖରେ ପାଇ ସେଠାରୁ ଆନନ୍ଦପୁର ବାହୁଡ଼ି ଆସିଥିଲେ । ଜଗନ୍ନାଥ ପ୍ରସାଦ ଦାସ ମଧ୍ୟ ଫକୀରମୋହନଙ୍କ ପ୍ରଦତ୍ତ ବିବରଣୀ ଉପରେ ନିର୍ଭର କରି ସେହିପରି ଭ୍ରମକ୍ରମେ ମେ' ୧୨ ତାରିଖରେ ଗଡ଼ ଆକ୍ରମଣ ହୋଇଥିଲା ବୋଲି କହନ୍ତି । (ପୃ-୧୭)

ବିବରଣୀର ଗୋଟିଏ ତାରିଖ ଭୁଲ୍ ହୋଇଗଲେ ପରବର୍ତ୍ତୀ ତାରିଖଗୁଡ଼ିକ ଭୁଲ୍ ହୋଇଯିବା ସ୍ୱାଭାବିକ । ଫକୀରମୋହନଙ୍କ କ୍ଷେତ୍ରରେ ତାହାହିଁ ହୋଇଛି । ମାତ୍ର ଘଟଣାଗୁଡ଼ିକ କପୋଳକଳ୍ପିତ ବୋଲି ଯାହା ଡଃ ଅଶୋକ କୁମାର ଦାସ କହିଛନ୍ତି, ତାହା ସଂପୂର୍ଣ୍ଣ ସତ୍ୟ ନୁହେଁ । ସଚ୍ଚିବାବୁ ମଧ୍ୟ ବିଭିନ୍ନ ପ୍ରମାଣ ମାଧ୍ୟମରେ ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ର ସତ୍ୟତା ପ୍ରତିପାଦନ ନିମିତ୍ତ ଯେଉଁ ଚେଷ୍ଟା କରିଛନ୍ତି, ସେଥିରେ ଭାବପ୍ରବଣତା ମୁଖ୍ୟ ହୋଇ ଉଠିଛି । ସେ ଯେଉଁ ଦୃଷ୍ଟିକୋଣରୁ ଫକୀରମୋହନଙ୍କ ବିଶେଷତ୍ୱ ପ୍ରତିପାଦନ ନିମିତ୍ତ ଚେଷ୍ଟା କରିଛନ୍ତି, ଡଃ ଗଗନେନ୍ଦ୍ର ନାଥ ଦାଶ ବହୁ ପୂର୍ବରୁ ତାଙ୍କ ପ୍ରବନ୍ଧରେ ତାହା ପ୍ରକାଶ କରିସାରିଛନ୍ତି । ଫକୀରମୋହନଙ୍କ ଦ୍ୱିଅର୍ଥବୋଧକ ପତ୍ର ସଂପର୍କରେ ମତଦେଇ ଡଃ ଅଶୋକ କୁମାର ଦାସ କୁହନ୍ତି x x x ଏକଥା ସ୍ପଷ୍ଟ ଯେ ଫକୀରମୋହନ

ଏଭଳି ପତ୍ର ଲେଖି ନ ଥିଲେ କି କେନ୍ଦୁଝର ବିଦ୍ରୋହ ଦମନରେ ଏତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ନ ଥିଲେ ଯେତିକି ସିଏ ଦାବି କରିଛନ୍ତି । ଯଦି ସେମିତି ଅନ୍ୟକିଛି ପତ୍ର ଲେଖିଥିବେ, ତା'ହେଲେ ତହିଁରେ ମଧ୍ୟ କିଛି ଗୁରୁତ୍ୱ ନ ଥିଲା । ଏଇ ଚିଠିଟିର କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକା ବିଦ୍ରୋହ ଦମନରେ ନାହିଁ (ପୃ-୧୪୯୩) । ଏହା ସହିତ ଚାରିବର୍ଷ ପୂର୍ବର ଡଃ ଗଗନେନ୍ଦ୍ର ନାଥ ଦାଶଙ୍କ ମତ ମିଳାଇ ଦେଖନ୍ତୁ ''ମେଳିର ଅବସାନ ବା ଧରଣୀଧରଙ୍କ ଗ୍ରେପ୍ତାରୀରେ ଫକୀରମୋହନଙ୍କ ଭୂମିକାକୁ ସରକାରୀ କାଗଜପତ୍ର ବା ସମସାମୟିକ ସମ୍ବାଦପତ୍ରରେ ଆଦୌ ସ୍ୱୀକୃତି ଦିଆଯାଇ ନାହିଁ । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ସହିତ ପରିଚିତ ଫକୀରମୋହନ 'ବୈଦେହୀଶ ବିଳାସ'ର ପ୍ରସିଦ୍ଧ ଦ୍ୱିଅର୍ଥ ବ୍ୟଞ୍ଜକ 'ବାବୁ ନାକଶିରୀଦାନ ଯୋଗ୍ୟ ଯୋଷାକୁ' ଇତ୍ୟାଦିର ଅନୁସରଣରେ ଏପରି ଏକ ଚିଠି ଲେଖିଥାଇପାରନ୍ତି । କିନ୍ତୁ ସେ ଚିଠିର କୌଣସି ଭୂମିକା ମଧ୍ୟ କେଉଁଠାରେ ସ୍ୱୀକୃତ ନୁହେଁ । ପୁଣି ସେ ଏପରି ଚିଠି ଲେଖି ନ ଥିଲେ ମଧ୍ୟ ପୂର୍ବ ନିର୍ଦ୍ଧାରିତମତେ ଚାଇଁବସା ଓ ବାଲେଶ୍ୱରରୁ ସଶସ୍ତ୍ର ବାହିନୀ ଯାଇଥାଆନ୍ତେ ଓ ଧରଣୀଧରଙ୍କୁ ବନ୍ଦୀ କରିଥାଆନ୍ତେ । ମୋଟ ଉପରେ ମେଳିର ଅବସାନ ଓ ଧରଣୀଧରଙ୍କ ଗ୍ରେପ୍ତାରୀରେ ଫକୀରମୋହନଙ୍କ ଭୂମିକା ଆଦୌ ଗୁରୁତ୍ୱପୂର୍ଣ୍ଣ ନ ଥିଲା ଯଦିଓ ନିଜର ସେପରି ଏକ ଅତିରଞ୍ଜିତ ଧାରଣା ଥିଲା, ଯାହା 'ତାଙ୍କ ଆତ୍ମଜୀବନ ଚରିତ'ରେ ପ୍ରତିଫଳିତ ହୋଇଛି ।'' (ପୃ-୨୫) । ଧରଣୀଧରକୁ ପାଞ୍ଚବର୍ଷ ଜେଲଦଣ୍ଡ ମିଳିଥିଲା ବୋଲି ଲେଖିଥିବାରୁ ଫକୀରମୋହନଙ୍କର ଏହା ତଥ୍ୟଗତ ତ୍ରୁଟି ବୋଲି ଡଃ ଅଶୋକ କୁମାର ଦାସ ମନେକରିଛନ୍ତି । ଏହା ସଂପର୍କରେ ମଧ୍ୟ ଡଃ ଗଗନେନ୍ଦ୍ର ନାଥ ଦାଶ 'ଉତ୍କଳଦୀପିକା' ଏବଂ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରଦତ୍ତ ବିବରଣୀକୁ ଭିତ୍ତିକରି ତାଙ୍କ ଆଲୋଚନାରେ ପ୍ରକାଶ କରିସାରିଛନ୍ତି ''କିନ୍ତୁ ଫକୀରମୋହନ କହନ୍ତି ଧରଣୀଧରଙ୍କୁ ପାଞ୍ଚବର୍ଷ କାରାଦଣ୍ଡ ଦିଆଯାଇଥିଲା । ଏ କ୍ଷେତ୍ରରେ ଫକୀରମୋହନଙ୍କ ବକ୍ତବ୍ୟ ଭ୍ରମାତ୍ମକ ଥିବାର ଜଣାଯାଏ । (ପୃ-୩୧ ) ଧରଣୀଧର ହାତୀ ପିଠିରେ କି ଘୋଡ଼ା ପିଠିରେ ବସି ସାହେବଙ୍କ ନିକଟକୁ ଯାଇଥିଲେ, ସେ ସଂପର୍କରେ ଭିନ୍ନ ମତ ପରିଲକ୍ଷିତ । ଫକୀରମୋହନ କୁହନ୍ତି, ସେ ଘୋଡ଼ା ପିଠିରେ ବସି ଯାଇଥିଲେ । 'ଉତ୍କଳଦୀପିକା'ର ବିବରଣୀକୁ ଦୃଷ୍ଟିରେ ରଖି ସଚ୍ଚିବାବୁ ଫକୀରମୋହନଙ୍କ ମତକୁ ସମର୍ଥନ କରିଛନ୍ତି । କିନ୍ତୁ ତାଙ୍କୁ ବନ୍ଦୀ କରିଥିବା ଡଶନ ସାହେବ ନିଜେ କୁହନ୍ତି 'I went on to meet him and found him mounted on an Elephant.' ଡଃ ଗଗନେନ୍ଦ୍ର ନାଥ ଦାଶ ଧରଣୀଧର ହାତୀ ଉପରେ ବସି ଡଶନ ସାହେବଙ୍କ ନିକଟକୁ ଯାଇଥିଲେ ବୋଲି ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଫକୀରମୋହନଙ୍କ କୌଶଳକ୍ରମେ ନୁହେଁ, ସ୍ୱଇଚ୍ଛାରେ ଆତ୍ମସମର୍ପଣ କରିଥିଲେ ବୋଲି କହିଛନ୍ତି । ଧରଣୀଧରଙ୍କ ଆତ୍ମସମର୍ପଣ ପଛରେ ବାସ୍ତବରେ ଶଶିଭୂଷଣଙ୍କ ପ୍ରତ୍ୟକ୍ଷ ପ୍ରଭାବ ରହିଥିଲା । ଏ ସଂପର୍କରେ ଡଃ ଗଗନେନ୍ଦ୍ର ନାଥ ଦାଶଙ୍କ ମତ ପ୍ରଣିଧାନ

ଯୋଗ୍ୟ - ''ଧରଣୀଧର ମହାରାଣୀ ପୁତ୍ର ଓ ଟିକାଏତ ପରି ପଦବୀ ଧାରଣ କରିଥିଲେ, ସେ ଆତ୍ମସମର୍ପଣର ସିଦ୍ଧାନ୍ତ କିପରି, କେବେ ଓ କାହିଁକି ନେଲେ ? ମନେହୁଏ ଏ ସିଦ୍ଧାନ୍ତ ପଛରେ ଶଶିଭୂଷଣଙ୍କ ପ୍ରତ୍ୟକ୍ଷ ପ୍ରଭାବ ଥିଲା । ଫକୀରମୋହନ ଅନ୍ୟ ଭୂୟାଁ ନେତାମାନଙ୍କ ସହ ପରାମର୍ଶ କରିବାର ସୁଯୋଗ ତାଙ୍କୁ ନ ଦେଇ ପରୋକ୍ଷରେ ଏପରି ସିଦ୍ଧାନ୍ତ ନେବାରେ ହୁଏତ ସହାୟତା କରିଥିଲେ । ଧରଣୀଧର ମେ' ୨୬ ତାରିଖରେ କମିଶନରଙ୍କୁ ଲେଖିଥିବା ପୂର୍ବେ ସୂଚିତ ପତ୍ରରେ କେନ୍ଦୁଝର ମହାରାଜାଙ୍କୁ ସମ୍ଭବ ହେଲେ 'ଧୃତ' କରି (ବିଚାର ପାଇଁ) ତାଙ୍କ ନିକଟକୁ ପଠାଇଦେବାପାଇଁ ନିବେଦନ କରିଥିଲେ । ଅର୍ଥାତ୍ ମେ' ୨୬ ତାରିଖ ପର୍ଯ୍ୟନ୍ତ ସେ ଆତ୍ମସମର୍ପଣର ସିଦ୍ଧାନ୍ତ କରି ନ ଥିଲେ । ଏତେବେଳକୁ ଫକୀରମୋହନ ତାଙ୍କ ନିଟକରେ ଗୋଟିଏ ସପ୍ତାହ ରହିଲେଣି । ଏହି ସମୟରେ ଅର୍ଥାତ୍ ମେ' ୨୫।୨୬ ତାରିଖ ବେଳକୁ ଶଶିଭୂଷଣଙ୍କ ସହ ତାଙ୍କର ସାକ୍ଷାତ୍ ହୁଏ ଓ ମେ' ୨୯ ତାରିଖରେ ସେ ଆତ୍ମସମର୍ପଣ କରନ୍ତି । ଏଇଥିରୁ ମନେହୁଏ ତାଙ୍କ ସମର୍ପଣ ପଛରେ ମୁଖ୍ୟତଃ ଶଶିଭୂଷଣଙ୍କ ପ୍ରଭାବ ଥିଲା ।'' (ପୃ-୩୦) ।

ସରକାରୀ ରେକର୍ଡ଼ରୁ ଧରଣୀଧରଙ୍କ ବନ୍ଦୀ ସଂପର୍କରେ ଜଣାଯାଏ ଯେ ଡଶନ ବହୁସଂଖ୍ୟକ ସୈନ୍ୟ, ପୋଲିସ ଏବଂ ଅଫିସରଙ୍କୁ ସଙ୍ଗରେ ନେଇ ୧୮୯୧ ମସିହା ମେ' ୨୧ ତାରିଖରେ ଚକ୍ରଧରପୁରରୁ ବାହାରି ୨୨ ତାରିଖରେ ଜୟନ୍ତୀଗଡ଼ରେ ପହଞ୍ଚିଲେ । ସେହିପରି R.F.Guis ରାଜା ଧନୁର୍ଜୟ ଭଞ୍ଜଙ୍କୁ ସଙ୍ଗରେ ଧରି ଆନନ୍ଦପୁରରୁ ବାହାରିଲେ । ଜୟନ୍ତୀଗଡ଼ରେ ପହଞ୍ଚି ଡଶନ ଜାଣିବାକୁ ପାଇଲେ ଯେ ପ୍ରାୟ ୪.୯୦୦ ରୁ ୬.୩୦୦ ପର୍ଯ୍ୟନ୍ତ ମେଳିଆ କେନ୍ଦୁଝରଗଡ଼ ଧ୍ୱଂସ ପାଇଁ କମାଣ ପ୍ରସ୍ତୁତ କରି ରଖିଛନ୍ତି ଏବଂ ରାଜାଙ୍କ ଅସ୍ତ୍ରଶାଳାକୁ ନିଜ ନିୟନ୍ତ୍ରଣକୁ ନେଇଯାଇଛନ୍ତି । ପ୍ରକୃତ ଅବସ୍ଥା ଜାଣିବାପାଇଁ ପୋଲିସ୍ ସବ୍‌ଇନିସ୍‌ପେକ୍ଟର ଶଶିଭୂଷଣ ରାୟ ଏବଂ ଅନ୍ୟଜଣେ ବ୍ୟକ୍ତି ଭଗବାନ୍ ସର୍ଦ୍ଦାରଙ୍କୁ ପଠାଇଲେ । ୧୮୯୧ ମସିହା ୨୫ ତାରିଖ ପ୍ରବଳ ବର୍ଷା ମଧ୍ୟରେ ସେ ତାଙ୍କ ଦଳବଳ ଧରି ବାହାରିଲେ ଏବଂ ୨୬ ତାରିଖରେ ବୈତରଣୀ ନଦୀ ପାରହୋଇ ମାଜାରା ଗ୍ରାମରେ ପହଞ୍ଚିଲେ । ୨୭ ତାରିଖରେ ସେ ସମ୍ବାଦ ପାଇଲେ ଯେ ତାଙ୍କର ଦୁଇଜଣ ଦୂତ ବିପ୍ଳବୀଙ୍କ ନିକଟରେ ଅଟକ ରହିଛନ୍ତି । ୨୯ ତାରିଖ ସକାଳେ ଡଶନ ଧରଣୀଧରକୁ ଧରିବା ନିମିତ୍ତ ଅଗ୍ରସର ହେଲେ । ଇତିମଧ୍ୟରେ ଶଶିଭୂଷଣ ରାୟ ଧରଣୀଧରଙ୍କୁ ପ୍ରଭାବିତ କରିସାରିଥାନ୍ତି । ଫକୀରମୋହନ ସେନାପତି ମଧ୍ୟ ବ୍ରିଟିଶ ଅଫିସରଙ୍କ ସହିତ ଭେଟିବାକୁ ଧରଣୀଧରଙ୍କୁ ପ୍ରବର୍ତ୍ତାଇ ସାରିଥାନ୍ତି । ଅଳ୍ପ କେତେଜଣଙ୍କୁ ସଙ୍ଗରେ ଧରି ଧରଣୀଧର ଡଶନଙ୍କୁ ଭେଟିବାକୁ ଗଲେ । ପ୍ରାୟ ପୁତୁଲିଆ ଓ ରୁଗ୍ରିର ମଧ୍ୟରେ ଧରଣୀଧର ଦେଖିଲେ ଡଶନ ହାତୀରୁ ଓହ୍ଲାଇ ତାଙ୍କୁ ଅଭିନନ୍ଦନ ଜଣାଇବାକୁ ଆସୁଛନ୍ତି । କିନ୍ତୁ ଧରଣୀଧରଙ୍କୁ ଆଶ୍ଚର୍ଯ୍ୟ କରି ଡଶନ ତାଙ୍କୁ ବନ୍ଦୀ କଲେ (Mishra - P. 154-155) । ଧରଣୀଧରଙ୍କ ବିଚାର ସ୍ଥାନ ସଂପର୍କରେ

ମଧ୍ୟ ଆଲୋଚକଙ୍କ ମଧ୍ୟରେ ମତଦ୍ୱୈଧ ପରିଲକ୍ଷିତ ହୁଏ । ଫକୀରମୋହନଙ୍କ ମତରେ "ସୁପରିଣ୍ଟେଣ୍ଡେଣ୍ଟ ସାହେବ ନିଜ ଗଡ଼ ପରିତ୍ୟାଗ କରି ଆସାମୀମାନଙ୍କୁ ସଙ୍ଗରେ ଧରି କଟକ ଅଭିମୁଖରେ ଯାତ୍ରା କଲେ । ଆନନ୍ଦପୁର ମୁକାମରେ ଦିନକ ସକାଶେ ରହି ଧରଣୀ ପ୍ରଭୃତି ଆସାମୀମାନଙ୍କ ମାମଲା ଶେଷ ବିଚାର କରି ରାୟ ଦେଲେ ।" (ପୃ-୧୮୨) । ଉତ୍କଳଦୀପିକା ଲେଖିଛନ୍ତି x x x ସୁତରାଂ ଯାବଜ୍ଜୀବନ ଦେଶାନ୍ତର ଦଣ୍ଡ ଆଇନ୍‌ରେ ଥିଲେ ସୁଦ୍ଧା ୭ ବର୍ଷ କାରାଦଣ୍ଡର ଆଜ୍ଞା ଆନନ୍ଦପୁର ମୁକାମରେ ସାହେବ ମହୋଦୟ ଧରଣୀକୁ ଶୁଣାଇଦେଇ ସେ ଯେବେ ଯୁଦ୍ଧ କଳ୍ପନା କରିବାପୂର୍ବେ ମହାରାଜାଙ୍କ ଅତ୍ୟାଚାର ନିବାରଣାର୍ଥେ ଅନ୍ୟ ଉପାୟ 'ଅବଲମ୍ବନ କରିଥାଆନ୍ତା ତା'ହେଲେ ଏତେ ଦଣ୍ଡ ଲଭି ନ ଥାନ୍ତା । (ଦାଶ ଗଗନେନ୍ଦ୍ର - ପୃ-୩୧) । କିନ୍ତୁ ପ୍ରସନ୍ନ କୁମାର ମିଶ୍ର କୁହନ୍ତି ବାରିପଦାଠାରେ ଅନୁଷ୍ଠିତ ଏକ ସେସନ୍‌ସ କୋର୍ଟରେ ଧରଣୀଧରର ବିଚାର ହୋଇଥିଲା ଏବଂ ଭାରତୀୟ ପିଙ୍ଗଳ କୋର୍ଡ଼ ଧାରା ୧୨୫, ୧୨୭ ଓ ୩୪୦ ଅନୁଯାୟୀ ଜୁନ୍ ୧୮୯୧ରେ ସାତବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । 'ଉତ୍କଳ ଦୀପିକା'ରୁ ଉଦ୍ଧାର କରି ସେ ପୁଣି କୁହନ୍ତି, କଟକ ଜେଲରେ କାରାଦଣ୍ଡ ଭୋଗୁଥିବା ସମୟରେ ଏହାର ମିଆଦ ପୂର୍ଣ୍ଣ ହେବା ପୂର୍ବରୁ ଅକ୍ଟୋବର ୧୮୯୭ରେ ମୁକ୍ତି ଲାଭ କରିଥିଲେ ଏବଂ ରାଜାଙ୍କ ଠାରୁ ମାସିକ ଆଠଟଙ୍କା ପେନ୍‌ସନ୍ ପାଇ କଟକରେ ରହିବାକୁ ଆଦେଶ ଥିଲା ! କେବଳ ମାସରେ ଥରେ ପେନ୍‌ସନ ଆଣିବା ନିମିତ୍ତ କେନ୍ଦୁଝର ଯିବା ସମୟରେ ତାର ଗତିରୀତି ଉପରେ ତୀକ୍ଷ୍ଣ ନଜର ରଖିବାକୁ ସରକାରଙ୍କ ନିର୍ଦ୍ଦେଶ ରହିଥିଲା । (Mishra - 160-161) ଡଃ ଅଶୋକ କୁମାର ଦାସ ମିଶ୍ରଙ୍କ ପୁସ୍ତକରୁ ଉଦ୍ଧୃତିଟି ଗ୍ରହଣ କରିବା ସମୟରେ ପୃଷ୍ଠା ସଂଖ୍ୟା ୧୬୦-୬୧ ପରିବର୍ତ୍ତେ ଭୁଲ୍‌କ୍ରମେ ୧୫୬ ଲେଖି ଦେଇଛନ୍ତି (ପୃ-୧୪୯୩) ଶ୍ରୀଯୁକ୍ତ ମିଶ୍ର ବିଚାରର ସ୍ଥାନ ସଂପର୍କୀୟ ତଥ୍ୟ ସରକାରଙ୍କ ରେକର୍ଡ଼ରୁ ଗ୍ରହଣ କରିଥିବାରୁ ଅଧିକ ସତ୍ୟର ନିକଟବର୍ତ୍ତୀ ମନେହୁଏ ।

ଡଃ ଅଶୋକ କୁମାର ଦାସ ଅନ୍ୟ ଏକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ଧରଣୀଧରଙ୍କ ଦସ୍ତଖତ ସଂପର୍କରେ । ତାଙ୍କର ପ୍ରଶ୍ନ ହେଉଛି "୧୫ ଏବଂ ୧୬ ତାରିଖ ଦିନ ଗଡ଼ ଲୁଣ୍ଠନ ଓ ପ୍ରବେଶ ଉଦ୍ୟମ ହେଉଥିଲା ବେଳେ ଧରଣୀ କ'ଣ ରାଇସୁଆଁରେ ଥିଲା ଓ ଫକୀରମୋହନଙ୍କ ଚିଠିରେ ଦସ୍ତଖତ କରିଥିଲା ?" (ପୃ-୧୪୯୩) ଆଲୋଚନା ପ୍ରସଙ୍ଗରେ ସୂଚିତ ହୋଇଛି, ଫକୀରମୋହନ ଭୁଲ୍‌କ୍ରମେ ଗଡ଼ ଲୁଣ୍ଠନର ତାରିଖ ୧୬ ପରିବର୍ତ୍ତେ ୧୨ ଲେଖିଦେଇଥିବାରୁ ପରବର୍ତ୍ତୀ ପର୍ଯ୍ୟାୟରେ ଏପରି ତ୍ରୁଟି ହେବା ସ୍ୱାଭାବିକ । ଗଡ଼ ଲୁଣ୍ଠନରେ ବିଫଳ ହୋଇ ଧରଣୀଧର ରାଇସୁଆଁରେ ଆସ୍ଥାନ ଜମାଇ ରହିଥିଲେ । ଫକୀରମୋହନ ବନ୍ଦୀ ଅବସ୍ଥାରେ ଧରଣୀଧରଙ୍କ ନିକଟରେ ରାଇସୁଆଁରେ ହିଁ ଥିଲେ । ତେଣୁ ସେ ଚିଠିଟି ଲେଖିବା ସମୟରେ ଧରଣୀଧର ରାଇସୁଆଁରେ ଉପସ୍ଥିତ ଥିବାରୁ

ସେଥିରେ ଦସ୍ତଖତ କରିବାରେ କୌଣସି ଅସ୍ୱାଭାବିକତା ନାହିଁ । ଡଃ ଅଶୋକ କୁମାର ଦାସଙ୍କ ଅନ୍ୟ ଏକ ସନ୍ଦେହ ସୃଷ୍ଟି ହୋଇଛି ଧରଣୀଧରଙ୍କ ବନ୍ଦୀହେବା ସ୍ଥାନ ସଂପର୍କରେ । ତାଙ୍କ ମତରେ "ଫକୀରମୋହନ କହିବା ମୁତାବକ ସେ ରାଇସୁଆଁଠାରେ ସାହେବଙ୍କୁ ସଙ୍ଖୁଳିବାକୁ ଯାଇ ଧରାପଡ଼ି ନ ଥିଲା । ରାଇସୁଆଁ ଗ୍ରାମ ପଧାନର ବୁଢ଼ା ହାଡୁଆ ଘୋଡ଼ାରେ ଚଢ଼ି ଜୋକର ମହାରାଜା ହୋଇ ଯାଇ ନ ଥିଲା ।" (ପୃ-୧୪୯୨) ଡଃ ଦାଶ ଜୟକୃଷ୍ଣ ସାମଲଙ୍କ ପୁସ୍ତକ ଅନୁସରଣରେ ଧରଣୀଧର ବେଞ୍ଚାଓ ଗ୍ରାମ ନିକଟରେ ଆତ୍ମସମର୍ପଣ କରିଥିଲେ ବୋଲି ଲେଖିଛନ୍ତି । (Samal - P.332) । ମାତ୍ର ପ୍ରସନ୍ନ କୁମାର ମିଶ୍ରଙ୍କ ମତରେ ପୁତୁଲିଆ ଓ ରୁଗ୍ରି ମଧ୍ୟରେ ବନ୍ଦୀ ହୋଇଥିଲେ । (Mishra - P.155) ଶ୍ରୀଯୁକ୍ତ ମିଶ୍ର ରେକର୍ଡ଼ରୁ ଟିପିବା ସମୟରେ ବୋଧହୁଏ ରାଇସୁଆଁ ସ୍ଥାନରେ Rugree ଲେଖିଦେଇଛନ୍ତି । ହସ୍ତଲିଖିତ ରେକର୍ଡ଼ରୁ ଉତ୍ତାରିବା ବେଳେ ଏପରି ତ୍ରୁଟି ହୋଇଥାଇପାରେ । ଡଶନ ପୁତୁଲିଆରୁ ଧରଣୀଧରଙ୍କୁ ବନ୍ଦୀ ଉଦ୍ଦେଶ୍ୟରେ ଆସୁଥିବା ସମୟରେ ଧରଣୀଧର ରାଇସୁଆଁରୁ ଡଶନଙ୍କ ସ୍ୱାଗତ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । ରାଇସୁଆଁରୁ କିଛି ଦୂର ଯିବା ପରେ ସେ ଆତ୍ମସମର୍ପଣ କରିଥିବାରୁ ଫକୀରମୋହନ 'ଆତ୍ମଜୀବନ ଚରିତ'ରେ ରାଇସୁଆଁ ନାମଟି ଲେଖିଦେଇଛନ୍ତି । ଡଃ ଗଗନେନ୍ଦ୍ର ନାଥ ଦାଶ ଡଶନଙ୍କ ନିଜ ରିପୋର୍ଟଟି ପଢ଼ିଛନ୍ତି । ତେଣୁ ସେ ଏହି ରିପୋର୍ଟର କିଛି ଅଂଶ ଉଦ୍ଧାର କରି ଲେଖିଛନ୍ତି - "In about half way between Putulia and Raisuan one of the Sawaras two of whom had been sent about 100 yards in advance to give information if anything going on in front galloped up to say that Dharani, the rebel leader was coming up (ପୃ-୨୯) ।" ଏ କ୍ଷେତ୍ରରେ ଫକୀରମୋହନଙ୍କ ତ୍ରୁଟି ବିଶେଷ ଗୁରୁତର ନୁହେଁ ।

ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ର କେତେକ ଉକ୍ତି ଉଦ୍ଧାର କରି ଡଃ ଅଶୋକ କୁମାର ଦାସ ଲେଖିଛନ୍ତି - "କିଛି କାରଣ ନ ଥାଇ ଧରଣୀ ପ୍ରଚାର କରିଦେଲା ଯେ ରାଜା ପ୍ରଜାପୀଡ଼କ, ଅତ୍ୟାଚାରୀ । ମାତ୍ର ଏହା ଆଦୌ ସତ୍ୟ ନୁହେଁ । (ପୃ-୧୪୯୧) ଏହି ମତର ବିରୋଧ କରି ସଚ୍ଚିବାବୁ ମାଛକାନ୍ଦଣାଜୋଡ଼ ସଂପର୍କରେ ଫକୀରମୋହନ ଯାହା ଲେଖିଥିଲେ, ତାହା ଉଦ୍ଧାର କରିଛନ୍ତି । (ପୃ-୧୧୯୩) । ମନେରଖିବାକୁ ହେବ ପ୍ରଜାମେଳିପାଇଁ ଏହି ମାଛକାନ୍ଦଣାଜୋଡ଼ ପ୍ରସଙ୍ଗଟି ଏକମାତ୍ର କାରଣ ନୁହେଁ, ହୁଏତ ଗୋଟିଏ କାରଣ ହୋଇପାରେ । ରାଜା ଧନୁର୍ଜୟ ପ୍ରଜାମାନଙ୍କୁ ବିଭିନ୍ନ ଭାବରେ ଶୋଷଣ କରୁଥିଲେ । ଧରଣୀର ଭାଇ ଏବଂ ଅନ୍ୟମାନଙ୍କୁ ବନ୍ଦୀ କରିଥିଲେ । ବିଭିନ୍ନ ଅନ୍ୟାୟ କର ବସାଇ ପ୍ରଜାମାନଙ୍କର ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଦେଇଥିଲେ । ୧୮୮୧ ମସିହାରେ ନୂତନ ବନ୍ଦୋବସ୍ତଦ୍ୱାରା ବିଭିନ୍ନ କ୍ଷେତ୍ରରେ ଟିକସର ପରିମାଣ ବୃଦ୍ଧି କରିଥିଲେ । ପ୍ରଜାମାନଙ୍କର

ଶସ୍ୟ ବଜାରର ନିର୍ଦ୍ଧାରିତ ଦରଠାରୁ ଯଥେଷ୍ଟ କମ୍ ଦରରେ କ୍ରୟ କରୁଥିଲେ । ଶିଶିର କୁମାର ପଣ୍ଡା ରାଜାଙ୍କଦ୍ୱାରା କ୍ରୟ କରାଯାଉଥିବା ଶସ୍ୟର ଦାମ୍ ଓ ବଜାର ଦାମ୍ ମଧ୍ୟରେ ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରିଛନ୍ତି ।'' ଯଥା -

| ବସ୍ତୁ | ୧ ଟଙ୍କାରେ ରାଜାଙ୍କ ଦ୍ୱାରା କ୍ରୟ କରାଯାଉଥିବା ବସ୍ତୁ ପରିମାଣ | ୧ ଟଙ୍କାର ବଜାର ପରିମାଣ |
|---|---|---|
| ମୁଗ | ୨୦ ସେର | ୮ସେର |
| ଗୁଡ଼ | ୧୨ ସେର | ୮ ସେର |
| ଶସ୍ୟ | ୩୨ ସେର | ୧୨ ସେର |
| ଜଡ଼ା ତେଲ | ୩୫ ସେର | ୨୧ $\frac{୧}{୨}$ ସେର |
| ତୈଳବୀଜ | ୩୨ ସେର | ୨୧ ସେର (Panda - P.33) |

ଅନେକ କ୍ଷେତ୍ରରେ ରାଜା ପ୍ରଜାମାନଙ୍କୁ ବେଠି ଖଟାଉଥିବାରୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟରେ ଅଭିଯୋଗ କରାଯାଇଥିଲା । ତାଙ୍କ ନିର୍ଦ୍ଦେଶରେ ରାଜା ଯେଉଁ ମଜୁରି ଧାର୍ଯ୍ୟ କରିଥିଲେ, ତାହା ଥିଲା ଶାରୀରିକ ଶ୍ରମ ତୁଳନାରେ ଅତ୍ୟନ୍ତ ସ୍ୱଳ୍ପ । ଏହି କାରଣରୁ ୧୮୮୧ ଜନଗଣନାରେ ଭୂୟାଁ ଲୋକସଂଖ୍ୟା ୧୮୪୮୧ ଥିବାବେଳେ ୧୮୯୧ ଜନଗଣନା ସମୟକୁ ହ୍ରାସପାଇ ୧୩୬୧୫ରେ ପହଞ୍ଚିଥିଲା । ଅଧିକାଂଶ ଭୂୟାଁ କେନ୍ଦୁଝର ତ୍ୟାଗକରି ମୟୂରଭଞ୍ଜ ଚାଲିଯାଉଥିଲେ । ଯେଉଁମାନେ ସେଠାରେ ମାଟି କାମୁଡ଼ି ପଡ଼ି ରହିଥିଲେ ବାରମ୍ବାର ଟିକସ ବୃଦ୍ଧି, ବେଠି ଏବଂ ଅତ୍ୟାଚାର ଯୋଗୁଁ ଅସହିଷ୍ଣୁ ହୋଇ ରାଜାଙ୍କ ବିରୋଧରେ ମେଳି କରିବାକୁ ବାଧ୍ୟ ହୋଇଥିଲେ । ବିଭିନ୍ନ ସରକାରୀ ରେକର୍ଡ଼ ଏବଂ ସୁପରିଣ୍ଟେଣ୍ଡେଣ୍ଟଙ୍କ ପ୍ରତିକୂଳ ମନ୍ତବ୍ୟରୁ ରାଜାଙ୍କର ପ୍ରଜାପୀଡ଼ନ ସତ୍ୟ ବୋଲି ପ୍ରମାଣିତ ହୋଇଥାଏ । ଏହି କାରଣରୁ ମେଳି ଦମନ ପରେ ମଧ୍ୟ ରାଜାଙ୍କର ଉପସ୍ଥିତି କେନ୍ଦୁଝର ପାଇଁ ଶୁଭଙ୍କର ନୁହେଁ ଅନୁମାନ କରି ଟୟନବୀ ତାଙ୍କୁ କଟକରେ ରହିବାକୁ ନିର୍ଦ୍ଦେଶ ଦେଇଥିଲେ । ରାଜା ଧନୁର୍ଜୟଙ୍କର ଅମାନବିକତା ଓ ପ୍ରଜାପୀଡ଼ନ ଧରଣୀଧରଙ୍କୁ ବାଧ୍ୟ କରିଥିଲା ମେଳିର ନେତୃତ୍ୱ ନେବାପାଇଁ ଓ ତାହାହିଁ ଥିଲା ତାଙ୍କପାଇଁ ତତ୍କାଳୀନ ସମୟର ଆହ୍ୱାନ । ଏପରି ଏକ ଅତ୍ୟାଚାରୀ ରାଜାଙ୍କ ନିକଟରେ ଚାକିରି କରୁଥିବାରୁ ଫକୀରମୋହନଙ୍କ ପ୍ରତି ପ୍ରଜାମାନଙ୍କ ମନରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ଅବଶ୍ୟ ଫକୀରମୋହନ ଚୁଲିକର ଉଠାଇ ଦେଇଥିବାରୁ କେତେକ ପ୍ରଜା ତାଙ୍କ ପ୍ରତି କୃତଜ୍ଞ ରହିଥିଲେ । ମାତ୍ର ତାଙ୍କର କେତେକ କାର୍ଯ୍ୟକଳାପ ବୋଧହୁଏ ଜନସାଧାରଣଙ୍କୁ ସନ୍ତୁଷ୍ଟ କରିପାରି ନ ଥିଲା । କିନ୍ତୁ ଡଃ ଗଗନେନ୍ଦ୍ର ନାଥ ଦାଶ କୁହନ୍ତି - ''ଅନ୍ୟପକ୍ଷରେ ରାଜତନ୍ତ୍ର ପ୍ରତି ତାଙ୍କର ସମସ୍ତ ଆନୁଗତ୍ୟ ଓ ସହଯୋଗୀ ମନୋବୃତ୍ତି ସତ୍ତ୍ୱେ ତଥା ଧନୁର୍ଜୟଙ୍କ ପ୍ରତି

ସେ ସଂପୂର୍ଣ୍ଣ ରୂପେ ବିଶ୍ୱସ୍ତ ଥିବା ସତ୍ତ୍ୱେ କେନ୍ଦୁଝରର ପ୍ରଜା ମହଲରେ ତାଙ୍କର ଭାବମୂର୍ତ୍ତି ବେଶ୍ ଉଜ୍ଜ୍ୱଳ ଥିଲା ।'' (ପୃ-୨୪) ମାତ୍ର ସରକାରୀ ରେକର୍ଡ଼ ଏହାର ବିରୋଧ କରୁଥିବାର ପ୍ରମାଣ ରହିଛି । ଆନନ୍ଦପୁରର ରୟତମାନେ ଫକୀରମୋହନଙ୍କ ବିରୋଧରେ ଅଭିଯୋଗ କରିଥିଲେ । "The raiyats of Anandpur in lower Keonjhar complained against Fakirmohan Senapati for his oppressive exactions (Mishra-P.156) । ବୋଧହୁଏ ଏହି କାରଣରୁ ଫକୀରମୋହନଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇ ତାଙ୍କ ସ୍ଥାନରେ ବାବୁ ଦୁର୍ଗାଦାସ ମୁଖାର୍ଜୀଙ୍କୁ ଅବସ୍ଥାପିତ କରାଯାଇଥିଲା (Mishra-P.158) । ସେଇଥିପାଇଁ ଡଃ ଅଶୋକ କୁମାର ଦାସ କହିଛନ୍ତି, ''ଫକୀରମୋହନଙ୍କ ବକ୍ତବ୍ୟ ଓ ବିବରଣୀରେ କିଛି ଭ୍ରାନ୍ତି ଓ ଆମ୍ବୁପ୍ରୌଢ଼ି ରହିଛି ନିଶ୍ଚୟ ।'' (ପୃ-୧୪୯୪)

ଗବେଷକ ସଚ୍ଚିବାବୁ ଫକୀରମୋହନଙ୍କ ପ୍ରଦତ୍ତ ବିବରଣୀକୁ ଆଦୌ ଅସ୍ୱୀକାର କରି ନାହାନ୍ତି । ତାଙ୍କର ଯୁକ୍ତି ହେଉଛି ଭୁଲ୍ କ୍ରମେ ତାରିଖରେ ପରିବର୍ତ୍ତନ ଘଟିଥିଲେ ହେଁ ବାର ଠିକ୍ ଥିବାରୁ ଫକୀରମୋହନଙ୍କ ବିବରଣୀ ତ୍ରୁଟିପୂର୍ଣ୍ଣ ନୁହେଁ । ସେ ପୁଣି କୁହନ୍ତି ୧୬ ପରିବର୍ତ୍ତେ ୧୨ ଏବଂ ୧୭ ପରିବର୍ତ୍ତେ ୧୩ ହେବାର କାରଣ ହେଉଛି ଅଙ୍କଗତ ସାଦୃଶ୍ୟ । ଅର୍ଥାତ୍ ୬ ଅଙ୍କ ସହିତ ୨ ଅଙ୍କର ଏବଂ ୭ ଅଙ୍କ ସହିତ ୩ ଅଙ୍କର ସାଦୃଶ୍ୟ ଯୋଗୁଁ ଏପରି ଭ୍ରମ ହୋଇଛି । (ପୃ-୧୧୮୯) ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ସେ ୧୪ ତାରିଖରେ ମେଳିଆ ଭୂୟାଁମାନଙ୍କଦ୍ୱାରା ବନ୍ଦୀ ହେଲେ ଏବଂ ୨୨ ତାରିଖରେ ବନ୍ଦୀରୁ ମୁକ୍ତ ହେଲେ । ମାତ୍ର ସରକାରୀ ରେକର୍ଡ଼ ଅନୁଯାୟୀ ସେ ଯଥାକ୍ରମେ ୧୯ ଓ ୨୯ ତାରିଖ ଦିନ ବନ୍ଦୀ ଏବଂ ମୁକ୍ତ ହୋଇଥିଲେ । ସଚ୍ଚିବାବୁ ନିଜେ ମଧ୍ୟ ଏହା ସ୍ୱୀକାର କରିଛନ୍ତି । ଏଠାରେ ୪ ଅଙ୍କ ସହିତ ୯ ଅଙ୍କ ଏବଂ ୨ ଅଙ୍କ ସହିତ ୯ ଅଙ୍କର କୌଣସି ସାଦୃଶ୍ୟ ନାହିଁ । ଅବଶ୍ୟ ସଚ୍ଚିବାବୁ ଯୁକ୍ତି କରିଛନ୍ତି ପୂର୍ବରୁ ଯେହେତୁ ୧୬ ତାରିଖ, ୧୨ ତାରିଖ ଏବଂ ୧୭ ତାରିଖ, ୧୩ ତାରିଖ ହୋଇଯାଇଛି, ସେହି କାରଣରୁ ଏପରି ବିଭ୍ରାଟ ହେବାର ସମ୍ଭାବନା ରହିଛି । ଏହି ପରିପ୍ରେକ୍ଷୀରେ ଅନ୍ୟ ଏକ ପ୍ରଶ୍ନ ମନରେ ଉଠିଥାଏ । ଫକୀରମୋହନଙ୍କ ବିବରଣୀ ଅନୁଯାୟୀ ବନ୍ଦୀ ହେବାର ନବମ ଦିନ ସେ ମୁକ୍ତ ହୋଇଥିଲେ । ଅଙ୍କଗତ ସାଦୃଶ୍ୟ ଯୋଗୁଁ ଏବଂ ସଚ୍ଚିବାବୁଙ୍କ ମତାମତ (ସରକାରୀ ରେକର୍ଡ଼ ଅନୁଯାୟୀ ମଧ୍ୟ) ଅନୁଯାୟୀ ତାଙ୍କ ବନ୍ଦୀ ହେବାର ଦିନ ଯଦି ୧୯ ତାରିଖ ହୁଏ, ତେବେ ତାର ନବମ ଦିନ ପଡ଼ିବ ୨୭ ତାରିଖରେ । ସଚ୍ଚିବାବୁଙ୍କ ଅନୁଯାୟୀ ଯଦି ସେ ୧୯ ରେ ୯ ମଧ୍ୟ ମିଶାଇ ଦିଅନ୍ତି ତେବେ ତାହା ହେବ ୨୮ ତାରିଖ, ୨୯ ତାରିଖ ନୁହେଁ । ଏ କ୍ଷେତ୍ରରେ ଫକୀରମୋହନଙ୍କର ସେହି ତ୍ରୁଟି ପାଇଁ କେଉଁ ଯୁକ୍ତି ଦେଇ ହେବ ?

ବର୍ତ୍ତମାନ ଫକୀରମୋହନଙ୍କର ଚିଠି ସଂପର୍କରେ ସାମାନ୍ୟ ଆଲୋକପାତ କରାଯାଇପାରେ । ଏହି ଚିଠିର ସତ୍ୟତା ଓ ବାସ୍ତବତା ସଂପର୍କରେ ପ୍ରଶ୍ନ ଉଠାଇଥିବାରୁ ସଚ୍ଚିବାବୁ ଡଃ ଅଶୋକ କୁମାର ଦାସଙ୍କ ଉପରେ କ୍ଷୁବ୍ଧ ହୋଇଛନ୍ତି । ଏହାର ଚାରିବର୍ଷ ପୂର୍ବରୁ ଡଃ ଗଗନେନ୍ଦ୍ର ନାଥ ଦାଶ ମଧ୍ୟ ଚିଠିର ସତ୍ୟାସତ୍ୟ ସଂପର୍କରେ ପ୍ରଶ୍ନ ଉଠାଇଛନ୍ତି ଏବଂ ଭୂୟାଁ ମେଳି ଦମନ କ୍ଷେତ୍ରରେ ଉକ୍ତ ଚିଠିଟିର କୌଣସି ଗୁରୁତ୍ୱପୂର୍ଣ୍ଣ ଭୂମିକା ନାହିଁ ବୋଲି ଯୁକ୍ତିଯୁକ୍ତ ତଥ୍ୟ ଉପସ୍ଥାପନ କରିଛନ୍ତି । ଡଃ ଅଶୋକ କୁମାର ଦାସ ପ୍ରଶ୍ନ କରିଛନ୍ତି ''କିନ୍ତୁ ପାନ ଅର୍ଥ ବନ୍ଧୁକଧାରୀ ସିପାହି ଓ ଆଖୁ ବାଡ଼ି ଅର୍ଥ ''ଗଡ଼'' ରାଜା ବୁଝିବେ କାହିଁକି ଏବଂ କେଉଁ ସାଦୃଶ୍ୟ (Analogy) ବା ବ୍ୟଞ୍ଜନା (Suggestion) ବଳରେ ?'' (ପୃ-୧୪୮୮) ଏହାର ଉତ୍ତର ଦେବାକୁ ଯାଇ ସଚ୍ଚିବାବୁ ଲେଖିଛନ୍ତି ''ମୋର ସତରଞ୍ଜ ଖେଳ ସଉକଥିବା ବିଷୟ ଆତ୍ମଜୀବନ ଚରିତର ଅନେକ ସ୍ଥାନରେ ଲେଖିଛି । ସେତେବେଳେ ସତରଞ୍ଜ ସୌଖୀନ ଲୋକଙ୍କ ମଧ୍ୟରେ ଆଦୃତ ହେଉଥିଲା । ସତରଞ୍ଜ ପାଲିର ଆଗଧାଡ଼ିର ଗୋଟିଗୁଡ଼ିକୁ ଓଡ଼ିଆରେ ସିପାହି ଓ ଇଂରାଜୀରେ ପଅନ (Pawn) କୁହାଯାଏ । ପଅନ୍ ପ୍ରାଚୀନ ଫରାସୀ ଭାଷାର ଶବ୍ଦ, ଯାହାର ଅର୍ଥ ପଦାତିକ ବା ପାଇକ ଅର୍ଥାତ୍ ସିପାହି । ଇଂରାଜୀ ପଅନ ହେଲା ମୋ ଚିଠିର ପାନ' । x x x ଆଖୁବାଡ଼ି ଶବ୍ଦଦ୍ୱାରା ରାଜବାଟୀ ଲକ୍ଷିତ । ରାଜାଙ୍କର ନାମ ଧନୁର୍ଜୟ, ଶବ୍ଦଟି ଧନଞ୍ଜୟ ଶବ୍ଦର ଅପଭ୍ରଂଶ । ମୁଁ ଆତ୍ମଜୀବନ ଚରିତରେ ଶୁଦ୍ଧ ଧନଞ୍ଜୟ ନାମଟିକୁ ଲେଖିଛି । ଧନଞ୍ଜୟର ଅର୍ଥ ଧନ ଅର୍ଜନକାରୀ । 'ଆଖୁ'ର ଏକ ଅର୍ଥ ଧନ ସଞ୍ଚୟକାରୀ, କୃପଣ । ଏହିପ୍ରକାର ଆଖୁବାଡ଼ିର ଅର୍ଥ ରାଜବାଟୀ ବା ଗଡ଼ ବୋଲି ରାଜା ବୁଝିଗଲେ । ପତ୍ରରେ 'ପାଣି' ଶବ୍ଦଟି ସୈନ୍ୟବଳ ବୁଝାଇବ ବୋଲି ଲେଖିଥିଲି । 'ପାଣି'ର ଅର୍ଥ ହସ୍ତ ବା Arm । ଇଂରାଜୀରେ Arm ର ଅର୍ଥ a branch of fighting force କିନ୍ତୁ ରାଜା ଏହି ଅର୍ଥଟି ଠଉରାଇ ପାରି ନ ଥିଲେ । (ପୃ-୧୧୯୧) ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ ସଚ୍ଚିବାବୁଙ୍କ ଯୁକ୍ତି ଯୁକ୍ତିଯୁକ୍ତ ମନେହୁଏ ନାହିଁ । ପ୍ରଜାମେଳି ସମୟରେ ବନ୍ଦୀ ଫକୀରମୋହନ ଓ ଅସ୍ଥିର ରାଜାଙ୍କର ମାନସିକ ଅବସ୍ଥା ଆଦୌ ସୁସ୍ଥ ନ ଥିଲା । ସତରଞ୍ଜ ଖେଳ ସହିତ ସଂପର୍କ ନ ଥିବା ଘଟଣାଟିକୁ ଟାଣି ଓଟାରି ଆଣି ଇଂରାଜୀ Pawn (ପଅନ୍)କୁ ପାନ ଅର୍ଥରେ ଗ୍ରହଣ କରିବା ସମ୍ଭବ ନୁହେଁ । ପ୍ରାଚୀନ ଫରାସୀ ଭାଷା ସହିତ କ'ଣ ଫକୀରମୋହନ ଓ ରାଜା ପରିଚିତ ଥିଲେ ? ଫରାସୀ Pawn ଅର୍ଥ foot soldier (ପଦାତିକ) । ଇଂରାଜୀ Pawn ମୁଖ୍ୟତଃ ବନ୍ଧକ, ପଣ ଅର୍ଥରେ ବ୍ୟବହୃତ । ଇଂରାଜୀ Pawn ର ଅନ୍ୟ ଏକ ଅର୍ଥ a small piece in chess of lowest rank and range । ତେଣୁ ପାନକୁ Pawn ଅର୍ଥରେ କେବେ ଫକୀରମୋହନ ବ୍ୟବହାର କରି ନ ଥିଲେ କିମ୍ବା ରାଜାଙ୍କର ମାନସିକ-ସ୍ଥିତି ଏପରି ନ ଥିଲା ଯେ, ଯାହାଦ୍ୱାରା ପାନ ମଧ୍ୟରେ ସେ ତାର ମୂଳ ଉତ୍ସ ଖୋଜି ଖୋଜି ଯାଇ ଫରାସୀ ଭାଷା ନିକଟରେ

ପହଞ୍ଚିଥିବେ । ସେହିପରି 'ଆଖୁବାଡ଼ି'ର ଅର୍ଥକୁ ସେ ଯେପରି ଗଡ଼ ବା ରାଜବାଟୀ ଅର୍ଥ କରିଛନ୍ତି, ତାହା ମଧ୍ୟ ଯୁକ୍ତିଯୁକ୍ତ ମନେହୁଏ ନାହିଁ । 'ଆଖୁ'ର ଅନ୍ୟ ଅର୍ଥ ମୂଷା, ଶୂକର, ସିନ୍ଧିଚୋର । ସଚ୍ଚିବାବୁଙ୍କ ମତରେ ଯଦି 'ଆଖୁ' ଅର୍ଥ ଧନସଞ୍ଚୟକାରୀ ବା କୃପଣ ହୁଏ, ରାଜା ଧନଞ୍ଜୟ (ଧନୁର୍ଜୟ) ନିଜ ନାମ ସହିତ କାହିଁକି ଏହି ଶବ୍ଦର ଆଭିଧାନିକ ଅର୍ଥକୁ ତୁଳନା କରି ଦେଖିବେ ? ଆଖୁବାଡ଼ିର ଅର୍ଥ ରାଜବାଟୀ ବା ଗଡ଼ ହେବାର ସମ୍ଭାବନା କାହିଁ ? ରାଜା କ'ଣ ତାର ଏହି ରହସ୍ୟ ଉଦ୍‌ଘାଟନ କଲେ ଯେ, ଆଖୁର ଅର୍ଥ ଧନସଞ୍ଚୟକାରୀ ଏବଂ ମୋର ନାମ ଧନଞ୍ଜୟ ହୋଇଥିବାରୁ ମୁଁ ଧନଅର୍ଜନକାରୀ ତଥା ମୋଦ୍ୱାରା ଅର୍ଜିତ ଧନ ରାଜବାଟୀରେ ସଂରକ୍ଷିତ ଥିବାରୁ ଆଖୁବାଡ଼ିର ଅର୍ଥ ରାଜବାଟୀ ହେବ (!) । ସେହିପରି ପାଣିର ଅର୍ଥ ହସ୍ତ ବା Arm । ଇଂରାଜୀରେ Armର ଅର୍ଥ a branch of fighting force । ମାତ୍ର ହସ୍ତ Arm ଏବଂ Army ମଧ୍ୟରେ ପାର୍ଥକ୍ୟ ରହିଛି । ପୁଣି 'ପାଣି'ର ଅନ୍ୟ ଅର୍ଥ 'ହସ୍ତ' ସିଦ୍ଧାନ୍ତ କରି ତାର ଇଂରାଜୀ ଶବ୍ଦ Arm ମାଧ୍ୟମରେ ସୈନ୍ୟବଳ ଶବ୍ଦଟିକୁ ଗ୍ରହଣ କରିବା କେତେଦୂର ଯୁକ୍ତିଯୁକ୍ତ ? ଏପରି ଅର୍ଥ ଫକୀରମୋହନ କଦାପି ଚିନ୍ତାକରି ନ ଥିବେ କିମ୍ବା ଯଦିବା ଫକୀରମୋହନ ଚିନ୍ତା କରିଥିବେ ଏବଂ ଫକୀରମୋହନଙ୍କ ଭାଷାରେ ରାଜା 'ସର୍ବ ବିଷୟରେ ବିଚକ୍ଷଣ' ହେଲେହେଁ ସେଦିନ ସେ ଯେପରି ବିବ୍ରତ ଅବସ୍ଥାରେ ଅଖିଆ ଅପିଆ ଘଟଗ୍ରାମରୁ ଫେରିଗଲେ, ଏପରି ଗୂଢ଼ ଅର୍ଥପୂର୍ଣ୍ଣ ଚିଠି ବୁଝିବାକୁ ତାଙ୍କର ସେତେବେଳେ ମଗଜ ଥିଲା ତ ? ଅବଶ୍ୟ ସଚ୍ଚିବାବୁ କହିଛନ୍ତି, ଶେଷୋକ୍ତ ଶବ୍ଦଟିର ଅର୍ଥ ସେ ବୁଝିପାରି ନ ଥିଲେ । ଫକୀରମୋହନ ନିଜେ ତ କହିଛନ୍ତି ଟୟନବୀଙ୍କ ସହିତ ସାକ୍ଷାତ୍ ବେଳେ ସାହେବଙ୍କ ପ୍ରଶ୍ନର ଉତ୍ତର ରାଜା ନିଜେ ଦେବା ପୂର୍ବରୁ ସ୍ୱୟଂ ଫକୀରମୋହନ ନିଜେ ଦେଇଥିଲେ । ଯଦି ସେ କ୍ଷେତ୍ରରେ ରାଜାଙ୍କର ବୁଦ୍ଧି କାର୍ଯ୍ୟ କଲା ନାହିଁ ଏପରି ଗୂଢ଼ାର୍ଥବୋଧକ ଶବ୍ଦର ଅର୍ଥ ବୁଝିବାକୁ ରାଜାଙ୍କର ହଠାତ୍ ଏତେ ବୁଦ୍ଧି ଆସିଲା କୁଆଡୁ ? ପୂର୍ବରୁ ଡଃ ଗଗନେନ୍ଦ୍ର ନାଥ ଦାଶ ଓ ଡଃ ଅଶୋକ କୁମାର ଦାସ ପ୍ରମାଣ କରିସାରିଛନ୍ତି ମେଳି ଦମନରେ ଏ ଚିଠିଟିର କୌଣସି ଭୂମିକା ନ ଥିଲା । ପୁଣି ସଚ୍ଚିବାବୁ କହିଛନ୍ତି "ଫକୀରମୋହନ ଧରଣୀଧରଙ୍କଦ୍ୱାରା ଧୃତ ହୋଇ ରାଇସୁଆଁରେ ଜୀବିତ ଥିଲେ । ଏହି କଥା ଜଣାଇବାକୁ ସେ ଚିନ୍ତା କରୁଥିଲେ । ତେଣୁ ତାଙ୍କ ପାନଗୁଆ ବରାଦ ଚିଠିର ପରିକଳ୍ପନା ସେଇଥିପାଇଁ ହୋଇଥିଲା । ତେଣୁ ଚିଠି ମୁଖ୍ୟ ନୁହେଁ, ଲୋକ ପଠାଇବାହିଁ ମୁଖ୍ୟ ଥିଲା ଓ ଲୋକପଠାଇବା ପାଇଁ ଚିଠିଟି ଉପଲକ୍ଷ୍ୟ ମାତ୍ର । (ପୃ-୧୧୯୧) ଯଦି ତାହାହିଁ ସତ୍ୟ, ତେବେ ସେଥିରୁ ଏପରି ତାତ୍ତ୍ୱିକ ଅର୍ଥ ବ୍ୟାଖ୍ୟା କରିବାର ଆବଶ୍ୟକତା କ'ଣ ? ଯଦି ଏହା ପୁଣି ମାମୁଲି ଚିଠିଟିଏ ହୋଇଥାଏ, ତେବେ ତା' ଉପରେ ଏପରି ଗୁରୁତ୍ୱ ଦେବାର କାରଣ କ'ଣ ? ଏହି ପ୍ରସଙ୍ଗରେ ଅନ୍ୟ ଏକ ଯୁକ୍ତି ମନକୁ ଆସେ । ଫକୀରମୋହନ ବନ୍ଦୀ ଅବସ୍ଥାରେ ବାହାରର କୌଣସି ଖବର ପାଇପାରୁ ନ ଥିଲେ । ଶଶିଭୂଷଣଙ୍କ ଆଗମନ ପର୍ଯ୍ୟନ୍ତ ସେ

ପ୍ରାୟତଃ ବାହ୍ୟଜଗତରୁ ବିଚ୍ଛିନ୍ନ ଥିଲେ । ତେବେ ବନ୍ଦୀ ଅବସ୍ଥାରେ ସେ କିପରି ଜାଣିଲେ ଯେ "ମୁଁ ଧୃତ ହୋଇ ଭୂୟାଁମାନଙ୍କ ମଧ୍ୟରେ ଥିବା ସମୟରେ ମୋତେ ଭୂୟାଁମାନେ ହାଣି ପକାଇଥିବା ମିଥ୍ୟା ସମ୍ବାଦ ବାଲେଶ୍ୱରରେ ଓ ଉତ୍କଳରେ ସର୍ବତ୍ର ପ୍ରଚାରିତ ହୋଇଥିଲା । ମୋର କାଳ୍ପନିକ ମୃତ୍ୟୁ ସମ୍ବାଦ ପ୍ରାପ୍ତ ହୋଇ ମୋହର ସ୍ତ୍ରୀ ପାନାହାର ପରିତ୍ୟାଗ କରିଥିଲେ ।" ହୁଏତ ତାଙ୍କ ବନ୍ଦୀ ସମ୍ବାଦ ସଂପର୍କରେ ଓଡ଼ିଶାବାସୀ ଅବଗତ ହୋଇଥାଇପାରନ୍ତି । କିନ୍ତୁ ଫକୀରମୋହନ କେଉଁ ଉତ୍ସରୁ ଏତେ କଡ଼ାନଜର ମଧରେ ଥାଇ ସନ୍ଧାନ ପାଇପାରିଲେ ? ପୁଣି ବାଲେଶ୍ୱରରେ ରହିଥିବା ପତ୍ନୀଙ୍କ ପାନାହାର ତ୍ୟାଗ ସମ୍ବାଦ ତାଙ୍କଠାରେ ପହଞ୍ଚିଲା କିପରି, ଯେଉଁଥିରେ ସେ ବିବ୍ରତ ହୋଇ ପଡ଼ିଲେ ଏବଂ ଏହି ବିବ୍ରତାବସ୍ଥାରେ ଏପରି ଗୂଢ଼ାର୍ଥପୂର୍ଣ୍ଣ ପଂତ୍ରଟି ଲେଖି ପାରିଲେ !

ସଚ୍ଚିବାବୁ ଅନ୍ୟତ୍ର ଲେଖିଛନ୍ତି (ପୃ-୧୧୮) ୧୮୯୧ ମସିହା ୧୨ ତାରିଖରେ ରାଜା ତାଙ୍କର ଓକିଲ ଭାବରେ ମଧୁସୂଦନ ଦାସଙ୍କୁ ନିଯୁକ୍ତ କରିଥିଲେ । ମାତ୍ର ୧୨ ତାରିଖବେଳକୁ ରାଜାଙ୍କର ଅଦାଲତ ଯିବାର ଆବଶ୍ୟକତା ପଡ଼ି ନ ଥିଲା । ମେଳି ଦମନ ପରେ ମଧ ପ୍ରଜାମାନେ ରାଜାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରି ନ ଥିଲେ । ଏଥିପାଇଁ ଟୟନବୀ ଏକ ଅନୁସନ୍ଧାନ କରିଥିଲେ । "After making an enquiry into the affairs, Toynbee was convinced that the presence of Raja Dhanurjay Narayan Bhanja in Keonjhar would create further complications. Therefore he decided to send the Raja back to Cuttack. (Mishra- P.156) । ୧୭ ଜୁଲାଇ ୧୮୯୧ରେ ମୟୂରଭଞ୍ଜର ମ୍ୟାନେଜର H.P. Wylly କେନ୍ଦୁଝରର ପ୍ରଶାସନିକ ଦାୟିତ୍ୱ ଗ୍ରହଣ କରିବାରୁ ରାଜାଙ୍କୁ ତାହା ମାନସିକ ଆଘାତ ଦେଇଥିଲା । ନିଜର ଗାଦି ଫେରିପାଇବାକୁ ତତ୍କାଳୀନ ପ୍ରସିଦ୍ଧ ବାରିଷ୍ଟର ମଧୁସୂଦନ ଦାସଙ୍କ ମାଧମରେ ସେ ଏକ ପିଟିସନ୍ ଗଡ଼ଜାତ ମହଲର ସୁପରିଣ୍ଟେଣ୍ଡେଣ୍ଟଙ୍କ ନିକଟରେ ଦାଖଲ କରିଥିଲେ । ପ୍ରଥମେ ତାହା ଖାରଜ ହୋଇଯିବାରୁ ମଧୁବାବୁ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ନିକଟରେ ଅନ୍ୟ ଏକ ଆବେଦନ କରି ରାଜାଙ୍କ ସପକ୍ଷରେ ବଳିଷ୍ଠ ଯୁକ୍ତି ପ୍ରଦାନ କରିଥିଲେ ଓ ରାଜାଙ୍କ ଗାଦି ଫେରିପାଇବାରେ ସାହାଯ୍ୟ କରିଥିଲେ । ଏହା ହେଉଛି ମେଳିର ପରବର୍ତ୍ତୀ ଘଟଣା । କିନ୍ତୁ ତାହା ପୂର୍ବରୁ ସେ କାହିଁକି ମଧୁସୂଦନଙ୍କୁ ଓକିଲ ଭାବରେ ନିଯୁକ୍ତ କଲେ, ତାହା ବୁଝିହୁଏ ନାହିଁ ।

ଧରଣୀଧର ନିଜକୁ 'ମହାରାଣୀଙ୍କ ପୁତ୍ର' ଭାବରେ ଘୋଷଣା କରିଥିବାରୁ ସଚ୍ଚିବାବୁ ଏହାକୁ ଧରଣୀଧରର ପାଗଳାମି ବୋଲି ଗ୍ରହଣ କରିଛନ୍ତି । ତାଙ୍କ ଭାଷାରେ "ନିଜକୁ ମହାରାଣୀଙ୍କ ପୁତ୍ର ବୋଲାଇ ରାଜା ହେବାକୁ ଉଦ୍ୟମ କରିବା ବିପ୍ଳବ ନା ପାଗଳାମି" (ପୃ-୧୧୯୪) "ସଚ୍ଚିବାବୁ ମହାରାଣୀ ଅର୍ଥରେ ବିଷ୍ଣୁପ୍ରିୟାଙ୍କୁ ଗ୍ରହଣ କରିଛନ୍ତି । ପ୍ରକୃତରେ

ଧରଣୀଧର ମହାରାଣୀ ଅର୍ଥରେ ବିଷ୍ଣୁପ୍ରିୟାଙ୍କୁ ନୁହେଁ ଭିକ୍ଟୋରିଆଙ୍କୁହିଁ ଗ୍ରହଣ କରିଛନ୍ତି । ଏ ସଂପର୍କରେ ଡଃ ଗଗନେନ୍ଦ୍ର ନାଥ ଦାଶ ବିଭିନ୍ନ ଉତ୍ସରୁ ତଥ୍ୟ ସଂଗ୍ରହ କରି ଲେଖିଛନ୍ତି, ''ଭାରତରେ ବ୍ରିଟିଶ ଶାସନ ସଂପର୍କରେ ଧରଣୀଧରଙ୍କ ମନୋଭାବ ଓ ଦୃଷ୍ଟିକୋଣ ଜାଣିବାର ବିଶେଷ ଉପାଦାନ ଏ ଯାବତ୍ ମିଳି ନ ଥିଲେହେଁ ଯେତେଦୂର ଜଣାଯାଏ ତାହା ଆଦୌ ପ୍ରତିକୂଳାତ୍ମକ ନ ଥିଲା । ନଚେତ୍ ସେ 'ମହାରାଣୀଙ୍କ ପୁତ୍ର' ଅର୍ଥାତ୍ ମହାରାଣୀ ଭିକ୍ଟୋରିଆଙ୍କ ପୁତ୍ର ପଦବୀ ଧାରଣ କରିଥାଆନ୍ତେ ବା କାହିଁକି ? କେନ୍ଦୁଝର ପ୍ରଜାମେଳି ସମୟରେ ମୟୂରଭଞ୍ଜର ଦୁଇଜଣ ଚପରାସୀ ବାମଣ୍ଡା ଯାଉଥିବା ସମୟରେ ମେଳିଆମାନଙ୍କଦ୍ୱାରା ବନ୍ଦୀ ହୋଇଥିଲେ । ପରେ ଧରଣୀଧରଙ୍କ ଆଦେଶରେ ସେମାନେ ବନ୍ଦୀରୁ ମୁକ୍ତ ହେବାବେଳେ ବିନା ବାଧାରେ କେନ୍ଦୁଝର ସୀମା ପାରହେବା ଉଦ୍ଦେଶ୍ୟରେ ଧରଣୀଧରଙ୍କ ଇଂରାଜୀ ଦସ୍ତଖତ ସମ୍ୱଳିତ ଯେଉଁ ଛାଡ଼ ଚିଠି ସେମାନଙ୍କୁ ଦିଆଯାଇଥିଲା ସେଥିରେ ଧରଣୀଧରଙ୍କୁ ନିମ୍ନ ପଦବୀରେ ଭୂଷିତ କରାଯାଇଥିଲା ''ହୁକୁମ ଶ୍ରୀ ବାବୁଧରଣୀଧର ନାୟକ ସରଭିୟର ଟିକାଏତ ଶ୍ରୀମତୀ ଭାରତେଶ୍ୱରୀ ସ୍ୱର୍ଣ୍ଣମୟୀ ଦେବୀଙ୍କ ପୁତ୍ର'' (ଦ୍ରଷ୍ଟବ୍ୟ : ସମ୍ୱଲପୁର ହିତୈଷିଣୀ, ଜୁନ୍ ୧୦ ତାରିଖ) ଏ ଛାଡ଼ ଚିଠିର ତାରିଖ ମେ' ୨୭ ତାରିଖ । ଏଇ ''ଭାରତେଶ୍ୱରୀ ସ୍ୱର୍ଣ୍ଣମୟୀ'' ଯେ ଭିକ୍ଟୋରିଆ ତାହା ପୂର୍ବେ ସୂଚିତ ମେ' ୨୬ ତାରିଖରେ କମିଶନରଙ୍କ ଉଦ୍ଦେଶ୍ୟରେ ଧରଣୀଧର ଲେଖିଥିବା ଚିଠିରୁ ସ୍ପଷ୍ଟ ଜଣାଯାଏ । ତାଙ୍କ ଇଂରାଜୀ ଦସ୍ତଖତ ସମ୍ୱଳିତ, ସରକାରୀ କାଗଜର ଅନ୍ତର୍ଗତ, ଏଇ ଚିଠିରେ ଧରଣୀଧର ନିଜକୁ ନିମ୍ନ ପଦବୀରେ ଭୂଷିତ କରିଥିଲେ ''ଶ୍ରୀ ଧରଣୀଧର ନାୟକ ସରଭିୟର ଟିକାଏତ ଶ୍ରୀମତୀ ଭାରତେଶ୍ୱରୀ ସ୍ୱର୍ଣ୍ଣମୟୀ ଭିକ୍ଟୋରିଆ ଦେବୀଙ୍କ ପୁତ୍ର ।'' (ପୃ-୧୮) ତେଣୁ ଏଠାରେ 'ମହାରାଣୀ' ଶବ୍ଦଟି ଭିକ୍ଟୋରିଆଙ୍କ ଅର୍ଥରେ ବ୍ୟବହୃତ ।

ପ୍ରସଙ୍ଗକ୍ରମେ ଡଃ ଅଶୋକ କୁମାର ଦାସ ଗୋଦାବରୀଶଙ୍କଦ୍ୱାରା ରଚିତ 'ଧରଣୀଧର' କବିତା ଓ ମାନସିଂହଙ୍କ କେତେକ ବକ୍ତବ୍ୟ ଉଦ୍ଧାର କରିଛନ୍ତି । ଗୋଦାବରୀଶ ମିଶ୍ର 'ଧରଣୀଧର' କବିତାଟି ରଚନା କରିବା ସମୟରେ ଏହି ଘଟଣାଟି ସମଗ୍ର ଓଡ଼ିଶାରେ ପ୍ରଚାର ଲାଭ କରି ସାରିଥିଲା ଏବଂ ଧରଣୀଧରଙ୍କ ପରବର୍ତ୍ତୀ ଜୀବନକୁ ନେଇ କିଛି ଉଷ୍ମ ବାତାବରଣ ମଧ୍ୟ ସୃଷ୍ଟି ହୋଇଥିଲା । ଗୋଦାବରୀଶ ଫକୀରମୋହନଙ୍କ ପାରିବାପଣିଆର ତଥ୍ୟ ତାଙ୍କଠାରୁ ପ୍ରତ୍ୟକ୍ଷ କିମ୍ୱା ପରୋକ୍ଷରେ ସଂଗ୍ରହ କରି ନାହାନ୍ତି । ବରଂ ଲୋକମୁଖରୁ ଏହା ଶୁଣି ତାକୁ ଏକ ଗାଥାକବିତାର ରୂପ ପ୍ରଦାନ କରିଛନ୍ତି । ଡଃ ମାୟାଧର ମାନସିଂହ ମଧ୍ୟ ତାଙ୍କ ବନ୍ଧୁଙ୍କ କଥାରେ ବିଶ୍ୱାସ କରି ଧରଣୀଧର ସନ୍ୟାସ ଜୀବନଯାପନ କରୁଥିବା ବିଷୟ ବିଶ୍ୱାସ କରିଛନ୍ତି । ମାତ୍ର ଧରଣୀଧରଙ୍କ ପରବର୍ତ୍ତୀ ଜୀବନ ସଂପର୍କରେ କୌଣସି ଐତିହାସିକ ତଥ୍ୟ ଉପଲବ୍‌ଧ ହେଉ ନ ଥିବାରୁ ସେ ସଂପର୍କରେ କୌଣସି ମତାମତ ଦେବା ନିରାପଦ ମନେହୁଏ ନାହିଁ । ଫକୀରମୋହନ ଓ ଧରଣୀଧର ନିଜ ପରିବେଶ ଦୃଷ୍ଟିରୁ ଅନନ୍ୟ । ଜଣେ

ବିପ୍ଳବୀ ଓ ଅନ୍ୟଜଣେ ପ୍ରଶାସକ । ଫକୀରମୋହନ ଜଣେ ରାଜକର୍ମଚାରୀ ହୋଇଥିବାରୁ ନିଜର ବୃତ୍ତିପାଇଁ ରାଜପକ୍ଷ ସମର୍ଥନ କରିବା ସ୍ୱାଭାବିକ । ଧରଣୀଧର ନିଜେ ଜଣେ ଭୂୟାଁ ହୋଇଥିବାରୁ ଭୂୟାଁ ତଥା ନିଜ ସଂପର୍କୀୟମାନଙ୍କ ଉପରେ ରାଜା ଅତ୍ୟାଚାର ବିରୋଧରେ ଜଣେ ଶିକ୍ଷିତ ଓ ସଚେତନ ଯୁବକ ଭାବରେ ଜନଜାଗରଣ ସୃଷ୍ଟି କରିବା ମଧ୍ୟ ସେହିପରି ସ୍ୱାଭାବିକ । ତାଙ୍କର ଏହି ବିପ୍ଳବୀ ନେତୃତ୍ୱ ଆତ୍ମସମର୍ପଣ ପରେ ବିଲୀନ ହୋଇ ନ ଥିଲା । ୧୮୯୩ ମସିହା ଶେଷ ପର୍ଯ୍ୟନ୍ତ କେନ୍ଦୁଝରରେ ଅଶାନ୍ତ ବାତାବରଣ ଲାଗି ରହିଥିଲା । ୧୮୯୩ ମସିହା ଅଗଷ୍ଟ ୪ ତାରିଖରେ H.P. Wylly ପୁନର୍ବାର ଦାୟିତ୍ୱ ଗ୍ରହଣ ପରେ ତାଙ୍କର କେତେକ ଜନହିତକର ପଦକ୍ଷେପ ଯୋଗୁଁ ଅବସ୍ଥା ଧୀରେ ଧୀରେ ଶାନ୍ତ ପଡ଼ିଥିଲା । ଡିସେମ୍ବର ୩୦ ତାରିଖ ବେଳକୁ ଅବସ୍ଥା ସଂପୂର୍ଣ୍ଣ ନିୟନ୍ତ୍ରଣାଧୀନ ରହିବାରୁ ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ୧୮୯୪ ମସିହା ଏପ୍ରିଲ ୧୧ ତାରିଖରେ ଗଡ଼କୁ ଫେରିଲେ ଏବଂ ପଲିଟିକାଲ ଏଜେଣ୍ଟଙ୍କ ଅନୁଯାୟୀ କାର୍ଯ୍ୟ କଲେ । ୧୮୯୪ ମସିହା ଜୁନ୍ ୯ ତାରିଖ ବେଳକୁ ମେଳିଆମାନେ ବ୍ରିଟିଶ୍ ଶାସନ ବ୍ୟବସ୍ଥା ଓ ଧନୁର୍ଜୟ ନାରାୟଣ ଭଞ୍ଜଙ୍କୁ ଗ୍ରହଣ କରିନେଇଥିଲେ ।

ଉପସଂହାରରେ କୁହାଯାଇପାରେ ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ର କେନ୍ଦୁଝର ବିଦ୍ରୋହ ପ୍ରସଙ୍ଗକୁ ନେଇ ବର୍ତ୍ତମାନ ବିତର୍କ କରିବାର କୌଣସି ଆବଶ୍ୟକତା ନାହିଁ । ଭାବପ୍ରବଣତା ଓ ଆକ୍ରମଣାତ୍ମକ ମନୋଭାବ ଏହି ପ୍ରସଙ୍ଗଟିକୁ ଅଧିକ ବିବଦମାନ କରିଦେଉଛି । ଡଃ ଦାଶରଥି ଦାସ ଆତ୍ମଜୀବନ ଚରିତଟିକୁ ଫକୀରମୋହନଙ୍କ ପଞ୍ଚମ ଉପନ୍ୟାସର ମର୍ଯ୍ୟାଦା ଦେଇ ଏହାର ଐତିହାସିକ ଆବଶ୍ୟକତାକୁ ଅସ୍ୱୀକାର କରିଛନ୍ତି । ଅବଶ୍ୟ ଏହା ସତ୍ୟ ଯେ, ଉକ୍ତ ଗ୍ରନ୍ଥଟିରେ ଉପନ୍ୟାସ କଳାର ସମସ୍ତ ଗୁଣ ସୁରକ୍ଷିତ । ଏହା ସତ୍ତ୍ୱେ ବହୁ ବାସ୍ତବ ଘଟଣା ଓ ଐତିହାସିକ ଉପାଦାନର ମଧ୍ୟ ଅଭାବ ନାହିଁ ଏହି 'ଆତ୍ମଜୀବନ ଚରିତ'ଟିରେ । ଡଃ ଦାସଙ୍କ ମତକୁ ସମର୍ଥନ କରି ଡଃ ଅଶୋକ କୁମାର ଦାସ ଏହି ଗ୍ରନ୍ଥଟିକୁ କଳ୍ପନାପ୍ରବଣ ଏକ ଶିଳ୍ପୀର ସ୍ମୃତି ଓ କଳ୍ପନାର ଖେଳବୋଲି ଗ୍ରହଣ କରିଛନ୍ତି । ଏଠାରେ ମନେରଖିବା ଉଚିତ ଫକୀରମୋହନ ତାଙ୍କ ଅତୀତ ଜୀବନର ସ୍ମୃତିଚାରଣ କରିଛନ୍ତି ଏଥିରେ: କେନ୍ଦୁଝର ପ୍ରଜାମେଳିର ଇତିହାସ ଲେଖିବାକୁ ଚେଷ୍ଟା କରି ନାହାନ୍ତି । ଜୀବନୀ ଗ୍ରନ୍ଥ ହେଲେହେଁ କିଛି କଳ୍ପନା ଓ ବର୍ଣ୍ଣନାର ଚମତ୍କାରିତା ନ ରହିଲେ ଉତ୍କୃଷ୍ଟ ସାହିତ୍ୟିକ ସୃଷ୍ଟି ହୋଇପାରିବ ନାହିଁ । ଗୋଟିଏ ଜୀବନୀ ଗ୍ରନ୍ଥରେ ଯେତିକି କଳ୍ପନା, ବାସ୍ତବତା ଓ ତଥ୍ୟ ରହିବା ଆବଶ୍ୟକ, ଏଥିରେ ସେତିକିମାତ୍ର ରହିଛି । ମେଳି ଘଟିବାର ଦୀର୍ଘଦିନ ପରେ ସ୍ମୃତିକୁ ପାଥେୟ କରି ଗ୍ରନ୍ଥଟି ରଚିତ ହୋଇଥିବାରୁ କିଛି ତଥ୍ୟ ବିଭ୍ରାଟ ରହିବା ସ୍ୱାଭାବିକ । ତେଣୁ ଫକୀରମୋହନ ଓ ଧରଣୀଧରଙ୍କୁ କେନ୍ଦ୍ରକରି ବିଚାର ବିଭ୍ରାଟ ସୃଷ୍ଟି ହେବା ଅନାବଶ୍ୟକ ଦୀର୍ଘ ପ୍ରାୟ ଶହେ ବର୍ଷ ପରେ (ଦ୍ୱିତୀୟ ପ୍ରଜାମେଳି) । ଡଃ ଦାଶରଥି ଦାସ ଓ ଡଃ ଅଶୋକ

କୁମାର ଦାସ ଫକୀରମୋହନଙ୍କ ପ୍ରଦତ୍ତ ବିବରଣୀକୁ ସଂପୂର୍ଣ୍ଣ ଅସ୍ୱୀକାର କଲେ ତାଙ୍କ ପ୍ରତି ଅବିଚାର ହେବ । କାରଣ ଏହାଦ୍ୱାରା ଫକୀରମୋହନ ଜଣେ ମିଥ୍ୟାବାଦୀ ବ୍ୟକ୍ତିତ୍ୱରେ ପରିଣତ ହୋଇଯିବେ ଯଦିଓ ତାଙ୍କ ଜୀବନର ବହୁ ସତ୍ୟ ଘଟଣାରେ ଗ୍ରନ୍ଥିଟି ଋଦ୍ଧିମନ୍ତ । ସେହିପରି ସଚ୍ଚିବାବୁ ପ୍ରତିକ୍ରିୟାଶୀଳ ହୋଇ ଫକୀରମୋହନଙ୍କ ପ୍ରଦତ୍ତ ସମସ୍ତ ବିବରଣୀକୁ ସତ୍ୟବୋଲି ପ୍ରମାଣିତ କରିବାକୁ ଚେଷ୍ଟା କରିଛନ୍ତି, ଯଦିଓ ଏଥିରେ ତଥ୍ୟ ବିଭ୍ରାଟର ଉଦାହରଣ ବିରଳ ନୁହେଁ । ଏ କ୍ଷେତ୍ରରେ ଉଭୟ ଫକୀରମୋହନଙ୍କ ସପକ୍ଷବାଦୀ ଓ ବିପକ୍ଷବାଦୀ ସଂପୂର୍ଣ୍ଣ ନିରପେକ୍ଷ ହୋଇପାରି ନାହାନ୍ତି । ଉଭୟେ ମଧ୍ୟ ଧରଣୀଧର ଏବଂ ଫକୀରମୋହନଙ୍କ ମାନସିକତାକୁ ପରୀକ୍ଷା କରିବାକୁ ଚେଷ୍ଟା କରି ନାହାନ୍ତି । ବରଂ ପକ୍ଷ ସମର୍ଥନପୂର୍ବକ ମସୀଯୁଦ୍ଧରେ ଅବତୀର୍ଣ୍ଣ ହୋଇଛନ୍ତି । ଏହି କାରଣରୁ 'ସେନାପତି' ଓ 'ନାୟକ'ଙ୍କ ପରି ତୁଙ୍ଗ ବ୍ୟକ୍ତିତ୍ୱଙ୍କ ପ୍ରତି ଆକ୍ଷେପୋକ୍ତି ପ୍ରୟୋଗ କରିବାକୁ କୁଣ୍ଠାବୋଧ କରି ନାହାନ୍ତି । ବରଂ ଡଃ ଗଗନେନ୍ଦ୍ର ନାଥ ଦାଶ ତାଙ୍କର 'ଫକୀରମୋହନ ଓ ଧରଣୀଧର' ପ୍ରବନ୍ଧରେ ଯଥେଷ୍ଟ ନିରପେକ୍ଷତା ଅବଲମ୍ବନ କରିବାକୁ ଚେଷ୍ଟା କରିଛନ୍ତି, ସନ୍ନିବେଶିତ ତଥ୍ୟର ବୈଜ୍ଞାନିକ ବିଶ୍ଳେଷଣ କରିଛନ୍ତି ଓ ସମୟ ଏବଂ ପରିବେଶ ଦୃଷ୍ଟିରୁ ସେମାନଙ୍କ ବ୍ୟକ୍ତିତ୍ୱର ଆକଳନ କରିଛନ୍ତି । ଡଃ ଦାସଙ୍କ ଉପସଂହାରର କେତୋଟି ବାକ୍ୟ ଏଠାରେ ଉଦ୍ଧାର କରାଯାଇପାରେ - ''ମୋଟ ଉପରେ କେନ୍ଦୁଝର ପ୍ରଜାମେଳିରେ ଉଭୟଙ୍କ ଭୂମିକା ଭିନ୍ନ ଓ ଏପରିକି ବିରୋଧାତ୍ମକ ହେବାର ତଥା ଉଭୟଙ୍କ ବ୍ୟକ୍ତିତ୍ୱ, ଚରିତ୍ର ଓ ମାନସିକତା ଭିନ୍ନ ଥିବାର ମୂଳରେ ବେଶ୍ କିଛି ପରିମାଣରେ ଉଭୟଙ୍କ ପୃଷ୍ଠଭୂମି, ପରିସ୍ଥିତି ଓ ପରିପାର୍ଶ୍ୱରେ ଥିବା ଭିନ୍ନତାକୁ ବା ପାର୍ଥକ୍ୟକୁ ଆବିଷ୍କାର କରାଯାଇପାରେ । ଉଭୟ ନିଜ ନିଜ ଦୃଷ୍ଟିକୋଣରୁ ଠିକ୍ ଥିଲେ । ତେଣୁ ଧରଣୀଧରଙ୍କ ପକ୍ଷରେ ଯାହା ପରମ କର୍ତ୍ତବ୍ୟ ଥିଲା ଫକୀରମୋହନ ତା' କରିଥିଲେ ସେ ସୁବିଧାବାଦୀ, କାପୁରୁଷ, ବିଶ୍ୱାସଘାତକ ବା ନିମକହାରାମ ବୋଲି ବିବେଚିତ ହୋଇଥାନ୍ତେ । ସେ କାରଣରୁ ଫକୀରମୋହନ ଯାହା କରିଛନ୍ତି ସେଥିପାଇଁ ତାଙ୍କୁ ଦୋଷଦେବାର ବା ପ୍ରତିକୂଳ ସମାଲୋଚନା କରିବାର ଯଥାର୍ଥତା ନାହିଁ ।'' (ପୃ-୩୩) । ବର୍ତ୍ତମାନ ପରିପ୍ରେକ୍ଷୀରେ ଜଣଙ୍କର ଶ୍ରଦ୍ଧାନିବେଦନ ଅବକାଶରେ ଅନ୍ୟଜଣଙ୍କର ଶ୍ରାଦ୍ଧ କରିବାର ଆବଶ୍ୟକତା ନାହିଁ । ଜଣେ ଭାଷା ଓ ସାହିତ୍ୟରେ ବିପ୍ଳବୀ ଓ ଅନ୍ୟଜଣେ ମାଟିପୁଅ ଦାବି ହାସଲରେ ବିପ୍ଳବୀ । ଜଣେ ସରକାରୀ କର୍ମଚାରୀ ଓ ଅନ୍ୟଜଣେ ମାଟିର ସନ୍ତାନ । ପରିବେଶ ଓ ପରିସ୍ଥିତି ଦୃଷ୍ଟିରୁ ଉଭୟଙ୍କ କାର୍ଯ୍ୟପନ୍ଥା ଭିନ୍ନ ଓ ଅନେକ କାରଣରୁ ଯଥାର୍ଥ ମଧ୍ୟ । ତେଣୁ ଉଭୟ ଆମ ନିକଟରେ ନମସ୍ୟ, ସ୍ମରଣୀୟ ଓ ଶ୍ରଦ୍ଧାର ପାତ୍ର । ପୂଜ୍ୟପୂଜାର ବ୍ୟତିକ୍ରମ କରି ପରସ୍ପର ପ୍ରତି ଦୋଷାରୋପ କରିବା ଅପେକ୍ଷା ସେମାନଙ୍କ ଭାବମୂର୍ତ୍ତିକୁ ଉଜ୍ଜ୍ୱଳ କରିବା ବର୍ତ୍ତମାନ ପରିପ୍ରେକ୍ଷୀରେ ଆମର ଏକାନ୍ତ କର୍ତ୍ତବ୍ୟ ହେବା ଉଚିତ ।

# ଉପାଦାନ ପଞ୍ଜିକା


୧. ଉତ୍କଳ ଦୀପିକା - ଜୁଲାଇ ୧୮୯୧ ।

୨. ଦାସ, ଜଗନ୍ନାଥ ପ୍ରସାଦ - ଦେଶ କାଳ ପାତ୍ର ୧୯୯୭; ପ୍ରାଚୀ ପ୍ରକାଶନ, ଭୁବନେଶ୍ୱର, ନୂଆଦିଲ୍ଲୀ ।

୩. ଦାସ, ଦାଶରଥି - 'ଫକୀରମୋହନଙ୍କ ପଞ୍ଚମ ଉପନ୍ୟାସ' (ସାରସ୍ୱତ ପରିକ୍ରମା, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ - ୧୯୯୩) ।

୪. ଦାଶ ଗଗନେନ୍ଦ୍ର ନାଥ - 'ଫକୀରମୋହନ ଓ ଧରଣୀଧର' - ଗୋକର୍ଣ୍ଣିକା ପୂଜା ବିଶେଷାଙ୍କ (ଅକ୍ଟୋବର, ନଭେମ୍ବର, ଡିସେମ୍ବର - ୧୯୯୪) ।

୫. ଦାସ, ଅଶୋକ କୁମାର - ଶହେ ପାନ, ଦୁଇଶ ଗୁଆ ଓ ଧରଣୀଧର କଥା, ଝଙ୍କାର, ଜାନୁଆରୀ, ୧୯୯୯ ।

୬. ମିଶ୍ର, ସଚ୍ଚିଦାନନ୍ଦ
(i) ଅଭିଯୁକ୍ତ ସେନାପତିଙ୍କ ଆତ୍ମପକ୍ଷ ସମର୍ଥନ - ଝଙ୍କାର, ଅକ୍ଟୋବର, ୧୯୯୯ ।
(ii) ବିବ୍ରତ ସେନାପତିଙ୍କ ପାନଗୁଆ ବରାଦ - ଝଙ୍କାର, ଡିସେମ୍ବର, ୧୯୯୯ ।

୭. Mishra, Prasanna Kumar - Political unrest in Orissa in the 19th century, Punthipustak, Calcutta - 1983.

୮. Panda, S.K. - Tribal Protest and the Keonjhar Raj : A study of the Bhuyan meli in Orissa - (Bengal past and Present July. Dec - 1981, Volume - C - Part - II No. 191).

୯. Samal, J.K. - Orissa under the British crown - (1858 - 1905), S.Chand & company Ltd. Ramnagar, New Delhi - 1977.

୧୦. ସେନାପତି ଫକୀରମୋହନ - ଆତ୍ମଜୀବନୀ ଚରିତ - କଟକ ଷ୍ଟୁଡେଣ୍ଟସ ଷ୍ଟୋର ୬ଷ୍ଠ ପ୍ରକାଶ - ୧୯୬୧ ।

# 'ଆତ୍ମଜୀବନଚରିତ' ପରିପ୍ରେକ୍ଷୀରେ 'ରାଣ୍ଡୀପୁଅ ଅନନ୍ତା'

ଜୀବନ ଓ ଜଗତର ନିବିଡ଼ ଘେନାଘେନି ଭାବରୁ କଳାର ସୃଷ୍ଟି । ସୌନ୍ଦର୍ଯ୍ୟ ସୃଷ୍ଟି କଳାର ସର୍ବଶେଷ ଲକ୍ଷ୍ୟ ନୁହେଁ; ଏଥିରେ ମଣିଷ ଜୀବନ ଓ ତାର ପରିପାର୍ଶ୍ୱ ଜଗତର ପଦଚିହ୍ନ କିପରି ସ୍ପଷ୍ଟ, ତାକୁ ସଙ୍କେତିତ କରିବା କଳାର ଅନ୍ୟତମ ଲକ୍ଷ୍ୟ । ଆତ୍ମାନୁସନ୍ଧାନ ଓ ଜାଗତିକ ମୋହ ମଧ୍ୟରେ ଥିବା ଘନିଷ୍ଠ ସମ୍ବନ୍ଧ ବୋଧରୁ କଳାର ପ୍ରକୃତ ମୂଲ୍ୟ ପ୍ରକଟିତ ହୋଇଥାଏ । ବିଶ୍ୱ ସାହିତ୍ୟର ଇତିହାସରେ ଖୁବ୍ କମ୍ କଳାକାର ଅଛନ୍ତି, ଯେଉଁମାନଙ୍କ ସୃଷ୍ଟିରେ ଜଗତର ରୂପ-ରସ-ଗନ୍ଧ, ଜୀବନର ସୁଖ-ଦୁଃଖ, ଆଶା-ନିରାଶା ଅକପଟତାର ସହିତ ପ୍ରକାଶଲାଭ କରିଛି । ଓଡ଼ିଆ ସାହିତ୍ୟରେ ସେହିପରି ଜଣେ ଜୀବନବାଦୀ ଓ ବାସ୍ତବ କଳାକାର ହେଉଛନ୍ତି କଥାସମ୍ରାଟ୍ ଫକୀରମୋହନ ସେନାପତି । ଜୀବନର ଅପରାହ୍ଣରେ ତାଙ୍କର କ୍ରାନ୍ତିକାରୀ ସୃଷ୍ଟି-ସମୂହର ସୃଷ୍ଟି । ସାଧାରଣତଃ ଯେଉଁ ସମୟରେ ଜଣେ କଳାକାର ନିରବତା ଅବଲମ୍ବନ କରିଥାନ୍ତି, ଠିକ୍ ସେହି ସମୟରେ ଅର୍ଥାତ୍ ଉତ୍ତର ପଚାଶରେହିଁ କଥାକାର ଫକୀରମୋହନଙ୍କର ଆବିର୍ଭାବ ବିସ୍ମୟକର ହେଲେହେଁ ଅସ୍ୱାଭାବିକ ନୁହେଁ । ଜୀବନର ବିଭିନ୍ନ ଘାତ-ପ୍ରତିଘାତ ଓ ଉତ୍‌ଥାନ-ପତନ ମଧ୍ୟଦେଇ ଗତି କରିଥିବା ଏହି ସ୍ରଷ୍ଟାପୁରୁଷ କଳାର ବାସ୍ତବ ଦିଗଟିକୁ ନିରୀକ୍ଷଣ କରିବାର ସୁଯୋଗ କ୍ୱଚିତ୍ ଲାଭ କରିଛନ୍ତି । ୧୮୯୬ ମସିହା ପର୍ଯ୍ୟନ୍ତ ବିଭିନ୍ନ ରାଜକାର୍ଯ୍ୟ ଓ ଦେଶହିତକର କାର୍ଯ୍ୟର ବ୍ୟସ୍ତତା ମଧ୍ୟରେ ତଥା ପ୍ରତିକୂଳ ପରିବେଶ ମଧ୍ୟରେ ସେ ଯାହା ସୃଷ୍ଟି କରିଛନ୍ତି, ସେଥିରେ ଅଧିକାଂଶ କ୍ଷେତ୍ରରେ ନିଜର ବ୍ୟକ୍ତିଗତ ଜୀବନର ଅନୁଭୂତି, ସମାଜ ପ୍ରତି ସମ୍ବେଦନଶୀଳତା, ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ନିମିତ୍ତ ଅଙ୍ଗୀକାରବଦ୍ଧତାହିଁ ସ୍ପଷ୍ଟ । ତେଣୁ ଏହି ସମୟରେ ପାଠ୍ୟପୁସ୍ତକ, ଅନୁବାଦ, କବିତା ଏବଂ କେତୋଟି ବଙ୍ଗ ଭାଷାରେ ଲିଖିତ ସୃଷ୍ଟି ମଧ୍ୟରେହିଁ ସେ ନିଜକୁ ସୀମାବଦ୍ଧ ରଖିଛନ୍ତି । ୧୮୯୬-୧୯୦୫ କଟକରେ ଅବସ୍ଥାନ ଏବଂ ୧୯୦୫-୧୮ ବାଲେଶ୍ୱରରେ ଅବସ୍ଥାନ କାଳରେହିଁ ତାଙ୍କ କ୍ରାନ୍ତିକାରୀ କଥାସାହିତ୍ୟ, ରମ୍ୟରଚନା, ଆତ୍ମଜୀବନ ଚରିତାଦିର ସୃଷ୍ଟି । ଦୀର୍ଘ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ସମୟ ଅଝାଳ ସିଲେଇରୁ ଶିକ୍ଷକତା ଏବଂ ଶିକ୍ଷକତାରୁ

ଷ୍ଟେଟ୍ ଆଡମିନିଷ୍ଟ୍ରେଟର ଭାବରେ କାର୍ଯ୍ୟନିର୍ବାହ ସମୟରେ ସେ ସମଗ୍ର ଓଡ଼ିଶାର ଜନଜୀବନକୁ ପରୀକ୍ଷା କରିବା ସହିତ ବିଶିଷ୍ଟ ବ୍ୟକ୍ତିମାନଙ୍କର ସଙ୍ଗଲାଭ କରିଛନ୍ତି । ଏହି ସମୟ ମଧ୍ୟରେ ସେ ହରାଇଛନ୍ତି ତାଙ୍କର ଆଦର୍ଶମୟୀ, ସ୍ନେହପ୍ରବଣା ଜେଜୀମା'ଙ୍କୁ, ଦୁଇ ଦୁଇଟି ପତ୍ନୀ, ଗୋଟିଏ ପୁତ୍ର ସନ୍ତାନ । ସଂସ୍ପର୍ଶରେ ଆସିଛନ୍ତି ତତ୍କାଳୀନ ଅଭିଜାତଗୋଷ୍ଠୀ ଓ ସାଧାରଣ ନାଗରିକମାନଙ୍କର, ଅନୁଭବ କରିଛନ୍ତି ସେମାନଙ୍କର ମାନସିକତା, ପ୍ରତ୍ୟକ୍ଷ କରିଛନ୍ତି ଓଡ଼ିଶାର ପ୍ରାକୃତିକ ବିପର୍ଯ୍ୟୟ ଏବଂ ସାମାଜିକ ଜୀବନ, ଲକ୍ଷ୍ୟ କରିଛନ୍ତି ପଡ଼ୋଶୀ ଦେଶର ସାହିତ୍ୟ ଓ ସାମାଜିକ ବିକାଶକୁ । ନିଜର ବ୍ୟକ୍ତିଗତ ଓ ସାମାଜିକ ଜୀବନର ନିବିଡ଼ ଅନୁଭୂତିକୁ ପାଥେୟ କରି ଉତ୍ତରକାଳରେ ସୃଷ୍ଟି କରିଛନ୍ତି ତାଙ୍କର କଥା ସାମ୍ରାଜ୍ୟ । ତେଣୁ ତାଙ୍କର କଥାସାହିତ୍ୟରେ ପ୍ରକାଶିତ ହୋଇଛି ସାମାଜିକ ତଥା ତାଙ୍କ ବ୍ୟକ୍ତିଗତ ଜୀବନର ତିକ୍ତ ମଧୁର ଅନୁଭୂତି । ଫକୀରମୋହନଙ୍କ 'ଜୀବନଚରିତ' ଅବଲମ୍ବନରେ 'ରାଣ୍ଡୀପୁଅ ଅନନ୍ତା' କ୍ଷୁଦ୍ର ଗଳ୍ପରେ କିପରି ସେନାପତିଙ୍କ ସାମାଜିକ ଓ ବ୍ୟକ୍ତିଗତ ଜୀବନବୃତ୍ତ ପରିପ୍ରକାଶ ଲାଭ କରିଛି, ତାହାହିଁ ଆଲୋଚନା କରିବା ଉକ୍ତ ପ୍ରବନ୍ଧଟିର ମୁଖ୍ୟ ଉଦ୍ଦେଶ୍ୟ ।

'ରାଣ୍ଡୀପୁଅ ଅନନ୍ତା'ର ମୁଖ୍ୟ ଚରିତ୍ର ହେଉଛନ୍ତି ଅନନ୍ତା, ଦେବକୀ ଗଉଡୁଣୀ ଓରଫ ସିଂହାଣୀ ଓ ସୁବଳ ମହାକୁଡ଼ । ପାର୍ଶ୍ୱ ଚରିତ୍ର ଭାବରେ କିଛିକ୍ଷଣ ପାଇଁ ଆବିର୍ଭୂତ ହୋଇଛନ୍ତି ଅବଧାନେ ବୈଷ୍ଣବ ମହାନ୍ତି, ଇଂରେଜ ପୋଲିସ୍ ସାହେବ, ମୁକୁନ୍ଦା, ବିନୋଦ, ବିନ୍ଦିଆତନ୍ତୀ ଓ କେତେକ ଗ୍ରାମବାସୀ । ମାତ୍ର ଗଳ୍ପଟିର ଶେଷପର୍ଯ୍ୟନ୍ତ ଅନନ୍ତା ଓ ଦେବକୀ ଗଉଡୁଣୀ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ସମୟରେ ଅନ୍ୟ ଚରିତ୍ରଗୁଡ଼ିକ ପ୍ରାସଙ୍ଗିକ ଭାବରେ କିଛି ସମୟପାଇଁ ଦୃଶ୍ୟମାନ ହୋଇ ଅଦୃଶ୍ୟ ହୋଇ ଯାଇଛନ୍ତି । ଗଳ୍ପଟିକୁ ପରିପୁଷ୍ଟ କରିବା କ୍ଷେତ୍ରରେ ଏମାନଙ୍କର ଭୂମିକା ଅତ୍ୟନ୍ତ ଗୌଣ । ମାତ୍ର ସାମାଜିକ ଜୀବନର ଏକ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ପ୍ରତିନିଧିତ୍ୱ କରିବା କ୍ଷେତ୍ରରେ ଏମାନଙ୍କର ଭୂମିକା ଆଦୌ ଅବହେଳିତ ନୁହେଁ । ଅନ୍ୟ କେତେକ ଚରିତ୍ରଙ୍କ ସହିତ ଫକୀରମୋହନଙ୍କ ମାନସିକ ଭାବସାମ୍ୟ ପରିଲକ୍ଷିତ । ନିମ୍ନୋକ୍ତ ଚାର୍ଟ ମାଧ୍ୟମରେ ଗଳ୍ପ ବର୍ଣ୍ଣିତ ଚରିତ୍ର ଏବଂ ଫକୀରମୋହନଙ୍କ 'ଆତ୍ମଜୀବନଚରିତ'ରେ ଉଲ୍ଲିଖିତ କେତେକ ଚରିତ୍ରଙ୍କୁ ତୁଳନାତ୍ମକ ଭାବେ ବିଚାର କରାଯାଇପାରେ ।

| ଗଳ୍ପବର୍ଣ୍ଣିତ ଚରିତ୍ର | ଆତ୍ମଜୀବନଚରିତର ଚରିତ୍ର |
|---|---|
| ସୁବଳ ମହାକୁଡ଼ | ଲକ୍ଷ୍ମଣ ଚରଣ ସେନାପତି |
| ଦେବକୀ ଗଉଡୁଣୀ | ପିତାମହୀ କୁଚିଳାଦେଈ |
| ଅନନ୍ତା | ସ୍ୱୟଂ ଗାଳ୍ପିକ |
| ପୋଲିସ୍ ସାହେବ | ଜନ୍ ବୀମ୍ସ, ରେଭେନ୍ସା ସାହେବ ଓ ସେହିପରି କେତେଜଣ ଗୁଣଗ୍ରାହୀ ଇଂରେଜ ସାହେବ । |
| ବୈଷ୍ଣବ ମହାନ୍ତି | ତତ୍କାଳୀନ ଚାଟଶାଳୀର ଅବଧାନ |

'ରାଣ୍ଡୀପୁଅ ଅନନ୍ତା'ର ସୁବଳ ମହାକୁଡ଼ ଏକ ନିରଭିମାନୀ, କର୍ମପ୍ରବଣ, କଷ୍ଟସହିଷ୍ଣୁ, ସରଳ, ଅହଂଭାବ ବିବର୍ଜିତ ଚରିତ୍ର । ପ୍ରତିକୂଳ ପରିବେଶ ସହିତ ଖାପଖୁଆଇ ଚଳିବାରେ ଧୁରନ୍ଧର । ନିଜର ସାହସ, ଶକ୍ତି ଓ କର୍ମପ୍ରବଣତା ଯୋଗୁଁ ମଇଁଷିଆଳରୁ ହୋଇଛି ପୋଲିସ୍ ଜମାଦାର । ଅନ୍ୟର ସେବା ଓ କାର୍ଯ୍ୟରେ ତାର ଆନନ୍ଦ । ଫକୀରମୋହନ ସେନାପତିଙ୍କ ପିତା ଲକ୍ଷ୍ମଣ ଚରଣ ସେନାପତି ଥିଲେ ସେହିପରି ଏକ ନିରହଙ୍କାରୀ, ଧର୍ମପ୍ରାଣ ବ୍ୟକ୍ତି । ଅନ୍ୟର ସେବା ଓ ଉପକାରରେ ଥିଲା ତାଙ୍କର ଅଶେଷ ଆନନ୍ଦ । ଲକ୍ଷ୍ମଣ ସେନାପତି ଶ୍ରୀଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ପୁରୀ ଯାତ୍ରା କରିଥିଲେ ଏବଂ ପ୍ରତ୍ୟାବର୍ତ୍ତନ ସମୟରେ ଭୁବନେଶ୍ୱରଠାରେ ଓଲାଉଠା ରୋଗରେ ଲୋକାନ୍ତର୍ ପ୍ରାପ୍ତି ହୋଇଥିଲେ । ସୁବଳ ମହାକୁଡ଼ର ମଇଁଷି ପଲ ଠାକୁରାଣୀରେ ଧ୍ୱଂସ ପାଇଥିବା ସମୟରେ ମହାକୁଡ଼ ଅଚାନକ କାଳଜ୍ୱରରେ ଇହଧାମ ତ୍ୟାଗ କରିଥିଲା । ଉଭୟ ସୁବଳ ମହାକୁଡ଼ ଓ ଲକ୍ଷ୍ମଣ ସେନାପତି ନିଜ ପୁତ୍ରକୁ ଶିଶୁ ଅବସ୍ଥାରେ ଛାଡ଼ି ପ୍ରାଣ ତ୍ୟାଗ କରିଥିଲେ । 'ଆତ୍ମଜୀବନ ଚରିତ'ର ଲକ୍ଷ୍ମଣ ସେନାପତି ଓ 'ରାଣ୍ଡୀପୁଅ ଅନନ୍ତା'ର ସୁବଳ ମହାକୁଡ଼ ଚରିତ୍ର ମଧରେ ଏହିପରି କେତେକ ସାମ୍ୟ ପରିଲକ୍ଷିତ ହୋଇଥାଏ ।

ବର୍ତ୍ତମାନ ଦେବକୀ ଗଉଡୁଣୀ ଓ ପିତାମହୀ କୁଚିଳାଦେଈଙ୍କ ଚରିତ୍ର ପର୍ଯ୍ୟାଲୋଚନା କରାଯାଉ । ସୁବଳ ମହାକୁଡ଼ର ଅକାଳ ବିୟୋଗରେ ଦେବକୀ କିଛି ସମୟପାଇଁ ଭାଙ୍ଗି ପଡ଼ିଥିଲେହେଁ, ଏକମାତ୍ର ସନ୍ତାନ ଅନନ୍ତାକୁ ମଣିଷ କରିବାପାଇଁ ସେ ପୁଣି ଅଣ୍ଟାଭିଡ଼ି ବାହାରିଛି । ନିଜର ଶାରୀରିକ କଷ୍ଟପ୍ରତି ସାମାନ୍ୟ ମାତ୍ର ଭ୍ରୂକ୍ଷେପ ନାହିଁ । ସନ୍ଧ୍ୟା ସମୟରେ ନିଜର ସମସ୍ତ କାର୍ଯ୍ୟ ପରେ ପୁଅଟିକୁ ଘଡ଼ିଏ ଗେହ୍ଲା କଲାବେଳେ 'ହାତୀ ଝୁଲୁଥାଏ ଲସରପସର' ଗୀତଟିକୁ ସ୍ୱରଧରି ଗାଏ । ନଜର ନ ପଡ଼ିବାପାଇଁ ''ପୁଅ ବେକରେ ଖଣ୍ଡିଏ ଘୁଷୁରି ଥୋମଣି, ଗୋଟାଏ ତମ୍ବା ଡେଉଁରିଆ ଭିତରେ ମହାଦେବ ବେଲପତ୍ରୀ, ଦି' କଡ଼ା କାଣିକଉଡ଼ି, ଚାରିଟା ରୁପା ଡେଉଁରିଆ ମୂଳିମୂଳିକା ହାରକରି ପୁଅ ବେକରେ ଲଗାଇ ଦେଇଛି ।'' (ଗଳ୍ପସଳ୍ପ - ୧ମ ଭାଗ ପୃ-୩୧, ପୁସ୍ତକ ନିକେତନ, ବ୍ରହ୍ମପୁର-୧୯୭୦) ପୁଅ ପାଇଁ ଗୋଟିଏ ଗାଈ ରଖିଛି । ଅନନ୍ତାର ଖାଇବାପାଇଁ ମା' ଦେବକୀର ଯତ୍ନର ଆଦୌ ଅଭାବ ନାହିଁ । ସେରେ ଚାଉଳର ପୋଡ଼ପିଠାଟି ପୁଅକୁ ଧରାଇ ଦେଇ ନିଜ କାମରେ ଲାଗିଯାଏ ଦେବକୀ । ପୁଅର ଶାରୀରିକ ବିକାଶପାଇଁ କେବଳ ନୁହେଁ, ତାର ମାନସିକ ବିକାଶ ନିମିତ୍ତ ବୈଷ୍ଣବ ମହାନ୍ତି ଅବଧାନଙ୍କ ନିକଟରେ ଅନନ୍ତାକୁ ଜିମାଦେଇଛି । ଅନନ୍ତା ପ୍ରତି ତା'ର ଅତ୍ୟଧିକ ସ୍ନେହର ଉଦାହରଣ ଦେଖିବାକୁ ମିଳେ ଅବଧାନେଙ୍କ 'ରାଣ୍ଡୀପୁଅ ଅନନ୍ତା ଅଳପାଇସା' ଗାଳିର ପ୍ରତିକ୍ରିୟାରେ । ଦେବକୀର ସେଦିନ ସିଂହ ରଡ଼ି ''ଆରେ କାଠଖିଆ ମାହାନ୍ତି ଗୋଲାମ ! ମୋ ପୁଅକୁ କୁଆଡ଼େ ଲୁଚାଇଛୁ ଆଣି ଦେ ଜାଣିଥା, କାଲି ସକାଳେ ପିତଳ ବାହିରେ ତୋ ମୁଣ୍ଡ ଚୂନା କରିବି'' ଥରାଇ ଦେଇଥିଲା ଗାଁ ଦାଣ୍ଡ । ଏପରି

ଏକ ଦୃଢ଼ମନା, ସନ୍ତାନବତ୍ସଳା ଜନନୀ ସେଦିନ ପୁତ୍ରର ଜାତି ଉଦ୍ଦେଶ୍ୟରେ ମହତ୍ ବଳିଦାନକୁ ସହଜରେ ଗ୍ରହଣ କରିପାରି ନ ଥିଲା । ସନ୍ତାନପ୍ରତି ଥିବା ଗଭୀର ସ୍ନେହର ପରିପ୍ରକାଶ ଘଟିଥିଲା ଆତ୍ମ ବଳିଦାନରେ । ତେଣୁ ଦେବକୀ ଜଣେ ସାଧାରଣ ନାରୀ ନ ହୋଇ ଏକ ସାର୍ବଜନୀନ ସ୍ନେହମୟୀ ଜନନୀରେ ରୂପାନ୍ତରିତ ହୋଇଗଲା । ଫକୀରମୋହନଙ୍କ ପିତା ଓ ପରେ ପରେ ମାତାଙ୍କ ବିୟୋଗ ପରେ ତାଙ୍କର ରକ୍ଷଣାବେକ୍ଷଣ ଦାୟିତ୍ୱ ଅକାତରେ ଗ୍ରହଣ କରିଥିଲେ ପିତାମହୀ କୁଚିଳାଦେଈ । ସ୍ନେହ, ଶ୍ରଦ୍ଧା ଓ ଆଦର୍ଶମୟୀ ନାରୀର ଜୀବନ୍ତ ପ୍ରତିଭୂ କୁଚିଳାଦେଈ । ତାଙ୍କ ସଂପର୍କରେ ଫକୀରମୋହନଙ୍କ ବକ୍ତବ୍ୟ ହେଉଛି ''ମୋ ଜୀବନ ରକ୍ଷାପାଇଁ ସେ ଯେଉଁ କଷ୍ଟ ଭୋଗ କରିଯାଇଛନ୍ତି, ତାହା ବର୍ତ୍ତମାନ ସ୍ମରଣ କଲେ ପ୍ରାଣରେ ଦାରୁଣ ଯନ୍ତ୍ରଣା ଜାତ ହୁଏ । ମୋ ପୀଡ଼ା ସମୟରେ ଦିନ ଉତ୍ତାରେ ଦିନ, ମାସ ଉତ୍ତାରେ ମାସ, କେତେ ଦିନ, କେତେ ରାତ୍ରି ତାଙ୍କର ସମୟ ଅତିବାହିତ ହୋଇଅଛି । ଗାଈ ପଡ଼ିଆରେ ଚରୁଥିବା ସମୟରେ ଆପଣା ବାଛୁରୀ ପ୍ରତି ଯେମନ୍ତ ଦୃଷ୍ଟି ରଖିଥାଏ, ସେହିପରି ଠାକୁରମା' ଯେ କୌଣସି କାର୍ଯ୍ୟରେ ନିଯୁକ୍ତ ଥାଉନ୍ତୁ ପଛକେ, ମୋ ପ୍ରତି ତାଙ୍କର ଦୃଷ୍ଟି ରହିଥାଏ ।'' (ଆତ୍ମଜୀବନ ଚରିତ - ପୃ-୬୧, କଟକ ଷ୍ଟୁଡେଣ୍ଟସ ଷ୍ଟୋର, ୧୯୬୧) ଦେବକୀ ନିଜ ସନ୍ତାନ ଉପରେ ନଜର ନ ପଡ଼ିବାପାଇଁ ଯେପରି ବିଭିନ୍ନ ଚେରମୂଳିକାର ଡେଉଁରିଆ ଓ ଘୁଷୁରି ଥୋମଣି ପୁଅ ବେକରେ ଲଗାଇଥିଲା, ସେହିପରି ଫକୀରମୋହନଙ୍କ ପୀଡ଼ା ସମୟରେ ଠାକୁରମା' ଶଯ୍ୟାରେ ବସି କରଯୋଡ଼ି ଯାବତୀୟ ଦେବଦେବୀଙ୍କ ଠାରେ ତାଙ୍କ ପ୍ରାଣ ଭିକ୍ଷା କରୁଥିଲେ ଓ ବ୍ରଜ (ଫକୀରମୋହନ) ଆରୋଗ୍ୟ ହେଲେ ବାଲେଶ୍ୱରର ଦୁଇ ପୀରଙ୍କର ଗୋଲାମ କରିଦେବେ ବୋଲି ମାନସିକ କରିଥିଲେ । ଦେବକୀପରି ଠାକୁରମା'ଙ୍କର ମଧ୍ୟ ଚେରମୂଳିକା ଓ ଗ୍ରାମୀଣ ଚିକିତ୍ସା ବ୍ୟବସ୍ଥା ପ୍ରତି ବିଶ୍ୱାସ ରହିଥିଲା । ସେ ତାଙ୍କ 'ଆତ୍ମଜୀବନ ଚରିତ'ରେ ଲେଖିଛନ୍ତି ତାଙ୍କ ସଂପତ୍ତି ମଧ୍ୟରେ ତିନିଗୋଟି ବାଉଁଶ ପେଡ଼ି ଥିଲା । ଗୋଟିଏ କ୍ଷୁଦ୍ରପେଡ଼ି ନାନାପ୍ରକାର ମୂଳିମୂଳିକା ଓ ନାନାପ୍ରକାର ଔଷଧରେ ପୂର୍ଣ୍ଣ x x (ପୃ-୬୧) । ଅବଧାନଙ୍କ ମାଡ଼ ପ୍ରସଙ୍ଗରେ ଦେବକୀ ଓ ଜେଜୀମା'ଙ୍କ ପ୍ରତିକ୍ରିୟା ସମାନ । ମାଡ଼ର ଶବ୍ଦ ଓ ମୋହର ଚିତ୍କାର ଶୁଣି ବଡ଼ବାପା ଓ ବଡ଼ମା' ଭାରି ଖୁସି । କିନ୍ତୁ ଠାକୁରମା' ଦଉଡ଼ିଆସି କହନ୍ତି ''ଅବଧାନେ, ତୁମ୍ଭରକି ପୁଅଝିଅ କିଛି ନାହିଁ ? ଅକାରଣ ପିଲାଟାକୁ ବାଡ଼ୋଉଛ' (ଆତ୍ମଜୀବନ ଚରିତ-ପୃ-୧୬) ମାତ୍ର ଦେବକୀର ସ୍ୱଭାବ ଉଗ୍ର ଥିବାରୁ ସେ ଅବଧାନଙ୍କୁ ଠେଙ୍ଗାଧରି ଆକ୍ରମଣ କରିବାକୁ ଉଦ୍ୟତ ହୋଇଛି । ସୁବଳ ମହାକୁଡ଼ର ଚାକିରି ଏବଂ ଫକୀରମୋହନଙ୍କ ପ୍ରଥମ ଚାକିରି ଲାଭରେ ଦେବକୀ ତଥା ଠାକୁର ମା'ଙ୍କ ମନର ପ୍ରତିକ୍ରିୟା ଲକ୍ଷ୍ୟ କରାଯାଉ । ମହାକୁଡ଼ର ଜମିଦାରଙ୍କ ଚାରିପଲରେ ଶେଠ ହେବା ନିଯୁକ୍ତିରେ ମହାକୁଡ଼ାଣୀତ ବଡ଼ ଖୁସି । ଗାଁରେ ତାକୁ କେହି ଶେଠାଣୀ ନ କହିଲେ ଭାରି କଳି କରେ ।'' (ଗଳ୍ପସଳ୍ପ - ୧ମ ଭାଗ - ପୃ-୨୭) ।

ଫକୀରମୋହନଙ୍କ ନିଯୁକ୍ତିରେ - ''ଠାକୁରମା' ମୋ ଚାକିରି କଥା ଶୁଣି ଆନନ୍ଦରେ ଅସ୍ଥିର ହୋଇ ଚତୁର୍ଦ୍ଦିଗରେ ଧାଇଁବାକୁ ଲାଗିଲେ (ଆତ୍ମଜୀବନଚରିତ - ପୃ-୨୪) ଅବଶ୍ୟ ପରିଣତିରେ ପାର୍ଥକ୍ୟ ପରିଦୃଷ୍ଟ। ଅନନ୍ତାର ମୃତ୍ୟୁ ସମ୍ବାଦରେ ଦେବକୀ ଆତ୍ମ ବିସର୍ଜନ ଦେଇଥିବା ସମୟରେ, ଠାକୁର ମା'ଙ୍କ ମୃତ୍ୟୁପରେ ଫକୀରମୋହନ ତାଙ୍କ ସ୍ମୃତିକୁ ପାଥେୟ କରି ଅବଶିଷ୍ଟ ଜୀବନ ଅତିବାହିତ କରିଛନ୍ତି । ଏହା ସତ୍ତ୍ୱେ ମାନସିକ ଭାବାବେଗ ଦୃଷ୍ଟିରୁ ଉଭୟେ ଦେବକୀ ଓ ଠାକୁରମା' ସାର୍ବଜନୀନ ମାତୃହୃଦୟର ଯଥାର୍ଥ ପରିଚୟ ପ୍ରଦାନ କରିଛନ୍ତି ।

ଆଲୋଚନାର ତୃତୀୟ ପର୍ଯ୍ୟାୟରେ ତତ୍କାଳୀନ ଶିକ୍ଷାବ୍ୟବସ୍ଥା ଏବଂ ଅବଧାନଙ୍କ ଚରିତ୍ର ସଂପର୍କରେ ଆଲୋକପାତ କରାଯାଇପାରେ । ଓଡ଼ିଶା ଇଂରେଜ ଶାସନାଧୀନ ହେବା ପରେ ଆମର ପାରଂପରିକ ଶିକ୍ଷା ବ୍ୟବସ୍ଥାରେ କେତେକ ପରିବର୍ତ୍ତନ ସାଧିତ ହୋଇଥିଲେହେଁ ଗାଁ ଗହଳିରେ ଚାଟଶାଳୀ ଶିକ୍ଷାହିଁ ଥିଲା 'ପ୍ରଧାନ ମାଧ୍ୟମ' । ତେଣୁ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ଚାଟଶାଳୀ ରହିଥିଲା ଓ ଅଧିକାଂଶ ଅବଧାନ ଥିଲେ କରଣ ଜାତିର । ଫକୀରମୋହନଙ୍କ 'ଆତ୍ମଜୀବନଚରିତ' ଏବଂ 'ରାଣ୍ଡୀପୁଅ ଅନନ୍ତା'ରେ ଏହି ଚାଟଶାଳୀ ଶିକ୍ଷା ସଂପର୍କରେ ବିଶେଷ ତଥ୍ୟ ପରିଦୃଷ୍ଟ । ଏପରିକି ଉଭୟ କ୍ଷେତ୍ରରେ ଅବଧାନଙ୍କ ନାମରେ ସାମଞ୍ଜସ୍ୟ ବିଦ୍ୟମାନ । ଅବଧାନଙ୍କ ମଧ୍ୟରେ ଅଧିକାଂଶ କରଣ ଜାତି, ଅଳ୍ପସଂଖ୍ୟକ ମାତ୍ର ମାଟିବଂଶ ଓଝା x x ମୁଁ ଏହିପରି ଗୋଟିଏ ଚାହାଳିରେ ପଢ଼ିବାକୁ ଆରମ୍ଭ କଲି x x ସେ ଅବଧାନଙ୍କ ନାମ ବୈଷ୍ଣବ ମହାନ୍ତି - ନିବାସ କଟକ ଜିଲ୍ଲା (ପୃ-୧୫) । 'ରାଣ୍ଡୀପୁଅ ଅନନ୍ତା'ରେ ଲିଖିତ ଅଛି ''ଶେଷରେ ସିଂହାଣୀ ବଡ଼ ଦିକ୍‌ଦାର ହୋଇ ଗାଁରୁ ଆସୁଛି, ବାଟରେ ଦେଖିଲା ବଉଳ ଗଛ ମୂଳରେ ପିଣ୍ଡିଟି ଉପରେ ବୈଷ୍ଣବ ମହାନ୍ତି ଅବଧାନେ ବେତ ଘେନି ଗାଁ ପିଲାମାନଙ୍କୁ ପାଠ ପଢ଼ାଉଛନ୍ତି ।'' (ପୃ-୩୩) । ତତ୍କାଳୀନ ଚାଟଶାଳୀ ଶିକ୍ଷା ମୁଖ୍ୟତଃ ଖଡ଼ିପାଠ ଓ ପୋଥିପାଠ ମଧ୍ୟରେ ସୀମିତ ଥିଲା । ବିଶିଷ୍ଟ ଐତିହାସିକ ହଣ୍ଟର ସାହେବ ତାଙ୍କ Orissa ପୁସ୍ତକର Vol - IIରେ ଲେଖିଛନ୍ତି - x x The larger villages had a sort of hedge school, where half a dozen boys squatted with the master on the ground forming the alphabet in the dust and repeating the multiplication table in a parrot-like sing song. (P.145, London-1872) । ଫକୀର ମୋହନଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ ଅଛି ''ମୁଁ ଏହିପରି ଗୋଟିଏ ଚାହାଳିରେ ପଢ଼ିବାକୁ ଆରମ୍ଭ କଲି । ସେଠାରେ ସକାଳେ ଖଡ଼ିପାଠ ହୁଏ ଏବଂ ଉପରଓଳି ପୋଥି ପଢ଼ା ହୁଏ ।'' (ପୃ-୧୫) ରାଣ୍ଡୀପୁଅ ଅନନ୍ତାରେ ଠିକ୍ ତାହାହିଁ କୁହାଯାଇଛି - ''ଅବଧାନେ ଭୂଇଁରେ ଅ, ଆ ଲେଖିଦେଲେ, ତା' ଉପରେ ଖଡ଼ି ମଡ଼ାଇବାକୁ କହିଦେଲେ ।'' (ପୃ-୩୩)

ଚାଟଶାଳୀର ଦଣ୍ଡବ୍ୟବସ୍ଥା ଏବଂ ଅବଧାନଙ୍କ ଚରିତ୍ର ସଂପର୍କରେ ଫକୀରମୋହନ ଲେଖିଛନ୍ତି - ''ବେତର ପାହାରର ବଳ ସବୁ ସମୟରେ ସମାନ ନୁହେଁ - ଟାଣ ଓ ଉଶ୍ୱାସ ଥାଏ । ଶୂନଚାଟି ଦେଲାବେଳେ ଅବଧାନେ ଚାଟ ମୁହଁକୁ ଅନାନ୍ତି । ଯେଉଁଠାରେ କୌଣସି ଜବାବ ଦିହି ହେବାର ସମ୍ଭାବନା ଥାଏ, ସେଠାରେ ବେତର ଆଷ୍ଟଟା କିଛି କୋହଳ ହୋଇଯାଏ; ଅନ୍ୟ ଚାଟଙ୍କ ହାତରେ ବେତର ଶବ୍ଦଟା ପଟାପଟ୍ ଶୁଭେ ।'' (ପୃ-୧୪) ଯେଉଁଠାରେ କିଛି ପ୍ରାପ୍ତିର ଆଶା ଥାଏ, ସେଠାରେ ଅବଧାନେ ଦଣ୍ଡ ବ୍ୟବସ୍ଥା କୋହଳ କରିଥାନ୍ତି । ଏପରିକି ଚାଟମାନଙ୍କୁ ଅବଧାନେ ଧମକଦେଇ ନିଜର ଅଭିଳାଷ ପୂରଣ ନିମିତ୍ତ ଚେଷ୍ଟା କରିଥାନ୍ତି । 'ରାଣ୍ଡୀପୁଅ ଅନନ୍ତା' ଗଳ୍ପରେ ଅନୁରୂପ ବର୍ଣ୍ଣନା ପରିଦୃଷ୍ଟ । ଅବଧାନ ପିକାଟିଏ ଭଲକରି ମୋଡ଼ିଲେ - ନିଆଁ ଖୁଣ୍ଟାରେ ପିକାଟି ଲଗାଇ ଦେଇ ଦି'କଳ ଭିଡ଼ିଲେ । ଫୁ କରି ଧୂଆଁ ଛାଡ଼ିଦେଇ କହିଲେ, ''କିବେ ମୁକୁନ୍ଦା, ଧୂଆଁ ଲାଗୁ ନାହିଁ ଯେ ?'' ମୁକୁନ୍ଦା କହିଲା - ମୁଁ କ'ଣ କରିବି ଅବଧାନେ ? ବାବା ତ କାଲି ହାଟରୁ ଏହି ଧୂଆଁ ଆଣିଛି । ଅବଧାନେ - ବେ ବିନ୍ଦିଆ ! ତୋ ବାପ କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଆଣିଲୁ ନାହିଁ ତ ?

ବିନୋଦ - ମୁଁ କଅଣ କରିବି ଅବଧାନେ, ମା ତାକୁ ବିଡ଼ା ବାନ୍ଧି ଶିକା ଉପରେ ରଖି ଦେଇଛି; ମୋ ହାତ ପାଇଲା ନାହିଁ ।

ଅବଧାନେ - ''ଆଚ୍ଛା, ତୁ ଗୋଟିଏ କାମ କରିବୁ । ତୋ ମା ଯେତେବେଳେ ଗାଧୋଇ ଯାଇଥିବ ତୁ ଗୋଟାଏ ବଡ଼ ପାଛିଆ ଉଗାଡ଼ି ପକାଇବୁ, ତା ଉପରେ ଚଢ଼ି ଶିକାରୁ ଧୂଆଁପତ୍ର କାଢ଼ିବୁ । ସେଥିରୁ ଦୁଇ ଚାରିଖଣ୍ଡ କାଢ଼ିନେଇ ବିଡ଼ା ବାନ୍ଧି ଶିକାରେ ଥୋଇଦେବୁ, ଖବରଦାର ! ବେଶିଗୁଡ଼ାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନ ଆଣିବୁ, ଅନାଇ ଥା ଏ ବେତକୁ ।'' (ପୃ-୩୫) ''ଏତଦ୍‌ବ୍ୟତୀତ ଅର୍ଥଲାଭ ଆଶାରେ ବିନା ଦୋଷରେ ଛାତ୍ରମାନଙ୍କୁ ଏହି ଅର୍ଦ୍ଧଶିକ୍ଷିତ ଅବଧାନଗଣ କିପରି ଶାସ୍ତି ଦେଉଥିଲେ ତାର ଏକ ସଜଳ ଚିତ୍ର 'ଆତ୍ମଜୀବନ ଚରିତ'ରେ ପରିଲକ୍ଷିତ ହୁଏ ।'' ମୋର ବଡ଼ବାପା ପୁରୁଷୋତ୍ତମ ସେନାପତି ମୋ ପ୍ରତି ବଡ଼ ନିଷ୍ଠୁର ଥିଲେ । ମାସ ଶେଷରେ ଅବଧାନ ଦରମା ମାଗିବାକୁ ଗଲେ ବଡ଼ବାପା କହନ୍ତି, ''ତୁମେ ତ ଫକୀରକୁ ପାଠ ପଢ଼ାଉ ନାହଁ, ଦରମା ମାଗୁଛ କ'ଣ ?'' ଅବଧାନେ ଜବାବ୍ ଦିଅନ୍ତି ''ମୁଁ ତ ଦିନରାତି ତାହାକୁ ପାଖରେ ବସାଇଛି, ଦଣ୍ଡେ ହେଲେ ଖେଳିବାକୁ, ବୁଲିବାକୁ ଛାଡୁ ନାହିଁ ।'' ବଡ଼ବାପା କହନ୍ତି କାହିଁ ତା' ପିଠିରେ ତ' ଚିହ୍ନ ନାହିଁ । ଅବଧାନେ ବଡ଼ବାପାଙ୍କ ମନକଥା ଭଲ କରି ବୁଝିଥିଲେ, ଚାହାଳିରେ ମୁଁ ବସିଥିଲି, ଅକାରଣ ବେତଟା ଧରି ମୋ ପିଠିରେ ଦଶବାର ପାହାର ବାଡ଼େଇ ଦେଲେ । (ପୃ-୧୫)

ଚାଟଶାଳୀର ସମସ୍ତ କାର୍ଯ୍ୟ ଚାଟମାନେ କରିଥାନ୍ତି । ଏହା ଥିଲା ତତ୍କାଳୀନ ଶିକ୍ଷା ବ୍ୟବସ୍ଥାର ଏକ ବିଶେଷ ପରଂପରା । ଏହାର ସୂଚନା ଫକୀରମୋହନଙ୍କ 'ଆତ୍ମଜୀବନ

ଚରିତ' ଏବଂ 'ରାଣ୍ଡୀପୁଅ ଅନନ୍ତା'ରେ ପରିଲକ୍ଷିତ ହୋଇଥାଏ । ଯଥା - "ଅବଧାନଙ୍କର ସବୁକାମ ପିଲାମାନେ କରନ୍ତି । ଅବଧାନଙ୍କର ଗୋଡ଼ଘଷା, ପାଲଟା ଲୁଗା କଚା, ସଙ୍କୁଡ଼ି ଧୁଆ ବିଲ୍‌କୁଲ କାମ ପିଲାମାନେ କରନ୍ତି । ଯେଡ଼େ ଲୋକ ପୁଅ ହେଉ ପଛକେ ଅବଧାନଙ୍କ ଗୋଡ଼ ଘଷିବ ।" (ଗଳ୍ପସଳ୍ପ - ପୃ-୩୪) x x "ମୋତେ ଚାହାଳିରେ ରହି ଅବଧାନଙ୍କର ସେବା ଏବଂ ତାଙ୍କର ରୋଷେଇରେ ସାହାଯ୍ୟ କରିବାକୁ ହୁଏ ।" (ଆତ୍ମଜୀବନ ଚରିତ. ପୃ-୧୫) ।

ଫକୀରମୋହନ ଊନବିଂଶ ଶତକ ଶେଷାର୍ଦ୍ଧ ଓଡ଼ିଶାର ଶିକ୍ଷାନୀତି ସଂପର୍କୀୟ ଏକ ଐତିହାସିକ ତଥ୍ୟ ତାଙ୍କ 'ଆତ୍ମଜୀବନ ଚରିତ'ରେ ଲିପିବଦ୍ଧ କରିଛନ୍ତି । ଏହି ସମୟରେ ତତ୍କାଳୀନ ଶିକ୍ଷିତ ବଙ୍ଗାଳୀ ଓଡ଼ିଶାର ବିଦ୍ୟାଳୟମାନଙ୍କରୁ ଓଡ଼ିଆ ଭାଷା ତଥା ଚାଟଶାଳୀ ଶିକ୍ଷା ଲୁପ୍ତ କରିବାକୁ ଏକ ହୀନ ଚକ୍ରାନ୍ତ କରିଥିଲେ । ପରିଣାମସ୍ୱରୂପ ୧୯୬୯-୭୦ ମସିହାରେ ଦେଖା ଦେଇଥିଲା ଭାଷା ସୁରକ୍ଷା ଆନ୍ଦୋଳନ । ଏହାର କ୍ଷୀଣ ସୂଚନା ମଧ୍ୟ 'ରାଣ୍ଡୀପୁଅ ଅନନ୍ତା'ରେ ରହିଛି । ପ୍ରଥମେ 'ଆତ୍ମଚରିତରେ ପ୍ରଦତ୍ତ ବିବରଣୀ' ଉଦ୍ଧାର କରାଯାଉ - "ମେଦିନୀପୁର ଦକ୍ଷିଣାଞ୍ଚଳରୁ ଚାହାଳି ଏକାବେଳକେ ଉଠିଯିବା ଗୋଟିଏ ରହସ୍ୟମୟ, ଦାରୁଣ, ଶୋଚନୀୟ ବିଷୟ ଅଟେ । ୧୮୬୫-୭୦ ଖ୍ରୀ:ଅ:ରେ ମେଦିନୀପୁର ଜିଲ୍ଲା ଦକ୍ଷିଣାଞ୍ଚଳରେ ସ୍କୁଲ ସ୍ଥାପନ କରିବା ନିମନ୍ତେ ଜଣେ ବଙ୍ଗାଳୀ ସବ୍‌ଇନ୍‌ସପେକ୍ଟର ପଦରେ ନିଯୁକ୍ତ ହୋଇ ଆସିଥିଲେ । ସେ ବଙ୍ଗଳା ସ୍କୁଲ ବସାଇବାକୁ ଚେଷ୍ଟା କଲେ, ମାତ୍ର ଲୋକେ ପିଲାମାନଙ୍କୁ ବଙ୍ଗଳା ପଢ଼ାଇବାକୁ ଅସ୍ୱୀକୃତ ହେଲେ; ଅନେକ ଚେଷ୍ଟା କରି ମଧ୍ୟ କୃତକାର୍ଯ୍ୟ ହୋଇପାରିଲେ ନାହିଁ । ସେ କେବଳ ଦକ୍ଷିଣାଞ୍ଚଳରେ ସ୍କୁଲ ବସାଇବାକୁ ସ୍ୱତନ୍ତ୍ରରୂପେ ନିଯୁକ୍ତ ହୋଇ ଆସିଛନ୍ତି; ସ୍କୁଲ ବସାଇ ନ ପାରିଲେ ତାହାଙ୍କର ଚାକିରି ରହିବା ଅସମ୍ଭବ । ଉପରିସ୍ଥ କର୍ମଚାରୀଙ୍କୁ ଆପଣାର ଅକୃତକାର୍ଯ୍ୟତା ଜଣାଇ ଏଡ଼େ ସୁନ୍ଦର ଚାକିରି ଖଣ୍ଡ କ'ଣ ହରାଇବେ ?

କାର୍ଯ୍ୟ ଅଟକିଲେ ବୁଦ୍ଧି ଦିଶେ । ବାବୁଙ୍କ ମୁଣ୍ଡରୁ ଚଞ୍ଚଳ ଗୋଟିଏ ବୁଦ୍ଧି ବାହାରି ପଡ଼ିଲା । ଗୋଟାଏ ଗୋଟାଏ ଥାନାରେ ବସି, ସେହି ଥାନା ଇଲାକାରେ ଚାହାଳିଆ ଅବଧାନ ଯେତେ ଥିଲେ, ଗୋଟାଏ ଦିନ ଧାର୍ଯ୍ୟ କରି ଥାନା ଦାରୋଗାଦ୍ୱାରା ସେହି ଅବଧାନଙ୍କୁ ଏକସଙ୍ଗରେ ଡକାଇ ଆଣିଲେ । ଇଂରାଜୀ ଲେଖା ମୋହରମରା ଖଣ୍ଡିଏ କୃତ୍ରିମ ପରବାନା ଅବଧାନମାନଙ୍କୁ ଦେଖାଇ ସେମାନଙ୍କୁ କହିଲେ, ଏହି ଦେଖ, ମେଦିନୀପୁର ଜିଲ୍ଲାର କଲେକ୍ଟର ସାହେବଙ୍କ ହୁକୁମ । ଏହି ଥାନା ଇଲାକାରେ ଯେତେ ଚାହାଳି ଅଛି ସମସ୍ତ ଉଠାଇ ଦିଆଯିବ ଏବଂ ଏହି ଥାନା ଇଲାକାରେ ଯେତେ ଅବଧାନ ଅଛନ୍ତି ଏହି ପରବାନା ଶୁଣିବା ତାରିଖଠାରୁ ସାତଦିନ ମଧ୍ୟରେ ଆପଣା ଆପଣା ଦେଶକୁ ଚାଲିଯିବେ । ନିରୂପିତ ଦିବସର ପରଦିନ ଯେଉଁ ଅବଧାନକୁ ମେଦିନୀପୁର ଇଲାକାରେ ଦେଖାଯିବ, ସେ ୱାରଣ୍ଟରେ

ଧରାଯାଇ ସଦର କଚେରିକୁ ଯିବ ଏବଂ ତାହାକୁ ଜରିମାନା ଓ ଜେଲ ଦୁଇ ପ୍ରକାର ଦଣ୍ଡ ଦିଆଯିବ । ସବ୍‌ଇନିସ୍‌ପେକ୍ଟରବାବୁ ଥାନା ଥାନା ବୁଲି ଅବଧାନମାନଙ୍କୁ ହୁକୁମ ଶୁଣାଇବାକୁ ଲାଗିଲେ । କ୍ଷୁଦ୍ର ପ୍ରାଣୀ ବିଚାରା ଅବଧାନଙ୍କର ପିତ୍ତ କେତେ ? ଜିଲ୍ଲା କଲେକ୍ଟର ସାହେବଙ୍କ ହୁକୁମ, ପୁଣି ଥାନାରୁ ବାହାରିଛି । ଯେ ଯେତେ ଚଞ୍ଚଳ ପାରିଲା ଚିରକାଳ ସକାଶେ ଚାହାଳି ଛାଡ଼ି ଦେଶମୁହାଁ ପଳାଇ ଆସିଲା (ପୃ-୧୧-୧୨) । ଏହି ବର୍ଣ୍ଣନା ସହିତ ସିଂହାଣୀଙ୍କ କର୍କଶରଡ଼ିରେ ଅବଧାନ ବୈଷ୍ଣବ ମହାନ୍ତିଙ୍କ ଅନ୍ତର୍ଦ୍ଧାନକୁ ତୁଳନା କରାଯାଇପାରେ । ସବ୍‌ଇନ୍‌ସପେକ୍ଟରଙ୍କ ଚକ୍ରାନ୍ତ ଯୋଗୁଁ ଯେପରି କଲେକ୍ଟରଙ୍କ ମିଥ୍ୟା ହୁକୁମ ଭୟରେ ଅବଧାନଗଣ ଚାଟଶାଳୀ ତ୍ୟାଗକରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ, ସେହିପରି ସିଂହାଣୀ (ଦେବକୀ ଗଉଡୁଣୀ) ଭୟରେ ଅବଧାନଙ୍କର ଚାଟଶାଳୀ ତ୍ୟାଗ, ତତ୍କାଳୀନ ଓଡ଼ିଶାରେ ଚାଟଶାଳୀ ଶିକ୍ଷାର ଶୋଚନୀୟ ଅବସ୍ଥାକୁ ସୂଚାଇ ଦେଇଥାଏ । 'ରାଣ୍ଡିପୁଅ ଅନନ୍ତା'ରେ ଏ ସଂପର୍କରେ ଫକୀରମୋହନଙ୍କର ବକ୍ତବ୍ୟ ହେଉଛି ''ହେଲେ ଅବଧାନଙ୍କୁ ତହିଁ ଆରଦିନ ସକାଳଠାରୁ କେହି କେବେ ସେ ଗାଁରେ ଆଉ ଦେଖି ନାହିଁ ।'' (ପୃ-୩୮) । ଅବଧାନଙ୍କ ଆୟ ସଂପର୍କରେ ଫକୀରମୋହନ ସୂଚନା ଦେଇ କହିଛନ୍ତି - ''ବିଭିନ୍ନ ତିଥିମାନଙ୍କର ଉପର ଓଳି କେତେଜଣ ବଡ଼ ବଡ଼ ଚାଟ ପିଲା ମିଳି ଗ୍ରାମ ମଧ୍ୟରେ ସ୍ତ୍ରୀମାନଙ୍କ ପାଖରେ ବସି ଗୀତ ଗାଉ । ସେମାନେ ଚାଟ ଭିକ୍ଷା ଚାଉଳ ଦିଅନ୍ତି । ସେହି ଚାଉଳରେ ଅବଧାନଙ୍କର ଅନ୍ନବାଡ଼ଟା ଚଳିଯାଏ । କେବେ କେବେ ଚାଉଳ ବଳିପଡ଼ିଲେ, ଅବଧାନେ ବିକି ପଇସା ସଞ୍ଚନ୍ତି । ଚାଟଭିକ୍ଷା ଛାଡ଼ି ଆହୁରି ମଧ୍ୟ ଢେର ଚାଉଳ ଅବଧାନେ ପାଉଥିଲେ (ପୃ-୧୬) । ଏହି ବାକ୍ୟ ସହିତ 'ରାଣ୍ଡିପୁଅ ଅନନ୍ତା'ର ପୂର୍ବରୁ ଆଲୋଚିତ ମୁକୁନ୍ଦା ଏବଂ ବିନୋଦଙ୍କ ସହିତ ଅବଧାନଙ୍କ ଉକ୍ତି-ପ୍ରତ୍ୟୁକ୍ତିକୁ ତୁଳନା କରାଯାଇପାରେ ।

ଫକୀରମୋହନ ବ୍ୟକ୍ତିଗତ ଜୀବନରେ କେତେଜଣ ଗୁଣଗ୍ରାହୀ ଇଂରେଜ ସାହେବଙ୍କଦ୍ୱାରା ଉପକୃତ ହୋଇଥିବାରୁ ସେ ତାଙ୍କ ସୃଷ୍ଟିରେ ପରୋକ୍ଷରେ ଏହି ମହତ୍ ପୁରୁଷମାନଙ୍କ ଗୁଣଗାନ କରିଛନ୍ତି । ସେ ତାଙ୍କର ଭାରତବର୍ଷର ଇତିହାସ ପୁସ୍ତକ ପାଇଁ ରେଭେନ୍‌ସା ସାହେବଙ୍କଦ୍ୱାରା ତିନିଶତ ଟଙ୍କା ପୁରସ୍କୃତ ହୋଇଥିଲେ । ଏତଦ୍‌ବ୍ୟତୀତ ତାଙ୍କ ପ୍ରେସ୍ ପରିଦର୍ଶନରେ ଆସି ଜନ ବୀମ୍‌ସ ଓ ରେଭେନ୍‌ସାସାହେବ ଦଶଟଙ୍କା ପାରିତୋଷିକ ପ୍ରଦାନ କରିଥିଲେ ବୋଲି ସେ ତାଙ୍କ 'ଆତ୍ମଜୀବନ ଚରିତ'ରେ ଉଲ୍ଲେଖ କରିଛନ୍ତି । 'ରାଣ୍ଡିପୁଅ ଅନନ୍ତା'ରେ ପୋଲିସ୍ ସାହେବ ସୁବଳ ସିଂହର ସାହସିକତା ନିମିତ୍ତ ୨୦ଟଙ୍କା ବକ୍‌ସିସ୍ ଓ ୧୫ ଟଙ୍କା ଦରମାରେ ଜମାଦାର ଚାକିରି ଦେଇଥିଲେ । ଏହିପରି କେତେକ ବର୍ଣ୍ଣନାରୁ ତତ୍କାଳୀନ ଇଂରେଜ ସାହେବଙ୍କ ମହାନତା ପରିପ୍ରକାଶ ହୋଇଛି, ଯେଉଁମାନଙ୍କ ନିକଟରେ ଫକୀରମୋହନ ବିଭିନ୍ନ କାରଣରୁ ଅନୁଗୃହୀତ ହୋଇଥିଲେ ।

କେତେକ କ୍ଷେତ୍ରରେ ଅନନ୍ତା ଚରିତ୍ର ସହିତ ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନର କେତେକ ସାମଞ୍ଜସ୍ୟ ବିଦ୍ୟମାନ । ଅନନ୍ତାର ପିତା ମୃତ୍ୟୁବରଣ କରିଥିବାରୁ ପିଲାଟି ଦିନରୁ ସେ ରାଣ୍ଡୀପୁଅ ଅନନ୍ତା ନାମରେ ପରିଚିତ ହୋଇଥିଲା । ଫକୀରମୋହନ ପିଲାଟି ଦିନରୁ ନିଜର ପିତା ଓ ପରେ ପରେ ମାତାଙ୍କୁ ହରାଇ ଅନାଥ ହୋଇପଡ଼ିଥିଲେ । ଅନନ୍ତା ଚାରିବର୍ଷ ବୟସରେ ପିତା ସୁବଳ ମହାକୁଡ଼ଙ୍କୁ ହରାଇଥିଲା । ଫକୀରମୋହନ ଏକବର୍ଷ ପାଞ୍ଚମାସ ବୟସରେ ପିତା ଏବଂ ତାର ଚଉଦ ମାସ ପରେ ମାତାଙ୍କୁ ହରାଇଥିଲେ । ଉଭୟ ଅନନ୍ତା ଓ ଫକୀରମୋହନଙ୍କ ପିତା ଯଥାକ୍ରମେ ଜ୍ୱର ଓ ଓଲାଉଠା ରୋଗରେ ପ୍ରାଣତ୍ୟାଗ କରିଥିଲେ । ଅନନ୍ତା ଦଶବର୍ଷ ବୟସରେ ଚାଟଶାଳୀରେ ପାଦଦେଇଥିବା ସମୟରେ ଫକୀରମୋହନ ନଅବର୍ଷ ବୟସରେ ବିଦ୍ୟାଶିକ୍ଷା ଆରମ୍ଭ କରିଥିଲେ । ଅନନ୍ତା ନିଃସ୍ୱାର୍ଥପର, ପରୋପକାରୀ ଏବଂ ଗ୍ରାମର ଜନସାଧାରଣଙ୍କ ପ୍ରାଣରକ୍ଷା ପାଇଁ ଜୀବନ ଉତ୍ସର୍ଗ କରିଥିବା ସମୟରେ ଫକୀରମୋହନ ତାଙ୍କର ବ୍ୟକ୍ତିଗତ ଜୀବନରେ ବହୁ ବ୍ୟକ୍ତିଙ୍କୁ ସହାୟତା କରିବା ସଙ୍ଗେ ସଙ୍ଗେ ଦେଶ, ଭାଷା ଓ ସାହିତ୍ୟର ଉନ୍ନତିକଳ୍ପେ ନିଜକୁ ଉତ୍ସର୍ଗ କରିଥିଲେ । ଅନନ୍ତା ନିଜ ମାତା ଦେବକୀ ବ୍ୟତୀତ ଅନ୍ୟ କାହାପ୍ରତି ଭ୍ରୂକ୍ଷେପ କରୁ ନ ଥିଲା । ଫକୀରମୋହନ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ପିତାମହୀ କୁଚିଳାଦେବୀଙ୍କ ପାଖରେ କୃତଜ୍ଞ ଓ ଋଣୀ ରହିଥିଲେ । ତେଣୁ ଫକୀରମୋହନଙ୍କ ବ୍ୟକ୍ତିଗତ ଜୀବନର ଅସ୍ପଷ୍ଟ ଛାୟା ପରୋକ୍ଷରେ ଅନନ୍ତା ଚରିତ୍ର ମଧ୍ୟରେ ଦ୍ୟୋତିତ ହୋଇ ଉଠିଛି ।

ଏତଦ୍‌ବ୍ୟତୀତ ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ରେ ବର୍ଣ୍ଣିତ ତତ୍କାଳୀନ ଓଡ଼ିଶାର ସାମାଜିକ ଜୀବନର କେତେକ ପରିଚୟ 'ରାଣ୍ଡୀପୁଅ ଅନନ୍ତା'ରେ ପରିଲକ୍ଷିତ । ଗୋଟିଏ ଦୁଇଟି ଉଦାହରଣ ମାଧ୍ୟମରେ ଏହାର ସୂଚନା ପ୍ରଦାନ କରାଯାଇପାରେ । ଊନବିଂଶ ଶତକ ଓଡ଼ିଶାରେ ଚୋର ଏବଂ ଠଗମାନଙ୍କର ପ୍ରାଦୁର୍ଭାବ ସାଧାରଣ ଜନଜୀବନକୁ ଅସହ୍ୟ କରିଦେଇଥିଲା । ରାହାଜାନି, ଗଦେଇ ଡକାୟତଦଳ, ଛୁଟକୁରିଆ ଚୋର ଏବଂ ଠଗଦଳଙ୍କ ଉତ୍ପାତ ସୀମା ଅତିକ୍ରମ କରିଯାଇଥିଲା । ଚଟିଘରର ମାଲିକମାନେ ଚୋରଙ୍କ ସହିତ ସଂପର୍କ ରକ୍ଷା କରି ପଥିକମାନଙ୍କର ଧନ ଅପହରଣ କରୁଥିଲେ । ଫକୀରମୋହନ ଏ ସଂପର୍କରେ 'ଆତ୍ମଜୀବନ ଚରିତ'ରେ ଲେଖିଛନ୍ତି - ''ସଡ଼କଧାର ଚଟିର ଅନେକ ଦୋକାନୀ ମଧ୍ୟ ଡକାୟତ ବା ଡକାୟତମାନଙ୍କ ସହକାରୀ ଥିଲେ । ସେହି ଦୋକାନୀମାନେ ଚଟି ବାସିନ୍ଦା ଲୋକ ନୁହନ୍ତି । ସେମାନଙ୍କ ଘର ଚଟିଠାରୁ କୋଶେ ବା ଦେଢ଼କୋଶ ଦୂରରେ । ସକାଳୁ ରାତି ପହରଯାଏ ଦୋକାନରେ ରହି ଯାତ୍ରୀମାନଙ୍କୁ ଚୁଡ଼ା, ଚାଉଳ, ହାଣ୍ଡି, କାଠ ପ୍ରଭୃତି ବିକ୍ରିକରି ଘରକୁ ଚାଲିଯାଆନ୍ତି । ତରକାରିରେ ପକାଇବାପାଇଁ ଦୋକାନୀମାନେ ଯେଉଁ ହଳଦୀଗୁଣ୍ଡା ବିକନ୍ତି, ସେଥିରେ ଏକପ୍ରକାର ବିଷ ମିଶିଥାଏ । ସେହି ବିଷମିଶା ତରକାରି ଯାତ୍ରୀମାନେ ଖାଇ ଅଚେତ ହୋଇ ପଡ଼ିଗଲେ, ଅଧରାତି ବେଳେ ଡକାୟତମାନେ

ଆସି ସେମାନଙ୍କର ସର୍ବସ୍ୱ ଲୁଟି ଘେନିଯାଆନ୍ତି ।'' (ପୃ-୨୮) । 'ରାଣ୍ଡୀପୁଅ ଅନନ୍ତା'ରେ ଗ୍ରାମମାନଙ୍କରେ ପରିଲକ୍ଷିତ ଏହିପରି ଏକ ଚୋରିର ବୃତ୍ତାନ୍ତ ରହିଛି । ''ସିଂହାଣୀ ହାତରେ ଢେର ଟଙ୍କା, ଏକଥା ଗାଁ ଲୋକେ ଜାଣନ୍ତି ; ଚୋରଗୁଡ଼ାକ ସନ୍ଧାନ ପାଇ ଦିନେ ଅନ୍ଧାର ରାତିଆ ସିନ୍ଧିକରି ତିନିଜଣ ଚୋର ଘର ଭିତରେ ପଶିଲେ; ସିଂହାଣୀ ଶୋଇଥିଲେ, ତାକୁ ଯିମିତି ମାଡ଼ି ବସିଛନ୍ତି ସେ ତ ହାଉଳି ଖାଇ ହାତ ଯୋଡ଼ାକ ଛିଞ୍ଚାଡ଼ି ଦେଲା । ଚୋରଗୁଡ଼ା ଚାରିହାତ ଦୂରରେ ପଡ଼ିଗଲେ । ଯୋଡ଼ାଏ ଚୋର ତ ପଳାଇଲେ, ଗୋଟାକୁ ମାଡ଼ିବସିଲା, ଗାଈ ପଘାରେ ଘର ମଝି ଖୁମ୍ବରେ ଭିଡ଼ି ବାନ୍ଧିଦେଲା । ସକାଳୁ ଗାଁ ଲୋକେ ଦେଖି ଧାଇଁଲେ, ଏ ଚୋରଟା କିଏ ମ ? ମଲା ମଲା ! ଏ ତ ଗାଁ ଚଉକିଆ ବାଉରୀ ଝପଟ ସିଂହ ।'' (ପୃ-୩୦) ଚଟିଘରର ମାଲିକ ଯେପରି ଡକାୟତମାନଙ୍କ ସହିତ ସଂପର୍କ ରକ୍ଷାକରି ଆଶ୍ରୟ ନେଉଥିବା ବାଟୋଇମାନଙ୍କର ଟଙ୍କା ପଇସା ଲୁଟ୍ କରିଥାନ୍ତି, ସେହିପରି ଗ୍ରାମର ଚୌକିଦାର ଗ୍ରାମବାସୀମାନଙ୍କ ସଂପର୍କରେ ଡକାୟତମାନଙ୍କୁ ବିବରଣୀ ଯୋଗାଇଦେଇ ଚୋରିରେ ସାହାଯ୍ୟ କରିଥାନ୍ତି । ସେହିପରି ତତ୍କାଳୀନ ଓଡ଼ିଶାର ଅନ୍ୟ ଏକ ଘଟଣା ସଂପର୍କରେ ଅବତାରଣା କରାଯାଇପାରେ । ଓଡ଼ିଶା ଏକ ବନ୍ୟା ଓ ମରୁଡ଼ିର ଦେଶ । ବନ୍ୟା ପ୍ରକୋପରୁ ଜନସାଧାରଣଙ୍କୁ ରକ୍ଷାପାଇଁ ସରକାର ସେତେବେଳେ ନଦୀବନ୍ଧ ଯୋଜନାର ସୂତ୍ରପାତ କରିଥିଲେ । 'ରାଣ୍ଡୀପୁଅ ଅନନ୍ତା'ରେ ଭାର୍ଗବୀ ନଦୀରେ ଗୋପାଳପୁର ପାଖରୁ ରାମନଗରଯାଏ - ଅଠର ମାଇଲ ଲମ୍ବ କୋଡ଼ିଏ ହାତ ଓସାର ଦଶହାତ ଉଚ୍ଚର ଯେଉଁ ବନ୍ଧ ନିର୍ମିତ ହୋଇଥିଲା, ତାହା ଥିଲା ଏହି ଯୋଜନାର ଅନ୍ତର୍ଗତ । ଏହି ପରିପ୍ରେକ୍ଷୀରେ ଫକୀରମୋହନ ଦଶପଲ୍ଲାରେ ଦେବାନ୍ ଥିବା ସମୟରେ ଯୋରମ ନିକଟରେ ମହାନଦୀ କୂଳ ଭାଙ୍ଗି ଯେଉଁ ଘାଇଟିଏ କରିଥିଲା, ତା' ଉପରେ ପଥର ବନ୍ଧ ପକାଇ ଯେପରି ଜନସାଧାରଣଙ୍କୁ ବନ୍ୟା ପ୍ରକୋପରୁ ରକ୍ଷା କରିଥିଲେ, ତାହା ଏହି ପରିପ୍ରେକ୍ଷୀରେ ସ୍ମରଣ କରାଯାଇପାରେ । ପୁନରାୟ 'ରାଣ୍ଡୀପୁଅ ଅନନ୍ତା'ରେ ସାହେବଙ୍କର ଡୋମପଡ଼ା ବଣକୁ ଶିକାର ଉଦ୍ଦେଶ୍ୟରେ ଯାତ୍ରା ସଂପର୍କରେ ଯେଉଁ ବର୍ଣ୍ଣନା ରହିଛି, ତନ୍ମଧ୍ୟରେ ଫକୀରମୋହନଙ୍କ ଡୋମପଡ଼ା ଦେବାନ୍‌ଗିରିର ଅନୁଭୂତି ବେଶ୍ ସ୍ପଷ୍ଟ । ସେହିପରି ଉକ୍ତ ଗଳ୍ପରେ ବନ୍ୟା ସଂପର୍କରେ ଯେଉଁ ରୋମାଞ୍ଚକର ବର୍ଣ୍ଣନା ପ୍ରଦତ୍ତ ହୋଇଛି, ସେଥିରେ ଓଡ଼ିଶାର ପ୍ରାକୃତିକ ବିପର୍ଯ୍ୟୟର ବହୁ ଅନୁଭୂତି ସ୍ପଷ୍ଟ ଓ ଜୀବନ୍ତ ।

କେବଳ 'ରାଣ୍ଡୀପୁଅ ଅନନ୍ତା' କ୍ଷୁଦ୍ରଗଳ୍ପଟି ନୁହେଁ, ତାଙ୍କର ଅଧିକାଂଶ କ୍ଷୁଦ୍ରଗଳ୍ପରେ ଫକୀରମୋହନଙ୍କ ବ୍ୟକ୍ତିଗତ ଓ ସାମାଜିକ ଜୀବନର ଅନୁଭୂତି ପ୍ରତିଫଳିତ । ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'କୁ ତାଙ୍କ ଜୀବନର ଯଥାର୍ଥ ପ୍ରତିଲିପି ଭାବରେ ଗ୍ରହଣ କରାଗଲେ ଏବଂ ତାକୁ ଆଧାର କରି ତାଙ୍କର ସୃଷ୍ଟି ସମୂହକୁ ପର୍ଯ୍ୟାଲୋଚନା କଲେ

ଜଣେ ସଚେତନ ଶିଳ୍ପୀର ବ୍ୟକ୍ତିଗତ ଓ ସାମାଜିକ ଜୀବନ କିପରି ରସସ୍ନିଗ୍ଧ ଏବଂ ନିବିଡ଼ ଅନ୍ତରଙ୍ଗତାର ଛାପ ନେଇ ପ୍ରକାଶିତ, ତାର ବହୁ ପ୍ରମାଣ ମିଳିପାରିବ । ତେଣୁ କେବଳ କଳାଦୃଷ୍ଟିରୁ ଫକୀରମୋହନଙ୍କ ସୃଷ୍ଟିର ପର୍ଯ୍ୟାଲୋଚନା କରା ନ ଯାଇ ତତ୍କାଳୀନ ସମୟର ସାମାଜିକ ପରିବେଶ ଓ ତାଙ୍କ ବ୍ୟକ୍ତିଗତ ଜୀବନର ଅନୁଭୂତିକୁ ଦୃଷ୍ଟିରେ ରଖି ଆଲୋଚନାରେ ପ୍ରବୃତ୍ତ ହେଲେ ବ୍ୟକ୍ତି ଫକୀରମୋହନ ତଥା ସାମାଜିକ ଜୀବନ ସହିତ ନିବିଡ଼ ସଂପର୍କ ସ୍ଥାପନ କରିଥିବା ଜଣେ ସଚେତନ ଶିଳ୍ପୀର ପ୍ରକୃତ ପରିଚୟ ମିଳିପାରିବ । ସ୍ରଷ୍ଟା ଅନ୍ତରର ଏହି ଚିତ୍ତବୃତ୍ତିହିଁ ବ୍ୟକ୍ତି ଫକୀରମୋହନଙ୍କର ପ୍ରକୃତ ପରିଚୟ ।

# ଛ'ମାଣ ଆଠଗୁଣ୍ଠ ଓ ଅନ୍ୟାନ୍ୟ ପ୍ରସଙ୍ଗ

ଓଡ଼ିଆ ଉପନ୍ୟାସ ଜଗତରେ ଫକୀରମୋହନ ସେନାପତିଙ୍କ ଛ'ମାଣ ଆଠଗୁଣ୍ଠ ଏକ ବିସ୍ମୟକର ସୃଷ୍ଟି । ଉପନ୍ୟାସଟି ପ୍ରକାଶ ଲାଭ ପରେ ଏହା ସଂପର୍କରେ ବହୁ ବିଦଗ୍ଧ ଓ ପ୍ରବୀଣ ଆଲୋଚକ ନିଜ ନିଜର ମତାମତ ପ୍ରକାଶ କରିଛନ୍ତି । ଏବେ ମଧ୍ୟ ଛ'ମାଣ ଆଠଗୁଣ୍ଠ ଉପନ୍ୟାସ ଆଲୋଚନାର ଅନ୍ତ ହୋଇ ନାହିଁ । ବିଭିନ୍ନ ଭାରତୀୟଭାଷାରେ ଉପନ୍ୟାସଟି ଅନୂଦିତ ହୋଇ ବିଦଗ୍ଧ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିପାରିଛି । ଛ'ମାଣ ଆଠଗୁଣ୍ଠର ପ୍ରେରଣାଭୂମି ଭାବେ 'Bengal peasant life' ତ ଅନ୍ୟ କେତେବେଳେ 'ବିଷବୃକ୍ଷ'କୁ ଆଲୋଚକଗଣ ନିର୍ଦ୍ଦେଶ କରିଛନ୍ତି । ଫକୀରମୋହନ ତାଙ୍କ 'ଆତ୍ମଜୀବନ ଚରିତ'ରେ Bengal peasant life ସମ୍ପର୍କରେ ସୂଚନା ଦେଇଥିବାରୁ କେତେକ ଗବେଷକ ଛ'ମାଣ ଆଠଗୁଣ୍ଠ ଉପନ୍ୟାସର ମୂଳ ଉତ୍ସ ରୂପେ ଏହି ଇଂରାଜୀ ପୁସ୍ତକଟିକୁ ଗ୍ରହଣ କରିଥିବା ସମୟରେ ଅନ୍ୟ କେହି କେହି 'ବିଷବୃକ୍ଷ' ଉପନ୍ୟାସର ବର୍ଣ୍ଣନାଚାତୁରୀ ଦ୍ୱାରା ଫକୀରମୋହନ ପ୍ରଭାବିତ ବୋଲି ମତବ୍ୟକ୍ତ କରିଛନ୍ତି । ଡଃ ନୃସିଂହ ଷଡ଼ଙ୍ଗୀ ଆମେରିକୀୟ ଔପନ୍ୟାସିକ ନାଥ୍ ନେଲ ହଥର୍ଣ୍ଣଙ୍କ The House of the Seven Gablesର ବହୁ ସାମ୍ୟ ଛ' ମାଣ ଆଠଗୁଣ୍ଠରେ ଲକ୍ଷ୍ୟ କରିଥିବା ସମୟରେ ଡଃ ବନମାଳୀ ଦାସ ପ୍ରେମଚନ୍ଦଙ୍କ 'ଗୋଦାନ' ଉପନ୍ୟାସରେ ଏହି ଉପନ୍ୟାସର ଅନେକ ସାମଞ୍ଜସ୍ୟ ଥିବାର ସୂଚନା ଦେଉଛନ୍ତି । ଏହାସତ୍ତ୍ୱେ ଫକୀରମୋହନ ବଙ୍କିମ ଚନ୍ଦ୍ରଙ୍କ ଅନ୍ୟ ଏକ ରଚନା 'ବଙ୍ଗଦେଶେର କୃଷକ' ଦ୍ୱାରା ବହୁପରିମାଣରେ ପ୍ରଭାବିତ ହୋଇଥିଲେ ହେଁ କୌଣସି ଆଲୋଚକ ଏଯାବତ୍ ଏ ସମ୍ପର୍କରେ ଦୃଷ୍ଟି ଆକର୍ଷଣ କରି ନାହାନ୍ତି । ଅତୀତରେ ଛ'ମାଣ ଆଠଗୁଣ୍ଠର ମୂଳ ଉତ୍ସ ସମ୍ପର୍କରେ ପ୍ରଦତ୍ତ ବିଭିନ୍ନ ଆଲୋଚକଙ୍କ ଆଲୋଚନା ସହିତ 'ବଙ୍ଗଦେଶେର କୃଷକ'ର ତୁଳନାତ୍ମକ ଆଲୋଚନା କରି ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବା ପ୍ରସ୍ତୁତ ଆଲୋଚନାଟିର ଉଦ୍ଦେଶ୍ୟ ।

॥ ୧ ॥

'ଝଙ୍କାର' ଏକାଦଶବର୍ଷ ନବମ ସଂଖ୍ୟାରେ ଅଧ୍ୟାପକ କୃଷ୍ଣଚରଣ ସାହୁ ପ୍ରଥମେ 'ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ' ଶୀର୍ଷକ ପ୍ରବନ୍ଧ ରଚନା କରି ବଙ୍କିମ ଚନ୍ଦ୍ରଙ୍କ 'ବିଷବୃକ୍ଷ'

ଦ୍ୱାରା ଫକୀରମୋହନ ପ୍ରଭାବିତ ହୋଇ 'ଛ ମାଣ ଆଠଗୁଣ୍ଠ' ରଚନା କରିଥିବା ବିଷୟରେ ସୂଚନା ଦେଇଥିଲେ । ପ୍ରଫେସର ଡଃ ଦାଶରଥି ଦାସ ଛ'ମାଣ ଆଠଗୁଣ୍ଠ ଶୁଦ୍ଧ ସମ୍ପାଦନାରେ ଫକୀରମୋହନ ବେଙ୍ଗଲ ପିଜାଣ୍ଟ ଲାଁଇଫ୍ ସମ୍ପର୍କରେ ସୂଚନା ଦେଇଥିବା ସମୟରେ 'ବିଷବୃକ୍ଷ' ସମ୍ପର୍କରେ ନୀରବ ଥିବାରୁ ବିସ୍ମୟ ପ୍ରକାଶ କରିଛନ୍ତି । ଏହାକୁ ସେ ଫକୀରମୋହନଙ୍କ 'ଦୁଚିକିତ୍ସ୍ୟ ବୁଦ୍ଧିମତା' ବୋଲି କହିଛନ୍ତି । ବୋଧହୁଏ ପ୍ରଫେସର ଦାସ ଛ'ମାଣ ଆଠଗୁଣ୍ଠ ଉପରେ 'ବିଷବୃକ୍ଷ'ର ବହୁ ପ୍ରଭାବ ଲକ୍ଷ୍ୟ କରି ଫକୀରମୋହନଙ୍କ 'ଆତ୍ମଜୀବନ ଚରିତ'ରେ ତାର ସୂଚନା ପାଇ ନ ଥିବାରୁ ଏ ପ୍ରକାର ମତାମତ ପ୍ରକାଶ କରିଛନ୍ତି । ଡଃ କୃଷ୍ଣଚନ୍ଦ୍ର ଭୂୟାଁ 'ଝଙ୍କାର' ଜାନୁଆରୀ ୧୯୯୭ ସଂଖ୍ୟାରେ 'ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ : ତୁଳନାତ୍ମକ ଆଲୋଚନା' ଶୀର୍ଷକ ପ୍ରବନ୍ଧ ରଚନା କରି ଉଭୟ ଉପନ୍ୟାସ ମଧ୍ୟରେ ରହିଥିବା ସାମ୍ୟ ଓ ବୈଷମ୍ୟ ସମ୍ପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ଏଠାରେ ସୂଚାଇ ଦିଆଯାଇପାରେ ଯେ, କୃଷ୍ଣଚରଣ ସାହୁ ପୂର୍ବରୁ 'ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ'ର ଯେଉଁ ତୁଳନାତ୍ମକ ଆଲୋଚନା କରିଥିଲେ, ଡଃ ଭୂୟାଁ ତାଙ୍କ ପ୍ରବନ୍ଧରେ ଅନେକତ୍ର ସେହି ଆଲୋଚନାର ପୁନରାବୃତ୍ତି କରିଛନ୍ତି । ଅବଶ୍ୟ କେତେକ କ୍ଷେତ୍ରରେ ସେ ନୂତନ ଆଲୋକପାତ କରିବାକୁ ଭୁଲି ନାହାନ୍ତି ।

ଫକୀରମୋହନ ଉପନ୍ୟାସ ରଚନା କରିବାବେଳକୁ ବଙ୍କିମଚନ୍ଦ୍ର ବଙ୍ଗଳା ଉପନ୍ୟାସ ଜଗତରେ ପ୍ରସିଦ୍ଧିଲାଭ କରି ସାରିଲେଣି । ଫକୀରମୋହନ ୧୩୨୨ ସାଲ ଆଶ୍ୱିନ ୮ମ ଭାଗ, ୬ଷ୍ଠ ସଂଖ୍ୟା 'ଉତ୍କଳ ସାହିତ୍ୟ'ରେ ଲେଖିଥିଲେ 'ବଙ୍କିମ ଚନ୍ଦ୍ରଙ୍କ ଉପନ୍ୟାସ, ଦୀନବନ୍ଧୁଙ୍କ ନାଟକ ଏବଂ ଜଗଦ୍ ବିଖ୍ୟାତ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସକାଶେ ବଙ୍ଗଭାଷା ହଠାତ୍ ଖ୍ୟାତିଲାଭ କରିଅଛି ।' ଫକୀରମୋହନ ଉପନ୍ୟାସ ରଚନା ପୂର୍ବରୁ ବଙ୍କିମଚନ୍ଦ୍ରଙ୍କ ବିଭିନ୍ନ ରଚନାବଳୀ ସଂପର୍କରେ ବେଶ୍ ପରିଚିତ ଥିବା ଏହି ସ୍ୱୋକ୍ତିରୁ ଜଣାପଡ଼େ । 'ବିଷବୃକ୍ଷ' (୧୮୭୩) ପ୍ରକାଶ ଲାଭ କରିବାର ୨୯ ବର୍ଷ (୧୯୦୨) ପରେ ଛ'ମାଣ ଆଠଗୁଣ୍ଠ ପୁସ୍ତକାକାରରେ ପ୍ରକାଶ ପାଇଥିଲେ ହେଁ, 'ଉତ୍କଳ ସାହିତ୍ୟ' ପତ୍ରିକାରେ ୧୮୯୭ ମସିହାରୁ ଧାରାବାହିକ ଭାବେ ପ୍ରକାଶ ପାଇ ଆସୁଥିଲା । 'ବିଷବୃକ୍ଷ' ମଧ୍ୟ ୧୮୭୨ ମସିହାରେ 'ବଙ୍ଗଦର୍ଶନ' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ବଙ୍କିମଚନ୍ଦ୍ରଙ୍କ ଏହି ଉପନ୍ୟାସଟି ତାଙ୍କୁ ବଙ୍ଗଦେଶ ତଥା ଭାରତର ଅନ୍ୟାନ୍ୟ ଭାଷାଭାଷୀ ଅଞ୍ଚଳରେ ବେଶ୍ ଲୋକପ୍ରିୟ କରାଇ ପାରିଥିଲା । ଫକୀରମୋହନ ଛ'ମାଣ ଆଠଗୁଣ୍ଠ ରଚନା ପୂର୍ବରୁ ଏହି ଉପନ୍ୟାସଟିକୁ ନିଶ୍ଚିତ ଭାବରେ ପାଠ କରିଥିବାର ବହୁ ପ୍ରମାଣ ତାଙ୍କ ଉପନ୍ୟାସଟିରେ ରହିଛି, ଯଦିଓ ବିଷୟବସ୍ତୁ ଦୃଷ୍ଟିରୁ ଉଭୟ ଉପନ୍ୟାସର କାହାଣୀ ଭିନ୍ନ ।

'ବିଷବୃକ୍ଷ' ଉପନ୍ୟାସରେ ସୂର୍ଯ୍ୟମୁଖୀ ଓ ନଗେନ୍ଦ୍ରଙ୍କ ପବିତ୍ର ପ୍ରେମ ମୁଖ୍ୟସ୍ଥାନ ଲାଭ କରିଥିବା ସମୟରେ 'ଛ'ମାଣ ଆଠଗୁଣ୍ଠ'ରେ ଭୂମି ସମସ୍ୟାହିଁ ମୁଖ୍ୟ । ବଙ୍କିମଚନ୍ଦ୍ର

ଅବୈଧପ୍ରଣୟ, ବିଧବା ବିବାହ ଓ ବହୁ ବିବାହକୁ ସମର୍ଥନ କରି ନାହାନ୍ତି । 'ବହୁବିବାହ, ବିଧବା ବିବାହ ଓ ଅବୈଧ ପ୍ରେମହିଁ ବଙ୍କିମଙ୍କ ଦୃଷ୍ଟିରେ ବିଷବୃକ୍ଷ ଏବଂ ଏଇ ବିଷବୃକ୍ଷ ନାମରେ ହିଁ ଉପନ୍ୟାସ ନାମିତ (ଭୂୟାଁ-ପୃ.୧୪୦୩) । କୃଷ୍ଣଚରଣ ସାହୁ ଅନୁରୂପ ମନ୍ତବ୍ୟ ଦେଇ କୁହନ୍ତି । ବଙ୍କିମ ଚନ୍ଦ୍ର ବଙ୍ଗ ସମାଜର ଦୁଇ ବିଶିଷ୍ଟ ସମସ୍ୟା ବହୁ ବିବାହ ଓ ବିଧବା ବିବାହକୁ କେନ୍ଦ୍ର କରି ବିଷବୃକ୍ଷ ଲେଖିଛନ୍ତି । (ପୃ-୮୩୨) । 'ଛ'ମାଣ ଆଠଗୁଣ୍ଠ ପରିମାଣ ଜମି ଫକୀରମୋହନଙ୍କ ଏହି ଉପନ୍ୟାସର ପ୍ରାଣକେନ୍ଦ୍ର ହୋଇଥିବା ସମୟରେ; ନଗେନ୍ଦ୍ରଙ୍କ କୁନ୍ଦନନ୍ଦିନୀ ନାମ୍ନୀ ବିଧବାପ୍ରତି ଦୁର୍ବଳତା, ସୂର୍ଯ୍ୟମୁଖୀଙ୍କ ସମ୍ମତିରେ ବିବାହ, ସୂର୍ଯ୍ୟମୁଖୀଙ୍କ ଗୃହତ୍ୟାଗ, ନଗେନ୍ଦ୍ରଙ୍କ ନିଜ ତ୍ରୁଟି ପ୍ରତି ସଚେତନତା ଓ ପୁନର୍ମିଳନ 'ବିଷବୃକ୍ଷ' ଉପନ୍ୟାସର ମୁଖ୍ୟ ବିଷୟ । 'ବିଷବୃକ୍ଷ' ନାମକରଣଟି ପ୍ରତୀକଧର୍ମୀ ହୋଇଥିବା ସମୟରେ 'ଛ'ମାଣ ଆଠଗୁଣ୍ଠ' ନାମକରଣଟି ବିଷୟବସ୍ତୁ ସହିତ ଘନିଷ୍ଠ ଭାବେ ସଂପୃକ୍ତ । ଏହି ଜମିପାଇଁ ଦୁଇଦୁଇଟି ପରିବାର ନିଶ୍ଚିହ୍ନ ହୋଇଯାଇଛି । ମଙ୍ଗରାଜଙ୍କ ମୃତ୍ୟୁ ସମୟରେ ଥ.ମା.ଆ.ଗୁଁ.ର ଅସ୍ପଷ୍ଟ ଉଚ୍ଚାରଣ ମଧ ବେଶ୍ ସଙ୍କେତଧର୍ମୀ । ତେଣୁ ବିଷୟବସ୍ତୁ ଦୃଷ୍ଟିରୁ ଛ'ମାଣ ଆଠଗୁଣ୍ଠ ଏବଂ ବିଷବୃକ୍ଷ ମଧ୍ୟରେ କୌଣସି ସମ୍ପର୍କ ନାହିଁ । ମାତ୍ର ବର୍ଣ୍ଣନା ଏବଂ କେତେକ ଘଟଣାରେ ଉଭୟ ଉପନ୍ୟାସ ମଧ୍ୟରେ ସମ୍ପର୍କ ଅତୀବ ନିବିଡ଼ । ଛ'ମାଣ ଆଠଗୁଣ୍ଠରେ ମଙ୍ଗରାଜ ଏବଂ ବାଘସିଂହ ପରିବାର ମଧ୍ୟରେ ଶତ୍ରୁତା, ଅସୁରଦୀଘିରେ ଗ୍ରାମ୍ୟରମଣୀମାନଙ୍କର ପରନିନ୍ଦା ଓ ପରଚର୍ଚ୍ଚା, ମଙ୍ଗରାଜଙ୍କ ସ୍ୱପ୍ନଦର୍ଶନ, ଚମ୍ପାର ବିଭିନ୍ନ କାର୍ଯ୍ୟକଳାପ ଓ ଟାଙ୍ଗୀ ମାଉସୀରେ ପରିବର୍ତ୍ତନ, ଟାଙ୍ଗୀ ମାଉସୀର ରୂପବର୍ଣ୍ଣନା, ସାଆନ୍ତାଣୀଙ୍କ ଚରିତ୍ର, ବୁଢ଼ୀମଙ୍ଗଳା ବନ୍ଦନା, ଟାଙ୍ଗୀ ମାଉସୀଙ୍କ ଆଗମନରେ ରତନପୁର ମୌଜା ରମଣୀମାନଙ୍କର ବିଭିନ୍ନ ପ୍ରତିକ୍ରିୟା, ମଙ୍ଗରାଜଙ୍କ ପରିବାରରେ ଆଶ୍ରିତାମାନଙ୍କର ବର୍ଣ୍ଣନାଦି ସହିତ 'ବିଷବୃକ୍ଷ' ଉପନ୍ୟାସର ଦୁଇ ଜମିଦାର ପରିବାର (ଦେବୀପୁରର ଦେବେନ୍ଦ୍ର ଓ ଗୋବିନ୍ଦପୁରର ନଗେନ୍ଦ୍ର) ମଧ୍ୟରେ ଶତ୍ରୁତା, ନଗେନ୍ଦ୍ର ପରିବାରରେ ଆଶ୍ରିତାମାନଙ୍କର ପରନିନ୍ଦା ଓ ପରଚର୍ଚ୍ଚା, କୁନ୍ଦର ନିଜ ମାତାଙ୍କ ସ୍ୱପ୍ନ ଦର୍ଶନ, ଦେବେନ୍ଦ୍ରଙ୍କ ବୈଷ୍ଣବୀ ହରି ଦାସୀର ଛଦ୍ମବେଶ ଓ ଉଦ୍ଦେଶ୍ୟ ସାଧନ ପାଇଁ ବିଭିନ୍ନ କୁକ୍ରିୟା, ନଗେନ୍ଦ୍ରଙ୍କ ଦାସୀମାନଙ୍କ ମୁଖରେ ବୈଷ୍ଣବୀର ରୂପବର୍ଣ୍ଣନା, ସୂର୍ଯ୍ୟମୁଖୀଙ୍କ ନିର୍ମଳ ଚରିତ୍ରବତ୍ତା, ମାତାଲ ଦେବେନ୍ଦ୍ରର ହୀରାବନ୍ଦନା, ମଧୁପୁର ଗ୍ରାମରାସ୍ତାରେ ନଗେନ୍ଦ୍ରଙ୍କ ପାଲିଙ୍କି ଯିବା ସମୟରେ ଗ୍ରାମ୍ୟ ଝିଅବୋହୂଙ୍କ ପ୍ରତିକ୍ରିୟା, ନଗେନ୍ଦ୍ରଙ୍କ ଗୃହରେ ସ୍ଥାନ ପାଇଥିବା ବିଭିନ୍ନ ଆଶ୍ରିତାମାନଙ୍କ ବର୍ଣ୍ଣନାର ଗଭୀର ସାମଞ୍ଜସ୍ୟ ରହିଛି । ନଗେନ୍ଦ୍ରଙ୍କ ମୁଖରେ ସୂର୍ଯ୍ୟମୁଖୀଙ୍କ ବର୍ଣ୍ଣନା ଏବଂ ଫକୀରମୋହନଙ୍କ ମୁଖରେ ଭଗିଆ ସାରିଆଙ୍କ ଦାମ୍ପତ୍ୟପ୍ରେମ ବର୍ଣ୍ଣନା ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । କୃଷ୍ଣଚରଣ ସାହୁ ଏବଂ କୃଷ୍ଣଚନ୍ଦ୍ର ଭୂୟାଁ ସେମାନଙ୍କ ପ୍ରବନ୍ଧରେ ଉଭୟ ଉପନ୍ୟାସରେ ରହିଥିବା ସାମଞ୍ଜସ୍ୟର ତୁଳନାତ୍ମକ ବିଚାର କରିଛନ୍ତି ବହୁ ଉଦାହରଣ ମାଧ୍ୟମରେ । ତେଣୁ ଏଠାରେ ତାର ପୁନରାବୃତ୍ତି

କରିବାର ଆବଶ୍ୟକତା ନାହିଁ । ମାତ୍ର ଉଭୟ ଔପନ୍ୟାସିକଙ୍କ ଦୃଷ୍ଟିଭଙ୍ଗୀରେ ଯେଉଁ ଭିନ୍ନତା ରହିଛି, ଏଠାରେ ତାର କେବଳ ସାମାନ୍ୟ ସୂଚନା ଦିଆଯାଇପାରେ ।

ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠର ସମସ୍ୟା ଏବଂ ବଙ୍କିମଚନ୍ଦ୍ରଙ୍କ 'ବିଷବୃକ୍ଷ' ଉପନ୍ୟାସର ସମସ୍ୟା ଭିନ୍ନ । ତତ୍କାଳୀନ ବଙ୍ଗଦେଶରେ ଯେଉଁ ସମସ୍ୟା ବଙ୍କିମଙ୍କ ଆଗରେ ମୁଖ୍ୟ ହୋଇ ଦେଖା ଦେଇଥିଲା, ଫକୀରମୋହନଙ୍କ ଦୃଷ୍ଟିରେ ତାହା ମୁଖ୍ୟ ନ ଥିଲା । ଊନବିଂଶ ଶତକ ଓଡ଼ିଶାରେ ଯେଉଁ ସମସ୍ୟାଟି ମୁଖ୍ୟ ଥିଲା, ବଙ୍ଗଦେଶରେ ଅଷ୍ଟାଦଶ ଶତକର ଶେଷ ଦଶକରେ (୧୭୯୩) ସେହି ସମସ୍ୟାଟି ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସମୟ ତଥା ପ୍ରଶାସନିକ ପରିବର୍ତ୍ତନ ଦୁଇ ପଡ଼ୋଶୀ ରାଜ୍ୟର ସମସ୍ୟାରେ ମଧ୍ୟ ବ୍ୟବଧାନ ସୃଷ୍ଟି କରିଛି । ରାଜା ରାମମୋହନ ରାୟ ୧୮୨୮ ଖ୍ରୀ.ରେ 'ବ୍ରାହ୍ମ ସମାଜ' ପ୍ରତିଷ୍ଠା କରି ତତ୍କାଳୀନ ସମାଜରେ ପ୍ରଚଳିତ ବିଭିନ୍ନ କୁସଂସ୍କାର ବିରୋଧରେ ଜନମତ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲେ । ସତୀଦାହ ପ୍ରଥା, ବାଲ୍ୟବିବାହ ପ୍ରଥାର ଘୋର ବିରୋଧାଚରଣ କରିବା ସହିତ ବିଧବା ବିବାହର ପକ୍ଷ ସମର୍ଥନ କରିଥିଲେ । ସମାଜ ସଂସ୍କାର ନିମିତ୍ତ ରାଜା ରାମମୋହନ ରାୟଙ୍କ ଏହି ସାହସିକ ପଦକ୍ଷେପ ଊନବିଂଶ ଶତକ ପ୍ରଥମାର୍ଦ୍ଧ ଭାରତରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ତାଙ୍କର ଏହି କାର୍ଯ୍ୟକଳାପ ଯୋଗୁଁ ତାଙ୍କୁ ଭାରତୀୟ ନବୋତ୍‌ଥାନର ଅଗ୍ରଣୀ ନେତାର ସମ୍ମାନ ମିଳିଥିଲା । ଅଥଚ ଏହି ଶତକର ଶେଷ ଭାଗରେ ବଙ୍କିମ ଚନ୍ଦ୍ର 'ବିଷବୃକ୍ଷ' ରଚନା କରିଥିଲେ ହେଁ ବିଧବା ବିବାହକୁ ଏକ ସମସ୍ୟା ଭାବରେ ଗ୍ରହଣ କରି ତାର ବିରୋଧ କରିବା କମ୍ ଆଶ୍ଚର୍ଯ୍ୟର ବିଷୟ ନୁହେଁ । ବଙ୍କିମଙ୍କ ପୂର୍ବରୁ ନବୀନଚନ୍ଦ୍ର ସେନ୍‌ଙ୍କ କେତେକ କବିତାରେ ବିଧବାର ବ୍ୟର୍ଥଜୀବନ ଓ ଯୌବନ, ତାର ପରନିର୍ଭରଶୀଳତା ଓ ଅସହାୟତା, ଅବରୁଦ୍ଧ ମନର ମର୍ମନ୍ତୁଦ ହାହାକାର ଅତ୍ୟନ୍ତ ଆକର୍ଷଣୀୟ ଭାବେ ଅଭିବ୍ୟକ୍ତ ହୋଇଥିଲା (ସିଂହ ରାୟ- ପୃ- ୧୨୪) । ଏହି ପରିପ୍ରେକ୍ଷୀରେ ନବୀନ ଚନ୍ଦ୍ର ସେନ୍‌ଙ୍କ 'ବିଧବା କାମିନୀ' କବିତାର କେତେକାଂଶ ଏଠାରେ ଉଲ୍ଲେଖ କରାଯାଇପାରେ-

ଏଖନଓ ଦେଖିଯେନ ନୟନେର କାଛେ ।
 ଦିନଭାବେ ମ୍ଲାନମୁଖେ ବସିୟା ଦୁଃଖିନୀ
ଭାବିତେଛେ ଏ ସଂସାରେ କାରଭାବେ ବାଁଚେ ।
 ନୀରବେ ବିରସେ ବସେ କାନ୍ଦେ ଅନାଥିନୀ
ଏଖନଓ ଦେଖିଯେନ କାତର ନୟନେ ।
 ଦୁଃଖିନୀ ଚାହିୟା ଆଛେ ଏ ଦୁଃଖୀର ପାନେ
କଥା ନାହିଁ ମୁଖେ କିନ୍ତୁ ଯୁଗଳ ନୟନେ ।
 ଚଲିଛେ ଲଜ୍ଜାୟ ଯାହା ମୁଖେ ନାହି ଆନେ ।

ଫକୀରମୋହନ ଊନବିଂଶ ଶତକର ଶେଷ ଭାଗରେ ଏବଂ ବିଂଶ ଶତକର ପ୍ରଥମ ଦୁଇଟି ଦଶକରେ ତାଙ୍କର କେତୋଟି କବିତାରେ ବିଧବା ବିବାହକୁ କେବଳ ସମର୍ଥନ କରି ନ ଥିଲେ, ତତ୍କାଳୀନ ସମାଜର ଧର୍ମଧ୍ୱଜାଧାରୀ ଓ ବଡ଼ପଣ୍ଡା (ଯେଉଁମାନେ ବିଧବା ବିବାହକୁ ବିରୋଧ କରୁଥିଲେ) ମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ବିଧବାର ଅଭିଶାପ, ରାମ ରଥ କଥା, ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ ଆଦି କେତୋଟି କବିତାରେ ଫକୀରମୋହନଙ୍କ ଏହି ସମାଜ ସଂସ୍କାର ଦୃଷ୍ଟିଭଙ୍ଗୀ ପ୍ରତିଫଳିତ । ବଙ୍କିମ ଚନ୍ଦ୍ରଙ୍କ ଦୃଷ୍ଟିରେ ବିଧବା ବିବାହ ଯେତେବେଳେ ଏକ ସାମାଜିକ ସମସ୍ୟା, ଫକୀରମୋହନଙ୍କ ଦୃଷ୍ଟିରେ ତାହା ହୋଇଛି ସାମାଜିକ କୁସଂସ୍କାର । ବଙ୍କିମଚନ୍ଦ୍ର ସେଥିପାଇଁ କୁନ୍ଦ ନନ୍ଦିନୀର ଦ୍ୱିତୀୟ ବିବାହକୁ ଗ୍ରହଣ କରିପାରି ନାହାନ୍ତି ଓ ଏହାହିଁ ହୋଇଛି ତାଙ୍କ ଦୃଷ୍ଟିରେ ବିଷବୃକ୍ଷ । ଦୁଇଟି ଭିନ୍ନ ସମସ୍ୟା ବିଷବୃକ୍ଷ ଓ ଛ'ମାଣ ଆଠଗୁଣ୍ଠ ଉପନ୍ୟାସର ମୁଖ୍ୟ ଉପଜୀବ୍ୟ ବିଷୟ ହେଲେହେଁ ଫକୀରମୋହନଙ୍କ ଦୃଷ୍ଟିଭଙ୍ଗୀ ଅଧିକ ସମୟନିଷ୍ଠ । ମାତ୍ର ବଙ୍କିମଚନ୍ଦ୍ର ତାଙ୍କର ପ୍ରାୟ ଚଉରାଳିଶ ବର୍ଷ ପୂର୍ବରୁ ଯେଉଁ ସମସ୍ୟା ବିରୋଧରେ ସ୍ୱର ଉତ୍ତୋଳନ କରି ରାଜା ରାମମୋହନ ରାୟ ଏକ ବିପ୍ଳବୀର ଭୂମିକା ଗ୍ରହଣ କରିଥିଲେ, ସେ ତାର ସମର୍ଥନ କରି ରୂଢ଼ିବାଦୀ ଚିନ୍ତାଧାରାର ପରିଚୟ ଦେଇଛନ୍ତି । ଏହି କାରଣରୁ ଫକୀରମୋହନ 'ବିଷବୃକ୍ଷ'ର ସମସ୍ୟାକୁ ଗ୍ରହଣ ନ କରି ଚିରସ୍ଥାୟୀ ବନ୍ଦୋବସ୍ତ ପରେ ଓଡ଼ିଶାରେ ଯେଉଁ ଭୂମି ସମସ୍ୟା ଦେଖା ଦେଇଥିଲା, ତାହାକୁ ଉପନ୍ୟାସର ବିଷୟବସ୍ତୁ ରୂପେ ଗ୍ରହଣ କରି ଅଧିକ ଦୂରଦୃଷ୍ଟି ସମ୍ପନ୍ନତାର ପରିଚୟ ଦେଇଛନ୍ତି । କିନ୍ତୁ ବଙ୍କିମ ଚନ୍ଦ୍ରଙ୍କ ଯାଦୁକରୀ ବର୍ଣ୍ଣନାଚାତୁରୀଠାରୁ ନିଜକୁ ଦୂରେଇ ରଖି ପାରି ନାହାନ୍ତି । ସେଥିପାଇଁ ବଙ୍କିମଚନ୍ଦ୍ରଙ୍କ 'ବିଷବୃକ୍ଷ' ଉପନ୍ୟାସର କେତୋଟି ଚରିତ୍ର ଭିନ୍ନ ରୂପରେ ଆତ୍ମପ୍ରକାଶ କରିଛନ୍ତି 'ଛ'ମାଣ ଆଠଗୁଣ୍ଠ'ରେ ଭିନ୍ନ ସମସ୍ୟାର ଆଧାରରେ ।

॥ ୨ ॥

୧୯୯୩ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଓଡ଼ିଆ ବିଭାଗ ଦ୍ୱାରା ପ୍ରକାଶିତ 'ସାରସ୍ୱତ ପରିକ୍ରମା'ରେ ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର 'ଛ'ମାଣ ଆଠଗୁଣ୍ଠ ରଚନାର ଅନ୍ତରାଳେ' ଶୀର୍ଷକ ଏକ ପ୍ରବନ୍ଧ ରଚନା କରି ଛ'ମାଣ ଆଠଗୁଣ୍ଠ ଉପନ୍ୟାସ ବଙ୍ଗୀୟ ଲେଖକ ଲାଲବିହାରୀ ଦେ'ଙ୍କ ରଚିତ ବେଙ୍ଗଲ ପିଜାଣ୍ଟ ଲାଇଫ୍ ଦ୍ୱାରା ପ୍ରଭାବିତ ବୋଲି ମତ ପ୍ରକାଶ କରିଛନ୍ତି । ୧୮୭୧ ମସିହାରେ ବାବୁ ଜୟକିଶନ ମୁଖାର୍ଜୀ ନାମକ ଉତ୍ତରପଡ଼ାର ଜଣେ ବଙ୍ଗାଳୀ ଜମିଦାର 'Social and domestic life of the rural population and working classes of Bengal' ସମ୍ପର୍କରେ ଏକ ଉଚ୍ଚଧରଣର ଉପନ୍ୟାସ ରଚନା ପାଇଁ ପଚାଶ ପାଉଣ୍ଡର ଗୋଟିଏ ପୁରସ୍କାର ଘୋଷଣା କରିଥିଲେ । ପୁସ୍ତକଟିର

ମୁଖବନ୍ଧରେ ଲେଖାଯାଇଛି- Early in the year 1871, Baboo Jaykissen Mukherjea of uttarpara, a zamidar in Bengal offered a prize of 50 for the best novel' to be written either in Bengali or in English illustrating the social and domestic life of the rural population and working classes of Bengal. ଲାଲବିହାରୀ ଦେ' ଏହି ଘୋଷଣାଦ୍ୱାରା ପ୍ରଭାବିତ ହୋଇ ୧୮୭୨ ମସିହାରେ ଏହି ଇଂରାଜୀ ଗ୍ରନ୍ଥଟି ରଚନା କରିଥିଲେ ଓ ୧୮୭୪ ମସିହାରେ Govinda Samanta or 'The history of a Bengal peasant' ନାମଦେଇ ପ୍ରକାଶ କରିଥିଲେ । ୧୮୭୮ ମସିହାରେ ଏହାର ନୂତନ ସଂସ୍କରଣରେ ନାମ ପରିବର୍ତ୍ତନ କରି ରଖିଥିଲେ Bengal peasant life । ଡଃ ପୂର୍ଣ୍ଣଚନ୍ଦ୍ର ମିଶ୍ର ବିଷୟବସ୍ତୁ, ଅଧ୍ୟାୟୀକରଣ, ଅଧ୍ୟାୟଗୁଡ଼ିକର ନାମକରଣ, Sense of humour ଆଦି ଦୃଷ୍ଟିରୁ ଫକୀରମୋହନ କିପରି ଲାଲବିହାରୀ ଦେ'ଙ୍କ ଦ୍ୱାରା ପ୍ରଭାବିତ, ସେ ସମ୍ବନ୍ଧରେ ସୂଚନା ଦେଇଛନ୍ତି । କେତେକ ଅଧ୍ୟାୟର ନାମକରଣକୁ ଫକୀରମୋହନ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଗ୍ରହଣ କରିନେଇଛନ୍ତି । ଯେପରି An important discussionକୁ ଫକୀରମୋହନ ମନ୍ତ୍ରଣାରୂପେ, The Hindu widow କୁ ଚମ୍ପା, Ladies parliament କୁ ଅସୁରଦୀଘି, Events at Durganagar କୁ ଗାଁର ହାଲଚାଲ Fire ! Fire ! କୁ କିପରି ଘର ପୋଡ଼ିଗଲା, The police Investigation କୁ ପୁଲିସ୍ ତଦାରଖ୍ୟା The Village Grogshop କୁ ଗୋପୀ ସାହୁ ଦୋକାନ ଘରେ, The End ଉପସଂହାର ଭାବେ ଛ'ମାଣ ଆଠଗୁଣ୍ଠରେ ଗ୍ରହଣ କରାଯାଇଛି । (ମିଶ୍ର- ପୃ-୧୫୯) Bengal peasant lifeରେ ପରିଲକ୍ଷିତ କେତେକ ଲୋକବିଶ୍ୱାସ ତଥା ଜମିଦାରଙ୍କ ଦ୍ୱାରା ଅତ୍ୟାଚାରିତ ଜଣେ ସରଳ ଗ୍ରାମବାସୀଙ୍କ କରୁଣ ଚିତ୍ରର ସୁସ୍ପଷ୍ଟ ପ୍ରତିଫଳନ ଛ'ମାଣ ଆଠଗୁଣ୍ଠରେ ପରିଲକ୍ଷିତ ହୋଇଥିବାରୁ ଫକୀରମୋହନ ଲାଲବିହାରୀ ଦେ'ଙ୍କ ଦ୍ୱାରା ପ୍ରଭାବିତ ବୋଲି ଡଃ ମିଶ୍ର ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

୧୯୯୪-୯୫ ମସିହାରେ Jadavpur Journal of comparative literature (vol-32)ରେ ହିମାଂଶୁ ଶେଖର ମହାପାତ୍ର ଓ ଯତୀନ୍ଦ୍ର କୁମାର ନାୟକ 'Writing peasant life in colonial India : A comparative Analysis of Rev. Lal Behari Day's Bengal peasant life and Fakirmohan Senapati's Chhamana Atha Guntha ଶୀର୍ଷକ ଆଲୋଚନାରେ ଉଭୟ ଉପନ୍ୟାସକୁ ଔପନିବେଶିକ ଭାରତବର୍ଷର ଦୁଇଟି ବାସ୍ତବବାଦୀ ଉପନ୍ୟାସ ବୋଲି କହିଛନ୍ତି । ପ୍ରାବନ୍ଧିକ ସମଗ୍ର ବିଶ୍ୱ ପରିପ୍ରେକ୍ଷୀରେ Bengal peasant life ର ମୂଲ୍ୟାୟନ କରିବା ସମୟରେ ଓଡ଼ିଶା ପରିପ୍ରେକ୍ଷୀରେ ଛ'ମାଣ ଥାଠଗୁଣ୍ଠର ଆଲୋଚନା କରି ଉଭୟ

ଉପନ୍ୟାସ ମଧ୍ୟରେ ରହିଥିବା ସାମ୍ୟ-ବୈଷମ୍ୟକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ଏକ ବିସ୍ତୃତ ପଟ୍ଟଭୂମିରେ ବିଚାରାଲୋଚନା କରିଛନ୍ତି । ତୁଳନାତ୍ମକ ଆଲୋଚନା ଶେଷରେ ପ୍ରାବନ୍ଧିକ ଲେଖିଛନ୍ତି- × × The both texts embodied the same cluster of experience what made such a re-writing possible was Senapati's radically anti-colonial stance. It is interesting to note that Day has not been able to place himself in a similarly transforming, paradic relationship with his own pre-texts drawn from western literature. Bengal peasant life strikes one as being connected in a seamless whole to the nineteenth century English literature of rural retrospect. There is no attempt here, as in Senapatis, Chhamana Atha Guntha to effect a rapture from within the terms imposed by the master or canonical texts (Mohapatra & Nayak- P- 33)

ପ୍ରଫେସର ଡଃ ଦାଶରଥି ଦାସ ୧୯୯୬ ମସିହାରେ ଛ'ମାଣ ଆଠଗୁଣ୍ଠର ଶୁଦ୍ଧ ସମ୍ପାଦନା କରି ଏଥିରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ଭୂମିକା ସଂଯୋଜନା କରିଛନ୍ତି । ପ୍ରଫେସର ଦାସ ପ୍ରଥମରୁ Bengal peasant life କୁ ଏକ ଉପନ୍ୟାସର ମାନ୍ୟଦେବାର ବିରୋଧୀ । ସେ ଏହାକୁ ଇତିହାସ ଭାବରେ ଗ୍ରହଣ କରିଛନ୍ତି । ପୂର୍ବରୁ ଏହି ଗ୍ରନ୍ଥଟିର ନାମ The History of A Bengal Peasant ରଖାଯାଇଥିବାରୁ ବୋଧହୁଏ ପ୍ରଫେସର ଦାସ ଏପରି ଏକ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ମାତ୍ର ପୁସ୍ତକଟି ଗୋଟିଏ ଉପନ୍ୟାସ ରୂପେ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ କରାଯାଇଥିବା ବିଷୟ ସ୍ୱୟଂ ଲେଖକ ମୁଖବନ୍ଧରେ ସ୍ୱୀକାର କରିଛନ୍ତି, ଯାହା ପୂର୍ବରୁ ଉଲ୍ଲେଖ କରାଯାଇସାରିଛି । ବିଶିଷ୍ଟ ଆଲୋଚକ K.S. Ramamurti ଏହି ଗ୍ରନ୍ଥଟିକୁ ଇଂରାଜୀ ଭାଷାରେ ରଚିତ ଏକ ବିଶିଷ୍ଟ ଉପନ୍ୟାସରେ ମହତ୍ତ୍ୱ ଦେଇ କହିଛନ୍ତି- "Lal Behari Day's Govinda Samanta may be considered to be the first important novel to appear in English.... Govinda Samanta.... represents the emergence of the novel genre with formal realism' which distinguishes it from romance (Mohapatra & Nayak- p- 34) ହିଂମାଂଶୁ ଶେଖର ମହାପାତ୍ର ଏବଂ ଯତୀନ୍ଦ୍ର କୁମାର ନାୟକ ଏହି ପୁସ୍ତକଟିକୁ ପ୍ରଥମ ବାସ୍ତବବାଦୀ ଉପନ୍ୟାସର ମର୍ଯ୍ୟାଦା ପ୍ରଦାନ କରିଛନ୍ତି । (p-34) ପୁସ୍ତକଟିର ପ୍ରଥମ ପରିଚ୍ଛେଦରେ ଲେଖକ ଚାରୋଟି ବିଷୟ ନ ଖୋଜିବା ନିମିତ୍ତ ଉପଦେଶ ଦେଇଛନ୍ତି, ଯାହାକୁ ଉଦ୍ଧାର କରି ପ୍ରଫେସର ଦାସ ଏହା ଗୋଟିଏ ଉପନ୍ୟାସ ନୁହେଁ ବୋଲି ମତ ଦେଇଛନ୍ତି । ସେହି ଚାରୋଟି ବିଷୟ ହେଲା- (୧) You are not

to expect anything marvellous or wonderful in this little book (p-2) (୨) You are not to expect in this authentic history any thrilling incidents (p-3) (୩) You are not to expect any love scenes (p-4) (୪) You are not to expect here grandiloquent phraseology and gorgeous metaphors (p-4) ଏହି ଚାରୋଟି ବିଷୟ ନ ଖୋଜିବାର କାରଣ ସ୍ୱରୂପ ସେ ଉଲ୍ଲେଖ କରିଛନ୍ତି- ୧ - ଏଗୁଡ଼ିକ ଅତୀତରେ ଥିଲା ଓ ଲୋକମାନେ ଏହାକୁ ପଢ଼ି ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ ଓ ପ୍ରଶ୍ନ କରୁଥିଲେ ଏହା ସତ୍ୟ କି ? ତେଣୁ ବର୍ତ୍ତମାନ ସେ ଯୁଗ ଚାଲିଯାଇଛି । ସେ ଛଳନା ମଧ୍ୟ ଏଥିରେ ନାହିଁ (P-2) ୨ - ଏଥିରେ ବଙ୍ଗଳା ରୟତର ଜୀବନାଲେଖ୍ୟ ପ୍ରଦାନ ହେତୁ ରୋମାଣ୍ଟିକ ଆଡ଼ଭେଞ୍ଚର ଏବଂ ହରର ଆଦି ଦେଖିବାକୁ ମିଳିବ ନାହିଁ । (p-2 & 3) ୩- ଇଂରାଜୀ ପାଠକମାନଙ୍କ ଦୃଷ୍ଟିରେ ପ୍ରେମ ଏବଂ ପ୍ରଣୟ ଚିତ୍ର ବ୍ୟତିରେକେ ଉପନ୍ୟାସ ହୋଇପାରିବ ନାହିଁ । ତେଣୁ ସେମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିବାପାଇଁ ଏହା କରାଯାଇଛି । (P-3) ୪ - କେତେକ ଶିକ୍ଷିତ ବ୍ୟକ୍ତି ଆଳଂକାରିକ ଭାଷା (Somorous Language) ପ୍ରୟୋଗ ନିମନ୍ତେ ଆଗ୍ରହୀ । ଏପରିକି ଦୀର୍ଘ ବାକ୍ୟ ଲେଖିବାକୁ ଏକ ଫେସନ୍ ରୂପେ ଗ୍ରହଣ କରିଥାନ୍ତି । ଦେଶର ସାଧାରଣ ଲୋକ କୃଷି କ୍ଷେତ୍ରରେ କଥୋପକଥନ ଧାନ, ହଳ ଆଦି ବିଷୟ ଯେପରି ସରଳ ଓ କୋମଳ ଭାଷାରେ ପ୍ରକାଶ କରିଥାନ୍ତି, ସେହି ଭାଷା ଏଥିରେ ପ୍ରୟୋଗ କରାଯାଇଛି (p-4) । ପ୍ରଫେସର ଦାସ ଲେଖକଙ୍କର ଏହି ସ୍ୱୀକାରୋକ୍ତି ଉପରେ ଗୁରୁତ୍ୱ ଦେଇ ନ ଥିବାରୁ ଏପରି ଏକ ସିଦ୍ଧାନ୍ତରେ ଉପନୀତ ହେବା ସ୍ୱାଭାବିକ । ଅବଶ୍ୟ ଉପନ୍ୟାସର ପ୍ରଥମ ୨୫ଟି ପରିଚ୍ଛେଦ ଘଟଣାବିହୀନ । ଏହା ସତ୍ତ୍ୱେ ଲେଖକ ପୁସ୍ତକଟି ସମ୍ପର୍କରେ କହିଛନ୍ତି ଏଥିରେ plain and unvarnished tale of a plain peasant, living in this plain country of Bengal × × plain manner ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଯେଉଁମାନଙ୍କର ଏହା ପସନ୍ଦଯୋଗ୍ୟ, ସେହିମାନଙ୍କୁ ଏହି ଗ୍ରନ୍ଥଟି ପାଠ କରିବାକୁ ସ୍ୱାଗତ ଜଣାଇଛନ୍ତି । ଗୋଟିଏ ରୟତ ବା କୃଷକର ଇତିହାସ ଖୋଜିବାପାଇଁ ଲେଖକ ବର୍ଣ୍ଣନାର ବହୁଳତା ପ୍ରଦାନ କରିଛନ୍ତି । ତଥାପି ଏହାର କଥାବସ୍ତୁ ରହିଛି । ଏହି କଥାବସ୍ତୁ ସମ୍ପର୍କରେ ଜାଣିବାକୁ ହେଲେ, ପାଠକକୁ କିଛି ସମୟ ଧୈର୍ଯ୍ୟ ଧରିବାକୁ ପଡ଼ିବ ବୋଲି ଲେଖକ ସଚେତନ କରାଇ ଦେଇଛନ୍ତି- "I could not, in all conscience, say with the knife- grinder, Story ? God bless you I have none to tell, sir ! I have a story to tell as the reader will see if he will have only the patience to wait a bit (p-139) । ବିଶିଷ୍ଟ ଆଲୋଚକ ଶିଶିର କୁମାର ଦାସ ଏହି ଗ୍ରନ୍ଥଟି ସମ୍ପର୍କରେ ମତଦେଇ କହିଛନ୍ତି- "The remarkable quality of the work is its stark realism and grim humour and abandant

sympathy for the poor and the down trodden. It is a story of an unscrupulous land lord and his greed for acquiring more land tole in the language of the common man (p-296) । ବହୁ ପ୍ରବୀଣ ଆଲୋଚକ Bengal peasant life କୁ ଉପନ୍ୟାସର ମର୍ଯ୍ୟାଦା ଦେବାରେ କୁଣ୍ଠା ପ୍ରକାଶ କରି ନାହାନ୍ତି । ଉପନ୍ୟାସର ଅନେକ ଗୁଣ ଏଥିରେ ଯେ ବିଦ୍ୟମାନ, ସ୍ୱୀକାର କରିବାକୁ ପଡ଼େ ।

ବିଷୟବସ୍ତୁ, ପରିବେଶ ଦୃଷ୍ଟିରୁ ଛ'ମାଣ ଆଠଗୁଣ୍ଠ ଓ Bengal peasant life ମଧ୍ୟରେ ତାରତମ୍ୟ ରହିଛି । ଫକୀରମୋହନ ଓଡ଼ିଶାର ପଲ୍ଲୀ ଜୀବନକୁ ଯେପରି ରୂପାୟିତ କରିଛନ୍ତି, ଲାଲ ବିହାରୀ ଦେ'ଙ୍କ ରଚନାରେ ସେପରି ଜୀବନ୍ତ ବର୍ଣ୍ଣନା ପରିଲକ୍ଷିତ ହୁଏ ନାହିଁ । ଫକୀରମୋହନଙ୍କ ବର୍ଣ୍ଣନା ବାସ୍ତବଧର୍ମୀ, ମାତ୍ର ଦେ'ଙ୍କ ବର୍ଣ୍ଣନା ଫଟୋଗ୍ରାଫିକ୍ । କଳାତ୍ମକ ଦୃଷ୍ଟିକୋଣରୁ ଛ'ମାଣ ଆଠଗୁଣ୍ଠର ସ୍ଥାନ ବେଙ୍ଗଲ ପିଜାଣ୍ଟ ଲାଇଫ୍ ଠାରୁ ଉଦ୍ଧ୍ୱରେ । ଏହା ସତ୍ତ୍ୱେ, ତାହା ସମ୍ପୂର୍ଣ୍ଣତଃ ଇତିହାସ ନୁହେଁ । ଏଥିରେ ମଧ୍ୟ ଅନେକ ସ୍ଥଳରେ ଲେଖକଙ୍କର କଳାଚାତୁରୀ ଫୁଟି ଉଠିଛି । ଶାଣିତ ବ୍ୟଙ୍ଗ ବିଦ୍ରୂପ ମଧ୍ୟରେ ଲେଖକଙ୍କର ସୃଜନଶୀଳ ପ୍ରତିଭା ପାଠକକୁ ବେଳେବେଳେ ଚମତ୍କୃତ କରେ । 'ଛ'ମାଣ ଆଠଗୁଣ୍ଠ' ରଚନା ସମୟରେ ଫକୀରମୋହନଙ୍କ ଅନ୍ତର୍ଲୋକରେ Bengal Peasant lifeର ପ୍ରେରଣା ଯେ ସଜୀବ ଥିଲା, ଅସ୍ୱୀକାର କରାଯାଇ ନ ପାରେ ।

॥ ୩ ॥

ଡଃ ନୃସିଂହ ଷଡ଼ଙ୍ଗୀ ତାଙ୍କ ଗବେଷଣାନିବନ୍ଧ 'ବିଶ୍ୱ ସାହିତ୍ୟରେ ଫକୀରମୋହନ'ରେ ଆମେରିକୀୟ ଔପନ୍ୟାସିକ ନାଥିନେଲ ହଥର୍ଣ୍ଣଙ୍କ ୧୮୫୧ ମସିହାରେ ପ୍ରକାଶିତ 'The House of Seven Gables' ସହିତ ଫକୀର ମୋହନ ସେନାପତିଙ୍କ ଛ'ମାଣ ଆଠଗୁଣ୍ଠର ତୁଳନାତ୍ମକ ଅଧ୍ୟୟନ କରି ଉଭୟ ଉପନ୍ୟାସ ମଧ୍ୟରେ ରହିଥିବା ସାମ୍ୟ-ବୈଷମ୍ୟକୁ ସୂଚାଇବାକୁ ଚେଷ୍ଟା କରିଛନ୍ତି । ହଥର୍ଣ୍ଣଙ୍କ ଏହି ଉପନ୍ୟାସରେ ଭୂମି ସମସ୍ୟାହିଁ ମୁଖ୍ୟ । ପ୍ରତିପତ୍ତିଶାଳୀ କଲୋନେଲ ପିନନେଙ୍କ ସହରତଳି ଅଞ୍ଚଳରେ ମାଥିଉ ମାଉଲେଙ୍କ ଜମିଖଣ୍ଡକ ଅପହରଣ କରିବାପାଇଁ ମିଥ୍ୟା କେସ୍‌ରେ ମାଉଲେଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇବା, ଅପହୃତ ଜମିରେ ପ୍ରକାଣ୍ଡ ପ୍ରାସାଦ ନିର୍ମାଣ କରି ସପରିବାର ଅବସ୍ଥାନ ସମୟରେ ଅସ୍ୱାଭାବିକ ମୃତ୍ୟୁର ଶିକାର ହେବା କଥା ସେହି ପରିବାରର ଅବକ୍ଷୟକୁ ଉକ୍ତ ଉପନ୍ୟାସରେ ଲେଖକ କଳାତ୍ମକ ଢଙ୍ଗରେ ପ୍ରକାଶ କରିଛନ୍ତି । ଛ'ମାଣ ଆଠଗୁଣ୍ଠ ଉପନ୍ୟାସରେ ସାରିଆ ଭଗିଆର ଜମି ଅପହରଣ ପରେ ମଙ୍ଗରାଜଙ୍କ ଦୁର୍ବିପାକ ଓ ସେହି କାରଣରୁ ମୃତ୍ୟୁ ବରଣାଦି ଘଟଣା ମଧ୍ୟରେ ସାମଞ୍ଜସ୍ୟ ରହିଥିଲେ ହେଁ ଫକୀରମୋହନ ହଥର୍ଣ୍ଣଙ୍କୁ ପଢ଼ିଥିବା ବିଶ୍ୱାସଯୋଗ୍ୟ ନୁହେଁ । The House of the Seven Gablesରେ ଅନ୍ଧବିଶ୍ୱାସ,

କୁସଂସ୍କାର ଓ କର୍ମଫଳ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଛି । ଅନୁରୂପ ଘଟଣା ଛ'ମାଣ ଆଠଗୁଣ୍ଠରେ ପରିଲକ୍ଷିତ ହେଲେହେଁ ପରିବେଶ, ଘଟଣାଚକ୍ର ଓ ପରିସ୍ଥିତି ଉଭୟ ଉପନ୍ୟାସରେ ଭିନ୍ନ । ହଥର୍ଣ୍ଣଙ୍କ ଉପନ୍ୟାସର କଥାବସ୍ତୁ ଏକ ଅତୀନ୍ଦ୍ରିୟ ଶକ୍ତିଦ୍ୱାରା ନିୟନ୍ତ୍ରିତ । ମାତ୍ର ଛ'ମାଣ ଆଠଗୁଣ୍ଠରେ ତାହା ଦେଖାଯାଏ ନାହିଁ । ହଥର୍ଣ୍ଣଙ୍କ ଉପନ୍ୟାସରେ ଘଟଣାଟିର ପରିସମାପ୍ତି ଗୋଟିଏ ପୁରୁଷରେ ଘଟି ନାହିଁ । ପରବର୍ତ୍ତୀ ବଂଶଧରଗଣ ତା'ର କୁଫଳ ଭୋଗ କରିବାକୁ ବାଧ୍ୟ ହୋଇଛନ୍ତି । ଫକୀରମୋହନଙ୍କ ଉପନ୍ୟାସରେ କର୍ମଫଳର ଶାସ୍ତି ସେହି ଗୋଟିଏ ଜନ୍ମରେ ପାପୀ ଲାଭ କରିଥାଏ । ଚିନ୍ତାଧାରାରେ ଉଭୟ ଉପନ୍ୟାସରେ କେତେକାଂଶରେ ସାମଞ୍ଜସ୍ୟ ରହିଥିଲେହେଁ, ପରିବେଶ ଓ ଘଟଣାଚକ୍ର ଉଭୟରେ ଭିନ୍ନ ।

'ଝଙ୍କାର' ନଭେମ୍ବର ୧୯୯୫ ସଂଖ୍ୟାରେ ଡଃ ବନମାଳୀ ଦାସଙ୍କ ଦ୍ୱାରା ରଚିତ ଓ ଡକ୍ଟର ନଳିନୀ କୁମାରୀ ନାୟକଙ୍କ ଦ୍ୱାରା ଅନୂଦିତ 'ଛ'ମାଣ ଆଠଗୁଣ୍ଠ ଓ ଗୋଦାନ : ଏକ ତୁଳନାତ୍ମକ ଅଧ୍ୟୟନ' ପ୍ରବନ୍ଧଟି ପ୍ରକାଶିତ । 'ଗୋଦାନ' ପ୍ରକାଶ ଲାଭ କରେ ୧୯୩୬ ମସିହାରେ । ଏହାର ୩୪ ବର୍ଷ ପୂର୍ବରୁ ଛ'ମାଣ ଆଠଗୁଣ୍ଠ ପ୍ରକାଶ ପାଇସାରିଥିଲା । ଛ'ମାଣ ଆଠଗୁଣ୍ଠ ପ୍ରାୟତଃ ପଲ୍ଲୀଭିତ୍ତିକ । 'ଗୋଦାନ' ଉପନ୍ୟାସର ବହୁ ଘଟଣା ଉଭୟ ପଲ୍ଲୀ ଓ ସହରରେ ଅଭିନୀତ । ବିଂଶ ଶତକର ପ୍ରଥମାର୍ଦ୍ଧରେ ରୁଷିଆରେ ଯେଉଁ ସମାଜବାଦୀ ଚିନ୍ତାଧାରା ଜନ୍ମଲାଭ କରି ସମଗ୍ର ବିଶ୍ୱକୁ ପ୍ରଭାବିତ କରିଥିଲା, ତା'ର ପ୍ରଭାବ ପ୍ରେମଚନ୍ଦଙ୍କ 'ଗୋଦାନ' ଉପନ୍ୟାସରେ ସ୍ପଷ୍ଟ । 'ଛ'ମାଣ ଆଠଗୁଣ୍ଠ ଉପନ୍ୟାସରେ ଏ ପ୍ରକାର ଚିନ୍ତାଧାରା ସମ୍ପୂର୍ଣ୍ଣ ଦୁର୍ଲଭ । ଉଭୟ ଉପନ୍ୟାସରେ ଶୋଷଣର ଚିତ୍ର ରହିଥିଲେ ହେଁ, ଶୋଷଣର ପ୍ରକୃତି ଭିନ୍ନ ଭିନ୍ନ । ପରିବେଶ ଓ ପରିସ୍ଥିତି ମଧ୍ୟ ଭିନ୍ନ । ଗୋଦାନ ଉପନ୍ୟାସରେ ତତ୍କାଳୀନ ଭାରତର ବହୁ ସମସ୍ୟା ଯଥା-ମିଲ୍ ମାଲିକ ଓ ଖଟିଖିଆ, ବିଧବା ବିବାହ, ଛୁଆଁ-ଅଛୁଆଁ ଭେଦଭାବ, ଯୌତୁକ ଆଦି ବହୁ ସମସ୍ୟାକୁ ପ୍ରେମଚନ୍ଦ ବେଶ୍ ସଚେତନ ଭାବରେ ଏଥିରେ ପରୀକ୍ଷା ନିରୀକ୍ଷା କରିଛନ୍ତି । ଛ'ମାଣ ଆଠଗୁଣ୍ଠରେ ଏ ପ୍ରକାର ସମସ୍ୟା ଆଦୌ ଦେଖାଯାଏ ନାହିଁ । ପ୍ରେମଚନ୍ଦ ଛ'ମାଣ ଆଠଗୁଣ୍ଠ ପାଠ କରିଥିବେ ବୋଲି ବିଶ୍ୱାସ ମଧ୍ୟ ହୁଏ ନାହିଁ । ଉଭୟ ନିଜ ପରିବେଶ, ପରିସ୍ଥିତି ତଥା ସମକାଳୀନ ସମାଜକୁ ଆଖି ଆଗରେ ରଖି ଉପନ୍ୟାସ ରଚନା କରିଛନ୍ତି । ବହୁ ପ୍ରତିଭାଶାଳୀ ସ୍ରଷ୍ଟାଙ୍କ ମଧ୍ୟରେ ଚିନ୍ତାଧାରାର ସାମ୍ୟ ରହିବା ଅସ୍ୱାଭାବିକ ନୁହେଁ । ହୁଏତ କେତେକ କ୍ଷେତ୍ରରେ ତାହାହିଁ ଘଟିଛି । ନିଜ ପରିବେଶ ଦୃଷ୍ଟିରୁ ଉଭୟ ସ୍ରଷ୍ଟା ଅନନ୍ୟ, ଏଥିରେ ଆଦୌ ସନ୍ଦେହ ନାହିଁ ।

॥ ୪ ॥

ପୂର୍ବୋକ୍ତ ତିନୋଟି ଅନୁଚ୍ଛେଦରେ ଯାହା ଆଲୋଚନା କରାଗଲା, ତାହା କେବଳ ଅତୀତରେ କରାଯାଇଥିବା ଆଲୋଚନାର ଆଲୋଚନା ମାତ୍ର । ବଙ୍କିମଚନ୍ଦ୍ରଙ୍କ 'ବଙ୍ଗ

ଦେଶରେ କୃଷକ'ର ପ୍ରଭାବ କିପରି ଛ'ମାଣ ଆଠଗୁଣ୍ଠରେ ରହିଛି ସେ ସମ୍ପର୍କରେ ଏଯାବତ୍ କେହି ଆଲୋଚନା କରି ନାହାନ୍ତି । ଫକୀରମୋହନ ବଙ୍କିମଚନ୍ଦ୍ରଙ୍କ ଏହି ଗ୍ରନ୍ଥଟି ଦ୍ୱାରା କେତେ ପରିମାଣରେ ପ୍ରଭାବିତ, ଉକ୍ତ ଆଲୋଚନାରୁ ତାହା ପ୍ରମାଣିତ ହୋଇପାରିବ ।

ବଙ୍କିମଚନ୍ଦ୍ର 'ବଙ୍ଗଦର୍ଶନ' ନାମରେ ଏକ ପତ୍ରିକା ୧୮୬୭ ମସିହାରେ ପ୍ରକାଶ କରନ୍ତି । ବଙ୍ଗଦର୍ଶନର ପ୍ରକାଶିତ ତିନୋଟି ପ୍ରସ୍ତାବ ଜ୍ୟେଷ୍ଠ ଆଷାଢ଼ ୧୨୮୦ (୧୮୭୩) ଓ କାର୍ତ୍ତିକ ୧୨୮୨ (୧୮୭୫) ଏବଂ 'ବଙ୍ଗ ଦେଶେର କୃଷକ' ଧାରାବାହିକ ପ୍ରବନ୍ଧର କିୟଦଂଶ ନେଇ 'ସାମ୍ୟ' (୧୮୭୯) ପୁସ୍ତକରେ ପ୍ରକାଶିତ ହୁଏ । ସାମ୍ୟରେ ପ୍ରଚାରିତ ମତ ପରବର୍ତ୍ତୀ କାଳରେ ବଙ୍କିମଚନ୍ଦ୍ର ଭୁଲ ବୋଲି ବିବେଚନା କରିବାରୁ ଏହା ପୁନର୍ମୁଦ୍ରଣ କରି ନ ଥିଲେ । ପରେ ଏହାର ଉପଯୋଗିତା ଅନୁଭବ କରି ୧୮୯୨ ମସିହାରେ 'ବିବିଧ ପ୍ରବନ୍ଧ'ର ଦ୍ୱିତୀୟ ଭାଗ ପ୍ରକାଶିତ ହେବା ସମୟରେ ଏଥିରେ ଏକ ବଡ଼ ମୁଖବନ୍ଧ ସହିତ 'ବଙ୍ଗଦେଶେର କୃଷକ' ସଂଯୋଜିତ ହେଲା । 'ବଙ୍ଗଦେଶେର କୃଷକ'ରେ ଚାରୋଟି ପରିଚ୍ଛେଦ ରହିଛି । ଯଥା- ପ୍ରଥମ ପରିଚ୍ଛେଦ- ଦେଶେର ଶ୍ରୀବୃଦ୍ଧି, ଦ୍ୱିତୀୟ ପରିଚ୍ଛେଦ- ଜମିଦାର, ତୃତୀୟ ପରିଚ୍ଛେଦ- ପ୍ରାକୃତିକ ନିୟମ ଓ ଚତୁର୍ଥ ପରିଚ୍ଛେଦ- ଆଇନ୍ ।

୧୭୯୩ ମସିହା ମାର୍ଚ୍ଚ ମାସ ୨୨ ତାରିଖରେ ବଙ୍ଗଳାରେ (ବଙ୍ଗଦେଶ) ଲର୍ଡ କର୍ଣ୍ଣୱାଲିସ୍‌ଙ୍କ ସମୟରେ ଚିରସ୍ଥାୟୀ ବନ୍ଦୋବସ୍ତ ଘୋଷଣା ହେବା ପରେ ଜମି ଉପରେ ମାଲିକାନା ସ୍ୱତ୍ୱର ଆରୋପ ହେଲା । ଅଧିକାଂଶ କ୍ଷେତ୍ରରେ ଜମିଦାରମାନେ ହେଲେ ଜମିର ମାଲିକ ଓ ଗରିବ କୃଷକ ବିଭିନ୍ନ ଭାବରେ ସେମାନଙ୍କ ଶୋଷଣର ଶରବ୍ୟ ହେଲେ । ଯେଉଁ ଅଳ୍ପ କେତେକ କୃଷକଙ୍କ ହାତରେ ଜମି ଥିଲା, ଜମିଦାରମାନେ ଚକ୍ରାନ୍ତ କରି କିମ୍ବା ସ୍ୱଳ୍ପ ଦାମ୍‌ରେ ସେମାନଙ୍କଠାରୁ ତାହା କ୍ରୟ କରିନେଲେ । 'ବଙ୍ଗଦେଶେର କୃଷକ'ର ଚତୁର୍ଥ ପରିଚ୍ଛେଦରେ କୁହାଯାଇଛି 'ଲର୍ଡ କର୍ଣ୍ଣୱାଲିସ୍‌ଙ୍କ ସମୟରେ ସେ କହିଲେ ଜମିଦାରମାନଙ୍କର ଜମିଦାରୀର ଚିରସ୍ଥାୟୀ ସ୍ୱତ୍ୱ ନାହିଁ ବୋଲି ସେଥିପ୍ରତି ସେମାନେ ଯତ୍ନ ନେଉ ନାହାନ୍ତି । ଜମିଦାରମାନଙ୍କର ସ୍ଥାୟୀ ଅଧିକାର ରହିଲେ ସେମାନେ ଯତ୍ନ ନେବେ । ସୁତରାଂ ସେମାନେ ପ୍ରଜାପୀଡ଼କ ନ ହୋଇ ପ୍ରଜାପାଳକ ହେବେ । ଏହା ଚିନ୍ତାକରି ସେ ଚିରସ୍ଥାୟୀ ବନ୍ଦୋବସ୍ତ ସୃଷ୍ଟି କଲେ । ରାଜସ୍ୱର କଣ୍ଟ୍ରାକ୍ଟରମାନଙ୍କୁ ଭୂସ୍ୱାମୀ କଲେ । ଏହାଦ୍ୱାରା ଜମିଦାର ଯେଉଁ ପ୍ରଜାପୀଡ଼କ ଥିଲେ, ତାହା ରହିଲେ । ମାତ୍ର ପ୍ରଜାମାନଙ୍କର ଚିରକାଳର ସ୍ୱତ୍ୱ ଲୋପ ହେଲା । ପ୍ରଜାମାନେହିଁ ଚିରକାଳ ଭୂସ୍ୱାମୀ । ଜମିଦାରମାନେ କେବଳ ସରକାରୀ ତହସିଲଦାର । କର୍ଣ୍ଣୱାଲିସ୍ ଯଥାର୍ଥ ଭୂସ୍ୱାମୀ ନିକଟରୁ ଜମି ନେଇ ତହସିଲଦାରଙ୍କୁ ଦେଲେ । × × × ୧୮୧୨ ସାଲର ପଞ୍ଚଆଇନ୍ ଦ୍ୱାରା ପ୍ରଜାଙ୍କର ଯେଉଁ କିଛି ସ୍ୱତ୍ୱ ଥିଲା, ତାହା ଲୋପ ହେଲା । ଜମିଦାର ପ୍ରଜାଙ୍କୁ ଯେକୌଣସି ହାରରେ ପଟ୍ଟା ଦେଇପାରିବେ, ଏହିପ୍ରକାର ନିୟମ ହେଲା । (Revenue letter to Bengal. 9th May 1821-para 54) ଏହାଦ୍ୱାରା

କୃଷକର ଭୂମି ରଖିବା ନ ରଖିବା ଜମିଦାରଙ୍କ ଇଚ୍ଛାଧୀନ ହେଲା । ଭୂମି ସହିତ କୃଷକର କୌଣସି ସମ୍ବନ୍ଧ ରହିଲା ନାହିଁ । (ପୃ.୨୬୫)

ବଙ୍ଗଦେଶର ଚିରସ୍ଥାୟୀ ବନ୍ଦୋବସ୍ତ ପରେ କୃଷିଜୀବୀ ତଥା ସାଧାରଣ ପ୍ରଜାଙ୍କ ଅବସ୍ଥା ଯେପରି ହୋଇଥିଲା, ଓଡ଼ିଶାରେ ମଧ୍ୟ ଚିରସ୍ଥାୟୀ ବନ୍ଦୋବସ୍ତ ପରେ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥିଲା । ୧୮୦୩ ମସିହାରେ ଓଡ଼ିଶା ଦଖଲ ପରେ ସେହିବର୍ଷ ଡିସେମ୍ବର ମାସରେ କମିସନର କାର୍ଯ୍ୟ ନିର୍ବାହକ କଲେକ୍ଟର ଜେମସ୍ ହଣ୍ଟରଙ୍କୁ ଭୂ ରାଜସ୍ୱ ନୀତିପାଇଁ ନିର୍ଦ୍ଦେଶ ଦେଇଥିଲେ । ୧୮୩୭ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ ପୂର୍ବରୁ ୧୮୦୪ ରୁ ୧୮୩୭ ମଧ୍ୟରେ ଏଗାର ଥର ଅସ୍ଥାୟୀ ବନ୍ଦୋବସ୍ତ କରାଯାଇଥିଲା । ବାରମ୍ବାର ବନ୍ଦୋବସ୍ତ ଦ୍ୱାରା ଖଜଣା ହାର ବୃଦ୍ଧି ପାଉଥିବାରୁ ଗରିବ ଚାଷୀକୁଳ କ୍ଷତିଗ୍ରସ୍ତ ହେଉଥିଲେ, ଅଥଚ ଜମିଦାରମାନେ ଲାଭବାନ୍ ହେଉଥିଲେ । ପୁଣି କୌଣସି ଶୁଭକର୍ମ ଓ ପୂଜାପାର୍ବଣ ପାଇଁ ସ୍ୱଳ୍ପ ଜମି ମାଲିକମାନେ ମାଲିକାନାସ୍ୱତ୍ୱ ଲାଭ କରିଥିବାରୁ ଜମି ଜମିଦାରମାନଙ୍କୁ ବିକ୍ରୟ କରିବାକୁ ବାଧ୍ୟ ହେଉଥିଲେ । ଚିରସ୍ଥାୟୀ ବନ୍ଦୋବସ୍ତର କୁଫଳ ସମ୍ପର୍କରେ ଫକୀରମୋହନ 'ଉତ୍କଳ କୃଷକ' କବିତାରେ ଲେଖିଥିଲେ-

ସରକାର ବାହାଦୁର କଲେ ଦୟା ଭାରି ।
ପ୍ରଜା ସ୍ୱତ୍ୱ ଆଇନ୍‌ଟା କରିଦେଲେ ଜାରି ।
କୃଷକର ବଢ଼ିଗଲା ଗୋଟାଏ ଜୀବିକା ।
ରେଜେଷ୍ଟରୀ ଅଫିସ୍‌ରେ ଜମି କିଣାବିକା ।
ସବୁଦିନେ ଟାଣ ଟୁଣ ଘରେ ନାହିଁ ଭାତ ।
ଜମି ଖଣ୍ଡି ବିକିବାକୁ ବଢ଼ାଇଲା ହାତ ।
ଗଲାଅଙ୍କ ପୁଅ ବାହା ବିକିଥିଲା ମାଣେ ।
ବାପ ଶୁଦ୍ଧି ବେଳେ କେତେ ବିକିଲା କେ ଜାଣେ ?
ବାକି ଖଣ୍ଡକରେ ହେଲା ଭାରି ଟାଣଟୁଣ ।
ମାଘ ଫଗୁଣରେ ଘରେ ନାହିଁ ଲେମ୍ବୁ ଲୁଣ ।
ଭାଗରେ ଲଗାଇ ଦେଲା ଜମା ଦେଢ଼ ମାଣ ।
ହଡ଼ା ହଳକର ହାଲ ଏଥୁଁ ସବୁ ଜାଣ ।
ବାହାରିଲା ଘରଛାଡ଼ି ଲାଗିବାକୁ ମୂଲ ।
ଜୟ ଜୟ ପ୍ରଜାସ୍ୱତ୍ୱ ହରିହରି ବୋଲ ।

ଚିରସ୍ଥାୟୀ ବନ୍ଦୋବସ୍ତ ଦ୍ୱାରା ଅଷ୍ଟାଦଶ ଶତକର ଶେଷ ଦଶକରେ ବଙ୍ଗଦେଶରେ ଯେଉଁ ଅବସ୍ଥା ସୃଷ୍ଟି ହୋଇଥିଲା, ଉନବିଂଶ ଶତକ ପ୍ରଥମାର୍ଦ୍ଧ ଓଡ଼ିଶାରେ ଠିକ୍ ଅନୁରୂପ ଅବସ୍ଥା ସୃଷ୍ଟି ହୋଇଥିଲା । ଏହି ଏକପ୍ରକାର ପରିସ୍ଥିତିକୁ ନେଇ ବଙ୍କିମଚନ୍ଦ୍ର ଓ ଫକୀରମୋହନ ଯଥାକ୍ରମେ

ସୃଷ୍ଟି କରିଛନ୍ତି 'ବଙ୍ଗ ଦେଶେର କୃଷକ' ଓ 'ଛ'ମାଣ ଆଠଗୁଣ୍ଠ' । 'ବଙ୍ଗଦେଶେର କୃଷକ'ରେ ବଙ୍କିମଚନ୍ଦ୍ର ଯେଉଁ ସମସ୍ୟା ଉତ୍‌ଥାପନ କରିଛନ୍ତି, ଫକୀରମୋହନ ତାଙ୍କ ଛ'ମାଣ ଆଠଗୁଣ୍ଠରେ ଠିକ୍ ସେହି ସମସ୍ୟାଗୁଡ଼ିକ ସମ୍ପର୍କରେ ଅବତାରଣା କରିଛନ୍ତି । ଉଭୟ ଗ୍ରନ୍ଥରୁ କେତେକ ପ୍ରସଙ୍ଗର ତୁଳନାତ୍ମକ ଆଲୋଚନା କଲେ ଏହି ଅଭିମତର ସତ୍ୟାସତ୍ୟ ଜଣାପଡ଼ିବ ।

'ବଙ୍ଗଦେଶେର କୃଷକ'ର ତୃତୀୟ ପରିଚ୍ଛେଦ (ପ୍ରାକୃତିକ ନିୟମ)ରେ ଦେଶର ସମୃଦ୍ଧି ଓ ବିକାଶ ନିମିତ୍ତ ଦେଶୀୟ ଲୋକଙ୍କର ବିଦେଶ ଗମନର ଆବଶ୍ୟକତା ରହିଛି ବୋଲି ସୂଚନା ଦେଇ ଲେଖକ କହନ୍ତି- ''କୋନ୍ ଦେଶେ ଲୋକେର ଅନ୍ନେ କୁଲାୟନା, ଅନ୍ୟ ଦେଶେ ଅନ୍ନ ଖାଇବାର ଲୋକ ନାଇ । ପ୍ରଥମୋକ୍ତ ଦେଶେର ଲୋକ କତକ ଶେଷୋକ୍ତ ଦେଶେ ଯାଉକ- ତାହା ହଇଲେ ପ୍ରଥମୋକ୍ତ ଦେଶେର ଲୋକସଂଖ୍ୟା କମିବେ, ଏବଂ ଶେଷୋକ୍ତ ଦେଶେର ଓ କୋନ୍ ଅନିଷ୍ଟ ଘଟିବେ ନା । ଏଇ ରୂପେ ଇଂଲଣ୍ଡେର ମହଦୁପକାର ହଇୟାଛେ । ଇଂଲଣ୍ଡେର ଲୋକ ଆମେରିକା, ଅଷ୍ଟ୍ରେଲିଆ ଏବଂ ପୃଥିବୀର ଅନ୍ୟାନ୍ୟ ଭାବେ ବାସ କରିୟାଛେ । ତାହାତେ ଇଂଲଣ୍ଡେର ଶ୍ରୀବୃଦ୍ଧି ହଇୟାଛେ, ଉପନିବେଶ କଲେରଓ ମଙ୍ଗଳ ହଇୟାଛେ । (ପୃ-୨୬୧) । ଛ'ମାଣ ଆଠଗୁଣ୍ଠର ଦ୍ୱାଦଶ ପରିଚ୍ଛେଦ (ଅସୁରଦୀଘିରେ) ଫକୀରମୋହନ ଦେଶୀୟ ଲୋକଙ୍କ ଉଦ୍ଦେଶ୍ୟରେ ଠିକ୍ ସେହି କଥା କହିଛନ୍ତି- ''ଯୋଡ଼ାଏ ପାଣିକାଉ କେଉଁ ଦେଶରୁ ଉଡ଼ି ଆସି ଦୀଘି ମଧ୍ୟରେ ଦୁଇ ଚାରି ବୁଡ଼ ମାରି ପେଟ ପୂରାଇ ଫୁରକରି ଉଡ଼ିଗଲେ । ଗୋଟାଏ ପାଣିକାଉ ମେମ୍ ସାହେବଙ୍କ ଗାଉନ୍ ପରି କୂଳରେ ବସି ଡେଣା ଶୁଖାଉଅଛି । ହେ ହିନ୍ଦୁଧର୍ମ ବଗମାନେ ! ଇଂରେଜ ପାଣିକାଉକୁ ଦେଖ । କେଉଁ ଦେଶରୁ ଖାଲି ପକେଟରେ ଉଡ଼ି ଆସି ଚେଙ୍ଗବେଙ୍ଗ ଗଡ଼ିଶାରେ ପେଟ ପୂରାଇ ଚାଲିଗଲେ । ଦୀଘିକୂଳର ବରଗଛରେ ତୁମ୍ଭମାନଙ୍କର ବସା, ଦିନଯାକ ପାଣି ଚକଟି ଚକଟି ଦଣ୍ଡେଇ ପିଲା କେରାଣ୍ଡି ପିଲାରୁ ଅଧିକ କିଛି ପାଉ ନାହଁ । ଜୀବନ ସଂଗ୍ରାମ କାଳ ଉପସ୍ଥିତ, ଏଣିକି ଆହୁରି ପଲପଲ ପାଣିକାଉ ଆସି ଚେଙ୍ଗବେଙ୍ଗ ସବୁ ବହି ନେଇଯିବେ । ତୁମ୍ଭେମାନେ ବିଦେଶକୁ ଯାଇ ସମୁଦ୍ର ପହଁରି ନ ଶିଖିଲେ ଆଉ ରକ୍ଷା ନାହିଁ ।'' (ପୃ-୪୬)

ପ୍ରଫେସର ଦାସ ତାଙ୍କ ଛ'ମାଣ ଆଠଗୁଣ୍ଠ ସମ୍ପାଦନା ଗ୍ରନ୍ଥରେ ବଙ୍କିମଚନ୍ଦ୍ରଙ୍କ ବ୍ରିଟିଶ୍ ନ୍ୟାୟ ବ୍ୟବସ୍ଥା ପ୍ରତି ଆସ୍ଥା ନ ଥିବା ବିଷୟ ଯାହା ସୂଚିତ କରିଛନ୍ତି, ତାହା ଯଥାର୍ଥ । ବଙ୍କିମ ଚନ୍ଦ୍ରଙ୍କ ପରି ଫକୀର ମୋହନଙ୍କର ମଧ୍ୟ ଇଂରାଜୀ ବିଚାର-ବ୍ୟବସ୍ଥା ପ୍ରତି ଆସ୍ଥା ନ ଥିଲା । 'ବଙ୍ଗଦେଶେର କୃଷକ'ର ଚତୁର୍ଥ ପରିଚ୍ଛେଦ (ଆଇନ୍)ରେ ବଙ୍କିମ ଚନ୍ଦ୍ର ଲେଖିଛନ୍ତି- ''ସେଶନେର ବିଚାରା ସାକ୍ଷୀଦିଗେର ସତ୍ୟକଥାୟ ପ୍ରତିବାଦୀୟ ଅପରାଧ ପ୍ରମାଣ ହଇଲ । କିନ୍ତୁ ବିଚରା ଜୁରିର ହାତେ । ଜୁରିର ମହାଶୟେରା ଏ କାଯେ ନୂତନ ବ୍ରତୀ: ପ୍ରମାଣ ଅପ୍ରମାଣ କିଛୁ ବୁଝେନା । ଯଖନ ସାକ୍ଷୀର ଜୋବାନବନ୍ଦୀ ହଇତେଛଲ, ତଖନ ତଁହାର କେହକଡ଼ି ଗଣିତେଛଲେନ୍, କେହ ଦୋକାନେର ଦେନାପାଓନା ମନେ ମନେ ନିକାଶ କରିତେ ଛିଲେନ୍,

କେହ ବା ଅଳ୍ପ ତନ୍ଦ୍ରାଭିଭୂତ । ଉକୀଲ ଯଖନ ବକ୍ତୃତା କରିତେଛିଲେନ୍, ତଖନ ତାଁହାରା କିଞ୍ଚିତ୍ କ୍ଷୁଧାତୁର, ଗୃହେ ଗୃହିଣୀ କିରୂପ ଜଳଯୋଗେର ଆୟୋଜନ କରିୟା ରାଖିୟାଛେନ, ତାହାଇ ଭାବିତେଛଲେନ୍ × × × ଅଧିକାଂଶ ମୋକଦ୍ଦମାଇ ଅଧସ୍ତନ ବିଚାର କେର ଦ୍ୱାରା ହଇୟାଥାକେ, ଏବଂ ଅଧିକାଂଶ ଅଧସ୍ତନ ବିଚାରକଇ ଏ ଦେଶୀୟ ×× × (ପୃ-୨୬୭-୬୮) । ଏହି ପ୍ରସଙ୍ଗରେ ଛ'ମାଣ ଆଠଗୁଣ୍ଠର ପରିଚ୍ଛେଦ ୨୧ (କଟକ ସେସନ ଜଜକୋର୍ଟ)ର କେତେକାଂଶ ଉଦ୍ଧାର କରାଯାଇପାରେ ।'' ମେଜେଷ୍ଟର ସାହେବ ଦୋହରା ସଂପ୍ରୋଦ କରିଥିଲେ । ପାଞ୍ଚଦିନ ହେଲା ମକଦ୍ଦମା ଚାଲିଛି, ଆଜି ଶେଷ ବିଚାର ଦିନ । ମାମଲା ଏପର୍ଯ୍ୟନ୍ତ ପଡ଼ି ନାହିଁ । କାଲି ବୁଧବାର, ବିଲାତି ମେଲ୍ ଯିବ । ସାହେବ 'ମାଇଁ ଡିଅର ଲେଡି' ଆରମ୍ଭ କରି ଚଞ୍ଚଳ ଚିଠି ଖଣ୍ଡ ଲେଖି ପକାଉଛନ୍ତି । ଫୌଜଦାରୀ ମାମଲା ପଡ଼ିଲେ ହାକିମ ସାହେବ ବିଲାତି ଛାପା କାଗଜ ମେଲାଇ ବସନ୍ତି କିମ୍ୱା ଚିଠି ଲେଖା ଆରମ୍ଭ କରନ୍ତି, ପେସ୍କାର ଜିମା ସବୁ କାର୍ଯ୍ୟ । ସାହେବ ଜମାନବନ୍ଦୀ କାଗଜରେ ଗାରେ ଗାରେ ଦସ୍ତଖତ ଟାଣି ଦେବା ଆଉ ରାୟ ଶୁଣାଇବାରେ ମାଲିକ ।' (ପୃ-୯୯-୧୦୦) ବଙ୍କିମ ଚନ୍ଦ୍ରଙ୍କ ମତରେ ଅଧମ ବା ମଧମ ଶ୍ରେଣୀୟ ବ୍ୟକ୍ତି ଓକିଲାତି ବା ବିଚାରକ କାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି । ଅନେକ ସମୟରେ ଉପଯୁକ୍ତ ବିଚାର ସେମାନଙ୍କଠାରୁ ଆଶା କରାଯାଇ ନ ପାରେ । ଛ'ମାଣ ଆଠଗୁଣ୍ଠ ଉପନ୍ୟାସର ''କଟକ ସେସନ ଜଜକୋର୍ଟ' ପରିଚ୍ଛେଦରେ ଜଣେ ଇଂରେଜ ଡାକ୍ତର ସାକ୍ଷୀଙ୍କୁ ରାମଚନ୍ଦ୍ର ମଙ୍ଗରାଜଙ୍କ ଓକିଲ ରାମରାମ ଲାଲ ଯେପରି ସୁଆଲ କରିଛନ୍ତି, ସେଥିରୁ ତାଙ୍କର ଅଯୋଗ୍ୟତା ପ୍ରମାଣିତ ।

ପ୍ରାଚୀନ ଭାରତର ପଞ୍ଚ ଆଇନ୍ ପ୍ରତି ଉଭୟ ବଙ୍କିମ ଚନ୍ଦ୍ର ଓ ଫକୀରମୋହନଙ୍କର ସମ୍ମାନବୋଧ ରହିଥିଲା । ବଙ୍କିମଚନ୍ଦ୍ର ଲେଖିଛନ୍ତି 'ଏଇ ୧୮୧୨ ସାଲେର ୫ ଆଇନ ପୂର୍ବକାଳେର ବିଖ୍ୟାତ 'ପଞ୍ଚମ' । ଯଦି କେହି ପ୍ରଜାର ସର୍ବସ୍ୱ ଲୁଟିୟା ଲଇତେ ଚାହିତ, ସେ 'ପଞ୍ଚମ' କରିତ । ଏଖନ ଓ ଆଇନ ତାଇ ଆଛେ, କେବଳ ସେ ନାମଟି ନାଇ ।' (ପୃ-୨୬୫) । ଫକୀରମୋହନଙ୍କ ମନ୍ତବ୍ୟଟି ଦେଖନ୍ତୁ- ''ଜାତି ମଧରେ କେହି ଭଲମନ୍ଦ କଲେ ପଞ୍ଚମାନେ ତାହାକୁ ଜରିମାନା କରନ୍ତି କିମ୍ୱା କେହି ଗରିବ ଜାତି ଭାଇ ଦେଇ ନ ପାରିଲେ ପଞ୍ଚ ଗୋସେଇଁ ମାନ୍ୟ ନେଇ ତାହାକୁ ଉଠାଇ ନିଅନ୍ତି । ଟଙ୍କା ପରମାଣିକ ଜିମାରେ ଥାଏ × × ଆହା ! ଏହି ସୁନ୍ଦର ପ୍ରଥାଟି ଦିନକୁ ଦିନ ଲୋପ ପାଉଅଛି ।'' (ପୃ-୩୩)

ବ୍ରାହ୍ମଣମାନଙ୍କ ସମ୍ପର୍କରେ ଉଭୟ ଲେଖକଙ୍କର ଦୃଷ୍ଟିଭଙ୍ଗୀରେ କୌଣସି ପାର୍ଥକ୍ୟ ନାହିଁ । ବ୍ରାହ୍ମଣମାନେ ନିଜର କୁଳଧର୍ମ ବିସ୍ମୃତ ହୋଇ ମିଥ୍ୟା ଜାତ୍ୟାଭିମାନରେ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ ନିମିତ୍ତ ପ୍ରତିଯୋଗିତା କରୁଥିବାରୁ ବଙ୍କିମ ଚନ୍ଦ୍ର ସେମାନଙ୍କୁ ବ୍ୟଙ୍ଗୋକ୍ତି କରି ଲେଖିଛନ୍ତି । × × ବ୍ରାହ୍ମଣେରା ଉପଧର୍ମେର ଯାଜକ; ସୁତରାଂ ତାହାଦେର ପ୍ରଭୁତ୍ୱ ବୃଦ୍ଧି ହଇଲ । ବ୍ରାହ୍ମଣେରା କେବଳ ଶାସ୍ତ୍ରଜାଲ, ବ୍ୟବସ୍ଥା ଜାଲ ବିସ୍ତାରିତ କରିୟା କ୍ଷତ୍ରିୟ, ବୈଶ୍ୟ,

ଶୂଦ୍ରକେ ଜଡ଼ିତ କରିତେ ଲାଗଲେନ । ମକ୍ଷିକାଗଣ ଜଡ଼ାଇୟା ପଡ଼ିଲ- ନଡ଼ିବାର ଶକ୍ତି ନାଇ । କିନ୍ତୁ ତଥାପି ଊର୍ଣ୍ଣନାଭେର ଜାଲ ଫୁରାୟନା । ବିଧାନେର ଅନ୍ତ ନାଇ । ଏ ଦିକେ ରାଜ ଶାସନ ପ୍ରଣାଳୀ ଦଣ୍ଡବିଧି ଦାୟ ସନ୍ଧି ବିଗ୍ରହ ପ୍ରଭୃତି ହଇତେ ଆଚମନ, ଶୟନ, ବସନ, ଗମନ, କଥୋପକଥନ, ହାସ୍ୟ, ରୋଦନ, ଏଇ ସକଳ ପର୍ଯ୍ୟନ୍ତ ବ୍ରାହ୍ମଣେର ରଚିତ ବିଧିର ଦ୍ୱାରା ନିୟମିତ ହଇତେ ଲାଗିଲା "ଆମରା ଯେ ରୂପେ ବଲି, ସେଇ ରୂପେ ଶୁଇବେ ସେଇ ରୂପେ ପାଇବେ, ସେଇ ରୂପେ ବସିବେ, ସେଇ ରୂପେ ହାଟିବେ, ସେଇ ରୂପେ କଥା କହିବେ, ସେଇ ରୂପେ ହାସିବେ, ସେଇ ରୂପେ କାନ୍ଦିବେ, ତୋମରା ଜନ୍ମ ମୃତ୍ୟୁ ପର୍ଯ୍ୟନ୍ତ ଆମାଦେର ବ୍ୟବସ୍ଥାର ବିପରୀତ ହଇତେ ପାରିବେ ନା; ଯଦି ହୟ ତବେ ପ୍ରାୟଶ୍ଚିତ୍ତ କରିୟା, ଆମା ଦିଗକେ ଦକ୍ଷିଣାଦିଓ । × × ହିନ୍ଦୁ ସମାଜେର ଅବନତିର ଅନ୍ୟ ଯତ କାରଣ ନିର୍ଦ୍ଦେଶ କରିୟାଛି, ତନ୍ମଧ୍ୟେ ଏଇଟି ବୋଧହୟ ପ୍ରଧାନ, ଅଦ୍ୟାପି ଜାଜ୍ୱଲ୍ୟମାନ × × ନିୟମ ଜାଲେ ଜଡ଼ିତ ହଓୟାତେ ବ୍ରାହ୍ମଣ ଦିଗେର ବୁଦ୍ଧି ସ୍ଫୂର୍ତ୍ତି ଲୁପ୍ତ ହଇଲ । ଯେ ବ୍ରାହ୍ମଣ ରାମାୟଣ, ମହାଭାରତ, ପାଣିନି ବ୍ୟାକରଣ, ସାଂଖ୍ୟଦର୍ଶନ ପ୍ରଭୃତିର ଅବତାରଣା କରିୟାଛିଲେନ୍, ତିନି ବାସବଦତ୍ତା, କାଦମ୍ବରୀ ପ୍ରଭୃତିର ପ୍ରଣୟନେ ଗୌରବବୋଧ କରିତେ ଲାଗିଲେନ । ଶେଷେ ସେ କ୍ଷମତା ଓ ଗେଲା ବ୍ରାହ୍ମଣ ଦିଗେର ମାନସକ୍ଷେତ୍ର ମରୁଭୂମି ହଇଲ ।' (ପୃ-୨୬୩) । ଫକୀରମୋହନ ଛ'ମାଣ ଆଠଗୁଣ୍ଠର ପରିଚ୍ଛେଦ-୧୦ (ଭଗିଆ ଆଉ ସାରିଆ)ରେ ବ୍ରାହ୍ମଣମାନଙ୍କ ଲକ୍ଷଣ ସମ୍ପର୍କରେ ସୂଚନା ଦେଇ ଲେଖିଛନ୍ତି-

ଶୁଣ ପରୀକ୍ଷ ନରନାଥ । ତାମ୍ପଡ଼ା ଶୁଖୁଆ ପଖାଳ ଭାତ ।
ସି-ଅକ୍ଷର ବିବର୍ଜିତ । ଚିତା ପଇତାଦି ଶୋଭିତ
ବିଲ ବାଛିବାକୁ ଆଗ । ଦହି ଚୁଡ଼ାକୁ ବାଘ
ସନ୍ଧ୍ୟା-ଗାୟତ୍ରୀ ହୀନ । ବିଲରୁ ଚିପନ୍ତି ମୀନ
ପୋଥିରୁ ନ ଫିଟେ ଡୋରି । ଯଜମାନ ଚାଉଳ-ଚୋରି
ସଭାରେ ନ ଫିଟେ ପାଟି । ନାମଟି ସୁନ୍ଦର ତ୍ରିପାଠୀ ।

ସେହିପରି ପରିଚ୍ଛେଦ ୯ (ଗାଁ ହାଲଚାଲ)ରେ ବ୍ରାହ୍ମଣ ସାଇର ବର୍ଣ୍ଣନାରେ କହିଛନ୍ତି × × ଏଇଟା ଗୋସାଇଁମାନଙ୍କ ବୈଠକ ଜାଗା । ନାସ ଶୁଙ୍ଘା, ଭାଙ୍ଗ ଘୋଟା, ଯଜମାନ ଘରକଥା, ଅରଜନ କଥା ଇତ୍ୟାଦି ଇତ୍ୟାଦି କଥାମାନ ସେହିଠାରେ ସମାଧାନ ହୁଏ । ଦିନେ ଦିନେ ସେଠାରେ ବଡ଼ ଗୋଳମାଳ ହୁଏ । ସେଦିନ ଯଜମାନ ଘରୁ ମିଳିଥିବା ଶ୍ରାଦ୍ଧ ଚାଉଳ ବା ସଭାମାନ୍ୟ ଦକ୍ଷିଣା ବାଣ୍ଟ ହେଉଥିବାର ସହଜରେ ଜଣାପଡ଼ିଥାଏ । ××ଆକାଶରେ ଶାଗୁଣା ଉଡ଼ିଲେ କେଉଁଠାରେ ମଢ଼ ପଡ଼ିଥିବାର ଯେପରି ଜଣାଯାଏ; ସେହିପରି ଦିନ ପହରବେଳେ ଗୋସାଇଁମାନେ ଚିତା ପଇତା ହୋଇ ପଲ ପଲ ବାହାରିଲେ କେଉଁ ଗାଁରେ ମନୁଷ୍ୟ ମରିଥିବାର ଲୋକେ ଅନୁମାନ କରନ୍ତି । ପାଣିଗ୍ରାହୀ ଭାଗବାଟିକ ମିଶି ଶାସନଭାଗ ଜମି ପାଞ୍ଚଶ ମାଣ ।

ତ୍ରିକାଳ ସଂଧ୍ୟାରେ ଆଶୀର୍ବାଦ କରି ଜମି ଭୋଗ ଦଖଲ କରିବା ନିମନ୍ତେ ମରହଟ୍ଟା ସୁବାଦାର ତମ୍ବା ପାଟିଆ ସନନ୍ଦ ଦେଇଅଛନ୍ତି ×××× ଗୋରୁଗାଈ ଖୋଜି ଆଣି ବାନ୍ଧିବା, ଗୁହାଳରେ ଧୂଆଁଦେବା, ହଳିଆଙ୍କୁ ପଖାଳ ପାଣିଦେବାରେ ସଂଧ୍ୟାବେଳଟା ଗଡ଼ିଯାଏ- ଭୂମିଦାତାଙ୍କୁ ଆଶୀର୍ବାଦ କରିବେ କେତେବେଳେ ? (ପୃ-୨୮-୨୯) ପୁଣି ପରିଚ୍ଛେଦ ୧୨ (ଅସୁରଦୀଘି)ରେ ଲେଖିଛନ୍ତି- ଗୋସାଇଁମାନେ ବରଷଯାକ ପିଣ୍ଡାରୁ ଓହ୍ଲାନ୍ତି ନାହିଁ, ବରଷକୁ ଥରେ ଶିଷ୍ୟ ଦୁଆରକୁ ଝାମ୍ପ ମାରନ୍ତି । (ପୃ-୪୬)

ଜମିଦାରୀ ଶୋଷଣପ୍ରଥା ସମ୍ପର୍କରେ ଉଭୟ ଲେଖକ ଚମତ୍କାର ଆଲୋଚନା କରିଛନ୍ତି । ଗରିବ ପ୍ରଜାଙ୍କଠାରୁ ଜମିଦାର ଓ ତାଙ୍କ ଗୁମାସ୍ତା ବିଭିନ୍ନ ଉପାୟରେ କିପରି ଶୋଷଣ କରନ୍ତି, ଉଭୟ ଲେଖକ ଜଣେ ଜଣେ କଳ୍ପିତ ବ୍ୟକ୍ତିଙ୍କ ଉଦାହରଣ ମାଧ୍ୟମରେ ତାହା ପ୍ରକାଶ କରିଛନ୍ତି । ବଙ୍କିମ ଚନ୍ଦ୍ର ଲେଖିଛନ୍ତି- "ପରାଣ ମଣ୍ଡଳେର ପୌଷେର କିସ୍ତି ପାଞ୍ଚଟାକା; ଚାରି ଟାକା ଦିୟାଛେ, ଏକ ଟାକା ବାକି ଆଛେ । ଆର ଚୈତ୍ରେର କିସ୍ତି ତିନିଟାକା । ମୋଟେ ଚାରି ଟାକା ସେ ଦିତେ ଆସିୟାଛେ । ଗୋମସ୍ତା ହିସାବ କରିତେ ବସିଲେନ୍ । ହିସାବ କରିୟା ବଲିଲେନ୍ 'ତୋମାର ପୌଷେର କିସ୍ତି ତିନ୍‌ଟାକା ବାକି ଆଛେ ।' ପରାଣ ମଣ୍ଡଳ ଅନେକ ଚିତ୍କାର କରିଲ- ଦୋହାଇପାଡ଼ିଲ- ହୟତ ଦାଖିଲା ଦେଖାଇତେ ପାରିଲ, ନୟତ ନା । ହୟତ୍ ଗୋମସ୍ତା ଦାଖିଲା ଦେୟ ନାଇ, ନୟତ ଚାରିଟାକା ଲଇୟା, ଦାଖିଲାୟ ଦୁଇଟାକା ଲେଖିୟା ଦିୟାଛେ । ଯାହା ହଉକ, ତିନ୍ ଟାକା ବାକି ସ୍ୱୀକାର ନା କରିଲେ ସେ ଆଖିରି କବଚ ପାୟନା । ହୟତ୍ ତାହା ନାଦିଲେ ଗୋମସ୍ତା ସେଇ ତିନ୍ ଟାକାକେ ତେର ଟାକା କରିୟା ନାଲିସ୍ କରିବେ । ସୁତରାଂ ପରାଣମଣ୍ଡଳ ତିନ୍‌ଟାକା ବାକି ସ୍ୱୀକାର କରିଲ । ମନେକର ତିନ୍ ଟାକାଇ ତାହାର ଯଥାର୍ଥ ଦେନା । ତଖନ ଗୋମସ୍ତା ସୁଦ କଷିଲ । ଜମିଦାରୀ ନିରିଖ ଟାକାୟ ଚାରିଆନା । ତିନ୍ ବତ୍ସରେ ଓ ଚାରିଆନା, ଏକ ମାସେ ଓ ଚାରିଆନା । ତିନି ଟାକା ବାକିର ସୁଧ ଦଶଆନା । ପରାଣ ତିନ୍ ଟାକା ବାରଆନା ଦିଲ । ପରେ ଚୈତ୍ର କିସ୍ତି ତିନିଟାକା ଦିଲ । ତାହାର ପରେ ଗୋମସ୍ତାର ହିସାବାନା । ତାହା ଟାକାୟ ଦୁଇ ପୟସା । ପରାଣ ମଣ୍ଡଳ ୩୨ ଟାକାର ଜମା ରାଖେ । ତାହାକେ ହିସାବାନା ୧ ଟାକା ଦିତେ ହଇଲ । ତାହାର ପର ପାର୍ବଣି । ନାଏବ ଗୋମସ୍ତା, ତହସିଲଦାର, ମୁହରି, ପାଇକ, ସକଲେଇ ପାର୍ବଣିର ହକଦାର ।' (ପୃ-୨୫୪) ଛ'ମାଣ ଆଠଗୁଣ୍ଠର ଦ୍ୱିତୀୟ ପରିଚ୍ଛେଦ (ସ୍ୱନାମ ପୁରୁଷୋଧନ୍ୟଃ)ରେ ଫକୀରମୋହନ ସେହିପରି ଏକ ଉଦାହରଣ ଦେଇ ଲେଖିଛନ୍ତି- 'ଗଲା ଅଙ୍କ ପାଞ୍ଜିଆ ଯେ ସାଲତମାମି ଦାଖଲ କରିଥିଲା, ସେଥିରେ ମହାଜନୀ କରଜାରେ ଆଠଟଙ୍କା ଛଅଅଣା ଦୁଇକଡ଼ା ଦୁଇକ୍ରାନ୍ତି ଛାଡ଼ ତଳେ ପଡ଼ିଥିବାର ଦେଖାଯାଇଅଛି । ଏତେଗୁଡ଼ାଏ ଟଙ୍କା ଛାଡ଼ ସକାଶେ ପାଞ୍ଜିଆ ଗାଳି ଖାଇ ଯେଉଁପରି କୈଫିୟତ୍ ଦେଇଥିଲେ, ସେଥିର ସାରମର୍ମ ଏହି ଭିକାରୀ ପଣ୍ଡା କରଜ ନେବାର ମୂଳ ପାଞ୍ଚ ଟଙ୍କା, ସେଥିରେ କଳନ୍ତର

ଚକ୍ରବୃଦ୍ଧି ପ୍ରମାଣେ ବାର ଟଙ୍କା ପାଞ୍ଚ ଅଣା ଏଗାର ଗଣ୍ଡା ଦୁଇ କଡ଼ା । ଗାଏ ଦୁଇପଦକୁ ମୋଟ ଓ ଆଦାୟ ସତର ଟଙ୍କା ପାଞ୍ଚ ଅଣା ଦୁଇ ପଇସା ବାଦେ ବାକୀ ଛାଡ଼ ଦେଢ଼ ଗଣ୍ଡା' (ପୃ-୬) । ସେହିପରି ଧାନ ଦେଇ ଜମିଦାରମାନେ କିପରି ପ୍ରଜାମାନଙ୍କଠାରୁ ଦେଢ଼ି ସୁଧ ଆଦାୟ କରୁଥିଲେ ତାର ଉଲ୍ଲେଖ କରି ବଙ୍କିମଚନ୍ଦ୍ର ଲେଖିଛନ୍ତି- ''ବର୍ଷାକାଳେ ଧାର କରିୟା ଖାଇୟାଛେ, ମହାଜନ୍‌କେ ତାହା ପରିଶୋଧ କରିତେ ହଇବେ । କେବଳ ପରିଶୋଧ ନହେ, ଦେଢ଼ି ସୁଦ ଦିତେ ହଇବେ । ଶ୍ରାବଣ ମାସେ ଦୁଇ ବିଶ ଧାନ ଲଇୟାଛେ ବଲିୟା, ପୌଷ ମାସେ ତିନି ବିଂଶ ଦିତେ ହଇବେ । (ପୃ ୨୫୪) । ଛ'ମାଣ ଆଠଗୁଣ୍ଠ'ର ଦ୍ୱିତୀୟ ପରିଚ୍ଛେଦରେ ଫକୀରମୋହନ ଲେଖିଛନ୍ତି- ''ମଙ୍ଗରାଜଙ୍କ ମୁହଁରୁ ଅନେକଥର ଶୁଣାଯାଇଅଛି ସେ କେବଳ ପରର ବିକଳ ସହି ନ ପାରି ଧାନ ଟଙ୍କା କରଜ ଦିଅନ୍ତି । ନୋହିଲେ ସେଥିରେ ତାଙ୍କର ନିଜର ଲାଭ କିଛି ନାହିଁ । ଆମ୍ଭେମାନେ କହୁ, ବରଞ୍ଚ ଲୋକସାନ । ଧାନ ଦେଢ଼ିରୁ ବେଶି କରଜା ନାହିଁ, ଏଥିରେ ଲାଭ କ'ଣ ? ଦିଅନ୍ତି ଶୁଖିଲା ପୁରୁଣା ଧାନ, ନେବାବେଳକୁ ନୂଆ କଞ୍ଚା ।'' (ପୃ-୬) ପୂଜାପାର୍ବଣରେ ଜମିଦାରମାନେ ପ୍ରଜାମାନଙ୍କଠାରୁ କିପରି ଭେଟି ଗ୍ରହଣ କରନ୍ତି, ସମାଜ ବାସନ୍ଦ ବା ମିଥ୍ୟାଭୟ ଦେଖାଇ ଅଳ୍ପ ଅର୍ଥରେ ପ୍ରଜାମାନଙ୍କର ଜମି କିପରି କ୍ରୟ କରି ନିଅନ୍ତି, ଅଦାଲତରେ କେସ୍ କରି ପ୍ରଜାମାନଙ୍କୁ ହଇରାଣ କରନ୍ତି ଆଦିର ଚମତ୍କାର ବର୍ଣ୍ଣନା ଉଭୟ ଗ୍ରନ୍ଥରେ ପରିଲକ୍ଷିତ ହୋଇଥାଏ ।

ଚିରସ୍ଥାୟୀ ବନ୍ଦୋବସ୍ତ ଦ୍ୱାରା ଉଭୟ ବଙ୍ଗଦେଶ ଓ ଓଡ଼ିଶାରେ ଜମିଦାରମାନଙ୍କର ଶକ୍ତି ବୃଦ୍ଧି ଓ ତଦ୍‌ଜନିତ କାରଣରୁ ପ୍ରଜାଶୋଷଣ ଉଭୟ ଗ୍ରନ୍ଥର ଉପଜୀବ୍ୟ ବିଷୟ । 'ବଙ୍ଗ ଦେଶେର କୃଷକ' ପ୍ରବନ୍ଧ ହୋଇଥିବାରୁ ନୀରସ ଓ ବିବରଣଧର୍ମୀ; ମାତ୍ର ଛ'ମାଣ ଆଠଗୁଣ୍ଠ ଉପନ୍ୟାସ ହୋଇଥିବାରୁ ସରସ ଓ କଳାଧର୍ମୀ । କିନ୍ତୁ ଉପରୋକ୍ତ ଉଭୟ ପ୍ରବନ୍ଧ ଏବଂ ଉପନ୍ୟାସର ଭିତ୍ତିଭୂମି ସେହି ଏକପ୍ରକାର ଭୂମି ସମସ୍ୟା । ପ୍ରାସଙ୍ଗିକ କ୍ରମେ ଅନ୍ୟାନ୍ୟ ଘଟଣାଗୁଡ଼ିକ ଏହାର କଳେବରକୁ ପୁଷ୍ଟ ଓ ସରସ କରିବାରେ ସହାୟତା କରିଛି ।

॥ ୫ ॥

ଫକୀରମୋହନ ସେନାପତିଙ୍କ 'ଛ'ମାଣ ଆଠଗୁଣ୍ଠ' ନିଶ୍ଚିତ ଭାବରେ ଓଡ଼ିଆ ସାହିତ୍ୟରେ ଏକ କ୍ରାନ୍ତିକାରୀ ସୃଷ୍ଟି । ଫକୀରମୋହନ ଲେଖନୀ ଚାଳନାରେ ହାତ ଦେବା ବେଳକୁ ବଙ୍ଗଳା ସାହିତ୍ୟ ବହୁ ପରିମାଣରେ ସମୃଦ୍ଧି ଲାଭ କରିସାରିଥିଲା । ଭାରତୀୟ ଅନ୍ୟାନ୍ୟ ଭାଷାଭାଷୀ ସ୍ରଷ୍ଟାଙ୍କ ସମ୍ମୁଖରେ ତେଣୁ ବଙ୍ଗଳା ଲେଖକମାନେ ଥିଲେ ଆଦର୍ଶ । ଫକୀରମୋହନ ବଙ୍ଗଳା ଭାଷା ସହିତ ପରିଚିତ ହେବା ସଙ୍ଗେ ସଙ୍ଗେ ସେହି ଭାଷାର ବହୁ ପୁସ୍ତକ ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିଲେ । କାବ୍ୟ-କବିତା କ୍ଷେତ୍ରରେ ବଙ୍ଗାଳୀ କବି ନବୀନ ଚନ୍ଦ୍ର ସେନ୍ ଓ ଗଦ୍ୟ ସାହିତ୍ୟରେ ବଙ୍କିମ ଚନ୍ଦ୍ର ଥିଲେ ତାଙ୍କର ପ୍ରିୟ ଲେଖକ । ତେଣୁ ତାଙ୍କ ଉଭୟ କାବ୍ୟ-କବିତା ଓ କଥା ସାହିତ୍ୟ ବଙ୍ଗଳା ସାହିତ୍ୟ ଦ୍ୱାରା ପ୍ରଭାବିତ ହେବା ଅସ୍ୱାଭାବିକ ନୁହେଁ । 'ଛ'ମାଣ

ଆଠଗୁଣ୍ଠ'. ଅନ୍ୟ କୌଣସି ଭାଷାର ଅନ୍ଧାନୁକୃତି ନୁହେଁ; ମାତ୍ର ବିଭିନ୍ନ ପ୍ରଭାବର ସଙ୍କେତ ଏଥିରେ ସ୍ପଷ୍ଟ । ଏହି ଉପନ୍ୟାସଟିର ବିଷୟବସ୍ତୁ ଲାଲବିହାରୀ ଦେ'ଙ୍କ Bengal peasant life ବର୍ଣ୍ଣନାବିଳାସ ବଙ୍କିମ ଚନ୍ଦ୍ରଙ୍କ 'ବିଷବୃକ୍ଷ' ଓ ଭିତ୍ତିଭୂମି 'ବଙ୍ଗଦେଶେର କୃଷକ'ରୁ ଗୃହୀତ ହୋଇଥିବା ମନେହୁଏ । ଛ'ମାଣ ଆଠଗୁଣ୍ଠ ଉପନ୍ୟାସ ଅନ୍ତରାଳରେ Bengal Peasant life. ବିଷବୃକ୍ଷ ଓ ବଙ୍ଗଦେଶେର କୃଷକର ପ୍ରଭାବ ରହିଥିଲେହେଁ, ଫକୀରମୋହନଙ୍କର ମୌଳିକତାର ସ୍ୱାକ୍ଷର ଏଥିରେ ଅସ୍ପଷ୍ଟ ନୁହେଁ । ସମସ୍ତ ବାହ୍ୟ ପ୍ରଭାବକୁ ଆତ୍ମସାତ୍ କରି ଫକୀରମୋହନ ଏହି ସୃଷ୍ଟିଟିକୁ ଏକ କ୍ଲାସିକ୍ ସୃଷ୍ଟିର ମର୍ଯ୍ୟାଦା ପ୍ରଦାନ କରିପାରିଛନ୍ତି । ଏହାହିଁ ଫକୀରମୋହନଙ୍କର ଅନନ୍ୟ ସାଧାରଣ ପ୍ରତିଭାର ଯଥାର୍ଥ ନିଦର୍ଶନ ।

## ସହାୟକ ଗ୍ରନ୍ଥ ପଞ୍ଜିକା


୧ । ଚାଟର୍ଜୀ ବଙ୍କିମ ଚନ୍ଦ୍ର- ବଙ୍ଗଦେଶେର କୃଷକ; ବଙ୍କିମ ରଚନାବଳୀ- Vol - II, ଆଶ୍ୱିନ ୧୪୦୧, ଦ୍ୱାଦଶ ସଂସ୍କରଣ ଶିଶୁ ସାହିତ୍ୟ ସଂସଦ, ପ୍ରା.ଲି.- ୩୨-ଏ, ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରୋଡ, କଲିକତା-୯ ।

୨ । ଦାସ ବନମାଳୀ- ଝଙ୍କାର, ନଭେମ୍ବର ୧୯୯୫ ।

୩ । ଦାସ ଦାଶରଥି- ଛ'ମାଣ ଆଠଗୁଣ୍ଠ (ସମ୍ପାଦନା), ଅଗ୍ରଦୂତ, କଟକ-୨, ୧୯୯୬ ।

୪ । Das, Sisir Kumar- A History of Indian Literature- Vol-VIII-Sahitya Academy, New Delhi

୫ । Day, Lal Behari-Bengal peasant life, Calcutta Book Society of India. 1970

୬ । ଭୂୟାଁ କୃଷ୍ଣଚନ୍ଦ୍ର- ଝଙ୍କାର, ଜାନୁଆରୀ ୧୯୯୭ ।

୭ । ମିଶ୍ର ପୂର୍ଣ୍ଣଚନ୍ଦ୍ର- 'ଛ' ମାଣ ଆଠଗୁଣ୍ଠ ରଚନାର ଅନ୍ତରାଳେ; ସାରସ୍ୱତ ପରିକ୍ରମା, ଓଡ଼ିଆ ବିଭାଗ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ- ୧୯୯୩ ।

୮ । Mohapatra Himansu Sekhar & Nayak Jatindra Kumar- Writing Peasant life in colonial India- A comparative Analysis of Rev. Lal Behari Day's Bengal peasant life and Fakirmohan Senapati's Chhamana Athguntha. Jadavpur journal of comparative literature, Vol-32, 1994-95. Deptt of Comp. Literature, Jadavpur University, Calcutta.

୯ । ସାହୁ କୃଷ୍ଣଚରଣ- ଝଙ୍କାର, ଏକାଦଶ ବର୍ଷ ୯ମ ସଂଖ୍ୟା ।

୧୦ । ସିଂହରାୟ ଜୀବେନ୍ଦ୍ର- ଆଧୁନିକ ବାଂଲା ଗୀତିକବିତା । ପ୍ରାଇମା ପବ୍ଲିକେଶନ୍ସ, ୧୦ ଶ୍ୟାମାଚରଣ ଦେ ଷ୍ଟ୍ରୀଟ୍, କଲିକତା-୧୨, ୧୯୬୫ ।

୧୧ । ଷଡ଼ଙ୍ଗୀ ନୃସିଂହ- ବିଶ୍ୱ ସାହିତ୍ୟରେ ଫକୀରମୋହନ । ଓଡ଼ିଶା ବୁକ୍‌ଷ୍ଟୋର୍- ୧୯୯୧ ।

# ରାଧାନାଥଙ୍କ କାବ୍ୟକବିତାରେ ରୋମାଣ୍ଟିକ୍ ଚେତନା

ଓଡ଼ିଆ ସାହିତ୍ୟରେ କେତେକ ଆଲୋଚକ ମଧ୍ୟଯୁଗର ବିଶିଷ୍ଟ କବି ଉପେନ୍ଦ୍ର ଭଞ୍ଜଙ୍କ ସୃଷ୍ଟିରେ ରୋମାଣ୍ଟିକ୍ ଭାବଚେତନାକୁ ଲକ୍ଷ୍ୟ କରିଥିଲେ ହେଁ ରୋମାଣ୍ଟିକ୍ ସାହିତ୍ୟ ଦୃଷ୍ଟିରୁ ବିଚାର କଲେ ରାଧାନାଥ ରାୟ ହେଉଛନ୍ତି ବାସ୍ତବରେ ପ୍ରଥମ ଓଡ଼ିଆ ରୋମାଣ୍ଟିକ୍ କବି । ପାଶ୍ଚାତ୍ୟ ସାହିତ୍ୟରୁ ହିଁ ଓଡ଼ିଆ ସାହିତ୍ୟକୁ ରୋମାଣ୍ଟିକ୍ ଭାବପ୍ରବାହ ଗଡ଼ିଆସିଛି ଓ ରାଧାନାଥଙ୍କ ସୃଷ୍ଟିରେ ତାହା ପରିପକ୍ୱତା ଲାଭ କରିଛି । ରାଧାନାଥଙ୍କ ସୃଷ୍ଟି ପର୍ଯ୍ୟାଲୋଚନା ପୂର୍ବରୁ ରୋମାଣ୍ଟିକ୍ ଶବ୍ଦର ଅର୍ଥ ଓ ତାର ଲକ୍ଷଣ ସମ୍ବନ୍ଧରେ ସାମାନ୍ୟ ଆଲୋକପାତ କରିବା ପ୍ରାସଙ୍ଗିକ ହେବ ।

ରୋମାଣ୍ଟିକ୍ ଚେତନା ସ୍ରଷ୍ଟାର ଏକ ମାନସିକ ଚିତ୍ତବୃତ୍ତି । ଏହାର ଦୃଷ୍ଟି ଭୂମିରୁ ଭୂମା, ପରିଚିତ ମାଟିରୁ ଅପରିଚିତ ଆକାଶକୁ । ସୌନ୍ଦର୍ଯ୍ୟ, ପ୍ରେମ, ରହସ୍ୟାତ୍ମକ ଆନନ୍ଦାନୁଭୂତି ଏହା ମଧ୍ୟରେ ଦ୍ୟୋତିତ । ସୃଷ୍ଟିଶୀଳତା ସହିତ ଏହାର ସଂପର୍କ ଅତୀବ ନିବିଡ଼ । ସୌନ୍ଦର୍ଯ୍ୟବୋଧ ପ୍ରତି ଥିବା ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ହିଁ ରୋମାଣ୍ଟିକ୍ ଚେତନା । ଏହି ଦୃଷ୍ଟିଭଙ୍ଗୀ ସୃଷ୍ଟି ହୋଇଥାଏ ସ୍ରଷ୍ଟାର ଜୀବନ ଓ ଜଗତର ଅବବୋଧ ତଥା କଳ୍ପନା ଶକ୍ତିରୁ । ପ୍ରେମାବେଗ ଏବଂ ସୌନ୍ଦର୍ଯ୍ୟାନୁଭୂତିଦ୍ୱାରା ଏହା ପରିପୁଷ୍ଟି ଲାଭକରେ । ସେଥିପାଇଁ କାର୍ଲାଇଲ୍ କହିଥିଲେ - "Romanticism is the star that weeps, it is the wind that wails, it is the night that shudders, the bird that flies and the flower that breathes perfume, it is the sudden gush, ecstasy grown faint, the cistern-beneath the Palms, rosy hopes with her thousand loves, the angel and the Pearl the white robe of the willows (willous). It is the infinite and the stary". ବିଭିନ୍ନତା ଓ ବୈଚିତ୍ର୍ୟ ଏହାର ପ୍ରାଣ ସ୍ୱରୂପ । ଧରାବନ୍ଧା ଗତାନୁଗତିକ ପଦ୍ଧତି ପ୍ରତି ପରାଙ୍ମୁଖ । ବୈୟକ୍ତିକତାର ପ୍ରାଧାନ୍ୟ, ଇନ୍ଦ୍ରିୟଗ୍ରାହ୍ୟ ଚାକ୍ଷୁଷ ସୌନ୍ଦର୍ଯ୍ୟ ପ୍ରତି ଅଧିକ ଧ୍ୟାନ, ସାହସିକତାର ଆକର୍ଷଣ,

ବୀରତ୍ୱ ବିସ୍ମୟ ଉଦ୍ଦୀପକ କାର୍ଯ୍ୟ, ଅଲୌକିକତା, ସ୍ୱପ୍ନ ଓ ଅବଚେତନର ରୂପାୟନରେ ବ୍ୟଗ୍ରତା, ପ୍ରକୃତିର ବିପୁଳ ବୈଚିତ୍ର୍ୟ ପ୍ରଦର୍ଶନରେ ନିପୁଣତା, ମାନବିକତା ପ୍ରତି ଗୁରୁତ୍ୱ ଆରୋପ, ଚିତ୍ତର ମୁକ୍ତି ଓ ଚିନ୍ତାରୁ ନିଷ୍କୃତି, ଆଧ୍ୟାତ୍ମିକତା, କୌତୂହଳତା, କ୍ଷୁବ୍‌ଧତା, ଦୁଃସାହସିକତା, ଚମକ ଓ ଉତ୍ତେଜନା ରୋମାଣ୍ଟିକ୍ ସାହିତ୍ୟର ବିଶିଷ୍ଟ ଗୁଣ ।[୧] ଜୀବନକୁ କଳ୍ପନାଦ୍ୱାରା କବିତ୍ୱମୟୀ ଭାଷାରେ ସରଳରୂପେ ବର୍ଣ୍ଣନା କରିବା ହିଁ ରୋମାଣ୍ଟିସିଜିମ୍‌ର ଲକ୍ଷ୍ୟ ।[୨] ରୋମାଣ୍ଟିକ୍ ସାହିତ୍ୟର ଲକ୍ଷଣ ରୂପେ ଯେଉଁ କେତେକ ବୈଶିଷ୍ଟ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ ତନ୍ମଧ୍ୟରେ ମୁଖ୍ୟ ହେଉଛି - କଳ୍ପନାପ୍ରବଣତା, ପ୍ରକୃତିଚେତନା, ଅଲୌକିକତା, ପ୍ରେମ ଓ ସୌନ୍ଦର୍ଯ୍ୟବୋଧ, ଅତୀତ ପ୍ରବଣତା, ବ୍ୟକ୍ତିକତା, ବିଷାଦବାଦ, ରୂପକଳ୍ପ, ରହସ୍ୟବୋଧ ଓ ସାଙ୍ଗୀତିକତା ଆଦି ମୁଖ୍ୟ । ରାଧାନାଥଙ୍କ ସୃଷ୍ଟି ସମ୍ପଦରେ ଉପରୋକ୍ତ ବୈଶିଷ୍ଟ୍ୟଗୁଡ଼ିକ କିପରି ରୂପଲାଭ କରିଛି, ନିମ୍ନ ଆଲୋଚନାରୁ ତାହା ପ୍ରତିପାଦିତ ହୋଇପାରିବ ।

**କଳ୍ପନାପ୍ରବଣତା**

କଳ୍ପନା ହିଁ ରୋମାଣ୍ଟିକ୍ କବିମାନଙ୍କର ମୌଳିକ ଉପାଦାନ । କଳ୍ପଲୋକ ସହିତ ଦୃଶ୍ୟମାନ ଜଗତର, ଅସୀମ ସହିତ ସସୀମର ଯୋଗସୂତ୍ର ସ୍ଥାପନ କ୍ଷେତ୍ରରେ କଳ୍ପନା ହିଁ କବିଙ୍କୁ ସହାୟତା କରିଥାଏ । କଳ୍ପନା ବ୍ୟତିରେକେ ସାହିତ୍ୟ ସୃଷ୍ଟି ଅସମ୍ଭବ । ସେଇଥିପାଇଁ ଇଂରାଜୀ ଆଲୋଚକ ହେଜ୍‌ଲିଟ୍ କହିଛନ୍ତି - "Poetry is the language of imagination and passion." ସ୍ରଷ୍ଟାର ବ୍ୟକ୍ତିସତ୍ତା ସହିତ ଏହାର ନିଗୂଢ଼ ସମ୍ବନ୍ଧ ବିଦ୍ୟମାନ । ରୋମାଣ୍ଟିକ୍ କବିଗଣ କଳ୍ପଲୋକ ଜଗତକୁ ବାସ୍ତବ ଜଗତ ରୂପେ ଗ୍ରହଣ କରନ୍ତି । କବି ବ୍ଲେକ୍ କଳ୍ପନା ଶକ୍ତି ଓ ଈଶ୍ୱରଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖି ନାହାନ୍ତି । କଳ୍ପନାଶକ୍ତିଦ୍ୱାରା କବି ଚିହ୍ନା ସହିତ ଅଚିହ୍ନାର, ସାଧାରଣ ଜଗତ ସହ ଅସାଧାରଣ ଜଗତର ସଂପର୍କ ସ୍ଥାପନ କରନ୍ତି । ବ୍ଲେକ୍‌ଙ୍କ ସ୍ୱୀକାରୋକ୍ତି ଏ କ୍ଷେତ୍ରରେ ପ୍ରଣିଧାନଯୋଗ୍ୟ - "The world of imagination is the world of Eternity, it is the divine bosom into which we shall all go after the death of vegitated body. This world of imagination is infinite and Eternal, whereas the world of Generation of vegetation is Finite and Temporal ।"[୩] କଲେରିଜ୍, କୀଟ୍‌ସ, ଶେଲୀ, ୱାର୍ଡସ୍‌ୱାର୍ଥ ଆଦି ପ୍ରସିଦ୍ଧ କବିଗଣ କଳ୍ପନାଶକ୍ତି ଉପରେ ଗୁରୁତ୍ୱ ଦେଇଥାନ୍ତି । ଶେଲୀ କବିତାକୁ କଳ୍ପନାଶକ୍ତିର ପରିପ୍ରକାଶ ବୋଲି ମତବ୍ୟକ୍ତ କରିଛନ୍ତି । କବି କୀଟ୍‌ସଙ୍କ ସୌନ୍ଦର୍ଯ୍ୟାନୁଭୂତି ମୂଳରେ ଏହି କଳ୍ପନାଶକ୍ତିର ଗୁରୁତ୍ୱହିଁ ବିଦ୍ୟମାନ । ଉଚ୍ଚତର କଳାକୁଶଳତା ଏବଂ ହୃଦୟର ଗଭୀର ଆଲୋଡ଼ନ କଳ୍ପନାଦ୍ୱାରା ହିଁ ଭାଷାରେ ପ୍ରକାଶଲାଭକରି କବିତାର ରୂପ ଗ୍ରହଣ କରିଥାଏ । ଏହି କାରଣରୁ ରୋମାଣ୍ଟିକ୍ କବିଗଣ କଳ୍ପନାବିଳାସୀ ।

ଓଡ଼ିଆ କବି ରାଧାନାଥ ଏହି କଳ୍ପନାଚକ୍ଷୁ ବଳରେ ଦୃଶ୍ୟଜଗତ୍ ସହିତ ଅଦୃଶ୍ୟଜଗତ୍‌ର, ଇନ୍ଦ୍ରିୟ ଜଗତ୍ ସହିତ ଅତୀନ୍ଦ୍ରିୟ ଜଗତ୍‌ର ସମନ୍ୱୟ ସ୍ଥାପନ କରିଛନ୍ତି । ପାଶ୍ଚାତ୍ୟ କାହାଣୀ ସହିତ ପ୍ରାଚ୍ୟ ଜଗତ୍‌ର ପୁରାଣ, ଇତିହାସ, କିମ୍ୱଦନ୍ତୀ ଓ ଭୂଗୋଳକୁ ସମ୍ମିଶ୍ରିତ କରି ସ୍ୱ କଳ୍ପନାବିଳାସର ଯଥାର୍ଥ ନିଦର୍ଶନ ପ୍ରତିପାଦନ କରିଛନ୍ତି । ନାରୀରୂପ ବର୍ଣ୍ଣନା, ପ୍ରକୃତିର ଅପରୂପ ଆଲେଖ୍ୟ, ଭୌଗୋଳିକ ବିବରଣୀ ପ୍ରଦାନ ଅବକାଶରେ ଏହି କଳ୍ପନାଶକ୍ତିର ଯଥାର୍ଥ ବିନିଯୋଗ ହୋଇଛି । 'ଚନ୍ଦ୍ରଭାଗା' କାବ୍ୟରେ ଚନ୍ଦ୍ରଭାଗାର ନୀଳସାଗର ଗର୍ଭରେ ମିଶିଯିବାକୁ କବି କଳ୍ପନାବଳରେ ଆତ୍ମାର ପରମାତ୍ମା ସହିତ ମିଳନକୁ ସୂଚାଇଛନ୍ତି ।

"ମିଶିଯାଏ ଯଥା ପ୍ରଭାତୀ ତାରା ରବିକିରଣେ
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱ ଆତ୍ମା ଚରଣେ
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେଇ ନୀଳ ତରଙ୍ଗେ ।"

ଚିଲିକା ପରି ସାମାନ୍ୟ ହ୍ରଦଟିଏ କବି କଳ୍ପନାବଳରେ ଚିରନ୍ତନ ରୂପଲାଭ କରିଛି । ତେଣୁ ଚିଲିକା ଏକ ହ୍ରଦ ନ ହୋଇ କାବ୍ୟନାୟିକାରେ ପରିଣତ ହୋଇଛି । ପୁନରାୟ ହିମାଦ୍ରିର ତୁଷାରାଚ୍ଛାଦିତ ରୂପ ମଧ୍ୟରେ କବି ମହାଦେବଙ୍କ ରୂପର ଯେଉଁ ସାମ୍ୟ ପ୍ରଦର୍ଶନ କରିଛନ୍ତି, ତାହା ତାଙ୍କ କଳ୍ପନାଶକ୍ତିର ଦ୍ୟୋତକ ।

"ନିସ୍ତବ୍ଧ ନୀରବ ସେ ମହାବିଜନେ
ସନାତନ ଶ୍ୱେତ ତୁଷାର ଆସନେ ।
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି
ପଡ଼ିଲା ସେ ରୂପେ ଚିତ୍ତବୃତ୍ତି ଥକି ।"

ନାରୀ ରୂପ ବର୍ଣ୍ଣନା କ୍ଷେତ୍ରରେ କବି କଳ୍ପନା ଆକାଶ ସ୍ପର୍ଶ କରିଛି । ଚନ୍ଦ୍ରଭାଗା ଲଲାଟର ସିନ୍ଦୂରବିନ୍ଦୁକୁ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଛନ୍ତି -

ଅର୍ଦ୍ଧେନ୍ଦୁ ଲଲାଟେ ସିନ୍ଦୂର ବିନ୍ଦୁ ରମଇ ଆଖି
ନୁହଁଇ ସିନ୍ଦୂର ରହିଛି ସ୍ମର ହୃଦୟ ଲାଖି ।

ସେହିପରି 'ଉଷା'ର ନୟନଭଙ୍ଗୀର ଶୋଭା ବର୍ଣ୍ଣନା କରି ରାଧାନାଥ ଲେଖିଛନ୍ତି -

"ବୃଥା ହାଣୁଥିଲା ମୃଗୀ ଅଙ୍ଗେ ବାଣ ସିନା ସୁନ୍ଦରୀ
ଚାହାଣି ଭଙ୍ଗୀରୁ ଥିଲେ ସେହି ଯେଣୁ ଆଗହୁଁ ମରି ।"

## ପ୍ରକୃତି ଚେତନା

ସରଳ ଓ ପ୍ରାକୃତିକ ଜୀବନଯାପନ ପ୍ରତି ରୋମାଣ୍ଟିକ୍ କବିମାନେ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ପଲ୍ଲୀପ୍ରାଣତା ଓ ପ୍ରକୃତିପ୍ରାଣତା ରୋମାଣ୍ଟିକ୍ କବିତାଗୁଡ଼ିକର ଅନ୍ୟତମ ବିଶେଷତ୍ୱ । ସହର ଜୀବନର ଚଳଚଞ୍ଚଳତା ଓ ଆବର୍ଜନାରୁ ମୁକ୍ତିଲାଭ କରି ପ୍ରକୃତିର ଶାନ୍ତସ୍ନିଗ୍ଧ କୋଳରେ ଆଶ୍ରୟ ନେବାକୁ ଏମାନେ ବିଶେଷ ଆଗ୍ରହୀ । ଶିଳ୍ପ ବିପ୍ଳବ ପରେ ନଗର ସଭ୍ୟତାର ବିକାଶଦ୍ୱାରା ମଣିଷ କ୍ରମଶଃ ଆତ୍ମକୈନ୍ଦ୍ରିକ ହୋଇପଡ଼ିଲା । ଜୀବିକା ଉଦ୍ଦେଶ୍ୟରେ ଗ୍ରାମର ସରଳ ମଣିଷ ସହରାଭିମୁଖୀ ହେଲା । ପଲ୍ଲୀର ଜୀବନଯାତ୍ରା ଧୀରେ ଧୀରେ ଫିକା ପଡ଼ିବାକୁ ଆରମ୍ଭ କଲା । ବ୍ୟକ୍ତିକୈନ୍ଦ୍ରିକ ମଣିଷମାନଙ୍କର ଏହି ସ୍ୱାର୍ଥପ୍ରବଣତାକୁ ଲକ୍ଷ୍ୟ କରି ରୁଷୋ ଘୋଷଣା କଲେ, " ପ୍ରକୃତି କୋଳକୁ ପ୍ରତ୍ୟାବର୍ତ୍ତନ ପାଇଁ (Return to nature) ରୋମାଣ୍ଟିକ୍ ସାହିତ୍ୟ ସ୍ରଷ୍ଟା ଏହି ଆହ୍ୱାନକୁ ଗ୍ରହଣ କରି ପ୍ରକୃତି ସହିତ ନିବିଡ଼ ସମ୍ବନ୍ଧ ସ୍ଥାପନ କଲେ । ପ୍ରକୃତି କେବଳ ଏକ ଜଡ଼ବସ୍ତୁ ହୋଇ ରହିଲା ନାହିଁ । ସେଥିରେ ଜୀବନୀଶକ୍ତିର ଆରୋପ କରାଗଲା । ସେ ପରିଚିତ ହେଲା ଏକ ଗତିଶୀଳ ଅସ୍ତିତ୍ୱ ରୂପେ । ୱାର୍ଡ଼ସ୍‌ୱାର୍ଥ, କୀଟ୍‌ସ ଆଦିଙ୍କ କବିତାରେ ପ୍ରକୃତି ଅଦ୍ଭୁତ ଓ ବୈଚିତ୍ର୍ୟମଣ୍ଡିତ ରୂପ ପରିଗ୍ରହଣ କଲା । ନଦୀ, ପର୍ବତ, ଉପବନ, ନିର୍ଝରିଣୀ, ବୃକ୍ଷଲତା - ସମସ୍ତେ ଯେପରି ବ୍ୟକ୍ତିତ୍ୱ ମଣ୍ଡିତ ହୋଇଉଠିଲେ । ପ୍ରକୃତି ଏକାଧାରରେ ଗ୍ରହଣ କଲା ଶିକ୍ଷକ, ସାଥୀ, ଉପଦେଶକ ଓ ନିର୍ଦ୍ଦେଶକର ଭୂମିକା । ୱାର୍ଡ଼ସ୍‌ୱାର୍ଥ ପ୍ରକୃତି ମଧ୍ୟରେ ଅନୁଭବ କଲେ ଅତିମାନବିକ ବସ୍ତୁର ପ୍ରତ୍ୟକ୍ଷ ଆବେଦନକୁ । ଏଡ଼ୱାର୍ଡ଼ ଆଲବର୍ଟ ତାଙ୍କ ସଂପର୍କରେ ତେଣୁ କହିଛନ୍ତି - "To Wordsworth nature is not only a procession of seasons and seasonal fruitation, it is the eye of all thing of all things, natural and super-natural, into which the observant soul can peer and behold the spirit that inhabits all things."[୪] ୱାର୍ଡ଼ସୱାର୍ଥଙ୍କ Lines written in early spring ରୁ ଏହି ପ୍ରସଙ୍ଗରେ ଏକ ପଦ ଉଦ୍ଧାର କରାଯାଇପାରେ -

> "To her fair works did nature link
> The human soul that through me ran
> And much it grieved my heart to think
> What man has made of man."

ଓଡ଼ିଆ ସାହିତ୍ୟରେ ରାଧାନାଥ ପ୍ରକୃତିର ନବରୂପକାର ପ୍ରକୃତି ପୁରୋଧା । ପ୍ରକୃତି ମଧ୍ୟରେ ସେ ପ୍ରଥମ କରି ଜୀବନସତ୍ତାର ଉପଲବ୍ଧି କଲେ । ପ୍ରକୃତିର ନିସର୍ଗ ଚିତ୍ର ପ୍ରଦାନ ସଂଗେ ସଂଗେ ସେଥିରେ ସେ ବ୍ୟକ୍ତିତ୍ୱର ଆରୋପ କଲେ ଏବଂ ପ୍ରକୃତି ସହିତ ଆତ୍ମୀୟତା ସ୍ଥାପନ କଲେ । 'ଚିଲିକା' ଖଣ୍ଡକାବ୍ୟର ନାୟିକା ସ୍ୱୟଂ ପ୍ରକୃତି । ସେ ପୁଣି ତାଙ୍କର ଅନ୍ତରଙ୍ଗ

ବାନ୍ଧବୀ, ସୁଖଦୁଃଖର ସାଥୀ । ଚିଲିକାକୁ ସମ୍ବୋଧନ କରି ତେଣୁ ସେ ଲେଖିଛନ୍ତି - ଗୁରୁପ୍ରାୟେ ତାଙ୍କୁ ଦୂରୁକରି ଭୀତି ସଖିପ୍ରାୟେ ତୋତେ ସ୍ମରୁଥିଲି ନିତି, ଚିଲିକାର ରୂପ ତାଙ୍କ ପ୍ରାଣରେ ଦ୍ୱୈତଭାବର ଉଦ୍ରେକ କରିଛି । ତାର ମନୋହର ରୂପରେ ସେ ହୋଇଛନ୍ତି ମୁଗ୍ଧ ଚକିତ । ସତେ ଯେପରି ପ୍ରକୃତିର ସମସ୍ତ ଇନ୍ଦ୍ରିୟଗ୍ରାହ୍ୟ ରୂପ ଭଣ୍ଡାର ତାଙ୍କ ସମ୍ମୁଖରେ ଉନ୍ମୁକ୍ତ ହୋଇଯାଇଛି । ଆକୁଳ ଆବେଗରେ ରାଧାନାଥ ଗାଇଛନ୍ତି -

"ସ୍ନିଗ୍ଧ ରୂପ ତୋର ଚିତ୍ତ ଉଲ୍ଲାସକ ।
ସୁମଧୁର ଦ୍ୱୈତ ଭାବର ଦ୍ୟୋତକ ।"

ପ୍ରକୃତିର ରୂପଶୋଭା ଓ ଆତ୍ମୀୟତା ତାଙ୍କ ନିରାଶ ପ୍ରାଣରେ ସରସତା ଭରିଦେଇଛି । ପ୍ରକୃତି ଓ ତାଙ୍କ ଭିତରେ କୌଣସି ପ୍ରଭେଦ ନାହିଁ । କବିଙ୍କ ସ୍ୱୀକାରୋକ୍ତି -

"ତୃଷାତୁର ରୋଗୀ ଗୃହେ ଯଥା ବସି
ସ୍ମରେ କମଳିନୀ ହରିତ ସରସୀ ।
ସେହି ରୁକ୍ଷ ଦୃଶେ ସ୍ନିଗ୍ଧ ଛବି ତୋର
ନେତ୍ରାତିଥି ସ୍ମୃତି କରୁଥିଲା ମୋର ।" - ଚିଲିକା -

କେବଳ ଓଡ଼ିଶା ନୁହେଁ, ଭାରତୀୟ ପ୍ରକୃତିର ବିଭିନ୍ନ ଦୃଶ୍ୟବିଭବ ସଜୀବ ରୂପ ନେଇ ଚିଲିକା ଓ ମହାଯାତ୍ରାରେ ଆତ୍ମପ୍ରକାଶ କରିଛି । ଓଡ଼ିଶା ଓ ଭାରତର ଭୌଗୋଳିକ ଚିତ୍ର ଜୀବନ ଲାଭ କରିଛି ତାଙ୍କ ବର୍ଣ୍ଣନାରେ । ପ୍ରକୃତିର ଶୋଭା ଓ ଘଟଣାରେ କବି ମାନବୋଚିତ ବହୁ ଉପଲବ୍ଧି ଅନୁଭବ କରିଛନ୍ତି । ନୀଳାଚଳର ଦୋଳମହୋତ୍ସବର ବର୍ଣ୍ଣନା ଅବକାଶରେ ବାସନ୍ତୀ ପ୍ରକୃତିର ବର୍ଣ୍ଣନା ବେଶ୍ ଜୀବନ୍ତ ଓ ସମ୍ବେଦନଶୀଳ । -

"ସମଗରାପାଟେ ହଂସୀ ହସି ପଦ୍ମ
ପରାଗେ ଶରୀର ବୋଳି
କରୁଛନ୍ତି କଳ- ନାଦେ ପ୍ରେମାଳାପ
ଲହରୀ ଦୋଳାରେ ଦୋଳି
ଲଙ୍କା ଆମ୍ରକୁଞ୍ଜେ ବିହରନ୍ତି ମୃଗୀ-
କୃଷ୍ଣସାର ପ୍ରେମ ଭୋଳେ
ପ୍ରଭୁ ଲୋକନାଥ- ଅଧିଷ୍ଠିତ ଶୁଭ୍ର-
ବାଲିସ୍ତୂପାବଳୀ ଖୋଳେ,
କପୋତ ଦଂପତି ପ୍ରେମ କି ସଂପତ୍ତି
ରଟୁଛନ୍ତି ତାଳବନୁ
ଉଲ୍ଲାସେ କମ୍ପାଇ ବସନ୍ତ ରଚିତ
ଗଳେ ନବ ଇନ୍ଦ୍ରଧନୁ ।"

'ଉଷା' କାବ୍ୟରେ ମାନବର ମନ ସହିତ ପ୍ରକୃତିର ଏକଧର୍ମକୁ ସମନ୍ୱୟ କରି ମଣିଷ ଓ ପ୍ରକୃତି ଭିତରେ ଯୋଗସୂତ୍ର ସ୍ଥାପନ କରିଛନ୍ତି ।

''ମାତ୍ର ନିମ୍ନମୁଖ ପୟଃ ପୁଣି ଦୃଢ଼ ପ୍ରତିଜ୍ଞ ମନ
ଯେତେ ବାରିଲେ ହେଁ ମାନନ୍ତି ନାହିଁ ସେ କେବେ ବାରଣ ।''

'ନନ୍ଦିକେଶ୍ୱରୀ' କାବ୍ୟରେ ଉତ୍କଳର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ବୈଶିଷ୍ଟ୍ୟ ପ୍ରଦାନ ଅବକାଶରେ କବିଙ୍କର ସୂକ୍ଷ୍ମ ବିଚାରବୋଧ ଓ ଚିନ୍ତାଧାରାର ପରିପ୍ରକାଶ ଘଟିଛି । ଏଠାରେ ମଧ୍ୟ ପ୍ରକୃତି ଜୀବନ୍ତ ଓ ମାନବ ପରି କର୍ମପ୍ରବଣ ।

ନିଆଳୀ ଯା କୁଞ୍ଜେ ପାଟଳି ପ୍ରସୂନ । କାମିଙ୍କି କରଜେ ଯେହ୍ନେ କାମତୂଣ ।
କୋଠଦେଶ ମଞ୍ଜୁ ପୁନ୍ନାଗ-କେଶରେ । ମଠେ ଗତି ଯହିଁ କୁଶଭଦ୍ରା କରେ ।
କୋଠାରଙ୍ଗ ଯହିଁ ବଦନ ବିଜନେ । ଧଉଳି ଦେଖଇ ଦୟାଦରପଣେ ।
ରାହାଙ୍ଗ ରଚନ୍ତି ଯହିଁ କେଳିକଳା । ଇନ୍ଦ୍ରଲେ ନିକୁଞ୍ଜେ କଳ୍ପଳ କୁନ୍ତଳା ।
ଅନ୍ଧାରି ସିକତା କୁହେ ତରଙ୍ଗିତ । ସୁନ୍ଦର ରଙ୍ଗଣେ ସଦା ସିନ୍ଦୂରିତ ।

ଇଂରାଜୀ ରୋମାଣ୍ଟିକ୍ କବିମାନଙ୍କ ପରି ରାଧାନାଥ ପ୍ରକୃତିର ବିଭିନ୍ନ ବିଭାଗକୁ ନିବିଡ଼ ଭାବରେ ଭଲ ପାଉଥିଲେ ଓ ତା' ମଧ୍ୟରେ ମାନବିକ ସମସ୍ତ ଗୁଣର ଆରୋପ କରି ତାକୁ ଏକ ଚିରନ୍ତନ ମର୍ଯ୍ୟାଦା ପ୍ରଦାନ କରିଥିଲେ ।

**ଅଲୌକିକତା**

ଅଲୌକିକ ବିଷୟବସ୍ତୁର ବର୍ଣ୍ଣନା ପ୍ରତି ରୋମାଣ୍ଟିକ୍ କବିମାନଙ୍କ ମନରେ ଦୁର୍ବଳତା ଭରି ରହିଥିଲା । କଲେରିଜ୍‌ଙ୍କ କେତେକ ସୃଷ୍ଟିରେ ଏହି ଅଲୌକିକ ଉପାଦାନର ପ୍ରଚୁରତା ଲକ୍ଷ୍ୟ କରାଯାଇଥାଏ । ରାଧାନାଥଙ୍କ ସୃଷ୍ଟିସମୂହରେ ମଧ୍ୟ ଅଲୌକିକ ଉପାଦାନର ଗୁରୁତ୍ୱ ସର୍ବାଧିକ ଉପଲବ୍ଧି ହୋଇଥାଏ । 'ଉଷା' କାବ୍ୟରେ ରାଜମହିଷୀ କନ୍ୟାଲାଭ ନିମିତ୍ତ ଅଦ୍ଭୁତ ସ୍ୱପ୍ନ ଦେଖିଛନ୍ତି -

''ଦିନେ ନିଶିଯୋଗେ ଦେଖିଲେ ମହିଷୀ ସ୍ୱପ୍ନ ଅଦ୍ଭୁତ
ଉଲ୍‌କାରେ ଉଡ଼ିଆସିଲା ଗଗନେ ଜ୍ୟୋତି ବହୁତ ।''

କାର୍ତ୍ତିକେୟଙ୍କଦ୍ୱାରା ଜୟନ୍ତର ତିନୋଟି ସୁବର୍ଣ୍ଣ ପଦ୍ମ ପ୍ରାପ୍ତି, ଉଷା ଏବଂ ଜୟନ୍ତଙ୍କର ବିବାହବେଦୀ ଉପରେ ହସ୍ତଗ୍ରନ୍ଥି ସମୟରେ ପରଲୋକ ପ୍ରାପ୍ତି ଏବଂ ଶୋକାଭିଭୂତ ରାଜା ନୁରୁଙ୍କୁ କାଳୀଙ୍କର ସେମାନଙ୍କ ପୂର୍ବଜନ୍ମ ବୃତ୍ତାନ୍ତ କଥନ, 'ଯଯାତିକେଶରୀ' କାବ୍ୟରେ ଉତ୍କଳର ରାଜାଙ୍କୁ ଦେବୀ ଦୁର୍ଗାଙ୍କର ସ୍ୱପ୍ନରେ ପରିଚୟ ପ୍ରଦାନ ଏବଂ ଶୂନ୍ୟବାଣୀ 'ନନ୍ଦିକେଶ୍ୱରୀ' କାବ୍ୟରେ ନିରୁତ୍ସାହିତ ଚୋଳଗଙ୍ଗଙ୍କ ସମ୍ମୁଖରେ ଦେବୀ ଗଙ୍ଗାଙ୍କ ଆବିର୍ଭାବ,

ସୁବର୍ଣ୍ଣକେଶରୀଙ୍କ ଜୈତ୍ରମଣି ପ୍ରସଙ୍ଗ, 'କେଦାରଗୌରୀ' କାବ୍ୟରେ ରାଜା ଲଲାଟେନ୍ଦୁକେଶରୀଙ୍କୁ ସ୍ୱପ୍ନାଦେଶ ଓ କେଦାରଗୌରୀ ମନ୍ଦିର ନିର୍ମାଣ, 'ପାର୍ବତୀ' କାବ୍ୟରେ କୌଶଲ୍ୟାର ପ୍ରେତାତ୍ମାର ଆବିର୍ଭାବ ଏବଂ ସମସ୍ତ ଘଟଣା ବର୍ଣ୍ଣନ, 'ମହାଯାତ୍ରା'ରେ ଅଗ୍ନିଙ୍କର ସମୁଦ୍ରଗର୍ଭରୁ ଆବିର୍ଭାବ, ପାଣ୍ଡବମାନଙ୍କ ସହ୍ୟାଦ୍ରି ଶିଖରକୁ ଗମନ ଏବଂ ଯୁଧିଷ୍ଠିରଙ୍କୁ ଦିବ୍ୟାଞ୍ଜନ ପ୍ରଦାନପୂର୍ବକ ଭବିଷ୍ୟତ ଭାରତବର୍ଷର ବିପର୍ଯ୍ୟୟ ସନ୍ଦର୍ଶନ ଆଦି ଘଟଣା ଏହି ଅଲୌକିକତାକୁ ସୂଚାଇଥାଏ ।

## ପ୍ରେମ ଓ ସୌନ୍ଦର୍ଯ୍ୟବୋଧ

ରୋମାଣ୍ଟିକ୍ କବି ପ୍ରେମ, ପ୍ରଣୟ ଓ ସୌନ୍ଦର୍ଯ୍ୟର ଉପାସକ । ପ୍ରେମ ମଣିଷକୁ କରେ ମହାନ୍ । ତାର ଚିତ୍ତରାଜ୍ୟକୁ କରେ ବିସ୍ତୃତ । ରାଧାନାଥଙ୍କ ଅଧିକାଂଶ କାବ୍ୟ ଏହି ପ୍ରେମ ଉପରେ ହିଁ ପ୍ରତିଷ୍ଠିତ । 'କେଦାରଗୌରୀ' କାବ୍ୟରେ ପ୍ରେମପାଇଁ କେଦାର ଏବଂ ଗୌରୀଙ୍କର ଆତ୍ମତ୍ୟାଗଦ୍ୱାରା ପ୍ରେମ ହୋଇଛି ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ୱଲ୍ୟମାନ । ନନ୍ଦିକା ସାମାନ୍ୟ ଅବଳା ହେଲେ ହେଁ, ଚୋଳଗଙ୍ଗଙ୍କ ପ୍ରେମପ୍ରାପ୍ତି ପାଇଁ ସେ ଅସାଧ ସାଧନ କରିବାପାଇଁ ପଶ୍ଚାତ୍ପଦ ହୋଇ ନାହିଁ । ରାଧାନାଥଙ୍କ ଭାଷାରେ -

"ମହାବଳୀ ପ୍ରେମ ଅଟଇ ମହୀର । ପ୍ରେମ ସିନା କରେ ଅବଳାକୁ ବୀର ।
ପ୍ରେମ ଦିଏ ବୁଦ୍ଧି ଉଦ୍‌ଯୋଗ ସାହସ । ପ୍ରେମ କରିପାରେ ଅବଶକୁ ବଶ ।"

'ଉଷା' କାବ୍ୟରେ ପ୍ରେମର ଏକ ସ୍ୱଚ୍ଛ ଓ ପବିତ୍ରରୂପ ପରିଲକ୍ଷିତ । ଉଷାର ପ୍ରେମଲାଭ ପାଇଁ ଜୟନ୍ତ ମୃତ୍ୟୁବରଣ କରିବାକୁ କୁଣ୍ଠିତ ହୋଇ ନାହିଁ । ଯେଉଁ ଉଷା ଦୌଡ଼ ପ୍ରତିଯୋଗିତାରେ ପୁରୁଷକୁ ପରାଜିତ କରି ଅପାର ଆନନ୍ଦ ଲାଭ କରେ, ଜୟନ୍ତ ଠାରୁ ପରାଜିତ ହୋଇ ସେ ଅଧିକ ଆନନ୍ଦିତା । ଏହାର କାରଣ ନିର୍ଦ୍ଦେଶ କରି ରାଧାନାଥ ଲେଖିଛନ୍ତି -

"ଜୟଠାରୁ ଆଜି ପରାଜୟ ତାର ପ୍ରିୟ ଅଧିକ
ଘଟାଇ ନ ପାରେ କିବା ପୁଣି ପ୍ରେମ ଐନ୍ଦ୍ରଜାଲିକ ।"

କେବଳ ପ୍ରେମ କ୍ଷେତ୍ରରେ ହିଁ ପରାଜୟର ଆନନ୍ଦ ରହିଛି । ଯଦିଓ ରାଧାନାଥଙ୍କ ସୃଷ୍ଟିରେ ବହୁ ଆଲୋଚକ କାମଜ ପ୍ରେମର ଗନ୍ଧକୁ ଆବିଷ୍କାର କରିଛନ୍ତି, ଏହା ସତ୍ତ୍ୱେ ଦେହ ମଧ୍ୟରେ ଦେହାତୀତ ରାଜ୍ୟକୁ ଗମନ କରିବାରେ ତାଙ୍କ ପ୍ରେମ ସୃଷ୍ଟିରେ ଉପାଦାନର ଅଭାବ ନାହିଁ ।

ରୋମାଣ୍ଟିକ୍ କବି ରାଧାନାଥ ସୌନ୍ଦର୍ଯ୍ୟର ଉପାସକ । ରୋମାଣ୍ଟିକ୍‌ମାନେ ହିଁ ସୌନ୍ଦର୍ଯ୍ୟପ୍ରିୟ । ପ୍ରକୃତିର ଚାରୁ ଆଲେଖ୍ୟ, ନାରୀର ବିଭିନ୍ନ ଅଙ୍ଗ ବର୍ଣ୍ଣନାରେ ତାଙ୍କର

ସୌନ୍ଦର୍ଯ୍ୟ - ଘନ ମନର ପରିଚୟ ମିଳିଥାଏ । ରୂପ ସହିତ ଭାବର ସମ୍ପର୍କ ଅବିଚ୍ଛେଦ୍ୟ । ଏକକୁ ଛାଡ଼ି ଅନ୍ୟର ସ୍ଥିତି କାହିଁ ? ସେଥିପାଇଁ ଦାଦୂ କହିଥିଲେ -

''ରୂପ କହେ ହମ୍ ଭାବ୍‌କା, ପାଉ ଭାବ୍ କହେ ହମ୍ ରୂପ
ଆପସ୍ ମେଁ ଦଉ ପୂଜନ୍ ଚାହେ ପୂଜା ଅଗାଧ ଅନୂପ ।''

ରୂପ ମଧ୍ୟରେ ସୌନ୍ଦର୍ଯ୍ୟର ସତ୍ତା ନିହିତ । ବୋଧହୁଏ ସେହି କାରଣରୁ ରାଧାନାଥ କହିଥିଲେ - ''ରୂପ ଆକର୍ଷଣ ପ୍ରବଳ କିବା ନରେ ଅମରେ ।'' ନାରୀର କେବଳ ଅଙ୍ଗ ନୁହେଁ, ତାର ଅପାଙ୍ଗରେ ମଧ୍ୟ ସୌନ୍ଦର୍ଯ୍ୟ ଭରପୂର । କନ୍ଦୁକ କ୍ରୀଡ଼ା ନିମଗ୍ନା ଚନ୍ଦ୍ରଭାଗାର ପ୍ରତି ଅଙ୍ଗଭଙ୍ଗୀରେ ନବଶୋଭାର ଉଜ୍ଜ୍ୱଳ ପ୍ଲାବନ । ତାର ପ୍ରତିଟି ଚାହାଣିରେ ଫୁଲର ବର୍ଷା ଝରିପଡୁଛି ବାଲୁକାରାଶି ଉପରେ -

''ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ପରଶି
ଯେଣେ ଅନାଉଛି ଲଳନା ଫୁଲ ଯାଏ ବରଷି ।''

ନାରୀର ଲାବଣ୍ୟମୟ ଅଙ୍ଗ ବର୍ଣ୍ଣନାରେ କବି କଳ୍ପନା ସୌନ୍ଦର୍ଯ୍ୟର ଶିଖରରେ ପହଞ୍ଚିଛି । ପଦ୍ମାବତୀଙ୍କ ମ୍ଳାନ ମୁଖକୁ ଲଜ୍ଜାନତ ଭ୍ରୂଲତା ସହିତ ତୁଳନା ଅତୀବ ଚମତ୍କାର -

ମ୍ଳାନ ମୁଖଛବି ବିଷାଦ ରେଖାରେ
ଭ୍ରୂଲତା ଅଙ୍କାକି ଲଜ୍ଜା ତୂଳିକାରେ - ଚିଲିକା -

ନାରୀର ରୂପଶୋଭା ଅତୁଳନୀୟ । ପ୍ରଭାତୀ ତାରା ସଦୃଶ ସ୍ମୃତି ନଭରେ ସେ ଚିର ଜାଜ୍ୱଲ୍ୟମାନ -

ଥରେ ପଡ଼ିଗଲେ ସେ ନୟନେ ଜଗତ ନୟନକାରା
ହେଉଥାଇ ରୂପବତୀ ସ୍ମୃତି ନଭେ ପ୍ରଭାତୀ ତାରା । - ଉଷା -

ସୌନ୍ଦର୍ଯ୍ୟ ହିଁ ସତ୍ୟ ଓ ସତ୍ୟ ହିଁ ସୌନ୍ଦର୍ଯ୍ୟ । ଜନ୍ କୀଟ୍‌ସଙ୍କ ଭାଷାରେ - "A thing of beauty is a joy for ever" ସେହି କଥା ରାଧାନାଥ ମଧ୍ୟ କହିଛନ୍ତି -

''ସୁନ୍ଦର ତୃପ୍ତିର ଅବସାଦ ନାହିଁ । ଯେତେ ଦେଖୁଥିଲେ ନୂଆ ଦିଶୁଥାଇ ।''

ରାଧାନାଥଙ୍କ ରୂପଚେତନା ସୌନ୍ଦର୍ଯ୍ୟକୁ ଆଶ୍ରୟ କରି ଗଢ଼ିଉଠିଛି ଓ ଏହି ସୌନ୍ଦର୍ଯ୍ୟର ସାକାର ରୂପ ପ୍ରେମ ଉପରେ ହିଁ ପ୍ରତିଷ୍ଠିତ ।

### ଅତୀତ ପ୍ରବଣତା ଓ ଜାତୀୟତା

ଅତୀତର ଜୀବନଧାରା ଏବଂ କିମ୍ବଦନ୍ତୀ ଓ ଇତିହାସ ପ୍ରତି ରୋମାଣ୍ଟିକ୍ କବିମାନଙ୍କର ବିଶେଷ ମୋହ ରହିଥିଲା । ଅତୀତର କଳା, ସଂସ୍କୃତି ଏପରିକି ପ୍ରାଚୀନ ଗୌରବାବହ

ଐତିହ୍ୟ ଓ ନୈତିକତାଦ୍ୱାରା ସେମାନେ ବହୁ ପରିମାଣରେ ଅନୁପ୍ରାଣିତ ହୋଇଥିଲେ । ସ୍କଟ୍ ଏବଂ କୀଟ୍‌ସଙ୍କ କବିତାରେ ଏହି ପ୍ରବଣତା ବିଶେଷ ଉପଲବ୍ଧ ହୋଇଥାଏ । ସମାଜ, ଇତିହାସ ଏବଂ କିମ୍ବଦନ୍ତୀରୁ ଉପାଦାନ ସଂଗ୍ରହ କରି ରୋମାଣ୍ଟିକ୍ କବିଗଣ ବହୁ ଗାଥା-କବିତା ରଚନା କରିଥିଲେ । ଜାତୀୟତାର ଭାବଧାରାଦ୍ୱାରା ଜନସମାଜକୁ ଅନୁପ୍ରାଣିତ କରିବାକୁ ଏମାନେ ସର୍ବଦା ସଚେଷ୍ଟ ଥିଲେ । ରାଧାନାଥ ରାୟଙ୍କ କାବ୍ୟକବିତାରେ ଅତୀତ ଜୀବନର ଚିତ୍ର, ଇତିହାସ, କିମ୍ବଦନ୍ତୀ ଆଦିର ଉପାଦାନ ଅପ୍ରତୁଳ ନୁହେଁ । ଓଡ଼ିଶା ଓ ଭାରତର ଅତୀତ ଗୌରବ ପ୍ରଖ୍ୟାପନ କରିବାକୁ ଯାଇ ସେ ଇତିହାସ ଏବଂ କିମ୍ବଦନ୍ତୀର ଆଶ୍ରୟ ନେଇଛନ୍ତି । 'ପାର୍ବତୀ' କାବ୍ୟରେ ଏହାର ବହୁ ସୂଚନା ରହିଛି -

x x x x

ପୁଣ୍ୟଶ୍ଳୋକ ବୀର ନରପତି ହେଲେ
କାଳତୁଣ୍ଡେ କବଳିତ
କାହିଁ ଗଲେ ଇନ୍ଦ୍ରଦ୍ୟୁମ୍ନ ମହୀପତି
ଉତ୍କଳ ଗୌରବ ରବି x x

ପରାଧୀନ ଉତ୍କଳୀୟଙ୍କ ଦୁର୍ବଳତା ଓ ହୀନ ଆଚରଣକୁ ସେ ବ୍ୟଙ୍ଗ କରି ଅତୀତ ଉତ୍କଳର ମହାନ୍ ଗୌରବମୟ ଇତିହାସକୁ ପର୍ଯ୍ୟାଲୋଚନା କରିଛନ୍ତି 'ଦରବାର'ରେ ।

ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପୀ । କୀର୍ତ୍ତିମାଳା ଯା'ର ବିରାଜେ ଅଦ୍ୟାପି ।
ଏକାମ୍ରେ କୋଣାର୍କେ ଯା କୀର୍ତ୍ତି ଭାସ୍ୱର । ଯୋଗ୍ୟପୁତ୍ର ତୁମ୍ଭେ ସେହି ଉତ୍କଳର ।
ମାତ୍ର କାଳମୁଖେ ସେ କୀର୍ତ୍ତି ବିମଳ । ଦେଇ ନିଜ ମୁଖେ ଏବେ ଯେ ଉତ୍କଳ ।
ବୋଳି ଦେଇଅଛି ଅଜ୍ଞାନର ମସୀ । x x x x

ରାଧାନାଥଙ୍କ ଦେଶାତ୍ମବୋଧ କେବଳ ଓଡ଼ିଶାର ସୀମିତ ଭୂଖଣ୍ଡରେ ଆବଦ୍ଧ ନ ଥିଲା; ସର୍ବଭାରତୀୟ ସ୍ତରକୁ ତାହା ପ୍ରସାର ଲାଭ କରିଯାଇଥିଲା । 'ଶିବାଜୀଙ୍କ ଉତ୍ସାହ ବାକ୍ୟ'ରେ ଏ ଦେଶର ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ସେ କହିଛନ୍ତି -

''ଯାବତ ଦେହରେ ବହେ ପ୍ରାଣ ବାୟୁ
ଶୂରେ ! ନ ବିମୁଖ ହୁଅ ସମରେ
ମାର ଅବା ମର ଏଥୁଁ ଅନ୍ୟ ଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ ।''

ଦେଶ ଓ ଦେଶବାସୀଙ୍କ ଅଧୋପତନରେ ମ୍ରିୟମାଣ କବି କ୍ଷୋଭ ପ୍ରକାଶ କରିଛନ୍ତି । 'ମହାଯାତ୍ରା'ରେ -

''ଏହି କି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟି କି ଆର୍ଯ୍ୟନାମ ଦାୟାଦ ଜଗତେ
ବିନା ଯୁଦ୍ଧେ ନ ଦେବାକୁ ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର ତାଙ୍କରି ଶୋଣିତ
ବହେଟି କି ଆହେ ଯୋଦ୍ଧେ ତୁମ୍ଭ ଧମନୀରେ ।''

ଏତଦ୍‌ବ୍ୟତୀତ ଅତୀତଗୌରବର ଦୃଷ୍ଟାନ୍ତ, ବର୍ତ୍ତମାନ ଦେଶର ଅଧଃପତନ, ଓଡ଼ିଶା ତଥା ଭାରତର ବିଭିନ୍ନ ସ୍ଥାନ, ପାହାଡ଼, ପର୍ବତ, ନଦନଦୀ ଆଦିର ବର୍ଣ୍ଣନା ପ୍ରସଙ୍ଗରେ କବି ନିଜର ଜାତୀୟଚେତନା ଓ ଅତୀତ ପ୍ରତି ରହିଥିବା ପ୍ରବଣତାକୁ ପ୍ରକାଶ କରିଛନ୍ତି ।

**ବୟକ୍ତିକତା**

ରୋମାଣ୍ଟିକ୍ କବିଗଣ ସେମାନଙ୍କ କବିତାରେ ବ୍ୟକ୍ତିଗତ ଅନୁଭୂତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥାନ୍ତି । ପ୍ରଚଳିତ ସାମାଜିକ ବ୍ୟବସ୍ଥା ପ୍ରତି ସେମାନେ ବୀତସ୍ପୃହ ହୋଇ ପଡ଼ିଥିବାରୁ ସେମାନଙ୍କର ସୃଷ୍ଟିରେ ବ୍ୟକ୍ତିକୈନ୍ଦ୍ରିକ ଚିନ୍ତାଧାରା ମୁଖ୍ୟସ୍ଥାନ ଗ୍ରହଣ କରିଛି । ବ୍ୟକ୍ତିଗତ ଅନୁଭୂତି ଓ କବିର ହୃଦୟ ହିଁ ତାଙ୍କର ଏକମାତ୍ର ଭାବଜଗତ । ଜଣଙ୍କର ଅନୁଭୂତି ଅନ୍ୟଠାରୁ ଭିନ୍ନ ହୋଇଥିବାରୁ ବୟକ୍ତିକତାର ପ୍ରାଧାନ୍ୟ ପରିଲକ୍ଷିତ ହେବା ସ୍ୱାଭାବିକ । ସେଇଥିପାଇଁ ରୁଷୋ କହିଥିଲେ, "I am not made like any one, I have seen I dare believe that I cannot made like any one in existence. If I am not better, at least I am different.'' ରୋମାଣ୍ଟିକ୍ ସ୍ରଷ୍ଟାମାନେ ବିଶ୍ୱାସ କରନ୍ତି, ସ୍ରଷ୍ଟା ସର୍ବଦା ତାର ହୃଦୟ ଓ ଆତ୍ମାଦ୍ୱାରା ଅନୁପ୍ରେରିତ ହେବା ଆବଶ୍ୟକ। ୱାର୍ଡ଼ସୱାର୍ଥ କହିଥିଲେ - ''କବିତା ହେଉଛି ଶକ୍ତିଶାଳୀ ଭାବାବେଗର ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱାସ ।'' ଏହି ସ୍ୱତଃସ୍ଫୂର୍ତ୍ତତା ସ୍ୱାଭାବିକତାକୁ ଆଶ୍ରୟ କରିବା ଉଚିତ । ଜନ୍ କୀଟ୍‌ସ ଟେଲରଙ୍କ ନିକଟକୁ ତାଙ୍କର ଏକ ପତ୍ରରେ କବିତାର ଏହି ସ୍ୱାଭାବିକ ଭାବପ୍ରକାଶ ସମ୍ପର୍କରେ ଲେଖିଥିଲେ - "That if poetry comes not as naturally as the leaves to a tree, it had better not come at all.'' ଏହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ସ୍ୱତନ୍ତ୍ରତା ସହଜରେ ବାରିହୋଇପଡ଼େ । ତାଙ୍କର ପ୍ରତିଟି ସୃଷ୍ଟିରେ ହୃଦୟର ଆବେଗ ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ରୂପେ ପ୍ରକାଶଲାଭ କରିଛି । ପ୍ରକୃତିଚେତନା, ପ୍ରେମବୋଧ, ଜାତୀୟତା ତଥା ଦେଶାତ୍ମବୋଧ ଆଦି ସମ୍ପର୍କରେ ବର୍ଣ୍ଣନା କରିବା ସମୟରେ ତାଙ୍କର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟ ଦୃଷ୍ଟିଭଙ୍ଗୀ ସହଜରେ ଜଣା ପଡ଼ିଯାଇଥାଏ । ଅତୀତ ସାହିତ୍ୟର ଅନୁସରଣ ଅପେକ୍ଷା ବରଂ ନିଜପାଇଁ ଏକ ସ୍ୱତନ୍ତ୍ର ପରିଧି ସୃଷ୍ଟି କରିବା କ୍ଷେତ୍ରରେ ସେ ବହୁ ପରିମାଣରେ ସଫଳ ହୋଇଛନ୍ତି । ସେଥିପାଇଁ ପ୍ରକୃତି ଚିତ୍ରଣରେ ତାଙ୍କର ଯେପରି ମୌଳିକତା ଲକ୍ଷ୍ୟ କରାଯାଇଥାଏ. ଜାତୀୟତା କ୍ଷେତ୍ରରେ ମଧ୍ୟ ତାଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀର ପରିଚୟ ମିଳିଥାଏ ।

## ବିଷାଦବାଦ

ବିଷାଦବାଦ ରୋମାଣ୍ଟିକ୍ ସାହିତ୍ୟର ଅନ୍ୟତମ ବିଶିଷ୍ଟ ବିଭାବ । ରୁଷୋ କହିଥିଲେ - "Man is born free but everywhere he is in chains." ସାମାଜିକ କଟକଣା ଏହି ସ୍ରଷ୍ଟାମାନଙ୍କୁ ଅଣନିଃଶ୍ୱାସୀ କରିଦେଇଥିଲା । ପାରମ୍ପରିକ ସାମାଜିକ ବ୍ୟବସ୍ଥାଦ୍ୱାରା ଏମାନେ ବିଷାଦଗ୍ରସ୍ତ ହୋଇପଡ଼ିଥିଲେ । ଏଥିରୁ ମୁକ୍ତିପାଇଁ ଅନେକ କ୍ଷେତ୍ରରେ ସେମାନେ ପଳାୟନପନ୍ଥୀ ସାଜିଛନ୍ତି । ରାଧାନାଥ ତାଙ୍କ ଜୀବନର ଅନେକ କ୍ଷେତ୍ରରେ ଏହି ପ୍ରତିକୂଳ ବାତାବରଣ ମଧ୍ୟଦେଇ ଗତି କରିଛନ୍ତି । ରୁଗ୍ଣ ସ୍ୱାସ୍ଥ୍ୟ, ତାଙ୍କର ଯଶ ଓ ଖ୍ୟାତିକୁ ନେଇ ଶତ୍ରୁତା ବୃଦ୍ଧି, ଅନ୍ୟାନ୍ୟ କେତେକ ଅପ୍ରାପ୍ତିଜନକ ହତାଶବୋଧ ଯୋଗୁଁ ସେ ବିଷାଦଗ୍ରସ୍ତ ହୋଇ ପଡ଼ିଥିଲେ । ଶେଲି କହିଥିଲେ "I fall upon the thorns of life, I bleed." ଆଶାତୀତର ଚିରନ୍ତନ ପ୍ରତ୍ୟାଶା ଓ ଅନାତ୍ମୀୟରେ ନିୟତ ଆତ୍ମୀୟକରଣ, ରୋମାଣ୍ଟିକ୍ କାବ୍ୟ ସାଧନାର ମୂଳଲକ୍ଷ୍ୟ ହୋଇଥିବାରୁ ପ୍ରାଣରେ ଦୁଃଖାନୁଭୂତି ବରଣ କରିବା କବି ପକ୍ଷରେ ସ୍ୱାଭାବିକ । ତେଣୁ ରୋମାଣ୍ଟିକ୍ କବି ଭାବରେ ଦୁଃଖାନ୍ଧକାରର ରହସ୍ୟ ଉଦ୍‌ଘାଟନ କରିବାକୁ ରାଧାନାଥଙ୍କର ରୋମାଣ୍ଟିକ୍ ଶିଳ୍ପ ମାନସ ଉନ୍ମୁକ୍ତ ହୋଇଉଠିଥିବା କିଛି ଅସ୍ୱାଭାବିକ ନୁହେଁ । [୬] ପ୍ରତ୍ୟେକ ମଣିଷ ଶାନ୍ତି ଆଶାୟୀ । ଆଶା ଫଳବତୀ ନ ହେଲେ ବିଷାଦିତ ହେବା ସ୍ୱାଭାବିକ୍ । ରାଧାନାଥ ତାଙ୍କ ୧୦।୩।୧୮୯୬ ପତ୍ରରେ ଏ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି - "Peace at any price is however my motto. x x I am really tired of this world." କୋଳାହଳପୂର୍ଣ୍ଣ ସାଂସାରିକ ଜୀବନରୁ ଦୂରରେ ରହି ଶାନ୍ତିରେ କିଛିକ୍ଷଣ ବିତାଇବାକୁ ସେ କିପରି ଉତ୍କଣ୍ଠିତ ହୋଇଉଠିଥିଲେ ତାହା ତାଙ୍କ ୬।୫।୧୮୯୬ ରିଖ ପତ୍ରରୁ ଦେଖିବାକୁ ମିଳେ - "I am therefore disposed to prefer solitude to company however pleasant." ରାଧାନାଥଙ୍କ ଏହି ବିଷାଦବାଦ ଦଶରଥ ବିୟୋଗ, ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ, ଶ୍ମଶାନ ଦୃଶ୍ୟ ଆଦି କବିତା ଏବଂ ମହାଯାତ୍ରା, ଚିଲିକା, ଦରବାର, ଉଷା, ପାର୍ବତୀ ଆଦି କାବ୍ୟରେ ଦେଖିବାକୁ ମିଳେ । ରାଧାନାଥଙ୍କ ବିଷାଦବାଦ ସଂପର୍କରେ ମତ ପ୍ରଦାନ କରିବାକୁ ଯାଇ ଅଧ୍ୟାପକ ସର୍ବେଶ୍ୱର ଦାସ କହନ୍ତି - " କାହାରି କାହାରି ଧାରଣା ଜୀବନର ଦୁଃଖାନ୍ତକ କଳ୍ପନା (Tragic conception of life) ସେ ପାଶ୍ଚାତ୍ୟ ସାହିତ୍ୟରୁ ଗ୍ରହଣ କରିଛନ୍ତି । ନାନା ବୈଜ୍ଞାନିକ ଆବିଷ୍କ୍ରିୟା ଫଳରେ ଏକ ସର୍ବନିୟନ୍ତା ଅତିମାନବୀୟ ଶକ୍ତିର ଶିବତ୍ୱରେ ଅବିଶ୍ୱାସ, ଫରାସୀ ବିପ୍ଳବର ବ୍ୟର୍ଥତା ଶିଳ୍ପ ବିପ୍ଳବ ଜନିତ ସାଧାରଣ ମାନବର ଦୁରବସ୍ଥା, ଜର୍ମାନ୍ ଦାର୍ଶନିକ ସୋପେନ୍‌ହାମଙ୍କ ପ୍ରଚାରିତ ନୈରାଶ୍ୟବାଦର ପ୍ରସାର ପ୍ରଭୃତିର ସମ୍ମିଳିତ ପ୍ରତିକ୍ରିୟାରୁ ପାଶ୍ଚାତ୍ୟ ରୋମାଣ୍ଟିକ୍ ସାହିତ୍ୟରେ ଦୁଃଖ ଓ ନୈରାଶ୍ୟବାଦର ଜନ୍ମ ପ୍ରାଚ୍ୟ ତଥା ପାଶ୍ଚାତ୍ୟ ସାହିତ୍ୟରେ ଧୁରୀଣ ରାଧାନାଥଙ୍କ ସମ୍ବେଦନଶୀଳ କବିପ୍ରାଣ ରୋମାଣ୍ଟିକ୍

ଯୁଗର ସାହିତ୍ୟ ପ୍ରତି ପ୍ରଧାବିତ ହେବା ସ୍ୱାଭାବିକ । [୬] ସଂସାରରେ କୂଟ କପଟତା ଯୋଗୁଁ ସଂସାର ତାଙ୍କୁ ଏକ କାରାଗାର ସଦୃଶ ପ୍ରତୀୟମାନ ହୋଇଛି ।-

ଛାର ଭାଗ୍ୟ ମୋର ପିହିତ ପାଷାଣେ । ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ ।
ଚିର ହାହାମୟ ଏ ଛାର ଜୀବନ । ଜୀବନ ନୁହଁଇ ଜୀବନ୍ତ ମରଣ ।
ପ୍ରତିଦିନ ଦୁଃଖ ପ୍ରହାରେ ଜର୍ଜର । ପଟ୍ଟଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର ।
ଦୁଃଖଦତ୍ତ ଜ୍ଞାନ ଚକ୍ଷୁରେ ଜଗତ । ଦେଖିବାରେ ମୁହିଁ ଅଭ୍ୟସ୍ତ ସତତ ।

- ଚିଲିକା -

ସଂସାରରେ ଥାଇ ମଧ ସେ ସଂସାର ପ୍ରତି ଉଦାସୀନ । ସାମୟିକ ସୁଖ ପାଇଁ ସେ ଚିଲିକାର ପ୍ରାକୃତିକ ସୁଷମାରେ ହଜିଯିବାକୁ ଚାହିଁଛନ୍ତି । ଅଥଚ ତାହା ମଧ ତାଙ୍କ ଭାଗ୍ୟରେ ସମ୍ଭବ ହୋଇପାରି ନାହିଁ ।

ଚିଲିକା ତୋହର ଏହି ଶୋଭାବନ । ବର୍ଣ୍ଣୋତ୍ସବମୟ ଦୃଶ୍ୟ ସାୟନ୍ତନ
ଅଟେ ସର୍ବଶୋଭା ସୀମନ୍ତର ଟୀକା । ପ୍ରକୃତିର ଚାରୁ ଆଲେଖ୍ୟ ଶାଳିକା
ଏ ସୁଖର ମୁହିଁ ନୁହଁଇ ଭାଜନ । ମୋ ଭାଗ୍ୟେ ସିନା ଏ ଭଙ୍ଗୁର ସ୍ୱପନ

କ୍ଷଣିକ ସୁଖରେ ସେ ଆତ୍ମହରା ହୋଇ ନାହାନ୍ତି, ବରଂ ହୋଇଛନ୍ତି ଅଧିକ ଦୁଃଖିତ । ସେ ଜାଣନ୍ତି "ସୁଖରୂପେ ଯାହା ଜନ ନେତ୍ରେ ଦିଶେ, ହାତେ ଆସେ ହାତୁଁ ପଡ଼ିବା ପାଇଁ ସେ ।" ମଣିଷର କ୍ଷଣଭଙ୍ଗୁର ଜୀବନ ପ୍ରତି ସେ ବୀତସ୍ପୃହ । ଦୁଃଖ ଯେ ଜୀବନର ଚିରନ୍ତନ ସାଥୀ, ଏହା ସେ କେବେ ଭୁଲିପାରି ନାହାନ୍ତି । ଯେଉଁ ଜଗତକୁ ମଣିଷ ମହାସୁଖ ବୋଲି ଭାବେ, ପ୍ରକୃତରେ ତାହା ଦୁଃଖ ବିଜଡ଼ିତ ।

"ଦୁଃଖମୟ ଭବସିନା ମହାସୁଖ ବୋଲି
ବୋଲନ୍ତି ଜଗତେ ଯାକୁ, ଜଡ଼ିତ ସେ ସଦା ଦୁଃଖେ ।" - ମହାଯାତ୍ରା -

ସମସାମୟିକ ସାମାଜିକ ଅବସ୍ଥା, କୂଟକାପଟ୍ୟ, ଛଳନା, ବ୍ୟକ୍ତି ସ୍ୱାର୍ଥ ଲକ୍ଷ୍ୟ କରି ସେ ମଧ ହୋଇଛନ୍ତି ବିଷାଦିତ । ସଂସାରର ଦଦରା ବୋଇତର ଯାତ୍ରୀ ଭାବେ ଜୀବନର ବାସ୍ତବ ସତ୍ୟ ଉପଲବ୍ଧି କରି ସେ ଆତଙ୍କିତ ହୋଇଛନ୍ତି ଏବଂ ଅନ୍ୟମାନଙ୍କୁ ମଧ ଏ କ୍ଷେତ୍ରରେ ସତର୍କ କରାଇ ଦେଇଛନ୍ତି -

"ପାସୋରି ନାହିଁ ମୁଁ ସ୍ୱପ୍ନେ କଦାଚିତେ । ସର୍ବେ ଅଛୁ ଏକ ଦଦରା ବୋଇତେ ।
ଆଗେ ପଛେ ତୋଳି ଭବ ଊର୍ମିମାନ । ଭବ ଜଳଧିରେ ଗର୍ଜଇ ତୋଫାନ ।
ଯେଣେ ମନ ତେଣେ ରହୁଅଛି ନାହା । ନାହିଁ କଡୁଆଳ ଦେଖାଇବ ରାହା ।
କାହୁଁ ଅଇଲା ଏ କାହିଁ ଯିବ ବାହି । କହିବାକୁ ଏହା ନାବେ କେହି ନାହିଁ ।"

- ଦରବାର -

ମୁଖ୍ୟତଃ ପ୍ରକୃତିର ରୂପଶୋଭା ଉପଭୋଗରୁ ବଞ୍ଚିତ, ସାଂସାରିକ ଜୀବନର ଛଳନା, ବ୍ୟକ୍ତିଗତ ଜୀବନର ହତାଶ ଓ ରୁଗ୍ଣତା ଆଦି କାରଣରୁ ରାଧାନାଥଙ୍କ ବିଷାଦବାଦର ସୃଷ୍ଟି ।

## ରୂପକଳ୍ପ

ଅଷ୍ଟାଦଶ ଶତକବେଳକୁ ବିଶ୍ୱସାହିତ୍ୟରେ ରୂପକଳ୍ପର ଭୂମିକା ଥିଲା ଅତ୍ୟନ୍ତ ଗୌଣ । ମାତ୍ର ରୋମାଣ୍ଟିକ୍ ଆନ୍ଦୋଳନ ସମୟରେ ଏହା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା । ଅନ୍ତଃବିଶ୍ୱ ସହିତ ବହିଃ ପରିବେଶର ସଂଯୋଗ କ୍ଷେତ୍ରରେ ରୂପକଳ୍ପ ଏକ ସେତୁର ଭୂମିକା ଗ୍ରହଣ କରିଥାଏ । ବିଶ୍ୱ ସତ୍ୟ ଓ ସୌନ୍ଦର୍ଯ୍ୟ ମୂର୍ତ୍ତିମାନ ରୂପ ଗ୍ରହଣ କରେ । ରୂପକଳ୍ପରେ ଯେଉଁ ଅନ୍ତର୍ମୁଖୀ ଚେତନା କବିଙ୍କୁ ଅନୁସନ୍ଧିତ୍ସୁ ଓ ଆବିଷ୍କାର ପ୍ରବଣ କରି ଗଢ଼ିତୋଳେ, ତା ମୂଳରେ ଥାଏ ରୂପକଳ୍ପର ଅପୂର୍ବ ଉପାଦାନ । ସେଥିପାଇଁ ଟି.ବି. ବର୍ଣ୍ଣ କହିଛନ୍ତି - "The poetic image act as a bridge between the inner world and that of our external environment at though it some unrealised truth about ourselves is able to shoulder up from its shadowy hinterland into our waking conscious." ରୋମାଣ୍ଟିକ୍ କବିଗଣ ରୂପକଳ୍ପ ମାଧ୍ୟମରେ ନିଜର ଚିନ୍ତା ଓ ଚେତନାକୁ ପରିଦୃଶ୍ୟମାନ ଜଗତର ବିଭିନ୍ନ ଉପାଦାନ ସହିତ ଆକାର ଦେଇ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି । ୱାର୍ଡ଼ସ୍‌ୱାର୍ଥ, ବ୍ଲେକ୍ ଆଦି କବିଗଣ ଏ କ୍ଷେତ୍ରରେ ବେଶ୍ ସିଦ୍ଧହସ୍ତତାର ପରିଚୟ ପ୍ରଦାନ କରିଛନ୍ତି ।

ରାଧାନାଥଙ୍କ ସୃଷ୍ଟିରେ ରୂପକଳ୍ପଗୁଡ଼ିକ ବେଶ୍ ଭାବଧର୍ମୀ । ମାନବୀୟ ଭାବନା ତଥା ଚିନ୍ତା ଏବଂ ଚେତନାକୁ ପ୍ରକାଶ କରିବା କ୍ଷେତ୍ରରେ ଏହା ସଂପୂର୍ଣ୍ଣ ଅନୁକୂଳ । 'ମହାଯାତ୍ରା'ରେ ନୈମିଷାରଣ୍ୟ ବର୍ଣ୍ଣନା ଅବକାଶରେ ଏହି ରୂପକଳ୍ପର ଚମତ୍କାର ଭାବପ୍ରବାହକୁ ଅନୁଭବ କରିହୁଏ -

''ଯତୀନ୍ଦ୍ରେ ଅଧ୍ୟାତ୍ମବାଦୀ ଅବିରତେ ରତ<br>
ଯହିଁ ଆଧ୍ୟାତ୍ମିକ ଯାଗେ ହୃଦବେଦୀ ଯହିଁ<br>
ଆତ୍ମା ଯଜମାନ, ଶ୍ରଦ୍ଧା ପତ୍ନୀ ସ୍ୱରୂପିଣୀ<br>
ତପ ବହ୍ନି, କାମ ଆଜ, କ୍ରୋଧ ଯଜ୍ଞ ପଶୁ<br>
ଧୈର୍ଯ୍ୟ ଯୂପ, ତ୍ୟାଗ ହୋତା, ବଚନ ଉଦ୍‌ଗାତା<br>
ସୋମରସ ସୁମଧୁର ଭକ୍ତି ଅଧୋକ୍ଷପେ ।''

ସେହିପରି 'ଚିଲିକା' ଖଣ୍ଡକାବ୍ୟରେ ମାଛ ଶିକାରୀ ନାବିକମାନଙ୍କର ପୋତରେ ମାଛମାନଙ୍କର ଲମ୍ଫ ପ୍ରଦାନକୁ ପାପଗର୍ଭରେ ଅଜ୍ଞାନମାନଙ୍କର ନିପତନ ସହିତ ତୁଳନା କରି ଚମତ୍କାର ରୂପକଳ୍ପ ପ୍ରକାଶ କରିଛନ୍ତି -

ମୀନ ଆକର୍ଷଣ ଆଶେ ପୋତମାଳ । ତରଣୀରେ ଜାଳି ଦେଲାଣି ମଶାଲ<br>
ଭବେ ପାପମୂର୍ତ୍ତି ପରି ଅଟଇ ସେ । ସ୍ପର୍ଶେ ମାରାତ୍ମକ, ରୂପେ ରମ୍ୟ ଦିଶେ ।<br>
ପାପ ଗର୍ଭେ ଯେହ୍ନେ ପଡ଼ଇ ଅଜ୍ଞାନ । ତୀର ଗର୍ଭେ ମୀନେ ଡେଇଁ ଦେବେ ପ୍ରାଣ ।

ଏତଦ୍‌ବ୍ୟତୀତ ରହସ୍ୟବାଦୀ ଦୃଷ୍ଟିଭଙ୍ଗୀ ରୋମାଣ୍ଟିକ୍ କବିମାନଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଜଗତ ଓ ଜୀବନ ସଂପର୍କରେ ଥିବା ବିସ୍ମୟବୋଧରୁ ଏହାର ସୃଷ୍ଟି । ଏହାଦ୍ୱାରା ବସ୍ତୁଜଗତ ବ୍ୟତିରେକେ ସୂକ୍ଷ୍ମଜଗତର ରହସ୍ୟ ଉପଲବ୍ଧି ହୋଇଥାଏ । ରାଧାନାଥଙ୍କ ଦରବାର, ଚିଲିକା, ମହାଯାତ୍ରା ଆଦି ସୃଷ୍ଟିରେ କବିଙ୍କର ଏହି ରହସ୍ୟବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ଦେଖିବାକୁ ମିଳେ । ସାଙ୍ଗୀତିକତା ରୋମାଣ୍ଟିକ୍ କବିତାର ଅନ୍ୟତମ ଲକ୍ଷଣୀୟ ବୈଶିଷ୍ଟ୍ୟ । ଭାବର ସ୍ୱାଧୀନ ପ୍ରକାଶ, ସାଙ୍ଗୀତିକ ପ୍ରକାଶକୁ ଅପେକ୍ଷା ରଖୁଥିବାରୁ ରୋମାଣ୍ଟିକ୍ କବିଗଣ ଏହା ଉପରେ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ବିଶିଷ୍ଟ କବି ଶେଲୀଙ୍କ କବିତାର ଏହି ସାଙ୍ଗୀତିକ ଗୁଣ ଯୋଗୁଁ ତାହା ସତେଜ ଓ ଚିତ୍ତ ବିମୋହକ ହୋଇପାରିଥିଲା । ଏହାଛଡ଼ା ଭାବର ସହଜ ପ୍ରକାଶ, ସରଳ ଭାଷାର ପ୍ରୟୋଗ ଓ ଲୋକକଥିତ ଭାଷା ଉପରେ ରୋମାଣ୍ଟିକ୍ କବିଗଣ ଗୁରୁତ୍ୱ ଦେଇଛନ୍ତି । ରାଧାନାଥଙ୍କ ଯେକୌଣସି କାବ୍ୟ ପାଠକଲେ ସାଙ୍ଗୀତିକତାର ମଧୁରତା ବେଶ୍ ଅନୁଭବ କରିହୋଇଥାଏ । ମହାଯାତ୍ରା ବ୍ୟତିରେକେ ତାଙ୍କର ଅନ୍ୟାନ୍ୟ କାବ୍ୟରେ ଭାଷାର ସହଜ ସରଳ ପ୍ରବାହ ଯେକୌଣସି ପାଠକ ଲକ୍ଷ୍ୟ କରିପାରିବେ । ମଧ୍ୟଯୁଗୀୟ କ୍ଲିଷ୍ଟ କାବ୍ୟର ନିଗୂଢ଼ ବନ୍ଧନରୁ ମୁକ୍ତ କରି ଓଡ଼ିଆ କାବ୍ୟକୁ ସେ ପ୍ରଥମଥରପାଇଁ ଲୋକଭାଷାର ବିସ୍ତୃତ ଭୂମି ଉପରେ ବିଚରଣ କରିବାକୁ ଛାଡ଼ିଦେଲେ । ରୋମାଣ୍ଟିକ୍ ସାହିତ୍ୟର ସମସ୍ତ ଲକ୍ଷଣ ରାଧାନାଥଙ୍କ ସୃଷ୍ଟିରେ ଯେକୌଣସି ପାଠକ ଲକ୍ଷ୍ୟ କରିପାରିବେ । ଏହି ଦୃଷ୍ଟିରୁ କହିବାକୁ ଗଲେ ରାଧାନାଥ ହେଉଛନ୍ତି ଓଡ଼ିଶାର ପ୍ରଥମ ଶ୍ରେଷ୍ଠ ରୋମାଣ୍ଟିକ୍ କବି ।

## ସଂକେତ ସୂଚୀ

୧. ଧର୍ମ, ସାହିତ୍ୟ ଓ ସାହିତ୍ୟତତ୍ତ୍ୱ - ଡଃ କୃଷ୍ଣଚନ୍ଦ୍ର ପ୍ରଧାନ । ପୃ - ୧୮୬, ଫ୍ରେଣ୍ଡ୍‌ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ । ୧ମ ସଂସ୍କରଣ - ୧୯୯୮ ।

୨. Romanticism is simple the expression of life as seen by imagination rather than by prosaic common sense - History of English Literature Vol - II (1798 - 1966) W.R. Goodman, P-20, 2nd Revised Edition, DOABA House-1688, Naisarak, Delhi.

୩. Romantic Imagination - C.M. Bowra. P-3 Oxford University Press, London - 1961.

୪. A History of English Literature - Edward Albert, 4th Edition, P-290.

୫. ରୂପପ୍ରାଣ ରାଧାନାଥ - ରାଧାନାଥ ପରିଚିତି - ଅଧ୍ୟାପକ ଚିନ୍ତାମଣି ବେହେରା, ପୃ - ୨୭ ପ୍ରକାଶକ - ରାଧାନାଥ ପାଠାଗାର, ସୋର - ୧ମ ପ୍ର: - ୧୯୬୦ ।

୬. ଦୁଃଖବାଦ ଓ କବିବର ରାଧାନାଥ - ରାଧାନାଥ ପରିଚିତି, ଅଧ୍ୟାପକ ସର୍ବେଶ୍ୱର ଦାସ ପୃ - ୫୩

# ସଂସ୍କାରବାଦୀ ଗୋଦାବରୀଶ

ଓଡ଼ିଆ ସାହିତ୍ୟର ଇତିହାସରେ ଯେଉଁ ଯୁଗଟି 'ସତ୍ୟବାଦୀ ଯୁଗ' ରୂପେ ଚିହ୍ନିତ, ତାର ଆବିର୍ଭାବ ଯେପରି ଚମକପ୍ରଦ; ତାର ଇତିହାସ ମଧ୍ୟ ସେହିପରି ଗୌରବାବହ । ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ସମଗ୍ର ଭାରତବର୍ଷରେ ଜାତୀୟତାର ଯେଉଁ ନବତରଙ୍ଗ ଖେଳି ଯାଇଥିଲା, ବିଂଶ ଶତକର ଆଦ୍ୟ ଭାଗରେ ତାର ଏକ ପରିଣତ ରୂପ ପରିଲକ୍ଷିତ ହେଲା । ଆଫଗାନ, ମୋଗଲ, ଫରାସୀମାନଙ୍କଦ୍ୱାରା ନିପୀଡ଼ିତ ଭାରତବାସୀ ଜାତୀୟତାର ପ୍ରଥମ ପରିଚୟ ଲାଭ କରିଥିଲେ ଇଂରେଜ ଶାସନରେ । ୧୮୭୫ ମସିହାରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କଦ୍ୱାରା ପ୍ରତିଷ୍ଠିତ 'ସର୍ବଭାରତୀୟ ସଂଘ' ଭାରତୀୟ ଚେତନାରେ ନୂତନ ଜାଗରଣ ସୃଷ୍ଟି କରିଥିଲେହେଁ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମନେବା ପରେ ଜାତୀୟ ଚେତନାର ଭୂୟୋବିକାଶ ଘଟିଥିଲା ଭାରତରେ । ଏହି ବିଂଶ ଶତକରେ ଜାତୀୟ ବୀଜଟି ଭାରତମାଟିରେ ମହାଦ୍ରୁମରେ ପରିଣତ ହୋଇ ତାର ଚେର ଭାରତର ବିଭିନ୍ନ ପ୍ରଦେଶମାନଙ୍କରେ ମାଡ଼ିଯାଇଥିଲା । ଊନବିଂଶ ଶତକର ଦ୍ୱିତୀୟ ଭାଗରେ ଗୋଟିଏ ପ୍ରାକୃତିକ ବିପର୍ଯ୍ୟୟ (ନ'ଅଙ୍କ ଦୁର୍ଭିକ୍ଷ-୧୮୬୬) ଓ ଦେଶ ଭାଷାକୁ ନେଇ ଯେଉଁ ଚକ୍ରାନ୍ତ (ଭାଷା ସୁରକ୍ଷା ଆନ୍ଦୋଳନ - ୧୮୬୯) ଆରମ୍ଭ ହୋଇଥିଲା, ତାର ଭିନ୍ନ ଏକ ରୂପ ପରିଲକ୍ଷିତ ହେଲା ମଧ୍ୟପ୍ରଦେଶର ଚିଫ୍ କମିଶନରଙ୍କ ନିର୍ଦ୍ଦେଶରେ ୧୮୯୫ ଜାନୁଆରୀ ୧୫ ତାରିଖରେ, ସମ୍ବଲପୁର କଚେରିରୁ ଓଡ଼ିଆ ଭାଷା ଉଠାଇଦେଇ ତା' ପରିବର୍ତ୍ତେ ହିନ୍ଦୀ ଭାଷା ପ୍ରଚଳନ କରିବାରେ । ଏଥିପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭା ଆୟୋଜନ ହେବା ସଙ୍ଗେ ସଙ୍ଗେ 'ଉତ୍କଳସଭା' ପକ୍ଷରୁ ଭାଇସ୍‌ରାୟ ଲର୍ଡ ଏଲ୍‌ଗିନ୍‌ଙ୍କ ନିକଟରେ ଦୃଢ଼ ଆପତ୍ତି କରାଯାଇଥିଲା । ୧୯୦୨ ସାଲର ଗଞ୍ଜାମ ସମ୍ମିଳନୀରେ ବିଚ୍ଛିନ୍ନ ଓଡ଼ିଶାକୁ ଏକତ୍ରିତ କରିବାକୁ ଏବଂ ଓଡ଼ିଶାର ସ୍ୱାର୍ଥପାଇଁ ଗୁରୁତ୍ୱ ଦେବାକୁ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ୧୯୦୩ ମସିହାରେ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ଗଞ୍ଜାମକୁ ଓଡ଼ିଶା ମଧ୍ୟକୁ ଫେରାଇବା ବିରୋଧରେ ତେଲ୍‌ଗୁ ଭାଷାଭାଷୀ ନେତାଗଣ ପ୍ରସ୍ତାବ ଆଗତ କରି ଗୃହୀତ କରାଇନେବାରୁ, ଏହାର ପ୍ରତିବାଦରେ ମଧୁସୂଦନ ଦାସ କଂଗ୍ରେସଠାରୁ ଅଲଗା ହୋଇ 'ଉତ୍କଳ ସମ୍ମିଳନୀ' ଗଠନ କରିବାର ଉଦ୍ୟମ କଲେ । ୧୯୦୩ ମସିହା ଡିସେମ୍ବର

୩୦ ଓ ୩୧ ତାରିଖରେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ସଭାପତିତ୍ୱରେ 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ ବସିଥିଲା ଓ କେଉଁଝର ମହାରାଜାଙ୍କଦ୍ୱାରା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ନିମିତ୍ତ ଏକ ପ୍ରସ୍ତାବ ଆଗତ ହୋଇଥିଲା । ୧୯୧୧ ମସିହାରେ ବଙ୍ଗପ୍ରଦେଶରୁ ବିହାର, ଓଡ଼ିଶା ଓ ଛୋଟନାଗପୁର ପୃଥକ୍ ହୋଇ ସ୍ୱତନ୍ତ୍ର 'ବିହାର ଓଡ଼ିଶା' ପ୍ରଦେଶ ଗଠିତ ହେଲା । ଏହି ମିଶ୍ରଣକୁ ତତ୍କାଳୀନ ବହୁ ଜାତୀୟବାଦୀ ନେତା ପ୍ରତିରୋଧ କରିଥିଲେ । ଏହିପରି ଏକ ରାଜନୀତିକ ହଟଚମଟ ସମୟରେ ଗୋପବନ୍ଧୁ ସତ୍ୟବାଦୀଠାରେ ୧୯୦୯ ମସିହାରେ ବନବିଦ୍ୟାଳୟ ସ୍ଥାପନ କରିଥିଲେ ।

ଗୋପବନ୍ଧୁଙ୍କ ନେତୃତ୍ୱରେ ୧୯୧୧ ରୁ ୧୯୧୪-୧୫ ମଧ୍ୟରେ ନୀଳକଣ୍ଠ, ଗୋଦାବରୀଶ, ହରିହର, କୃପାସିନ୍ଧୁ, ଲିଙ୍ଗରାଜ, ଅନନ୍ତ ମିଶ୍ର ଆଦି ବନବିଦ୍ୟାଳୟରେ ଯୋଗ ଦେଇଥିଲେ । ଦେଶସେବାର ମହାମନ୍ତ୍ରରେ ଦୀକ୍ଷିତ ହୋଇ ସର୍ବାନ୍ତକରଣରେ ଜନସେବା କରିବା ଥିଲା ଏହି ମହାନ୍ ଆଦର୍ଶବାଦୀ ବ୍ୟକ୍ତିମାନଙ୍କର ପରମ ଲକ୍ଷ୍ୟ । ଓଡ଼ିଶାକୁ ସ୍ୱତନ୍ତ୍ର ରୂପ ପ୍ରଦାନ, ମୈତ୍ରୀ ଭାବନାର ଉଦ୍ରେକ, ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂରୀକରଣ, ଜାତୀୟ ଚେତନାର ଜାଗରଣ, ସୁରୁଚିପୂର୍ଣ୍ଣ ସାହିତ୍ୟ ସୃଷ୍ଟି ଥିଲା ଏହି ସାଧକମାନଙ୍କର ଏକାନ୍ତ କାମ୍ୟ । ଭାରତୀୟ ସମାଜରେ ପରିପୂରିତ ଯୁଗଯୁଗର କୁସଂସ୍କାରର ବିଲୋପ ସାଧନ ପାଇଁ ୧୮୨୮ ଖ୍ରୀ:ରେ ଭାରତୀୟ ନବୋତ୍‌ଥାନର ଅଗ୍ରଣୀ ନେତା ରାଜା ରାମମୋହନ ରାୟ 'ବ୍ରାହ୍ମସମାଜ' ପ୍ରତିଷ୍ଠା କରିଥିଲେ । ମହର୍ଷି ଦେବେନ୍ଦ୍ରନାଥଙ୍କ ପ୍ରଚେଷ୍ଟାରେ ୧୮୬୦ ମସିହାରେ ଓଡ଼ିଶାରେ ବ୍ରାହ୍ମଧର୍ମର ଭିତ୍ତିପ୍ରସ୍ତର ପଡ଼ିଥିଲା ଏବଂ ୧୮୭୩ ମାର୍ଚ୍ଚ ୨୨ ତାରିଖରେ ଉତ୍କଳ ବ୍ରାହ୍ମସମାଜର ସଂପାଦକ ଦୀନନାଥ ବନ୍ଦୋପାଧ୍ୟାୟ ଏହି ସମାଜ ତରଫରୁ ନିୟମାବଳୀ ପ୍ରସ୍ତୁତ କରି ପ୍ରଚାର କରିଥିଲେ । ଇଂରାଜୀ ଶିକ୍ଷାର ବିସ୍ତାର ଏବଂ ବ୍ରାହ୍ମଧର୍ମର ପ୍ରଭାବ ଯୋଗୁଁ ତତ୍କାଳୀନ ଓଡ଼ିଶାର କେତେକ ଶିକ୍ଷିତ ଅଗ୍ରଗାମୀ ଯୁବକ ପରଂପରାକ୍ରମେ ଚଳିଆସୁଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସ ଆଦିର ବିରୋଧାଚରଣ କଲେ । ସତ୍ୟବାଦୀର ସାଧକଗଣ ସେହି ଭାବଧାରାର ପ୍ରେରଣାରେ ଓଡ଼ିଶାର ସାମାଜିକ ଜୀବନକୁ ଏକ ନୂତନ ରୂପରେଖ ଦେବା ଉଦ୍ଦେଶ୍ୟରେ ସମାଜ ସଂସ୍କାର ନିମିତ୍ତ ବିଭିନ୍ନ ପଦକ୍ଷେପ ଗ୍ରହଣ କରିଥିଲେ । ସୁସ୍ଥ ସମାଜ ଗଠନ ଥିଲା ଏହି ସାଧକମାନଙ୍କର ମୁଖ୍ୟ ଲକ୍ଷ୍ୟ । ତେଣୁ ଯେଉଁଠାରେ ସେମାନେ ଅନ୍ୟାୟ, ଅନୀତି, ଶୋଷଣ ଓ କୁସଂସ୍କାରାଦି ଲକ୍ଷ୍ୟ କରୁଥିଲେ, ସେଠାରେ ସେମାନେ ହୋଇଉଠୁଥିଲେ ପ୍ରତିକ୍ରିୟାଶୀଳ । ଗୋଟିଏ ପକ୍ଷରେ ଜାତୀୟ ଚେତନାର ବିକାଶ ଏବଂ ଅପରପକ୍ଷରେ ସମାଜ-ସଂସ୍କାର ଏହି ଦ୍ୱିବିଧ ଉଦ୍ଦେଶ୍ୟ ସାଧନାର୍ଥେ ସତ୍ୟବାଦୀ ସାଧକଗଣ ନିଜକୁ ଉତ୍ସର୍ଗ କରିଥିଲେ ।

ସତ୍ୟବାଦୀ ସାଧକଗଣ ବିଭିନ୍ନ କ୍ଷେତ୍ରରେ ନିଜର ସଂସ୍କାରବାଦୀ ଚିନ୍ତାଧାରାର ପରିଚୟ ଦେଇଛନ୍ତି । ସାହିତ୍ୟ, ଲିପି, ସମାଜ, ରାଜନୀତି, ସର୍ବୋପରି ବ୍ୟକ୍ତି ଚରିତ୍ରାଦି

ପ୍ରତି କ୍ଷେତ୍ରରେ ସଂସ୍କାର ଆଣିବାକୁ ଚେଷ୍ଟା କରିଛନ୍ତି । ପଣ୍ଡିତ ଗୋଦାବରୀଶ ମିଶ୍ର ଗୋପବନ୍ଧୁଙ୍କ ପ୍ରେରଣାରେ ତାଙ୍କର ପ୍ରଥମ କର୍ମମୟ ଜୀବନ ଆରମ୍ଭ କରିଥିଲେ ସତ୍ୟବାଦୀ ବନବିଦ୍ୟାଳୟରେ । ଜୀବନର ସମସ୍ତ ସୁଖ-ସ୍ୱାଚ୍ଛନ୍ଦ୍ୟ ଓ ବିଳାସ ପରିତ୍ୟାଗ କରି ଏକ ସାଧାରଣ ଶିକ୍ଷକ ଜୀବନକୁ ଆଦରି ନେଇଥିଲେ । ତାଙ୍କର କୃଚ୍ଛସାଧନା, ତ୍ୟାଗ, ଆଦର୍ଶବାଦୀ ଜୀବନ ବହୁ ଓଡ଼ିଆଙ୍କ ପାଇଁ ଅଶେଷ ପ୍ରେରଣାର ଉତ୍ସ । ଆଦର୍ଶବାଦର ପ୍ରତିଷ୍ଠା ଓ ଦେଶସେବାପାଇଁ ଇଂଲଣ୍ଡ ଯିବାର ଲୋଭନୀୟ ଆମନ୍ତ୍ରଣ ତ୍ୟାଗ କରିଛନ୍ତି । ସବ୍‌ଡେପୁଟୀ ପରି ଲୋଭନୀୟ ଓ ସମ୍ମାନଜନକ ଚାକିରି ତୁଚ୍ଛ କରିଛନ୍ତି । ସାହିତ୍ୟ ଓ ଦେଶ କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଛନ୍ତି । ସଂଗଠନ କାର୍ଯ୍ୟରେ ଘୂରି ବୁଲିଛନ୍ତି ସମଗ୍ର ଓଡ଼ିଶା । ଦେଶବାସୀଙ୍କୁ ସଂଗଠିତ କରିବାକୁ ବଜ୍ର ଶପଥ ନେଇଛନ୍ତି । ଦାରିଦ୍ର୍ୟ ଓ ସମସ୍ତ ପ୍ରତିକୂଳ ପରିବେଶ ମଧ୍ୟରେ ଫୁଟିଉଠିଛି ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ । ଏସବୁ ସତ୍ତ୍ୱେ ତାଙ୍କ ଚରିତ୍ରର ଯେଉଁ ବିଶିଷ୍ଟ ଦିଗଟି ସମସ୍ତଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରେ, ତାହା ହେଉଛି ତାଙ୍କର ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ । ଓଡ଼ିଶାର ସାମାଜିକ, ସାଂସ୍କୃତିକ, ରାଜନୀତିକ ଓ ଆର୍ଥନୀତିକ ଜୀବନ ସହିତ ଗଭୀର ଭାବେ ସଂପୃକ୍ତ ଥିବାରୁ, ଯେଉଁଠାରେ କିଛି ବ୍ୟତିକ୍ରମ ଲକ୍ଷ୍ୟ କରିଛନ୍ତି, ସେଠାରେ ସେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରିଛନ୍ତି । ସେ ତାଙ୍କର ଏହି ପ୍ରଚେଷ୍ଟାକୁ କେତେବେଳେ ସାହିତ୍ୟ ମାଧ୍ୟମରେ ତ ଅନ୍ୟ କେତେବେଳେ ବିଭିନ୍ନ କାର୍ଯ୍ୟ ମାଧ୍ୟମରେ ସାକାର କରିବାକୁ ଚାହିଛନ୍ତି । ତାଙ୍କର ଏହି ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ, ତାଙ୍କ ସୃଷ୍ଟି ସମୂହକୁ କିପରି ମହାନ୍ କରିଛି, ନିମ୍ନୋକ୍ତ ଆଲୋଚନାରୁ ତାହା ପ୍ରମାଣିତ ହୋଇପାରିବ ।

ଯେଉଁ ସ୍ରଷ୍ଟା ଜୀବନ ଓ ଜଗତପ୍ରତି ଯେଉଁ ପରିମାଣରେ ସମ୍ବେଦନଶୀଳ, ତାଙ୍କ ସୃଷ୍ଟି ସେହି ପରିମାଣରେ ସଂସ୍କାରଶୀଳ । ନିବିଡ଼ ଆପଣାପଣରୁ କଳାର ଜନ୍ମ । ଗୋଦାବରୀଶ ଯେପରି ଥିଲେ ଜଣେ ସମ୍ବେଦନଶୀଳ ସ୍ରଷ୍ଟା ସେହିପରି ଥିଲେ ଜଣେ କର୍ମଠ ମଣିଷ । କର୍ମ ଥିଲା ତାଙ୍କ ଜୀବନର ବ୍ରତ । ସମଗ୍ର ଓଡ଼ିଶା ଥିଲା ତାଙ୍କର କର୍ମଭୂମି । ସତ୍ୟବାଦୀରୁ ଚକ୍ରଧରପୁର, ସାହିତ୍ୟ ସାଧନାରୁ ସଂଗଠନ ଜୀବନ, ଅଧ୍ୟାପନାରୁ ରାଜନୀତି - ପ୍ରତି କ୍ଷେତ୍ରରେ ସେ ନିଜର ସବ୍ୟସାଚିତ୍ୱ ପ୍ରତିପାଦନ କରିଛନ୍ତି । ସାମାଜିକ ଜୀବନରେ ସେ ଯେଉଁଠାରେ କିଛି ଅସ୍ୱାଭାବିକତା ଲକ୍ଷ୍ୟ କରିଛନ୍ତି, ସେଠାରେ ସେ ହୋଇଛନ୍ତି ପ୍ରତିକ୍ରିୟାଶୀଳ । ଏହାର ସଂସ୍କାର ନିମିତ୍ତ ସେ ପ୍ରୟାସ କରିଛନ୍ତି । ଗୋଦାବରୀଶଙ୍କ ଏହି ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ ହୋଇଛି ଉଭୟ ତାଙ୍କର ଗଦ୍ୟ ଓ ପଦ୍ୟ ସୃଷ୍ଟିରେ ।

ଓଡ଼ିଶାର ସାମାଜିକ ଜୀବନରେ ପରିପୂରିତ ବିଭିନ୍ନ ସାମାଜିକ କୁସଂସ୍କାର ଓ ପାରଂପରିକ ନୀତିନିୟମ ପ୍ରତି ସେ ପିଲା ଦିନରୁହିଁ ଥିଲେ ପ୍ରତିକ୍ରିୟାଶୀଳ । ଜଣେ ବ୍ରାହ୍ମଣ ସନ୍ତାନ ଭାବରେ ଯେଉଁ ସମସ୍ତ ନୀତିନିୟମ ପାଳନ କରିବା କଥା, ତାହା ସେ ଉଲ୍ଲଙ୍ଘନ କରୁଥିବାରୁ ତାଙ୍କ ରକ୍ଷଣଶୀଳ ପିତା ଅନେକ ସମୟରେ ଅସନ୍ତୋଷ ପ୍ରକାଶ କରୁଥିଲେ ।

ସେ ତାଙ୍କ ଆତ୍ମଜୀବନୀ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ'ରେ ଲେଖିଛନ୍ତି - ''ମୁଁ ଜଣେ ସୁବ୍ରାହ୍ମଣ ହେବି, ଏହି ଆଶାରେ ସେ ମୋର ବ୍ରତ ଉପନୟନ ସାତବର୍ଷ ବୟସରେ ବିଶେଷ ଉତ୍ସାହରେ କରାଇଥିଲେ । ଅଥଚ ମୁଁ ସନ୍ଧ୍ୟା, ଆହ୍ନିକ କରେ ନାହିଁ; ବିନା ପାଣିରେ ପରିସ୍ରା କରେ, ପଇତା ଛିଣ୍ଡାଇ ଦେଇ ତାହା ଲୁଚାଇ ରଖି ଖାଏ ପିଏ ।'' (ଗୋଦାବରୀଶ ଗ୍ରନ୍ଥାବଳୀ - ୧ମ ଖଣ୍ଡ - ପୃ-୧୬, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର - ୧୯୬୮) । ମଣିଷ ଜୀବନକୁ ସୁସ୍ଥ ସୁନ୍ଦର କରି ଗଢ଼ିବା ଉଦ୍ଦେଶ୍ୟରେ ସମାଜର ସୃଷ୍ଟି । ସାମାଜିକ ଶୃଙ୍ଖଳା ରକ୍ଷା ନିମିତ୍ତ ବିଭିନ୍ନ ନୀତିନିୟମର ପ୍ରଣୟନ । ଅଥଚ ଏହି ନୀତିନିୟମ ବହୁ ସମୟରେ ବ୍ୟକ୍ତିଜୀବନ ପ୍ରତି ବୋଝ ହୋଇପଡ଼େ । ସାମାଜିକ ଚଳଣି ଓ ନୀତିନିୟମ ପ୍ରତି ସେ କିପରି ପ୍ରତିକ୍ରିୟାଶୀଳ ଥିଲେ, ତାର ସୂଚନା ତାଙ୍କ ଆତ୍ମଜୀବନୀରୁ ମିଳିଥାଏ । ''ମୁଁ ଦେଉଳକୁ ଗଲେ ମୁଣ୍ଡିଆ ମାରେ ନାହିଁ । ଏକାଦଶୀ ଉପବାସ ଛାଡ଼ିଦେଲି । ପଇତା କାଢ଼ି ହାତରେ ଧରି ଖେଳିଲି । ମୁଣ୍ଡରେ ଚୈତନ୍ୟ ଚୁଟି କାଟି ପକାଇଲି । ସନ୍ଧ୍ୟା, ଚଳୁ ପ୍ରଭୃତି ଛାଡ଼ିଦେଲି । କଛା ନ ଫିଟାଇ, ପାଣି ନ ଘେନି ପରିସ୍ରା କଲି ।'' (ପୃ-୬୮-୬୯) । ବ୍ରାହ୍ମଣ ସମାଜରେ ଚୈତନ୍ୟ ଚୁଟି ରଖିବା, ସ୍କନ୍ଧରୁ ପଇତା ନ କାଢ଼ିବା, ସନ୍ଧ୍ୟା ଆହ୍ନିକ ଓ ଚଳୁ ଆଦି କରିବା ଥିଲା ଏକ ବିଧି । ମାତ୍ର ଗୋଦାବରୀଶ ଏହାକୁ ସାମାଜିକ କୁସଂସ୍କାର ରୂପେ ଗ୍ରହଣ କରିଥିବାରୁ, ଅଧିକାଂଶ କ୍ଷେତ୍ରରେ ତା'ର ଉଲ୍ଲଙ୍ଘନ କରିବାକୁ ଚେଷ୍ଟା କରିଛନ୍ତି ।

ଜାତିଭେଦ ପ୍ରଥା ଭାରତୀୟ ସାମାଜିକ ଜୀବନର ଏକ କଳଙ୍କ ହେଲେହେଁ ସମାଜର ତଥାକଥିତ ବଡ଼ପଣ୍ଡାଗଣ ଏହାକୁ ନୀତିନିୟମର ଅନୁଶାସନ ରଜ୍ଜୁରେ ବାନ୍ଧି ରଖିଥିଲେ । ଏପରି ପରଂପରା ସାମାଜିକ ଜୀବନକୁ କଳୁଷିତ କରୁଥିଲା, ଏଥିରେ ସନ୍ଦେହ ନାହିଁ । ସତ୍ୟବାଦୀ ସାଧକଗଣ ଏହି ସାମାଜିକ ଭେଦଭାବ ନୀତିପ୍ରତି କଠୋର ଆଘାତ କରିଛନ୍ତି । ପଣ୍ଡିତ ଗୋଦାବରୀଶ ଚକ୍ରଧରପୁର ଉଚ୍ଚ ବିଦ୍ୟାଳୟରେ ପ୍ରଧାନଶିକ୍ଷକ ଥିବା ସମୟରେ ଦିନେ ଗୋଟିଏ ଚଣ୍ଡାଳପିଲା ଖପରା ଖଣ୍ଡିଏରେ ମୁଢ଼ି ଖାଉଥିବା ବେଳେ ତାଙ୍କର ନଜର ପଡ଼ିଲା । ପିଲାଟି ତାଙ୍କୁ ମୁଢ଼ି ମୁଠିଏ ବଢ଼ାଇ ଦେବାମାତ୍ରେ ଗୋଦାବରୀଶ ଆନନ୍ଦ ମନରେ ତାହା ଗ୍ରହଣ କଲେ । 'ଗଣ୍ଠିଧନ ସାଥୀ' କବିତାରେ ସେ ତାଙ୍କର ସେହି ଅନୁଭୂତିକୁ ବର୍ଣ୍ଣନା କରି ଲେଖିଛନ୍ତି -

''କି ବିଚାର କଲା ମନେ, ଜଣା ତାକୁ ସିନା
ଚଣ୍ଡାଳ ଅଇଁଠାଭାବେ ଛୁଇଁବି ମୁଁ କିନା ।
ନିମିଷେ ରହିଲି ଥିରେ ଦୋଦୋ ପାଞ୍ଚ ମନ
ପାଶେ ତହୁଁ ଯାଇ କରେ ଘେନିଲି ବହନ ।
ବିଳମ୍ବେ ଆଉ ମୋ ତିଳେ ନ ବଳିଲା ଚିତ୍ତ
ପକାଇଲି ମୁଖେ ମୁଁ ସେ ମୁଠିଟି ତ୍ୱରିତ ।''

(ଗ୍ରନ୍ଥାବଳୀ - ୧ମ ଭାଗ - ପୃ ୧୩୬-୩୭)

ଏକଦା ଗୋଦାବରୀଶ ବାରିପଦାରୁ ମାଧପୁର ଯିବା ପଥରେ ତୃଷାତୁର ଅବସ୍ଥାରେ ଜଣେ ବାଉରିଆଣୀକୁ ଜଳ ଦେବାକୁ ଅନୁରୋଧ କରିଥିଲେ । ମାତ୍ର ଜଣେ ବ୍ରାହ୍ମଣକୁ ଜଳଦାନ ଗର୍ହିତ କାର୍ଯ୍ୟ ମନେକରି କବିଙ୍କୁ ନିରାଶ କରିଥିଲା । ଅଥଚ ଜଣେ ଚଣ୍ଡାଳୁଣୀ ବିନା ଦ୍ୱିଧାରେ ଜଳ ଦେଇଥିଲା । ଅବଶ୍ୟ ଏଥିପାଇଁ ଦୟାଶୀଳ ଚଣ୍ଡାଳୁଣୀକୁ ସମାଜର ତିରସ୍କାର ଶୁଣିବାକୁ ପଡ଼ିଥିଲା । ସମାଜର ଏହି ଅନ୍ୟାୟ ନୀତିକୁ କବି ସମାଲୋଚନା କରିଛନ୍ତି ତାଙ୍କର 'ଅଜାତି ହୋଇ' କବିତାରେ -

''ତୃଷା ହୋଇଗଲା ଦୂର, ଗଲୁ ସର୍ବେ ଚାଲି ତୋଷେ
କଲୁ ଅତିକ୍ରମ ପଥ ମଣି ଯୋଜନକୁ କୋଶେ ।
କେତେ ଏବେ ସଖାମେଳେ ମୁହିଁ ବୁଲୁଛି ବଖାଣି
ସେ ଏକ ରମଣୀ ଦୟା, ସେହି ତୃଷାବେଳ ପାଣି ।
ସମାଜ ତାଡ଼ନା ସିନା ପଡ଼ନ୍ତା ଏ ମୋର ଶିରେ
ରହିଛି ଯା ଚଣ୍ଡାଳୁଣୀ ଅଜାତି ହୋଇ ମହୀରେ ।''

(ଗ୍ରନ୍ଥାବଳୀ - ୧ମ ଭାଗ - ପୃ ୪୪୧)

ସମାଜର ଏହି ଭେଦଭାବ ପ୍ରଥା କବିଙ୍କୁ ଅନେକ ସମୟରେ ମାନସିକ ଆଘାତ ଦେଇଛି । ମାତ୍ର ବ୍ୟକ୍ତିଗତ ଜୀବନରେ ସମାଜର ଏହି କୁସଂସ୍କାରପୂର୍ଣ୍ଣ ନୀତିନିୟମକୁ ସେ ବିରୋଧ କରିଛନ୍ତି । କଲିକତାରେ ଅଧ୍ୟୟନ ସମୟରେ ମୁସଲମାନ ଘରେ ଖାଦ୍ୟ ଗ୍ରହଣ କରିବାକୁ କୁଣ୍ଠିତ ହୋଇ ନାହାନ୍ତି । ସେ ତାଙ୍କ 'ଆତ୍ମଜୀବନୀ'ରେ ଲେଖିଛନ୍ତି - ''କଲିକତାରେ ଯେଉଁ ମୁସଲମାନ ଘରେ ଟିଉସନ୍ କରୁଥିଲି, ତାଙ୍କ ଘରେ ବି ଦିନେ ଦିନେ ସେ ଯାଚିଲେ ଖାଏ ।'' (ପୃ-୮୯) ଏପରିକି ବିବାହ ସମ୍ବନ୍ଧରେ ହିନ୍ଦୁ ସମାଜର ନିୟମାବଳୀକୁ ପାଳନ କରିବାରେ ସେ କୁଣ୍ଠିତ ଥିଲେ । ବ୍ରାହ୍ମଣ ସମାଜରେ ଏହି ନିୟମ ଥିଲା ଅତ୍ୟନ୍ତ କଠୋର । ଅନ୍ୟ ଜାତି ସହିତ ଏକ ସଙ୍ଗରେ ଖାଦ୍ୟ ଗ୍ରହଣ କରିବାରେ ବ୍ରାହ୍ମଣ ସମାଜର ଯେଉଁ ବିରୋଧାଭାବ ରହିଥିଲା, ତାହା ସେ ଗ୍ରହଣ କରି ନ ଥିଲେ । ଆତ୍ମଜୀବନୀରେ ଏ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି - ''ବିବାହ ସଂପର୍କରେ 'ହିନ୍ଦୁ ସମାଜ'ର ନିୟମାବଳୀ କାର୍ଯ୍ୟରେ ପରିଣତ କରିବାର ସମୟ ଆମର ଆସିବାକୁ ଅନ୍ତାଧିକ ବିଳମ୍ବ ଥିଲା; ସୁତରାଂ ଖାଇବା ପିଇବାରେ ତାହା ଆରମ୍ଭ କରି ଦିଆଗଲା । ଆମ୍ଭେମାନେ ଛୁଆଁ ଛୁଇଁ ହୋଇ ତ ଖାଇଲୁ; ସ୍ୱାସ୍ଥ୍ୟ ନିୟମ ନ ମାନି ଏକାଥାଳିରୁ ମଧ ଖାଇବାକୁ ଆରମ୍ଭ କଲୁ ।'' (ପୃ-୮୫)

ଊନବିଂଶ ଶତକର ପ୍ରଥମାର୍ଦ୍ଧରେ ପାଶ୍ଚାତ୍ୟ ଜ୍ଞାନପ୍ରାପ୍ତ ରାଜା ରାମମୋହନ ରାୟ 'ବ୍ରାହ୍ମସମାଜ' ପ୍ରତିଷ୍ଠା କରି ଭାରତୀୟ ସମାଜରେ ପରିପୂରିତ କୁସଂସ୍କାର ବିଲୋପ ସାଧନ

ନିମିତ୍ତ ପ୍ରୟାସ କରିଥିଲେ । ବିଧବା ବିବାହ ସପକ୍ଷରେ ସ୍ୱର ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ବାଲ୍ୟବିବାହ ପ୍ରଥା ବିରୋଧରେ ଜନସଚେତନତା ସୃଷ୍ଟି କରିଥିଲେ । ଓଡ଼ିଶାରେ ଏହି ଶତକର ଦ୍ୱିତୀୟାର୍ଦ୍ଧରେ ତାର ପ୍ରତିକ୍ରିୟା ଆରମ୍ଭ ହୋଇଥିଲା ଏବଂ ବିଂଶ ଶତକର ପ୍ରଥମାର୍ଦ୍ଧରେ ଏଥିପାଇଁ ବହୁ ଜନସମର୍ଥନ ମିଳିଥିଲା । ବିଧବା ନାରୀ ଜୀବନର ଅସହାୟତା ଓ କରୁଣତା ବହୁ ସ୍ରଷ୍ଟାଙ୍କ ସୃଷ୍ଟିରେ ଆତ୍ମପ୍ରକାଶ କରି ସମାଜ ଆନ୍ଦୋଳନ ପାଇଁ ପଥ ପରିଷ୍କାର କରିଥିଲା । ଗୋଦାବରୀଶଙ୍କ 'ବିଧବା' କବିତାରେ ସମାଜର ନିଷ୍ଠୁରତାକୁ ବ୍ୟଙ୍ଗୋକ୍ତି କରାଯାଇଛି । ସେହିପରି ବାଲ୍ୟବିବାହ ପରି ସାମାଜିକ କୁସଂସ୍କାର ବିରୋଧରେ ଅନେକ ବ୍ୟକ୍ତି ପ୍ରତିକ୍ରିୟାଶୀଳ ଥିଲେହେଁ ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ ମାନସିକ ସ୍ତରରେ କେହି ପ୍ରସ୍ତୁତ ନ ଥିଲେ । ଜନସାଧାରଣଙ୍କ ଏହିପ୍ରକାର ମନୋବୃତ୍ତିକୁ ଲକ୍ଷ୍ୟକରି ସେ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି - ''ବାଲ୍ୟ ବିବାହ ବିଷୟରେ ଅନେକଥର ପ୍ରବନ୍ଧ ଲେଖିଛି । କିନ୍ତୁ ସେ ପ୍ରବନ୍ଧ ପରୀକ୍ଷାରେ ପାସ୍ କରିବା ନିମନ୍ତେ ମାତ୍ର; ଜୀବନରେ ତାର କୌଣସି ପ୍ରଭାବ ପକାଇବା ଉଦ୍ଦେଶ୍ୟରେ ନୁହେଁ । ଆମ ଶିକ୍ଷାର ଅଧିକାଂଶ ଏହି ଧରଣର । ନିର୍ମଳ ବାୟୁ ସେବନ କରିବା ଉଚିତ ବୋଲି ଆମେ ସ୍ୱାସ୍ଥ୍ୟ ବିଜ୍ଞାନରୁ ଘୋଷୁ; କିନ୍ତୁ ଘରେ କବାଟ ଝରକା କିଳି ମୁହଁ ଘୋଡ଼ାଇ ରାତିଯାକ ଘୁଙ୍ଗୁଡ଼ି ମାରି ଶୋଉ ।'' (ପୃ-୫୭) ଦେବଦେବୀଙ୍କ ନିକଟରେ ମାନସିକ କରି ନିରୀହ ପଶୁବଳି ଦେବା ପ୍ରଥା ଆମ ସମାଜର ନିଷ୍ଠୁରତା ଓ ଅନ୍ଧବିଶ୍ୱାସକୁ ସୂଚାଏ । ମଣିଷର ଏହି ନିଷ୍ଠୁରତା ଓ ଅନ୍ଧବିଶ୍ୱାସ ପାଇଁ ବହୁ ନିରୀହ ପଶୁ ପ୍ରାଣବଳି ଦେଇଥାନ୍ତି । ଏହାଦ୍ୱାରା ସମାଜର କିମ୍ୱା ବ୍ୟକ୍ତିବିଶେଷଙ୍କର କୌଣସି ଉପକାର ତ ସାଧିତ ହୁଏ ନାହିଁ; ବରଂ ମଣିଷର ନିଷ୍ଠୁରତା ଓ ହୃଦୟହୀନତାକୁ ପ୍ରମାଣିତ କରିଥାଏ । ୧୯୧୭ ମସିହାରେ କବି କାଳିଜାଈଙ୍କ ଦର୍ଶନ ଉଦ୍ଦେଶ୍ୟରେ ଯାଇଥିଲେ । ସେଠାରୁ ନୌକାରେ ଫେରିବା ସମୟରେ କାଳିଜାଈ ପାହାଡ଼ରେ ମାନସିକ ସୂତ୍ରରେ ଛାଡ଼ିଦିଆଯାଇଥିବା ଏକ ଛେଳିଛୁଆ ଆତ୍ମରକ୍ଷା ପାଇଁ ନିରୀହ ନିବେଦନ ଜଣାଇଥିଲା । ମାତ୍ର ନାବିକ ମନରେ ସେହି ଛେଳିଛୁଆଟିର କରୁଣ ନିବେଦନ କୌଣସି ପ୍ରତିକ୍ରିୟା ସୃଷ୍ଟି କରିପାରି ନ ଥିଲା । କାଳିଜାଈ ପାହାଡ଼ରୁ କୌଣସି ଜନ୍ତୁ ଆଣିଲେ, ନୌକା ବୁଡ଼ିଯିବାର ସମ୍ଭାବନା ରହିଛି ବୋଲି ତାର ବିଶ୍ୱାସ ଥିଲା । ନାବିକଟିର ସେହି ଅନ୍ଧବିଶ୍ୱାସ ଓ ଛେଳିଟିର ଅସହାୟତା କବିଙ୍କ ହୃଦୟରେ ଯେଉଁ ଆଘାତ ଦେଇଥିଲା, ତାହା ସେ ପ୍ରକାଶ କରିଛନ୍ତି ତାଙ୍କର 'ଅନାଥ ଶିଶୁ' କବିତାରେ -

''ଆଉ କିପାଁ ରାବୁ ଶିଶୁ ବିକଳେ ଏଭଳି ?
ବୃଥା ତୋର ଏତେ ଡାକ ଏତେ ତୋର ଅଳି
ପାଷାଣ ପାଦପଗଣ କି କରିବେ ଶୁଣି ?
ବୃଥା ଏତେ ବ୍ୟାକୁଳତା ନ ହୁଅ ବାହୁନି'' (ଗ୍ରନ୍ଥାବଳୀ- ୧ମ ଭାଗ)

ସତ୍ୟବାଦୀ ସାଧକଗଣ ଥିଲେ ଲିପି ସଂସ୍କାରର ପକ୍ଷବାଦୀ । ପ୍ରଥମେ ପଣ୍ଡିତ ନୀଳକଣ୍ଠ ଦାସ ଏ କ୍ଷେତ୍ରରେ ପଥିକୃତ ଉଦ୍ୟମ ଆରମ୍ଭ କରିଥିଲେ । ଗୋଦାବରୀଶ ମଧ୍ୟ ଏହି ଲିପି ସଂସ୍କାରକୁ ସମର୍ଥନ ଜଣାଇଥିଲେ । ଓଡ଼ିଆ ବର୍ଣ୍ଣମାଳାରେ ରହିଥିବା ତିନୋଟି 'ସ' ଓ ଦୁଇଟି 'ଇ'ର ବାସ୍ତବ ଭୂମିକାକୁ ସେ ଅସ୍ୱୀକାର କରୁଥିଲେ । ଏହାଦ୍ୱାରା ଭାବ ବିଭ୍ରାଟ ଏବଂ ଅଯଥା ସଂଶୟ ସୃଷ୍ଟି ହୁଏ ବୋଲି ତାଙ୍କର ଧାରଣା ହୋଇଥିଲା । ଭାବର ଅବାଧ ପରିପ୍ରକାଶ କ୍ଷେତ୍ରରେ ଏହି ବର୍ଣ୍ଣଦ୍ୱୟ ପ୍ରତିବନ୍ଧକ ସୃଷ୍ଟି କରେ । ଏହାର କୌଣସି ବୈଜ୍ଞାନିକ ଭିତ୍ତିଭୂମି ଥାଇପାରେ ବୋଲି ସେ ବିଶ୍ୱାସ କରୁ ନ ଥିଲେ । ତେଣୁ ସେ 'ଆତ୍ମଜୀବନୀ'ରେ ଲେଖିଛନ୍ତି - ବର୍ଣ୍ଣମାଳାର ତିନିଟାଯାକ 'ସ' ଓ ଦୁଇଟା 'ଇ' ବିଷୟରେ ମୋର ଭେଦାଭେଦ ଜ୍ଞାନ ନ ଥିଲା । ଏବେ ମଧ୍ୟ ବର୍ଣ୍ଣାଶୁଦ୍ଧି ଏଡ଼ି ଲେଖିବା ନିମନ୍ତେ ମୁଁ ଖଣ୍ଡିଏ ଅଭିଧାନ ପାଖରେ ଧରିଛି । ଅନେକ ମତେ ଲିପି ସଂସ୍କାର ପକ୍ଷପାତୀ ବୋଲି ଜାଣନ୍ତି । (ପୃ-୧୦)

କେବଳ ଆତ୍ମଜୀବନୀ ବା କବିତାରେ ନୁହେଁ, କଥାସାହିତ୍ୟରେ ମଧ୍ୟ ଗୋଦାବରୀଶଙ୍କ ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ ବେଶ୍ ସ୍ପଷ୍ଟ । 'ଶ୍ରୀମତୀ' ଗଳ୍ପରେ ଲେଖକ ଆମ ସମାଜରେ ନାରୀର ସାମାଜିକ ରୀତିନୀତି ସଂପର୍କରେ ରହିଥିବା ରକ୍ଷଣଶୀଳ ମନୋବୃତ୍ତିର ପରିଚୟ ଦେଇଛନ୍ତି । ପବିତ୍ର ପ୍ରେମ ଭାରତୀୟ ସାମାଜିକ ଜୀବନର ମହତ୍ତ୍ୱପୂର୍ଣ୍ଣ ଦିଗ । 'ଅର୍ଥ' ହୁଏତ ମଣିଷକୁ କ୍ଷଣିକ ବିଳାସ ଦେଇପାରେ: ମାତ୍ର ଶୁଦ୍ଧ ପ୍ରେମହିଁ ମଣିଷର ଚିରନ୍ତନ ଅଭିଳାଷ । 'ଶ୍ରୀମତୀ' ଗଳ୍ପରେ ତାହା ପ୍ରମାଣିତ ହୋଇଛି । 'ମିଳନ' ଗଳ୍ପରେ ରାଜଗୁରୁଙ୍କ କନ୍ୟା ବାସନ୍ତୀ ଏବଂ ମୟୂରଭଞ୍ଜ ସମ୍ରାଟ୍‌ଙ୍କ ପୁତ୍ରର ପବିତ୍ର ପ୍ରେମହିଁ ଉପଜୀବ୍ୟ ଉପାଦାନ । ଭାରତୀୟ ସମାଜରେ ବୈବାହିକ ସଂପର୍କ ସ୍ଥାପିତ ହୋଇଥାଏ ଜାତି, କୁଳ ଏବଂ ଗୋତ୍ରର ବିଚାରରେ । ଜାତିପ୍ରଥାନୁଯାୟୀ ରାଜପୁତ୍ର କ୍ଷତ୍ରିୟ ଏବଂ ରାଜଗୁରୁଙ୍କ କନ୍ୟା ବ୍ରାହ୍ମଣ ହୋଇଥିବାରୁ ସାମାଜିକ ବ୍ୟବସ୍ଥାନୁଯାୟୀ ସେମାନଙ୍କର ମିଳନ ଅସମ୍ଭବ । ସମାଜର ଏହି ଅନ୍ଧ କୁସଂସ୍କାର ବହୁ କ୍ଷେତ୍ରରେ ବ୍ୟକ୍ତିଜୀବନରେ ସଙ୍କଟ ସୃଷ୍ଟି କରିଥାଏ । ବାସ୍ତବ ଦୃଷ୍ଟିରୁ ବିଚାର କଲେ ଜାତି, ବଂଶ, ଅର୍ଥ, ପଦମର୍ଯ୍ୟାଦା ତଥା ରକ୍ଷଣଶୀଳ ମନୋଭାବ ମନର ମିଳନ କ୍ଷେତ୍ରରେ ପ୍ରତିବନ୍ଧକ ହୋଇ ନ ପାରେ । 'ମିଳନ' ଗଳ୍ପଟିରେ ତାହାହିଁ ପ୍ରତିପାଦିତ ହୋଇଛି । ଯୁଗ ଯୁଗ ଧରି ନାରୀ ସଂପର୍କରେ ଆମର ସାମାଜିକ ଜୀବନରେ ଯେଉଁ କୁସଂସ୍କାର ଭରି ରହିଛି, ତାର ଦୂରୀକରଣ ନିମିତ୍ତ 'ପରଦାନସିନ' ଗଳ୍ପରେ ଆହ୍ୱାନ ଦିଆଯାଇଛି । ବର୍ତ୍ତମାନ ସମୟରେ ନାରୀଶିକ୍ଷା ଓ ନାରୀ ସ୍ୱାଧୀନତାର ଆବଶ୍ୟକତା ରହିଛି । ଅଥଚ ପାରଂପରିକ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ଏବେ ବି ନାରୀର ସ୍ୱାଧୀନତାକୁ ଆମେ ସ୍ୱେଚ୍ଛାଚାର ଆଖ୍ୟା ଦେଉଛୁ । ଏହି ଗଳ୍ପରେ ସରୋଜିନୀ ଆଧୁନିକା ଶିକ୍ଷିତା ହୋଇଥିବାରୁ ସମାଜର ରକ୍ଷଣଶୀଳ ରୀତିନୀତି ଓ ଅନ୍ଧବିଶ୍ୱାସକୁ ଦୂର କରିବାକୁ ଚେଷ୍ଟା

କରିଛି । ଯେଉଁମାନେ ଅସୂର୍ଯ୍ୟଂପଶ୍ୟା, ସେମାନଙ୍କର ମନ କୁସଂସ୍କାର ଓ ଅନ୍ଧବିଶ୍ୱାସ ମଧ୍ୟରେ ବନ୍ଦୀ । ସମାଜ ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ସୀମିତ ଥିବାରୁ ପ୍ରତିକୂଳ ପରିସ୍ଥିତିରେ ସେମାନେ ଭାରସାମ୍ୟ ରକ୍ଷାକରିବାକୁ ଅସମର୍ଥା । କୁସଂସ୍କାର ବଶବର୍ତ୍ତୀ ହୋଇଥିବାରୁ ଚଞ୍ଚଳାର ଅବସ୍ଥା ତାହାହିଁ ହୋଇଛି । ସରୋଜିନୀର ଆଧୁନିକ ସ୍ୱଭାବ ଓ ଶିକ୍ଷାପାଇଁ ପଦ୍ମପୁରରେ ସାଧାରଣ ଲୋକଙ୍କ ଧାରଣା ହୋଇଥିଲା, ତାକୁ ବରପାତ୍ର ମିଳିବ ନାହିଁ । ଦିନେ ମଧ୍ୟ ଚଞ୍ଚଳା ସରୋଜିନୀ ବିରୋଧରେ ନଣନ୍ଦ ଇନ୍ଦୁକୁ କହିଥିଲା- ''ସତେ ଇନ୍ଦୁ, ଏ ସରର କପାଳ ବଡ଼ ମନ୍ଦ । ଆଚାରଭ୍ରଷ୍ଟ ହେଲେ ତ କୁଳ ସ୍ତ୍ରୀ ଗଲା । ଏ ଟୋକୀର ଆଉ କି ଆଚାର ଅଛି ? ଦାଣ୍ଡରେ ବାଟରେ ଦେଖୁ ନାହଁ କିମିତି ବୁଲୁଛି ।'' (ଗ୍ରନ୍ଥାବଳୀ - ୨ୟ ଭାଗ - ପୃ ୨) ଏହି କୁସଂସ୍କାର ନାରୀର ସ୍ୱାଧୀନତା ଓ ପ୍ରଗତିରେ ବାଧା ସୃଷ୍ଟି କରିଛି । ଗାଳ୍ପିକ ସରୋଜିନୀ ଚରିତ୍ର ମାଧ୍ୟମରେ ଯୁଗ ଯୁଗ ଧରି ନାରୀ ସଂପର୍କରେ ପରିପୂରିତ ଅନ୍ଧବିଶ୍ୱାସକୁ ଦୂର କରିବାକୁ ଚାହିଁଛନ୍ତି । 'ପାଣୁ ମିଶ୍ରେ' ଗଳ୍ପରେ ବାଲ୍ୟବିବାହ ଜନିତ ସାମାଜିକ କୁସଂସ୍କାର ବିରୋଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶିତ । ସମାଜରେ ପ୍ରୌଢ଼ ବ୍ୟକ୍ତିଟି ନିଜ ପୁତ୍ର ବୟସର କନ୍ୟାଟି ବିବାହ କରି ତାର ଭବିଷ୍ୟତ ଜାଳିପୋଡ଼ି ନଷ୍ଟ କରିଦିଏ । କୌଣସି କାରଣରୁ କନ୍ୟାଟି ସମବୟସର ପୁତ୍ର ଯୁବକଟି ପ୍ରତି ଆକୃଷ୍ଟ ହେଲେ ପ୍ରତିକ୍ରିୟାଶୀଳ ବୃଦ୍ଧ ସନ୍ତାନ ଉପରେ ଅତ୍ୟାଚାର କରେ, ତାକୁ ଗୃହରୁ ନିର୍ବାସିତ କରେ । ପ୍ରୌଢ଼ ଲୋକନାଥ ଓ ପୁତ୍ର ଦାମୋଦର ଚରିତ୍ର ମାଧ୍ୟମରେ ଗାଳ୍ପିକ ଆମ ସମାଜରେ ପୂରି ରହିଥିବା ଏହି କୁସଂସ୍କାରର ସ୍ୱରୂପ ଉଦ୍‌ଘାଟନ କରିଛନ୍ତି । 'ତୋଳାକନ୍ୟା' ଗଳ୍ପରେ ବାଲ୍ୟବିବାହର କ୍ରୁରତା, ବିଧବା ନାରୀର ଯନ୍ତ୍ରଣା ଓ କନ୍ୟାସୁନାର କରୁଣ ପରିଣତି ସଂପର୍କରେ ଆଲୋଚନା କରିଛନ୍ତି । ଜଣେ ବୃଦ୍ଧ ତାର ନାତୁଣୀ ବୟସର କନ୍ୟାଟିକୁ ବିବାହ କରିବା ପରେ ମୃତ୍ୟୁ ଲାଭ କରେ ଏବଂ ବିଧବା କନ୍ୟାଟି ସମାଜରେ ଅବହେଳିତ ଜୀବନଯାପନ କରିବା ସମୟରେ ଯେଉଁ ମାନସିକ ନିର୍ଯାତନା ଲାଭ କରେ ତାର ସୂଚନା ଏଥିରେ ରହିଛି ।

'ବିଧବା କନ୍ୟା' ଗଳ୍ପରେ ଗାଳ୍ପିକ ସମାଜରେ ବିଧବା ନାରୀର ଅବହେଳିତ ଜୀବନ ଓ ବାଲ୍ୟବିବାହର କୁପରିଣତି ଦର୍ଶାଇଛନ୍ତି । ଗଳ୍ପର ନାୟିକା ଲୀଳା ବିଧବା ହୋଇ ନ ଥିଲେହେଁ ବିଧବା ବୋଲି ପ୍ରଚାରିତ ହୋଇଛି । ପାରଂପରିକ ସାମାଜିକ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରି ଜଣେ ପ୍ରଗତିବାଦୀ ଯୁବକ ମାର୍କଣ୍ଡ ତାକୁ ବିବାହ ନିମିତ୍ତ ସ୍ୱୀକୃତି ଦେଇଛି । ସମାଜରେ ବିଧବା ନାରୀଟିର ଅବସ୍ଥା ସଂପର୍କରେ ଲୀଳାର ମା' ଦୁର୍ଗାଙ୍କ ମୁଖରେ କୁହାଯାଇଛି - ''କୋଳର ଝିଅ ଲୀଳା ତୁଚ୍ଛା ହାତ, ତୁଚ୍ଛା ମୁହଁ କାନରେ ରହିବ, ନିରାମିଷ ଖାଇବ, ଏକାଦଶୀରେ ନିର୍ଜଳ ଉପବାସ କରିବ, ଶୁଣ୍ଢିଅ ପିନ୍ଧି ରହିବ ।'' (ଗ୍ରନ୍ଥାବଳୀ ୪ର୍ଥ ଭାଗ-ପୃ ୨୩) । 'ଦମ୍ଭିଲାବନ୍ଧୁ' ଗଳ୍ପରେ ପ୍ରାଚୁର୍ଯ୍ୟ ଓ ବଡ଼ଘରେ ବନ୍ଧୁ କଲେ ମଣିଷ ସୁଖ ଓ ଶାନ୍ତିରେ ରହିପାରେ ବୋଲି ଯେଉଁ ଅନ୍ଧଧାରଣା ରହିଛି, ତାର ଅସାରତା ପ୍ରତିପାଦିତ

ହୋଇଛି । ଗୋବିନ୍ଦର ଏହି ମନୋଭାବ ତାର ଦୁଃଖର କାରଣ ହୋଇଛି । 'ନାରୀର ଗତି' ଗଳ୍ପରେ ବାଲ୍ୟବିବାହ ଏବଂ ବିଧବାନାରୀର ଜୀବନଯନ୍ତ୍ରଣା ବର୍ଣ୍ଣିତ । 'ବରଯାତ୍ରୀ' ଗଳ୍ପରେ ପୋଷ୍ୟପୁତ୍ର ସମସ୍ୟା ଉପସ୍ଥାପିତ । 'ଭାଇଭାଗ' ଗଳ୍ପରେ ପୈତୃକ ସଂପତ୍ତି ପାଇଁ ଦୁଇଭାଇ ନୀଳକଣ୍ଠ ଓ ରାମଚନ୍ଦ୍ର ମଧ୍ୟରେ ଶତ୍ରୁତା, ଗାଁ ଟାଉଟର ସୋମନାଥ ପ୍ରରୋଚନାରେ ଅଦାଲତରେ ଅର୍ଥଶ୍ରାଦ୍ଧ ଓ ସର୍ବସ୍ୱାନ୍ତ ହେବା ଘଟଣା ବର୍ଣ୍ଣିତ । ଏତଦ୍‌ବ୍ୟତୀତ ଜାତିଭେଦ ରୂପକ କୁପ୍ରଥା ସଂପର୍କରେ ମଧ୍ୟ ଏଥିରେ ସୂଚନା ପ୍ରଦାନ କରାଯାଇଛି । 'ବଡ଼ପୁଅ' ଗଳ୍ପରେ ପୁତ୍ରପାଇଁ ମାତୃ ହୃଦୟର ବ୍ୟାକୁଳତା, ପୋଷ୍ୟପୁତ୍ର ପ୍ରତି ଘୃଣାଭାବ ସମାଜର ଅନ୍ଧ କୁସଂସ୍କାରର ପ୍ରତିଫଳନ । 'ପୁଅାଣୀ ଘର' ଗଳ୍ପରେ ବାଲ୍ୟବିବାହ, ଯୌତୁକପ୍ରଥା ଆଦି ପରି କେତେକ ସାମାଜିକ କୁସଂସ୍କାର ସଂପର୍କରେ ଆଲୋକପାତ କରାଯାଇଛି । 'ସେବତୀର ଶବ'ରେ ସେହି ଜାତିପ୍ରଥାରୂପକ ସାମାଜିକ ବ୍ୟାଧି ବର୍ଣ୍ଣିତ । 'ବାଁ-ଡାହାଣ' ଗଳ୍ପରେ ନିଶାସେବନ ପରି କୁ-ଅଭ୍ୟାସର ପରିଣତିକୁ ସୂଚେଇ ଦିଆଯାଇଛି । ଗୋଦାବରୀଶ ଗଳ୍ପଜଗତରେ ଆମ ସମାଜ ଜୀବନର ବହୁ ଦିଗ ପ୍ରତିଫଳିତ । ବିଶେଷ କରି ଜାତିଭେଦ, ବାଲ୍ୟବିବାହ ପ୍ରଥା, କନ୍ୟାସୁନା, ଯୌତୁକ ପ୍ରଥା, ବିଧବା ବିବାହ, ତୋଳାକନ୍ୟା, ବୃଦ୍ଧ ବିବାହ, ନାରୀପ୍ରତି ରକ୍ଷଣଶୀଳ ମନୋଭାବ ଆଦି ବହୁ ସାମାଜିକ ସମସ୍ୟାର ଉଲ୍ଲେଖ କରି ଏହି କୁସଂସ୍କାର ଓ ଅନ୍ଧବିଶ୍ୱାସର ଦୂରୀକରଣ ନିମିତ୍ତ ସେ ଶୁଣାଇଛନ୍ତି ଆଶାନ୍ୱିତ ଆହ୍ୱାନ ।

ଗୋଦାବରୀଶ ମିଶ୍ରଙ୍କ ଉପନ୍ୟାସଗୁଡ଼ିକରେ ସାମାଜିକ କୁସଂସ୍କାର ସଂପର୍କରେ ବିଶେଷ କିଛି କୁହାଯାଇ ନାହିଁ । କେବଳ 'ଅଠର ଶହ ସତର' ଉପନ୍ୟାସରେ ଜଣେ ଅତ୍ୟାଚାରିତା ନାରୀର ବିବାହ ଦେଇ କେତେକାଂଶରେ ଔପନ୍ୟାସିକ ନିଜ ସମାଜ ସଚେତନତାର ପ୍ରମାଣ ଦେଇଛନ୍ତି । ଗୋଦାବରୀଶ ଚଟିଘରର ମାଲିକ ଦୀନବନ୍ଧୁକୁ ଜଣେ ରାଜାଦ୍ୱାରା ଅତ୍ୟାଚାରିତା ନିରୀହା ରମଣୀ କମଳା ସହିତ ବିବାହ କରାଇଥିବାରୁ ଦୀନବନ୍ଧୁ ଜାତିରୁ ବାସନ୍ଦ ହୋଇଛି । ନିରୀହା ଅବଳା ବିନା ଦୋଷରେ କ୍ଷମତାଶାଳୀ ଅତ୍ୟାଚାରୀଦ୍ୱାରା ଧର୍ଷିତା ହେଲେ ସମାଜରେ ତାର ପରିଚୟ ହୋଇଥାଏ କଳଙ୍କିନୀ । ଏପ୍ରକାର କୁସଂସ୍କାର ଓ ମାନସିକତାକୁ ଔପନ୍ୟାସିକ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି । ସମାଜ ସଂସ୍କାରର ଆୟୁଧ ହାତରେ ଧରି ପତନଶୀଳ ସମାଜକୁ ଶୁଦ୍ଧ ଏବଂ ପବିତ୍ର କରିବାକୁ ଚେଷ୍ଟା କରିଛନ୍ତି ତାଙ୍କ ସୃଷ୍ଟି ମାଧ୍ୟମରେ ।

ଗୋଦାବରୀଶ ତାଙ୍କର କେତେକ ପତ୍ର ଓ ପ୍ରବନ୍ଧରେ ସମାଜରେ ପ୍ରଚଳିତ ଅନ୍ଧବିଶ୍ୱାସ ଓ କୁସଂସ୍କାର ସଂପର୍କରେ ଉଲ୍ଲେଖ କରି ତାର ନିରାକରଣ ନିମିତ୍ତ ଉପଦେଶ ଦେଇଛନ୍ତି । ବ୍ୟକ୍ତି ଚରିତ୍ରରେ ପରିଲକ୍ଷିତ ବିଭିନ୍ନ ଦୁର୍ବଳତାକୁ ସେ ଆଲୋଚନା ପରିସରଭୁକ୍ତ କରି ତାର ସଂଶୋଧନ ପାଇଁ ପ୍ରୟାସ କରିଛନ୍ତି । 'ସତ୍ୟବାଦୀର ପତ୍ର' ରଚନାରେ ପାନ

ସମ୍ବନ୍ଧରେ ଆଲୋକପାତ କରି ଏହାର ସେବନ ବର୍ତ୍ତମାନ ସମୟର ଏକ ଫେସନ ବୋଲି ବ୍ୟଙ୍ଗ କରିଛନ୍ତି । ଏହାଦ୍ୱାରା ଉଭୟ ଅର୍ଥହାନି ଓ ସ୍ୱାସ୍ଥ୍ୟହାନି ଯେ ଘଟୁଛି, ସେ ସଂପର୍କରେ କେହି ସଚେତନ ନୁହନ୍ତି । ତାଙ୍କ ମତରେ- ''ଘରେ ପେଟକୁ ଦାନା ନ ଥାଉ, ପାନ ଖଣ୍ଡେ ଖାଇ ପାଟି ନାଲି କରିବାକୁ ହେବ । ପଇସାଟିଏ କୁଆଡୁ ମିଳିଲେ, ପ୍ରଥମେ ଯିବା ପାନ ଦୋକାନକୁ । ଏଥିରେ ଦେଶବାସୀଙ୍କ ଅବସ୍ଥା ଦିନକୁ ଦିନ ଖରାପ ହେଉଅଛି'' (ଗ୍ରନ୍ଥାବଳୀ-୪ର୍ଥଭାଗ-ପୃ ୧୩୯) । ସେହି ସତ୍ୟବାଦୀର ୨ୟ ପତ୍ରରେ ଏବେ ବିନା ପ୍ରତିଭା ଓ ଅଧ୍ୟବସାୟରେ ବ୍ୟକ୍ତି କିପରି କବି ହେବାର ଆଶାପୋଷଣ କରୁଛନ୍ତି, ସେ ସମ୍ବନ୍ଧରେ ସୂଚନା ଦିଆଯାଇଛି । କବିର ଚାରିତ୍ରିକ ବୈଶିଷ୍ଟ୍ୟ ବିଷୟରେ ତାଙ୍କର ମତ ହେଉଛି- ''ସଂସାରରେ ସମସ୍ତେ ନିଅନ୍ତି, ଦିଅନ୍ତି, କବି କିନ୍ତୁ ସର୍ବଦା ଦେଇଥାନ୍ତି । 'ନେବା' କବିଙ୍କର କାର୍ଯ୍ୟ ନୁହେଁ । ଦାନ କବିଙ୍କର ଜୀବନ ଓ ବିଶେଷତ୍ୱ । ସେଥିପାଇଁ ସେ ଜୀବନ୍ତ ରାଜ୍ୟର ରାଜା । ସୂର୍ଯ୍ୟ, ଚନ୍ଦ୍ର ଯେପରି ଜଗତର ସମସ୍ତଙ୍କର ସଂପଦ, କବି ସେହିପରି ସମସ୍ତଙ୍କର । କବି ପୁଣି ତାଙ୍କ ନିଜ ଧନରେ ସାଧାରଣଙ୍କୁ ବିମୁଗ୍ଧ ନ କରି ସାଧାରଣ ଧନରେ ସକଳପ୍ରାଣକୁ ପ୍ଳାବିତ କରିଥାନ୍ତି । (ପୃ ୧୪୪) । ପ୍ରତିଭାହୀନ କବିଙ୍କୁ ସମାଲୋଚନା କରି ସେ ଲେଖିଛନ୍ତି - ''ଶୁଆର ପକ୍ଷୀ ଅଛି, ସେ ଆକାଶରେ ଉଡ଼ି ବୁଲିଲା । କୁକୁଡ଼ା ନିଜ ପରାକ୍ରମ ଅନୁସାରେ ଖଣ୍ଡିଉଡ଼ା ଦେଲା, ଝଡ଼ିପୋକ ବେଳ ଉଣ୍ଡି ଥରେ ଆକାଶଟା ଦେଖିନେଲା । ମୂଷା, ବିରାଡ଼ି ପୁଣି ଏ ଉଦ୍ୟମ କାହିଁକି କରିବେ ? ଭୂଇଁ ଉପରେ ଖୋଜି ବୁଲିଲେ ସିନା ଆହାର ମିଳିବ । ଉଡ଼ିବାର ଶକ୍ତି ଆମର ନାହିଁ; କିନ୍ତୁ ଭୂଇଁ ଉପରେ, ଗଛରେ, ପର୍ବତରେ ଚଢ଼ିବାର ଶକ୍ତି ଅଛି, ଅଭ୍ୟାସରେ, ପଠନରେ, ସାଧନାଦ୍ୱାରା ଅନୁସନ୍ଧାନ କରି ଚିତ୍ତର ଉନ୍ନତି ବିଧାନ କରିବାକୁ ହେବ ।'' (ପୃ ୧୪୬)

ସହରବାସୀ ମିଥ୍ୟା ଅଭିମାନ ଓ ଆଭିଜାତ୍ୟ ପ୍ରତିଷ୍ଠାପାଇଁ ବ୍ୟାକୁଳ । ଭାରତୀୟ ସଂସ୍କୃତିର ଭିତ୍ତିଭୂମି ସ୍ନେହ, ପ୍ରୀତି ଓ ସୌହାର୍ଦ୍ଦ୍ୟ । ଅଥଚ ବର୍ତ୍ତମାନର ନଗରବାସୀ ସଂପୂର୍ଣ୍ଣ ଭାବେ ସ୍ୱାର୍ଥପରାୟଣ ଓ ବ୍ୟକ୍ତିକୈନ୍ଦ୍ରିକ । ଏହି ମିଥ୍ୟା ବିଶ୍ୱାସବୋଧ ଆମ ସଂସ୍କୃତିର ଅବନତିର କାରଣ । ତେଣୁ ସେ ଲେଖିଛନ୍ତି ସହରରେ ପଡ଼ିଶା ଘର ନାହିଁ । ଯେଝା ଘରଟି ତାର । ଆଗେ ଭାରତବର୍ଷରେ ଥିଲା, ପ୍ରତି ଗ୍ରାମ ଗୋଟିଏ ହୋଇ ରହିଥିଲେ । ଏକ ଗ୍ରାମ ସଙ୍ଗେ ଅନ୍ୟ ଗ୍ରାମର ବିଶେଷ ସଂପର୍କ ନ ଥିଲା । ଏବେ ସହରରେ ଘରମାନ ସେହିପରି; କାହା ସଙ୍ଗରେ କାହାର ଚିହ୍ନା ପରିଚୟ ନାହିଁ । କାହା ଘରେ ଚଡ଼କପଡ଼ି ଭାଙ୍ଗିଗଲେ ମଧ୍ୟ ପଡ଼ିଶା ଘରବାଲା ସେ କଥା କିଛି ଜାଣିବାକୁ ନାହିଁ । (୪ର୍ଥ ଭାଗ-ପୃ ୧୪୮) । ଅନ୍ୟପତ୍ରରେ ଆଧୁନିକ ଚିକିତ୍ସା ପଦ୍ଧତି, ଆଧୁନିକ ପିଲାଙ୍କ ବେଢଙ୍ଗ ଗତିରୀତି, ନାରୀ ସ୍ୱାଧୀନତା ଆଦି ସଂପର୍କରେ ଆଲୋଚନା ହୋଇଛି । ଆଜିକାଲି ଯୁବ ସଂପ୍ରଦାୟ ମଧ୍ୟରେ ଧୂମପାନ ଏକ ଫେସନରେ ପରିଣତ ହୋଇଛି । ମାତ୍ର ଏହାର କୁ-କ୍ରିୟା ପ୍ରତି ଆଦୌ ସଚେତନ ନୁହନ୍ତି ।

ଏପରିକି ଛୋଟ ପିଲାମାନେ ମଧ୍ୟ ଏହାର ଶିକାର ହୋଇଛନ୍ତି । ତେଣୁ ସେ ଅନ୍ୟ ଏକ ଚିଠିରେ ଲେଖିଛନ୍ତି ''ମୋର ପ୍ରାଣରେ କଠୋର ଆଘାତ ଲାଗେ, କୋମଳ ବାଳକର ଧୂମପାନ ମଳିନ ଶୁଷ୍କ ଅଧରଯୁଗଳ ଦେଖିଲେ । ମୁଁ ଜାଣେ ନାହିଁ, ପିଲାମାନେ ସେଥିରେ କି ସୁଖ ପାଆନ୍ତି । ଦେଖୁଛନ୍ତି ଧୂମପାନ ଦେଶଯାକ ଗୋଟିଏ ଫେସନ୍ । ଅତଏବ ସେଇଟା କରିବାକୁ ହେବ । x x x x ଆପଣ ତ ଜାଣନ୍ତି ପାଶ୍ଚାତ୍ୟ ସଭ୍ୟତାରେ ଧୂମପାନ ଏଡ଼େ ଆଦୃତ ହେଲେ ମଧ୍ୟ ତାହା ଅନେକ ସ୍ଥାନରେ ବାରଣ ଅଛି । ରେଳଗାଡ଼ିରେ, ଟ୍ରାମ୍‌ଗାଡ଼ିରେ, ଗିର୍ଜାଘରେ ଭଦ୍ରତାପାଇଁ ଏବଂ କଳକାରଖାନାରେ ଅନାପଦ ପାଇଁ ଧୂମପାନ ନିଷିଦ୍ଧ । ଭାରତରେ କାହିଁକି ଛାତ୍ର ପଢ଼ି ବସିବା ପୂର୍ବରୁ, ଶିକ୍ଷକ ପଢ଼ାଇସାରି ଏବଂ ପରିଦର୍ଶକ ପରିଦର୍ଶନ କଲାବେଳେ ଧୂଆଁ ଭଳକେ ଭଳକେ ଛାଡୁଛନ୍ତି । ବିଦ୍ୟାଳୟ ପବିତ୍ର ସ୍ଥାନ । ଶାରୀରିକ, ମାନସିକ, ଆଧ୍ୟାତ୍ମିକ ଉନ୍ନତି ବିକାଶ କରିବାର ପୁଣ୍ୟପୀଠ । ସରସ୍ୱତୀ ସେଠାରେ ଆରାଧ୍ୟ ଦେବୀ । ତାଙ୍କ ସଙ୍ଗରେ ଧୂମଦେବଙ୍କର ସାମ୍ରାଜ୍ୟ ଲାଭପାଇଁ ଏ ବିରୋଧଭାବ କାହିଁକି ?'' (ଗ୍ରନ୍ଥାବଳୀ-୪ର୍ଥ ଭାଗ-ପୃ ୧୬୧)

ପଣ୍ଡିତ ଗୋଦାବରୀଶ ଓଡ଼ିଶାର ଅର୍ଥନୀତି, ଶିକ୍ଷା, ଆର୍ଥିକ ଅବନତି ଏବଂ ଗଣତନ୍ତ୍ର ସଂପର୍କରେ ମଧ୍ୟ ଆଲୋଚନା କରି ଏହାର ସଂସ୍କାର ନିମିତ୍ତ କେତେକ ପରାମର୍ଶ ଦେଇଛନ୍ତି । ତାଙ୍କ ମତରେ ଦେଶର ଆର୍ଥନୀତିକ ପ୍ରଗତି ଓ ସଂସ୍କାର ନିମିତ୍ତ ଶିଳ୍ପର ବିକାଶ ଏକାନ୍ତ ବାଞ୍ଛନୀୟ । ଓଡ଼ିଶାରେ ପ୍ରଚୁର ପରିମାଣରେ କଞ୍ଚାମାଲ ଭରପୂର ଥିଲେହେଁ ଉପଯୁକ୍ତ ବିନିଯୋଗ ଅଭାବରୁ ଓଡ଼ିଶାର ଅର୍ଥନୀତି ଦୁର୍ବଳ ହୋଇପଡ଼ିଛି । ସେ 'ଉତ୍କଳରେ ଶିଳ୍ପ ସଙ୍ଗଠନର ଭବିଷ୍ୟତ' ପ୍ରବନ୍ଧରେ କହିଛନ୍ତି ''ଉତ୍କଳରେ ଶିଳ୍ପର ମୂଳ ଉପାଦାନ ପୂରି ରହିଛି କହିଲେ ଚଳେ । ଜଙ୍ଗଲରେ କାଠ, ବାଉଁଶ ପ୍ରଚୁର ଅଛି । ମାତ୍ର ସେସବୁର ଯେତେ ଅର୍ଥକରୀ ବ୍ୟବହାର ହୋଇପାରେ, ତାହା ହେଉ ନାହିଁ ।'' (ଗ୍ରନ୍ଥାବଳୀ - ୪ର୍ଥ, ପୃ ୩୫୯) । ସେହିପରି 'ଉତ୍କଳର ଶିକ୍ଷାଯୋଜନା' ପ୍ରବନ୍ଧରେ ଶିକ୍ଷାର ଉପଯୋଗିତା ସମ୍ବନ୍ଧରେ ଆଲୋଚନା କରାଯାଇଛି । ଶିକ୍ଷା ମଣିଷ ଚରିତ୍ର ଗଠନ ତଥା ବ୍ୟକ୍ତିତ୍ୱ ବିକାଶରେ ସହାୟତା କରେ । ବର୍ତ୍ତମାନ ପରିପ୍ରେକ୍ଷୀରେ ଶିକ୍ଷାର ସଂସ୍କାର ସର୍ବାଦୌ ପ୍ରୟୋଜନ । ଦେଶର ସର୍ବବିଧ ଉନ୍ନତି ଶିକ୍ଷାର ଗୁଣାତ୍ମକ ମାନ ଉପରେ ନିର୍ଭରଶୀଳ । ଶିକ୍ଷାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମ୍ବନ୍ଧରେ ସେ କହିଛନ୍ତି, ''ଶିକ୍ଷାବଳରେ ପ୍ରତ୍ୟେକ ବ୍ୟକ୍ତିର ଚରିତ୍ର ପୁଷ୍ଟ ଓ ବଳିଷ୍ଠ ନ ହେଲେ ଶିକ୍ଷାର ଲକ୍ଷ୍ୟ ସାଧିତ ହୋଇପାରିବ ନାହିଁ । ସାର୍ବଜନୀନ ମୈତ୍ରୀଭାବକୁ ଅନ୍ତିମ ଲକ୍ଷ୍ୟରେ ରଖି ଶିକ୍ଷା ଯୋଜନା ପ୍ରସ୍ତୁତ କରିବାକୁ ହେବ x x x x ଯେଉଁ ଦେଶର ସଂସ୍କୃତି ଅଛି, ତାର ଶିକ୍ଷା ଯୋଜନା ସେହି ସଂସ୍କୃତି ଉପରେ ଗଢ଼ାହେବା ଦରକାର । ସଂସ୍କୃତିର ଜନ୍ମ ଶିକ୍ଷାରୁ । ସେ ଶିକ୍ଷା ବ୍ୟକ୍ତିଗତ ଶିକ୍ଷା ଯେତିକି, ସାମାଜିକ ଶିକ୍ଷା ମଧ୍ୟ ସେତିକି ହୋଇପାରେ । ସଂସ୍କୃତି ଉପରେ ପୁଣି ଶିକ୍ଷାର ଭିତ୍ତି ଗଢ଼ା ହୁଏ । ସୁତରାଂ ଶିକ୍ଷା ଯୋଜନାରେ

ଏକ ବଳିଷ୍ଠ ସାର୍ବଜନୀନ ସଂସ୍କୃତିର ଗଠନକୁ ଲକ୍ଷ୍ୟକରି ଧରିବା ଆବଶ୍ୟକ x x x x ଯେ ପ୍ରକାର ଶିକ୍ଷା ହେଉ ପଛକେ, ତା' ବଳରେ ଯଦି ମନୁଷ୍ୟ ଭଲଭାବରେ ଜୀବନ ଧାରଣ କରି ମନୁଷ୍ୟୋଚିତ ଗୁଣମାନଙ୍କରେ ଭୂଷିତ ହୋଇପାରେ, ତାକୁହିଁ ଉପଯୁକ୍ତ ଶିକ୍ଷାପଦ୍ଧତି କୁହାଯିବ ।'' (ଗ୍ରନ୍ଥାବଳୀ-୪, ପୃ ୩୬୩) । 'ସଭାପତି ପଣ୍ଡିତଜୀଙ୍କ ଅଭିଭାଷଣ'ରେ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା ଏବଂ ଶିକ୍ଷାର ସଂସ୍କାର ନିମିତ୍ତ ସୁଚିନ୍ତିତ ପରାମର୍ଶ ଦିଆଯାଇଥିବା ସମୟରେ 'ପ୍ରାଥମିକ ଶିକ୍ଷା ପ୍ରଣାଳୀର ଆମୂଳ ପରିବର୍ତ୍ତନ ଲୋଡ଼ା' ଅଭିଭାଷଣରେ ପ୍ରାଥମିକ ଶିକ୍ଷାପଦ୍ଧତିର ତ୍ରୁଟି ବିଚ୍ୟୁତି ପ୍ରଦର୍ଶନ କରି ଏହାର ସଂସ୍କାର ନିମିତ୍ତ କ'ଣ ଆବଶ୍ୟକ, ତାର ସୂଚନା ଦିଆଯାଇଛି । 'ଓଡ଼ିଶାରେ କ୍ରମାଗତ ଅନାବୃଷ୍ଟି' ପ୍ରବନ୍ଧରେ ଆଖିବୁଜା ଜଙ୍ଗଲ କଟାର ପରିଣାମ ଦର୍ଶାଇଛନ୍ତି । 'ଛାତ୍ରଜୀବନରେ ଦାୟିତ୍ୱ' ଅଭିଭାଷଣରେ ଛାତ୍ରମାନଙ୍କର କର୍ତ୍ତବ୍ୟ ଓ ବ୍ୟବହାର, ବାରିପଦା ସାହିତ୍ୟ-ସମାଜରେ ଅଭିଭାଷଣରେ ସାହିତ୍ୟ ସହିତ ସମାଜର ସଂପର୍କ, ଜାତି ଗଠନରେ ସାହିତ୍ୟର ଭୂମିକା ସମ୍ବନ୍ଧରେ ଆଲୋକପାତ କରିଛନ୍ତି । 'ଗଣତନ୍ତ୍ର ପରିଷଦ' ସଂପର୍କୀୟ ଅଭିଭାଷଣରେ ସେ ଗଣତନ୍ତ୍ରର ସମସ୍ୟା, ସଂକଟ ଆଦିର ଆଲୋଚନା କରି ଏହାର ସଂସ୍କାର ନିମିତ୍ତ କେତେକ ପରାମର୍ଶ ଦେଇଛନ୍ତି । 'ଗଣତନ୍ତ୍ର ଶାସନର ରୂପରେଖ' ପ୍ରବନ୍ଧରେ ଗଣତନ୍ତ୍ରର ବୈଶିଷ୍ଟ୍ୟ, ସ୍ୱରୂପ ଓ ତ୍ରୁଟି ସଂପର୍କରେ ସୂଚନା ଦିଆଯାଇ ଏହାର ପରିମାର୍ଜନ ନିମିତ୍ତ କେତେକ ପ୍ରସ୍ତାବ ରହିଛି । ଏହି ପ୍ରବନ୍ଧରେ ଏକ ସୁସ୍ଥ ଗଣତନ୍ତ୍ର ନିମିତ୍ତ ଗୋଟିଏ ବଳିଷ୍ଠ ବିରୋଧୀ ଦଳର ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ସେ ଦୃଢ଼ୋକ୍ତି କରିଛନ୍ତି ।

ଗୋଦାବରୀଶ ବହୁମୁଖୀ ପ୍ରତିଭାର ଅଧିକାରୀ । ତାଙ୍କର ଅଧିକାଂଶ ସୃଷ୍ଟିରେ ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ ବେଶ୍ ସ୍ପଷ୍ଟ । କେବଳ ସାହିତ୍ୟ ନୁହେଁ, ଯେତେବେଳେ ଶିକ୍ଷା, ଅର୍ଥନୀତି, ଯୋଜନା, ରାଜନୀତି, ଶିଳ୍ପ ଆଦି ସଂପର୍କରେ ଆଲୋଚନା କରିଛନ୍ତି, ସେଥିରୁ ମଧ୍ୟ ତାଙ୍କର ଏହି ସଂସ୍କାରବାଦୀ ଦୃଷ୍ଟିକୋଣ ବାରି ହୋଇ ପଡ଼େ । ଶିକ୍ଷା, ଅର୍ଥନୀତି, ରାଜନୀତି ଆଦି କ୍ଷେତ୍ରରେ ସଂସ୍କାର ନ ଆଣିଲେ ଦେଶର ବିକାଶ ସମ୍ଭବ ନୁହେଁ ବୋଲି ସେ ଅନୁଭବ କରିଛନ୍ତି । ତେଣୁ ଦେଶର ସାମଗ୍ରିକ ବିକାଶ ନିମିତ୍ତ ସବୁ କ୍ଷେତ୍ରରେ ସଂସ୍କାର ଆସିବା ପ୍ରୟୋଜନ ବୋଲି ସେ କହିଛନ୍ତି । ତାଙ୍କର ଏହି ଦୃଷ୍ଟିଭଙ୍ଗୀ ଏକ ନୂତନ ଓ ପ୍ରଗତିଶୀଳ ଦେଶ ଗଠନରେ ଯେ ସହାୟତା କରିପାରିବ, ଏଥିରେ ସନ୍ଦେହ ନାହିଁ ।

# ସବୁଜରୁ ଧୂସର ପୃଥିବୀ

## (ବୈକୁଣ୍ଠନାଥଙ୍କ ସାମ୍ୟବାଦୀ କବିତା)

୧୩୩୨ ସାଲ ଆଷାଢ଼ 'ଉତ୍କଳ ସାହିତ୍ୟ' ପତ୍ରିକାର ତୃତୀୟ ସଂଖ୍ୟାରେ କବି ବୈକୁଣ୍ଠନାଥଙ୍କ 'ସବୁଜ ବନ୍ଧୁ ପ୍ରତି' କବିତାଟି ପ୍ରକାଶ ପାଇବା ପରେ ସମସାମୟିକ ଓଡ଼ିଆ କବିତା ପରଂପରା ଏକ ନୂତନ ମୋଡ଼ ଗ୍ରହଣ କରିଥିଲା ବୋଲି ବହୁ ସମାଲୋଚକ ଏକମତ । ପାରଂପରିକ କାବ୍ୟଧାରା କ୍ଷେତ୍ରରେ ଏହି କବିତାଟି ସେତେବେଳେ ଥିଲା କବି ବୈକୁଣ୍ଠନାଥଙ୍କ ନୀରବ ପ୍ରତିକ୍ରିୟା । ''ନବୀନ ତୁହି, ତରୁଣ ତୁହି / ଆଲୋକ ତୋର ସାଥି'' କିମ୍ବା ''ସକଳ ଜୀର୍ଣ୍ଣ ସକଳ ଜରା / କାହିଁକି ଚାହୁଁ ପଛେ । ଅର୍ଦ୍ଧମୃତ କେବେ କି କାହିଁ / ସବୁଜ ସୃଷ୍ଟି ରଚେ'' କବିତାଂଶରେ ଯୁବଛାତ୍ର ବୈକୁଣ୍ଠନାଥ ସମସାମୟିକ ଯୁବକମାନଙ୍କୁ ଯେଉଁ ଆହ୍ୱାନ ଦେଇଥିଲେ, ତାହାକୁ କେବଳ ଏକ ନିରୋଳା ଭାବପ୍ରବଣତା କିମ୍ବା ସ୍ୱପ୍ନବିଳାସୀ ମନର ଅବାନ୍ତର ଖିଆଲ କହି ଏଡ଼ାଇ ଗଲେ ବୈକୁଣ୍ଠନାଥୀ କାବ୍ୟପ୍ରତିଭାର ଯଥାର୍ଥ ମୂଲ୍ୟାୟନ କରାଯାଇ ପାରିଲା ନାହିଁ ବୋଲି ସ୍ୱୀକାର କରିବାକୁ ହେବ । ପରବର୍ତ୍ତୀ ସମୟରେ ସବୁଜ ସାହିତ୍ୟର ଆଭିମୁଖ୍ୟ ସଂପର୍କରେ ସୂଚନା ପ୍ରଦାନ କରି ସେ ଲେଖିଥିଲେ ''ତାରୁଣ୍ୟକୁ ଦେଶରେ ଚିରଜାଗ୍ରତ ରଖିବା ଓ ନୂଆ ନୂଆ ଭାବ ସୃଷ୍ଟି କରି ସାହିତ୍ୟ ମାଧ୍ୟମରେ ଦେଶ ଆଗରେ ଉପସ୍ଥାପିତ କରିବା ହେଲା ଆମ ସବୁଜ ଗୋଷ୍ଠୀର ମୁଖ୍ୟ ନୀତି ଓ ଲକ୍ଷ୍ୟ ।'' କିଞ୍ଚିତ୍ ପରବର୍ତ୍ତୀ କାଳରେ ଏହି ସବୁଜ ଗୋଷ୍ଠୀଙ୍କ କାବ୍ୟଚେତନାରେ ଯେଉଁ ବୈପ୍ଳବିକ ସ୍ୱର ଅନୁରଣିତ ହୋଇଥିଲା, ସ୍ୱୀକୃତ ନୂଆ ଭାବଟି ହିଁ ଥିଲା ତାର ପ୍ରକୃଷ୍ଟ ପୃଷ୍ଠଭୂମି । ଯୁବସମାଜ ସ୍ୱପ୍ନ ଦେଖେ ଭବିଷ୍ୟତ ପାଇଁ; ଗଡ୍ଡାଳିକା ପ୍ରବାହକୁ ଅସ୍ୱୀକାର କରେ ଓ ପାରଂପରିକ ଜୀବନ ପ୍ରବାହରେ ପରିବର୍ତ୍ତନ ଆଣିବାକୁ ଚେଷ୍ଟା କରେ । ତାରୁଣ୍ୟର ସ୍ୱପ୍ନରେ ମସ୍‌ଗୁଲ ଏହି ଯୁବଗୋଷ୍ଠୀ ପରିବର୍ତ୍ତିତ ବିଶ୍ୱର ବିକଳାଙ୍ଗ ରୂପ, ମାନବିକ ମୂଲ୍ୟବୋଧର ଅବକ୍ଷୟ ଏବଂ ସାମାଜିକ ପରିବର୍ତ୍ତନକୁ ବେଶ୍ ସଚେତନତାର ସହିତ ଲକ୍ଷ୍ୟ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ବିଶ୍ୱର ବିଷଣ୍ଣ, ମଳିନ ରୂପ, ଶିଳ୍ପ ବିପ୍ଳବର କ୍ରାନ୍ତିକାରୀ ସାଫଲ୍ୟ, ବିଜ୍ଞାନର ନୂତନ ଆବିଷ୍କାର, ସର୍ବୋପରି ରୁଷିଆର ଅକ୍ଟୋବର

ବିପ୍ଳବ - ମାନବର ଚିନ୍ତାରାଜ୍ୟରେ ସୃଷ୍ଟି କରିଥିଲା ଗଭୀର ଆଲୋଡ଼ନ । କେବଳ ସାମାଜିକ କ୍ଷେତ୍ରରେ ନୁହେଁ, ସାହିତ୍ୟ ରାଜ୍ୟରେ ମଧ୍ୟ ଏହି ପରିବର୍ତ୍ତନଟି ସ୍ପଷ୍ଟ ହୋଇଯାଇଥିଲା । ଜୀବନ ଓ ମୃତ୍ୟୁ ମଧ୍ୟରେ ସତତ ସଙ୍କୁଚିତ ମଣିଷ ଏବଂ ତାର ଆତ୍ମିକ ଦୌର୍ବଲ୍ୟ ଯେତେବେଳେ ଏକ ନେତିବାଚକ ଚିନ୍ତାଧାରାର ଉଦ୍ରେକ କରୁଥିଲା, ଠିକ୍ ସେହି ସମୟରେ ସବୁଜ ତରୁଣଗୋଷ୍ଠୀ ପ୍ରତିବେଶୀ ବଙ୍ଗ ସାହିତ୍ୟ ଓ ରବୀନ୍ଦ୍ରଙ୍କ ପ୍ରଭାବରେ ମଣିଷକୁ ସ୍ୱପ୍ନ ମଧ୍ୟରେ ବଞ୍ଚିବାର ପ୍ରେରଣା ଯୋଗାଇ ଦେଇଥିଲେ । ଏମାନେ କେବଳ ସ୍ୱପ୍ନବିଳାସୀ ବା ପଦ୍ମଭୁକ୍ ନ ଥିଲେ, ବରଂ ପାରଂପରିକ ସାମାଜିକ ବ୍ୟବସ୍ଥା ଓ ଚିନ୍ତାଧାରାରେ କୁଠାରାଘାତ କରି ନୂତନ ଚେତନା ମାଧ୍ୟମରେ ଏକ ବୈପ୍ଳବିକ ପରିବର୍ତ୍ତନ ସାଧନ କରି ପାରିଥିଲେ । ତେଣୁ ଏହି ସବୁଜଗୋଷ୍ଠୀଙ୍କ କାବ୍ୟ ବିବର୍ତ୍ତନ ରୀତିକୁ ଅନୁଧ୍ୟାନ କଲେ ସେମାନଙ୍କ ବିପ୍ଳବୀ ମନର ଯେଉଁ ପରିଚୟ ଉପଲବ୍ଧି ହୋଇଥାଏ, ତାହାର ପ୍ରଥମ ସାକାର ରୂପ ଦେଖିବାକୁ ମିଳେ ସେମାନଙ୍କର ସ୍ୱପ୍ନ ଓ ପ୍ରଣୟ ଚେତନା ମଧ୍ୟରେ ।

ସବୁଜ ଗୋଷ୍ଠୀଙ୍କ ମଧ୍ୟରେ କବି ବୈକୁଣ୍ଠନାଥଙ୍କ ସ୍ୱର ବେଶ୍ ତିର୍ଯ୍ୟକ୍ ଓ ତୀକ୍ଷ୍ଣ । ତାଙ୍କର ପ୍ରାଥମିକ ପର୍ଯ୍ୟାୟ କବିତାଗୁଡ଼ିକରେ ଯୌବନର ନିରାଜନା, ଆକାଶଚାରୀ କଳ୍ପନା ପରିଲକ୍ଷିତ ହେଲେହେଁ ଦ୍ୱିତୀୟ ପର୍ଯ୍ୟାୟର କବିତାଗୁଡ଼ିକର ଆତ୍ମିକ ବିଭବରେ ଲକ୍ଷଣୀୟ ପରିବର୍ତ୍ତନ ସାଧିତ ହୋଇଥିଲା । ରହସ୍ୟବାଦୀ ଚେତନା, ବିଭୁବୋଧ ସହିତ ବିପ୍ଳବର ମାଙ୍ଗଳିକ ଧ୍ୱନି ସତତ ଅନୁରଣିତ ହୋଇଥିଲା ଏହି ପର୍ଯ୍ୟାୟର କବିତାଗୁଡ଼ିକରେ । ଏହି ସମୟରେ ସମଗ୍ର ବିଶ୍ୱ ଓ ଭାରତର ସାମାଜିକ ଚଳଣି ଏବଂ ଜୀବନଧାରାରେ କେତେକ ପରିବର୍ତ୍ତନ ସଂଘଟିତ ହୋଇଥିଲା । ବଲ୍‌ସେଭିକ୍ ଆନ୍ଦୋଳନର କ୍ରାନ୍ତିକାରୀ ପ୍ରଭାବ ସମଗ୍ର ବିଶ୍ୱରେ ସଞ୍ଚରିତ ହୋଇ ଏକ ନୂତନ ମାନବବାଦ ଏବଂ ବୈପ୍ଳବିକ ଚେତନାକୁ ଜନ୍ମ ଦେଇ ସାରିଥିଲା । ଭାରତୀୟ ରାଜନୀତିରେ ମହାତ୍ମାଗାନ୍ଧୀଙ୍କ ଆବିର୍ଭାବ, ସ୍ୱାଧୀନତା ସଂଗ୍ରାମକୁ ଅଧିକ ସକ୍ରିୟ ଓ ତ୍ୱରାନ୍ୱିତ କରିଥିଲା । ମଣିଷ ଧୀରେ ଧୀରେ ନିଜର ସାମାଜିକ ବ୍ୟବସ୍ଥା ବିରୋଧରେ ପ୍ରତିକ୍ରିୟାଶୀଳ ହେବା ସଙ୍ଗେ ସଙ୍ଗେ ନିଜର ଦାବିପ୍ରତି ସଚେତନ ହେବାକୁ ଲାଗିଲେ । କବି ବୈକୁଣ୍ଠନାଥ ପରିବର୍ତ୍ତିତ ବିଶ୍ୱର ନୂତନ ରୂପ ଏବଂ ନିଜର ପରିପାର୍ଶ୍ୱପ୍ରତି ସଚେତନଶୀଳ ହୋଇ ଯେଉଁ ନୂତନ ଅଭିଜ୍ଞତା ଲାଭ କଲେ, ତାର ପ୍ରତିକ୍ରିୟା ପରିଲକ୍ଷିତ ହେଲା ଏହି ଦ୍ୱିତୀୟ ପର୍ଯ୍ୟାୟର କେତୋଟି କବିତାରେ ଏବଂ ତାର ପରିପୁଷ୍ଟ ରୂପ ଦେଖିବାକୁ ମିଳିଲା ୧୯୪୦ ମସିହା ପରବର୍ତ୍ତୀ କବିତାଗୁଡ଼ିକରେ । ଓଡ଼ିଶାର ସାମାଜିକ ଓ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଠିକ୍ ଏହି ସମୟରେ କେତେକ ପରିବର୍ତ୍ତନ ଦେଖିବାକୁ ମିଳିଥିଲା । ୧୯୩୨ ମସିହାରେ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ଓଡ଼ିଶାରେ 'ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀ ସଂଘ' ଗଠନ କରାଯାଇଥିଲା । ସମାଜର ନିମ୍ନସ୍ତରରେ ରହିଥିବା ଆର୍ଥିକ ଅନଗ୍ରସର କୃଷକଶ୍ରେଣୀଙ୍କୁ ସଙ୍ଗଠିତ କରି ଏକ ବିପ୍ଳବ କରିବାର ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା

ତଦ୍ଵାରା ପ୍ରଭାବିତ ହୋଇ ୧୯୩୪ ମସିହାରେ କଟକଠାରେ ଏକ କୃଷକ ସମ୍ମିଳନୀର ଆୟୋଜନ କରାଯାଇଥିଲା । ୧୯୩୫ ମସିହାରେ 'ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ପାର୍ଟି' ଗଢ଼ାଯାଇ ଓଡ଼ିଶାର ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ଜନଜାଗରଣ ସୃଷ୍ଟି ନିମିତ୍ତ ପ୍ରୟାସ ହୋଇଥିଲା । ୧୯୩୫ ମସିହାରେ ଭଗବତୀ ପାଣିଗ୍ରାହୀଙ୍କ ନେତୃତ୍ୱରେ ''ନବଯୁଗ ସାହିତ୍ୟ ସଂସଦ'' ଗଢ଼ାଯାଇ ଆଧୁନିକ ନାମରେ ଗୋଟିଏ ମୁଖପତ୍ର ପ୍ରକାଶ ପାଇଥିଲା । ପାରଂପରିକ ସମାଜ ଓ ସାହିତ୍ୟ ବିରୋଧରେ ଏହି ସଂସଦ ପ୍ରତ୍ୟକ୍ଷ ସଂଗ୍ରାମ ଜାରି ରଖିଥିଲା । ସର୍ବଭାରତୀୟ ସ୍ତରରେ ୧୯୩୫ ମସିହାରେ 'ଭାରତୀୟ କମ୍ୟୁନିଷ୍ଟ ସଂଘ' ଗଠିତ ହେବା ଏହି ସମୟର ଏକ ଉଲ୍ଲେଖଯୋଗ୍ୟ ଘଟଣା । 'ଭାରତୀୟ କମ୍ୟୁନିଷ୍ଟ ସଂଘ'ର ବିଭିନ୍ନ କାର୍ଯ୍ୟଧାରା ଏବଂ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଗଠିତ 'ନବଯୁଗ ସାହିତ୍ୟ ସଂସଦ' ଓଡ଼ିଶାରେ ସାମ୍ୟବାଦୀ ଚିନ୍ତା ଓ ଚେତନାକୁ ଜାଗ୍ରତ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ସମୟର ଏହି ପରିବର୍ତ୍ତିତ ଆହ୍ୱାନ ବୈକୁଣ୍ଠନାଥଙ୍କ କବିତାକୁ ବହୁପରିମାଣରେ ନିୟନ୍ତ୍ରଣ କରିଥିଲା । ବୈକୁଣ୍ଠନାଥଙ୍କ ସମଗ୍ର କବିତାକୁ ଏହି ପରିପ୍ରେକ୍ଷୀରେ ଆଲୋଚନା କରା ନ ଯାଇ ଯେଉଁ କେତୋଟି ସୃଷ୍ଟିରେ ସାମ୍ୟବାଦର ସ୍ୱର ଅନୁରଣିତ, ତାହାକୁ କେବଳ ଆଲୋଚନା ପରିସରଭୁକ୍ତ କରାଗଲା ।

ସାମଗ୍ରିକ ଭାବରେ ବୈକୁଣ୍ଠନାଥଙ୍କ କବିତାରେ ପରିଦୃଷ୍ଟ ସାମ୍ୟବାଦୀ ଚିନ୍ତାଧାରାକୁ ମୁଖ୍ୟତଃ ଚାରିଭାଗରେ ବିଭକ୍ତ କରି ଆଲୋଚନା କରାଯାଇପାରେ । ଯଥା ୧ - ପୁଞ୍ଜିବାଦ ଓ ଏକଛତ୍ରବାଦ ବିରୋଧରେ ପ୍ରତିକ୍ରିୟା, ୨ - ମାନବିକ ସମ୍ବେଦନଶୀଳତା, ୩- ଆଶାବାଦ ଓ ୪- ରାଜନୀତିକ ସ୍ୱେଚ୍ଛାଚାର ବିରୋଧୀ ସ୍ୱର ।

## ୧. ପୁଞ୍ଜିବାଦ ଓ ଏକଛତ୍ରବାଦ ବିରୋଧରେ ପ୍ରତିକ୍ରିୟା

ସାମ୍ୟବାଦୀଗଣ ପୁଞ୍ଜିବାଦ ଓ ଏକଛତ୍ରବାଦ ବିରୋଧରେ ସତତ ପ୍ରତିକ୍ରିୟାଶୀଳ । ମଣିଷର ହକ୍ ଓ ଦାବି ପ୍ରତି ସଚେତନ ଥିବାରୁ ସାମାଜିକ ବୈଷମ୍ୟ ବିରୋଧରେ ସଂଗ୍ରାମ କରିବାକୁ ଏମାନେ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ସମାଜର ମୁଷ୍ଟିମେୟ ବ୍ୟକ୍ତି ବିଳାସ ବ୍ୟସନରେ ଜୀବନ ଅତିବାହିତ କରୁଥିବା ସମୟରେ ଅଧିକାଂଶ ବ୍ୟକ୍ତି ନିରନ୍ନ, କାଙ୍ଗାଳ ଭାବରେ ଜୀବନ ଅତିବାହିତ କଲେ ସାମାଜିକ ସଂଘର୍ଷ ଦେଖାଦେବା ସ୍ୱାଭାବିକ । ସମାଜର ଶ୍ରେଣୀ ସଂଘର୍ଷ ନିମିତ୍ତ ମୁଖ୍ୟତଃ ଏହି ପୁଞ୍ଜିପତି ଗୋଷ୍ଠୀ ବହୁପରିମାଣରେ ଦାୟୀ । ଏମାନଙ୍କର ବିଲୋପ କିମ୍ବା ଧ୍ୱଂସରେ ସାମ୍ୟବାଦୀ ଦେଖନ୍ତି ସମାଜର ସୁସ୍ଥ ରୂପକୁ । ତେଣୁ ଅଗଣିତ ଖଟିଖିଆ, ଶୋଷିତ ଗୋଷ୍ଠୀଙ୍କୁ ଏମାନେ ଶୋଷକ ଗୋଷ୍ଠୀଙ୍କ ବିରୋଧରେ ସଂଗ୍ରାମପାଇଁ ଆହ୍ୱାନ କରିଥାନ୍ତି । ବୈକୁଣ୍ଠନାଥଙ୍କ 'ବନ୍ୟାବିପ୍ଳବ' କବିତାରେ ପ୍ରଥମେ ଏହି ସାମାଜିକ ବିପ୍ଳବର ସଂକେତ ପରିଲକ୍ଷିତ -

''ସାମ୍ୟବାଦୀ ଦେଶସେବୀ ଧନୀ ସୌଧେ ଅଙ୍ଗୁଳି ଦର୍ଶାଇ
ତର୍କି କହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ ।
ପରଅଙ୍ଗ ପୁଷ୍ଟ ଯେତେ ନିବସନ୍ତି ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।''

'ସାବଧାନ ଶ୍ରମଜୀବୀ',' ରାଷ୍ଟ୍ରରହସ୍ୟ', 'ଗର୍ଜି', 'ଖେଳାଉଛୁ କାଳୀୟନାଗ', 'ପୌରୋହିତ୍ୟ', 'ରୁଦ୍ରଦେବତା', 'ମାଡ଼ିଚାଲ ଆଗେ', 'ମୃତ୍ୟୁ', 'ଆଧୁନିକ ବର୍ବରତା' ଆଦି କବିତାଗୁଡ଼ିକରେ ମାର୍କସବାଦୀ ଚିନ୍ତାଧାରାର ପ୍ରଭାବ ପରିଲକ୍ଷିତ । ଗଣଶକ୍ତିର ଉତ୍‌ଥାନ ଓ ନିଜର ଦାବି ହାସଲ ନିମିତ୍ତ ରକ୍ତାକ୍ତ ସଂଘର୍ଷ ନିମିତ୍ତ ଏଥିରେ ରହିଛି ବୈପ୍ଳବିକ ଆହ୍ୱାନ । ଶୋଷକ ଗୋଷ୍ଠୀ ଜଣେ ଜଣେ କୁଶଳୀ ଖଳିକାର । ଖଳିକାରର ପଦ୍ମତୋଳାରେ କାଳୀୟନାଗ ବଶୀଭୂତ ହେବାପରି ଶୋଷକଗୋଷ୍ଠୀର ବାକ୍‌ଚାତୁରୀରେ ସାଧାରଣ ଜନତା ବଶୀଭୂତ । ମାତ୍ର ଏପରି ଅବସ୍ଥା ସବୁଦିନ ରହିବ ନାହିଁ । ସୁପ୍ତଜନତା ଜାଗ୍ରତ ହେବ । କାଳୀୟ ନାଗପରି ସେମାନଙ୍କର ବିଦ୍ରୋହର ଫୁତ୍‌କାର ଭୟଭୀତ କରିବ ଖଳିକାର ଗୋଷ୍ଠୀକୁ । ସେହିମାନଙ୍କ ସମବେତ ବିଷଦାନ୍ତ ଆଘାତରେ ଭୂଲୁଣ୍ଠିତ ହେବ ପୁଞ୍ଜିବାଦୀ ସଭ୍ୟତା ।

''ଖେଳାଉଛୁ କାଳୀୟ ନାଗ
ଖଳିକାର କଉଶଳୀରେ
ଅତରକେ ବାଜିବ ଚୋଟ
ବିଷରଦ ଯିବ ଗଳିରେ ।'' (ଖେଳାଉଛୁ କାଳୀୟ ନାଗ)

ପ୍ରଚଳିତ ଧର୍ମଧାରଣା, ପୌରୋହିତ୍ୟ ପ୍ରଥା ଓ ଅନ୍ଧବିଶ୍ୱାସଦ୍ୱାରା ସାଧାରଣ ମଣିଷ ପଙ୍ଗୁ ହୋଇପଡ଼ିଛି । ଆଦର୍ଶ ପ୍ରତି ବାସ୍ତବଜଗତର ବିଦ୍ରୂପାତ୍ମକ ଦୃଷ୍ଟିଭଙ୍ଗୀ ମାନବଜୀବନର ବିଫଳତାକୁ ଡାକି ଆଣିଛି । ଯୁଗ ଯୁଗ ଧରି ଏ ଦେଶର ନିରୀହ ଜନସାଧାରଣଙ୍କୁ ବିଶ୍ୱାସର ଦ୍ୱାହି ଦେଇ ଧର୍ମନାମରେ ଶୋଷଣ ଚାଲିଛି । ପୌରୋହିତ୍ୟ ପ୍ରଥାର ନଗ୍ନରୂପକୁ କବି ପ୍ରତ୍ୟକ୍ଷ କରିଛନ୍ତି ଚତୁର୍ଦ୍ଦିଗରେ । ସେ ତାଙ୍କର ସେହି ପ୍ରତିକ୍ରିୟାକୁ 'ପୌରୋହିତ୍ୟ' କବିତାରେ ପ୍ରକାଶ କରି ଲେଖିଛନ୍ତି -

''ଏ ଜାତି ଆଖିରେ ଯୁଗେ ଯୁଗେ ଢାଳି ଧୂଳି
ପ୍ରଜ୍ଞାତୁଲେ ଖେଳ ଜୁଆ, ନେତ୍ରେ ବାନ୍ଧି ଠୁଳି x x
ରାଜାରେ କରିଛି ମୂକ, ପୌରୁଷ ବଞ୍ଚିତ
ଦେଶ ଆତ୍ମା କ୍ଲୀବ ! କୂଟନୀତି କଳୁଷିତ ।''

ସମାଜର ସୁଷ୍ଠୁକର୍ମ ବିଭାଜନ ନିମିତ୍ତ ଜାତିପ୍ରଥାର ସୃଷ୍ଟି । ଅଥଚ ସମୟକ୍ରମେ ଉଚ୍ଚସ୍ଥାନରେ ଅଧିଷ୍ଠିତ ବ୍ୟକ୍ତି ଜାତିପ୍ରଥାର ଦ୍ୱାହି ଦେଇ ଶୂଦ୍ରମାନଙ୍କୁ ଶୋଷଣ କରିବାକୁ ଲାଗିଲେ । ଶୂଦ୍ରଗୋଷ୍ଠୀ ହେଲେ ସମାଜରେ ଅବହେଳିତ ଓ ନଗଣ୍ୟ । ସ୍ୱାର୍ଥପର ମଣିଷର ଉଚ୍ଚାକାଂକ୍ଷାର ପରିପୂରଣ ନିମିତ୍ତ ଏମାନେ ପ୍ରତିମୁହୂର୍ତ୍ତରେ ବଳି ପଡ଼ିଲେ । ସେମାନଙ୍କର ପରିଚୟ ହେଲା ଅଛୁଆ । ଶୂଦ୍ର ସମାଜ ପ୍ରତି ମୁଷ୍ଟିମେୟ ଉଚ୍ଚଶ୍ରେଣୀ ବ୍ୟକ୍ତିବିଶେଷଙ୍କ ଏହି ସ୍ୱାର୍ଥପର ମନୋବୃତ୍ତି ବିରୋଧରେ କବି ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଛନ୍ତି 'ଶୂଦ୍ର' କବିତାରେ -

''ହେ ଶୂଦ୍ର ! କେତେ କାଳ ରହିଥିବୁ କ୍ଷୁଦ୍ର
ଅନାର୍ଯ୍ୟ ପଦାନତ ଅଜ୍ଞାନ ଅବରୁଦ୍ଧ x x
ଶୋଷଣ ଅନାଚାର ଶଠତା ଦେଇ ବଳି
ଦେଖା ତୋ ପଉରୁଷ ହେ ଶୂଦ୍ର ରୁଦ୍ର ଭଳି ।''

ସମାଜରେ ଏପରି ବୈଷମ୍ୟର ଧ୍ୱଂସ ପାଇଁ ଆବଶ୍ୟକ ରକ୍ତାକ୍ତ ସଂଗ୍ରାମ । ରୁଦ୍ର ଶକ୍ତିର ଆବାହନୀଦ୍ୱାରା କବି ଏହି ଶ୍ରେଣୀ ବୈଷମ୍ୟର ମୂଳୋତ୍ପାଟନ କରିପାରିବେ ବୋଲି ବିଶ୍ୱାସ କରିଛନ୍ତି । ତେଣୁ ତାଙ୍କ ଦୃଷ୍ଟିରେ 'ରୁଦ୍ର' ବୈପ୍ଳବିକ ଶକ୍ତିର ପ୍ରତୀକ । ଏ ସୃଷ୍ଟିରେ ପରିପୂର୍ଣ୍ଣ ଅନ୍ୟାୟ-ଅତ୍ୟାଚାର, ପାପ ଓ କଳୁଷତା ଏବଂ ଜରା-ବ୍ୟାଧିର ସଂହାର ନିମିତ୍ତ ତାଙ୍କର ସୃଷ୍ଟି । ପରାହତ ସାମ୍ୟ-ମୈତ୍ରୀର ପୁନରୁତ୍‌ଥାନ ପାଇଁ ତାଙ୍କର ବିଜୟଯାତ୍ରା ଅବ୍ୟାହତ । 'ରୁଦ୍ରଦେବତା' କବିତାରେ ତେଣୁ ଆହ୍ୱାନ ଦିଆଯାଇ କୁହାଯାଇଛି -

''ବହଇ ଯେ ଦେଶେ ଶୋଣିତ ସରିତ ଧାରା
ଶଙ୍କିତ ଧରା ବହି ଜରା ପାପ ଭରା
ସାମ୍ୟ ମୈତ୍ରୀ ଯହିଁ ପରାହତ
ବିଜୟ ବାହିନୀ ତବ ଅବନତ
ସେ ଦେଶେ ଦେବତା ଗାଇବାକୁ ତବ ବାଣୀ
ମୃତ୍ୟୁର ପଥେ ନେଇଛ ତ ତାକୁ ଟାଣି ।''

ଗର୍କୀଙ୍କ ଜୀବନବୋଧଦ୍ୱାରା ସେ ଅନୁପ୍ରାଣିତ । ବଲ୍‌ସେଭିକ୍ ଆନ୍ଦୋଳନର କ୍ରାନ୍ତିକାରୀ ପ୍ରଭାବ ତାଙ୍କୁ କରିଛି ସମାଜ ସଚେତନ । ସମାଜର ସମସ୍ତ ଅନ୍ୟାୟ-ଅତ୍ୟାଚାର ଓ ଶୋଷଣ-ପେଷଣ ନିମିତ୍ତ ମୁଷ୍ଟିମେୟ କେତେକ ବ୍ୟକ୍ତିବିଶେଷ ଦାୟୀ ବୋଲି ସେ ଅନୁଭବ କରିଛନ୍ତି । ସାମ୍ୟବାଦୀ ଦର୍ଶନ ଦୃଷ୍ଟିରୁ ସେ ସମାଜ ଓ ବ୍ୟକ୍ତି ବିଶେଷଙ୍କର ମୂଲ୍ୟାୟନ କରିଛନ୍ତି । ଭଗବାନ୍ ଓ ସଇତାନଙ୍କ ଅସ୍ତିତ୍ୱ ତାଙ୍କଦ୍ୱାରା ଅସ୍ୱୀକୃତ । ଆତ୍ମସ୍ୱାର୍ଥ ପାଇଁ ପୁଞ୍ଜିପତି ଗୋଷ୍ଠୀ କେତେବେଳେ ଭଗବାନ୍‌ଙ୍କ ଦ୍ୱାହି ଦେଇ ମାନବସମାଜକୁ ଶୋଷଣ କରେ ତ,

ଅନ୍ୟ କେତେବେଳେ ସଇତାନର ସ୍ୱରୂପରେ ଅନ୍ୟାୟ ଓ ଅତ୍ୟାଚାରର ପ୍ଳାବନ ଘଟାଏ । ପ୍ରତିଟି ସମାଜବାଦୀଙ୍କ ପରି ସେ ରାଷ୍ଟ୍ରକୁ ପେଷଣର ଯନ୍ତ୍ର ଭାବରେ ଅଭିହିତ କରି ଯୁଦ୍ଧଖୋର ରାଷ୍ଟ୍ର ନିୟାମକମାନଙ୍କୁ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି -

''ଭଗବାନ୍ ଅବା ସଇତାନ କେହି ନାହିଁ<br>
ଯେତେ ଯା' ଦେଖୁଛୁ ମଣିଷ କରଣୀ ଭାଇ ।<br>
ଖିଆଲୀ ମଣିଷ ରାଷ୍ଟ୍ର ଗଢ଼ଇ ବସି<br>
ତୋପ କମାଣରେ ଖିଆଲେ ଯାଏ ସେ ଧସି ।'' (ରାଷ୍ଟ୍ର ରହସ୍ୟ)

ଆଧୁନିକ ମଣିଷ ନିଜର ମାନବିକ ଗୁଣ ହରାଇ ପଶୁତ୍ୱ ନିକଟରେ ଆତ୍ମସମର୍ପଣ କରିଛି । ସେଥିପାଇଁ ଗରିବର ଆର୍ତ୍ତ ଚିତ୍କାର ଧନିକ ନିକଟରେ ପହଞ୍ଚିପାରେ ନାହିଁ । ସେମାନଙ୍କର କରୁଣ ଆର୍ତ୍ତନାଦରୁ ଏହି ପୁଞ୍ଜିପତି ଗୋଷ୍ଠୀ ଲାଭ କରନ୍ତି ପୈଶାଚିକ ଉଲ୍ଲାସ । ମଣିଷର ଏହି ମନୋବୃତ୍ତିକୁ କବି ଆଧୁନିକ ବର୍ବରତା ନାମରେ ନାମିତ କରିଛନ୍ତି -

''କିଏ ବା ଶୁଣିବ ଡାକ ଡାକିଲେ କାତରେ ?<br>
ମାନବ ଯେ ନାହିଁ ଆଜି ଆପଣାର ଘରେ ।'' (ଆଧୁନିକ ବର୍ବରତା)

କବିଙ୍କର ଏହି ପର୍ଯ୍ୟାୟ କବିତାଗୁଡ଼ିକ ମୁଖ୍ୟତଃ ସଂଗ୍ରାମ ନିମିତ୍ତ ଉଦ୍ଦିଷ୍ଟ । ଏଥିରେ ସାଲିସ୍‌ର ପ୍ରଶ୍ନ ନାହିଁ । ବରଂ ସଂଗ୍ରାମ ମାଧ୍ୟମରେ ନିଜର ହକ୍ ଆଦାୟ ପାଇଁ ଏବଂ ଏକଛତ୍ରବାଦର ବିଲୋପ ନିମିତ୍ତ ଏଥିରେ ରହିଛି ଆଗ୍ନେୟ ଆହ୍ୱାନ ।

**୨. ମାନବିକ ସମ୍ବେଦନଶୀଳତା**

ମଣିଷକୁ ମଣିଷ ପରି ଦେଖିବା, ସର୍ବତୋଭାବେ ତାକୁ ଭଲପାଇବା ହିଁ ମାନବିକତାବାଦ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ମଣିଷର ମଣିଷତ୍ୱକୁ ସମ୍ମାନ ପ୍ରଦର୍ଶନ କରିବାରେ ହିଁ ମାନବିକତାବୋଧ ପ୍ରକଟିତ । ବିଶେଷଭାବରେ ସମାଜର ଅବହେଳିତ ଓ ଶୋଷିତ ଗୋଷ୍ଠୀଙ୍କ ପ୍ରତି ସମ୍ବେଦନଶୀଳ ମନୋଭାବରେ ଏହାର ପରାକାଷ୍ଠା ନିହିତ । ସମଗ୍ର ବିଶ୍ୱରେ ମାନବବାଦୀ ଚିନ୍ତାଧାରାର ଉନ୍ମେଷ ବହୁ ପ୍ରାଚୀନ ହୋଇଥିଲେହେଁ ଅକ୍ଟୋବର ବିପ୍ଳବ (ରୁଷିଆ) ଏହାକୁ ଏକ ନୂତନ ରୂପରେଖ ପ୍ରଦାନ କରିଛି । ସାମ୍ୟବାଦୀଗଣ ପ୍ରଥମେ ଲକ୍ଷ ଲକ୍ଷ ଦଳିତ, ନିରନ୍ନ ଓ କାଙ୍ଗାଳମାନଙ୍କୁ ସେମାନଙ୍କର ଦାବି ପ୍ରତି ସଚେତନ କରାଇବାକୁ ଏବଂ ସେମାନଙ୍କର ଅଧିକାର ସାବ୍ୟସ୍ତ କରାଇବାକୁ ସେମାନଙ୍କ ହସ୍ତରେ ଧରାଇ ଦେଇଛନ୍ତି ବିପ୍ଳବର ଅସ୍ତ୍ର । ଏହି ବିପ୍ଳବୀ ମନର ଜୟଯାତ୍ରା ଆରମ୍ଭ ହୋଇଛି ଶତ ଶତ ଅବହେଳିତ, ଅସହାୟ ଖଟିଖିଆ ଓ ଶୋଷିତମାନଙ୍କଠାରୁ । ସେହି କାରଣରୁ ସାମ୍ୟବାଦୀଙ୍କର କାବ୍ୟିକ ଉପାଦାନ ସମାଜର ଚିର ଅବହେଳିତ ଓ ଅସହାୟ ମଣିଷ ସମାଜ । ଜୀବନ ଯନ୍ତ୍ରଣାରେ ସତତ ସନ୍ତୁଳିତ ଓ ଜୀବନ ପ୍ରତି ବୀତସ୍ପୃହ ଏହି

ମଣିଷଗୋଷ୍ଠୀଙ୍କୁ ବଞ୍ଚିବାର ପ୍ରେରଣା ଯୋଗାଇ ଦେବା ସଙ୍ଗେ ସଙ୍ଗେ ଏହି ନିଃସହାୟମାନଙ୍କ ପ୍ରତି ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିବା ସାମ୍ୟବାଦୀ କବିର ଲକ୍ଷ୍ୟ । ସେମାନଙ୍କ ଜୀବନର ବ୍ୟଥା, ଦୁଃଖ, ଅଶ୍ରୁ ଏବଂ ଯନ୍ତ୍ରଣାକୁ ଉପଜୀବ୍ୟ କରି ଏମାନେ ରଚନା କରିଛନ୍ତି ଅସଂଖ୍ୟ କବିତା । କବି ବୈକୁଣ୍ଠନାଥଙ୍କ ବହୁ କବିତାରେ ସମାଜର ଏହି ଅବହେଳିତ ଓ ଅସହାୟ ବ୍ୟକ୍ତିଙ୍କ ବ୍ୟଥା ଓ ବେଦନାର କାହାଣୀ ରୂପାୟିତ । ତାଙ୍କର ଏହି ପର୍ଯ୍ୟାୟ କବିତାଗୁଡ଼ିକର ଚରିତ୍ର ହେଉଛନ୍ତି ଆମ ସମାଜରେ ଚଳପ୍ରଚଳ କରୁଥିବା ବାସ୍ତବ ମଣିଷ । ସେ ହୋଇପାରେ କୌଣସି ଅସହାୟା ନାରୀ କିମ୍ୱା ରିକ୍‌ସାବାଲା, ହରିଜନ ଅଥବା କୁଲିମଜୁରିଆଟିଏ । ସେହିମାନଙ୍କ ଜୀବନଯନ୍ତ୍ରଣାର କାହାଣୀ ମଧ୍ୟରେ ସ୍ୱତଃ ପ୍ରକାଶ ଲାଭକରିଯାଇଛି କବିର ସମ୍ବେଦନଶୀଳ ଭାବଟି । ଉଦାହରଣ ନିମିତ୍ତ କବିଙ୍କର 'ହରିଜନ' କବିତାଟିକୁ ଗ୍ରହଣ କରାଯାଇପାରେ । ଉକ୍ତ କବିତାଟି ସତ୍ୟ ଘଟଣା ଉପରେ ଆଧାରିତ । ହରିଜନ ଜନନୀ ଓ ତାର ତିନୋଟି ସନ୍ତାନର ଶୋକାନ୍ତକ ପରିଣତି କବିତାଟିରେ ବର୍ଣ୍ଣିତ । ବାସ୍ତବଜୀବନର ଏକ ବୀଭତ୍ସ ପରିପ୍ରକାଶ କବିତାଟିକୁ ଅଶ୍ରୁସଜଳ କରିଛି । ୧୯୪୦ ମସିହା ଜୁନ୍‌ମାସ ୧୨ ତାରିଖରେ ପାଟଣାରେ ଘଟିଥିବା ଏକ ଝାଡୁଦାର ରମଣୀର ମୃତ୍ୟୁ ଘଟଣା ଏହାର ଉପଜୀବ୍ୟ ଉପାଦାନ । (Tragedy death of sweeper woman, Patna; June 12-United Press) । କଳାଗତ ମୂଲ୍ୟ ଓ ଭାବଦୃଷ୍ଟିରୁ ମଧ୍ୟ କବିତାଟି ଉଚ୍ଚକୋଟୀର -

''ତିନିଟି ପରାଣ ଚାଲନ୍ତି ସେଠି କୁକ୍‌କୁର ତହୁଁ ହୀନ
ସୃଷ୍ଟିରେ କିବା ପ୍ରୟୋଜନ କା'ର କହିବ କେ କେଉଁ ଦିନ
x x x x
ଦୁଇଦିନ ହେଲା ଜୁଟି ନାହିଁ ଦାନା ପତାଇଛି କେତେ ହାତ
ମିଳିଅଛି ମୁହଁମୋଡ଼ା ନାକଟେକା ମାତର ମିଳିନି ଭାତ'' (ହରିଜନ)

ତାଙ୍କର ଅନ୍ୟତମ ଶ୍ରେଷ୍ଠ କବିତା 'ଉମା' ଯୁଦ୍ଧ ପରବର୍ତ୍ତୀ ନିମ୍ନ ମଧ୍ୟବିତ୍ତ ନାରୀଜୀବନର କରୁଣତାକୁ ଉପଜୀବ୍ୟ କରି ରଚିତ । ସାଂପ୍ରତିକ ପୃଥିବୀର ସାମାଜିକ, ଆର୍ଥନୀତିକ ସଂକଟ ମଧ୍ୟରେ ମଣିଷର ଉଚ୍ଚାକାଂକ୍ଷା ଓ ଆଦର୍ଶ ଭୂ-ଲୁଣ୍ଠିତ । ବିଶ୍ୱଯୁଦ୍ଧରେ ତାର ଆର୍ଥିକ ମାନଦଣ୍ଡ ଧ୍ୱସ୍ତବିଧ୍ୱସ୍ତ । ମଣିଷର ଘଟିଛି ନୈତିକ ଅଧୋପତନ । ତାର ଆଶା-ଆକାଂକ୍ଷା ସୁଦୂର ପରାହତ । ବାସ୍ତବ ଜୀବନର ଦାରୁଣ ସଂଗ୍ରାମ ମଧ୍ୟରେ ନାରୀଜୀବନର ସମସ୍ତ ସୌକର୍ଯ୍ୟ ଓ ସୌନ୍ଦର୍ଯ୍ୟ ବିପର୍ଯ୍ୟସ୍ତ । ଏହି ସମୟର ଯଥାର୍ଥ ନାରୀଜୀବନର ପ୍ରତୀକ 'ଉମା' -

''ବିଭା ଦଶଟି ବରଷ,
ଶିକ୍ଷାରୂପେ ଗୁଣ ଯେବା ଥିଲା ଆଦରଶ x x x
କୋଟରେ ପଶିଛି ନେତ୍ର ପାଣ୍ଡୁର ବଦନ
ଶୀର୍ଣ୍ଣକାୟ, ରକ୍ତହୀନ, ଶିଥିଳ ଚରଣ'' (ଉମା)

ଅଭାବ, ଅସନ୍ତୋଷ ଓ ବ୍ୟର୍ଥତା ମଧ୍ୟରେ ସାଂପ୍ରତିକ ମଣିଷ ମୁହ୍ୟମାନ । ମୃତ୍ୟୁର କରାଳଛାୟା ଲିଭାଇ ଦେଇଛି ତା ମୁଖର ହସ । 'କିସା ଗୌତମୀ' କବିତାରେ ଏହି ବାସ୍ତବ ଧରଣୀର ଚିତ୍ର ମାଧ୍ୟମରେ କବି ଅସହାୟ ମଣିଷମାନଙ୍କ ପ୍ରତି ସମ୍ବେଦନଶୀଳ ହୋଇ ଉଠିଛନ୍ତି -

''ଦେଖିଛି ସଦ୍ୟ ସନ୍ତାନହରା ନୟନୁ ଶୁଷ୍କ ନୀର
ଚିତ୍ର ପ୍ରତିମା ସମାନ ଅଚଳ ସ୍ତନୁ ବହିଯାଏ କ୍ଷୀର ।
ଖାଇବାର ଶିଶୁ ଶମଶାନ ପୁରୁ ବାହୁଡ଼ି ନ ଆସେ ଭୁଲି
ଲହୁଧାର ପରି ବହେ କ୍ଷୀର ଧାର, ଉଲ୍ଲାସେ ଖାଏ ଧୂଳି ।
ସଦ୍ୟ ବିଧବା ଷୋଡ଼ଶୀ ତରୁଣୀ, ବର୍ଷେ ହୋଇନି ବିଭା
ଉତ୍ସବ ବାଜା ନିଭିଛି କି ନାହିଁ, ବାଡ଼ିରେ ରାବଇ ଶିବା ।
ଲିଭି ନ ଥିଲା ତା' ଶିର ସିନ୍ଦୂର, ନୟନୁ କଜଳ ଗାର
ଗଗନ ଭୂଧର ଭାଙ୍ଗି ପଡୁଥିଲା, ଶୁଣି ତାର ହାହାକାର ।''

ଆଲୋଚନା ପ୍ରସଙ୍ଗରେ ସୂଚାଇ ଦିଆଯାଇଛି ସାମ୍ୟବାଦୀ କବିର କାବ୍ୟିକ ଉପାଦାନ ସାଧାରଣ ମଣିଷ । ରାଷ୍ଟ୍ର ଓ ବ୍ୟକ୍ତି ବିଶେଷଙ୍କ ଖିଆଲକୁ ସାକାର କରିବାକୁ ଯାଇ ପ୍ରତି ମୁହୂର୍ତ୍ତରେ ଏମାନେ ବଳି ପଡ଼ନ୍ତି । କୂର୍ମ ପରି ଖଟି ଖଟି ରାଷ୍ଟ୍ରର ଉତ୍ପାଦନ ଶକ୍ତିର ବୃଦ୍ଧି ଘଟାଇଥିଲେହେଁ, ବ୍ୟକ୍ତିଗତ କ୍ଷେତ୍ରରେ ଏମାନେ ଗରିବ ଓ ଖଟିଖିଆ ମୂଲିଆ । ରାଷ୍ଟ୍ର ବା ସରକାର ସେମାନଙ୍କର ସ୍ୱାର୍ଥପ୍ରତି ସର୍ବଦା ଉଦାସୀନ । ଓଡ଼ିଶାର ଶିଳ୍ପନଗରୀ ରାଉରକେଲାର ଇସ୍ପାତ କାରଖାନାରେ ଗରିବ ଶ୍ରମିକମାନଙ୍କର କୂର୍ମ ପରି ଅବିରାମ ପରିଶ୍ରମ କବିଙ୍କୁ ସମ୍ବେଦନଶୀଳ କରିଛି -

''କୋଟି କୂର୍ମର ଭାଗ୍ୟ ଭାଳି ମୋ ନୟନ ଓଦା
ଅଶିଣର ବଳି ଯୋଗ ହେବ ଶେଷେ ଅଗଣା ବୋଦା
ଦିହୁଡ଼ି ଜଳାଇ ଅନ୍ଧାରେ ଲୋପ ଭାଗ୍ୟ ଯା'ର
ବଳିଦାନ ନୋହୁ ଘେନ ଏ କବିର ନମସ୍କାର ।''

୧୯୪୬ ମସିହାରେ ବଙ୍ଗଦେଶ ଓ ଉତ୍କଳରେ ଯେଉଁ କରାଳ ଦୁର୍ଭିକ୍ଷରେ ଶହ ଶହ ବ୍ୟକ୍ତି ପ୍ରାଣ ବିସର୍ଜନ କରିଥିଲେ ତାର ଏକ ସମ୍ବେଦନଶୀଳ ସଜଳ ଚିତ୍ର ପରିଲକ୍ଷିତ ହୁଏ । ''ମରିଜାଣେ ଇତରପ୍ରାଣୀ'' କବିତାରେ 'କୁମାରୋତ୍ସବ' କବିତାରେ ବିଶ୍ୱର ଅସଂଖ୍ୟ ବସ୍ତ୍ରହୀନ, ଅର୍ଦ୍ଧନଗ୍ନ ଶିଶୁର ଦୁଃଖ ମାନବବାଦୀ ଦୃଷ୍ଟିକୋଣରୁ ବର୍ଣ୍ଣିତ -

''ଦୁନିଆର ଯେତେ ଶିଶୁ କୁମର କୁମାରୀ
ବାସହୀନ ଅର୍ଦ୍ଧନଗ୍ନ ଅବା ଚୀରଧାରୀ
ଯା କୁଟୀରେ ଶୁଭେ ନାହିଁ ଆଜି ହୁଳହୁଳି
ଉତ୍ସବର ମାଦକତା ନ ଉଠେ ଉଚ୍ଛୁଳି ।''

ଏତଦ୍‌ବ୍ୟତୀତ 'ମାଟିଆ ବୁରୁଜ', 'ଅଭିଆଡ଼ୀ ଟାଣ', 'ଏ ବିଜୟ କାର' ଆଦି କବିତାଗୁଡ଼ିକରେ ସାମ୍ୟବାଦୀ କବିର ସମ୍ବେଦନଶୀଳ ମନୋଭାବ ବେଶ୍ ପ୍ରଭାବଶାଳୀ ।

### ୩. ଆଶାବାଦ

ସାମ୍ୟବାଦୀ କବି କେବଳ ବିପ୍ଳବର ବାଣୀ ପ୍ରଚାର କରି ନ ଥାନ୍ତି । ଲକ୍ଷ ଲକ୍ଷ ଅସହାୟ ଓ ଅବହେଳିତମାନଙ୍କ ପ୍ରତି ସେମାନଙ୍କ କବିତାରେ ଭରି ରହିଥାଏ ଆଶାର ବାଣୀ । ଏହି ଆଶା ଓ ଆଶ୍ୱାସନା ନିରନ୍ନ, ନିଃସହାୟମାନଙ୍କୁ ଯୋଗାଇଥାଏ ବଞ୍ଚିବାର ପ୍ରେରଣା । ଜୀବନ ଯୁଦ୍ଧରେ ପରାହତ ମଣିଷ ପ୍ରାଣରେ ସୃଷ୍ଟି କରେ ବିଶ୍ୱାସବୋଧ ଓ ଆତ୍ମପ୍ରତ୍ୟୟ । ସଂଗ୍ରାମୀ ଆଶା ଉପରେ ସର୍ବଦା ଆସ୍ଥାଶୀଳ । ତାର ସ୍ୱପ୍ନ ସାଧାରଣ ମଣିଷ ଏବଂ ଭବିଷ୍ୟତକୁ ନେଇ । ସେ ବିଶ୍ୱାସ ଓ ଆଶାକୁ ପାଥେୟ କରି ବିପ୍ଳବ କରେ ଏବଂ ସେହିଥିରୁହିଁ ଲାଭ କରେ ନିଜ ତଥା ସାଧାରଣ ମଣିଷ ପାଇଁ ବଞ୍ଚିବାର ଉପାଦାନ ।

ବିପ୍ଳବ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ଏହାର ଆରମ୍ଭ ଅଛି, ମାତ୍ର ପରିସମାପ୍ତି ନାହିଁ । ଆଶା ଓ ବିଶ୍ୱାସ ଏହାର ଭିତ୍ତି । ଉଦ୍ଦେଶ୍ୟର ପରିପୂର୍ତ୍ତିରେ ଏହାର ସମାପ୍ତି । ପ୍ରତ୍ୟେକ ବିପ୍ଳବୀ ଭବିଷ୍ୟତର ସାକାରବାଣୀ ପ୍ରକାଶ କରେ ତାର ବିପ୍ଳବାତ୍ମକ କବିତାରେ, ଯାହାର ଅନ୍ତଃସ୍ୱର ହିଁ ଆଶା ଓ ଭରସାକୁ ପ୍ରକଟିତ କରେ । ସମସ୍ତ ଶୋଷଣ ପେଷଣ ସତ୍ତ୍ୱେ କବି ଗଭୀର ଆଶାବାଦୀ ଏହାର ପରିସମାପ୍ତି ଘେନି । ସେ ବିଶ୍ୱାସ କରନ୍ତି, ଜୀର୍ଣ୍ଣଧରା ପୁଣି ପ୍ରେମବାରିରେ ଶସ୍ୟଶ୍ୟାମଳା ହେବ । ଦେଶର ଆଗାମୀ ଭବିଷ୍ୟତ ବର୍ତ୍ତମାନର ଶିଶୁ ଆଉ ମୃତ୍ୟୁବରଣ କରିବ ନାହିଁ । ବିପନ୍ନର କ୍ରନ୍ଦନରେ ଗଗନ ପବନ ମୁଖରିତ ହେବ ନାହିଁ । ପୁଣି ଆଲୋକର ପ୍ଲାବନ ଜୀବଜଗତକୁ ଆନନ୍ଦ ମୁଖରିତ କରିବ ।

''ଲୁପ୍ତ ହେବ ଯୁଗବ୍ୟାପୀ ଜୀର୍ଣ୍ଣ ଧରା-ଶୋଣିତ-ଶୋଷଣ
ମୃତ ଅର୍ଦ୍ଧ କବଳିତ-କୋଟି ଶିଶୁ ବିପନ୍ନ କ୍ରନ୍ଦନ ।''

(ସତ୍ୟ ହେଉ ଉଷା ଅଭ୍ୟୁଦୟ)

'ଅଗଷ୍ଟ ବିପ୍ଳବ' କବିତାରେ ସେହି ଆଶାବାଦର ସ୍ୱର ଅନୁରଣିତ । ବିପ୍ଳବ ପରେ ଏକ ସାମ୍ୟବାଦୀ ସମାଜ ଗଢ଼ିଉଠିବ ବୋଲି କବି ବେଶ୍ ଆସ୍ଥାଶୀଳ । 'ରକ୍ତକରବୀ ଜବା'ର ପ୍ରତୀକ ମାଧ୍ୟମରେ କବି ସେହି ସାମ୍ୟବାଦୀ ଭାବନା ସହିତ ସମାଜବାଦୀ ସମାଜର ପରିକଳ୍ପନାକୁ ସାକାର କରିବାକୁ ଚାହିଁଛନ୍ତି ।

ରକ୍ତ କରବୀ ଜବା ଫୁଟିବ / କୋଟି କଣ୍ଠ ଗୀତି ଛୁଟିବ
ମୈତ୍ରୀ ସାମ୍ୟ ମହାବାଣୀରେ / ଶୁଣି ମଢ଼ ଶମଶାନୁ ଉଠିବ ।''
(ଅଗଷ୍ଟ ବିପ୍ଳବ)

ଦେଶର ସ୍ୱପ୍ନ ଓ ଭବିଷ୍ୟତ ଏ ଯୁଗର ତରୁଣଶକ୍ତିକୁ ଉନ୍ମାଦିତ କରିବାକୁ ସେ ଦେଇଛନ୍ତି ଆଶାନ୍ୱିତ ଆହ୍ୱାନ । ସମସ୍ତ କ୍ଷୟିଷ୍ଣୁ ସଭ୍ୟତାର ପୁନଃପ୍ରତିଷ୍ଠା ଏବଂ ବିନଷ୍ଟ ମୂଲ୍ୟବୋଧକୁ ଉତ୍ପାଟନ କରି ଏକ ସୁସ୍ଥ ସୁନ୍ଦର ସମାଜ ଗଠନ ନିମିତ୍ତ ସେ ପ୍ରେରଣା ଭରିଦେଇଛନ୍ତି ଯୁବସମାଜ ହୃଦୟରେ । ପୁରାତନ ତ୍ୟାଗ କରି ପୁଣି ନୂତନ ଉନ୍ମାଦନାରେ, ନବଶକ୍ତିରେ ଉନ୍ମାଦିତ ହୋଇ ଆଗେଇ ଚାଲିବାକୁ ଆହ୍ୱାନ ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଦୃଷ୍ଟି ଆଗରେ ଟେକି ଧରିଛନ୍ତି ଏକ ସୁନ୍ଦର ମଧୁର ପୃଥିବୀର ରୂପଚିତ୍ରକୁ -

''ଯେତେ ପୁରାତନ କୁଶ୍ରୀ ଜୀର୍ଣ୍ଣ
ସେ ଚରଣ ତଳେ ହେଉରେ ଜୀର୍ଣ୍ଣ
ଅନାଗତ ଯୁଗ ବାର୍ତ୍ତାବହ ତୁ
ଶ୍ମଶାନେ ଭରସା ଢାଳି
ମାଡ଼ି ଚାଲ ଆଗେ ଚାଲ ।'' (ମାଡ଼ି ଚାଲ ଆଗେ ଚାଲ)

କବି ବୈକୁଣ୍ଠନାଥଙ୍କ ଏହି ପର୍ଯ୍ୟାୟର କବିତାଗୁଡ଼ିକ ମୁଖ୍ୟତଃ ଆଶା ଓ ଭରସାର ପ୍ରତୀକ । ଜୀବନପ୍ରତି ଆସ୍ତିବାଚକ ଦୃଷ୍ଟିଭଙ୍ଗୀ ଏହି କବିତାଗୁଡ଼ିକର ବିଶିଷ୍ଟ ସଂପଦ ।

### ୪. ରାଜନୀତିକ ସ୍ୱେଚ୍ଛାଚାର ବିରୋଧୀ ସ୍ୱର

'ଅଗଷ୍ଟ ବିପ୍ଳବ' କବିତାରେ ପରାଧୀନତାର ଅନ୍ଧକାରରୁ ମୁକ୍ତ ହେବାକୁ କବି ଯେଉଁ ବୈପ୍ଳବିକ ଆହ୍ୱାନ ଦେଇଥିଲେ, ତାର ଏକ ଭିନ୍ନରୂପ ୧୯୭୫ ମସିହା ଓ ତାର ପରବର୍ତ୍ତୀ ସମୟରେ ରଚିତ କବିତାମାନଙ୍କରେ ପରିଲକ୍ଷିତ । ସ୍ୱାଧୀନତା ଲାଭ ଯେତିକି ଗୌରବର ବିଷୟ, ତାର ମୂଲ୍ୟବୋଧକୁ ସମ୍ମାନ ପ୍ରଦର୍ଶନ କରିବା ସେହିପରି ଗୌରବର କାର୍ଯ୍ୟ । ସ୍ୱାଧୀନତାର ଅବମୂଲ୍ୟାୟନ ଦେଖାଗଲେ, ବିପ୍ଳବୀ କବି ପ୍ରତିକ୍ରିୟାଶୀଳ ହୋଇଉଠେ । ଗଣତାନ୍ତ୍ରିକ ଦେଶରେ ଶାସନଭାର ଓ ଦେଶ ଚଳାଇବାର ଦାୟିତ୍ୱ ଜନଗଣଙ୍କର । ମାତ୍ର ତାହା ଯେତେବେଳେ ବ୍ୟଷ୍ଟିର ଇଚ୍ଛା, ଖିଆଲଦ୍ୱାରା ପରିଚାଳିତ ହୁଏ, ସମୁଦାୟ ଗଣତନ୍ତ୍ର ବିପନ୍ନ ହେବା ସଙ୍ଗେ ସଙ୍ଗେ ବ୍ୟକ୍ତିର ସ୍ୱାଧୀନତା କ୍ଷୁଣ୍ଣ ହୁଏ । ସେଠାରେ ପୁଣି ଦେଖାଦିଏ ଏକଛତ୍ରବାଦ । ରାଜନୈତିକ ବ୍ୟକ୍ତିବିଶେଷଙ୍କର ସ୍ୱେଚ୍ଛାଚାରୀ ମନୋବୃତ୍ତି, ସ୍ୱାର୍ଥପର ଚିନ୍ତାଧାରା, ଚରିତ୍ରହୀନତା ଓ ଖିଆଲୀ ଭାବଧାରା ଉଭୟ ବ୍ୟକ୍ତି ଏବଂ ରାଷ୍ଟ୍ରର ମହତ୍ତ୍ୱ ହାନି କରେ । ଏ କ୍ଷେତ୍ରରେ ସଚେତନ ଶିଳ୍ପୀ ସମସାମୟିକ ସାମାଜିକ ବ୍ୟବସ୍ଥା ଓ ରାଜନୀତିକ ସ୍ୱେଚ୍ଛାଚାରିତା ବିରୋଧରେ ସ୍ୱର ଉତ୍ତୋଳନ କରିବା ସ୍ୱାଭାବିକ ।

ଭାରତବର୍ଷରେ ରାଜନୀତିକ ନେତାମାନଙ୍କର ଘନଘନ ଦଳ ପରିବର୍ତ୍ତନକୁ ଲକ୍ଷ୍ୟକରି କବି ବୈକୁଣ୍ଠନାଥ ରଚନା କରିଛନ୍ତି 'ବୁଦ୍ଧି ଦିଅ' କବିତା । ସାଂପ୍ରତିକ ରାଜନୀତିର ବାସ୍ତବ ଓ ନଗ୍ନଚିତ୍ର ଦେଖିବାକୁ ମିଳେ ତାଙ୍କର 'ଶୃଗାଳରାଜ୍ୟ' ଓ 'ଭୋଟ ଭିକ୍ଷୁ' କବିତାରେ । ଇନ୍ଦିରା ଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ୧୯୭୫ ମସିହା ଜୁନ୍ ମାସରେ ଭାରତରେ ଜରୁରିକାଳୀନ ପରିସ୍ଥିତି ଘୋଷଣା କରାଯିବାରୁ ନାଗରିକଙ୍କ ମୌଳିକ ଅଧିକାର କାଢ଼ି ନିଆଗଲା । ଗଣତନ୍ତ୍ର ଶାସନରେ ସାମ୍ୟବାଦ ପରିବର୍ତ୍ତେ ଏକଛତ୍ରବାଦ ଶାସନ ଚାଲିଲା । ଏକଛତ୍ରବାଦ ଶାସକଙ୍କ ଖିଆଲକୁ ସମ୍ମାନ ଦେବାକୁ ଯାଇ କୋଟି କୋଟି ସ୍ୱାଧୀନ ନାଗରିକଙ୍କ ସାମୂହିକ ସ୍ୱାର୍ଥକୁ ବଳି ଦିଆଗଲା । ଭାରତୀୟ ନାଗରିକଙ୍କ ଅଧିକାର କ୍ଷୁଣ୍ଣ ଏବଂ ଏକଛତ୍ରବାଦୀ ଶାସକଙ୍କ କ୍ଷମତାର ମୋହକୁ ସେତେବେଳେ ତୀବ୍ର ବ୍ୟଙ୍ଗୋକ୍ତି କରି ବୈକୁଣ୍ଠନାଥ ରଚନା କରିଥିଲେ 'ଏ ଯୁଗର ଶିଶୁପାଳଙ୍କୁ', 'କଂସବଧ ସୁଆଙ୍ଗ' ଆଦି କବିତା । ଗରିବୀ ହଟାଓ ଧ୍ୱନିକୁ ବ୍ୟଙ୍ଗ କରି ସେ ଲେଖିଛନ୍ତି -

''ଗରିବୀ ହଟାଅ ସର୍ବହରାକୁ
ଏ ସିନା ତୀବ୍ର ଶ୍ଳେଷ
ନିରାମିଷ ହୁଅ ରକ୍ତମୁଖା ସେ
ଶାର୍ଦ୍ଦୂଳ ଉପଦେଶ ।''

(ଏ ଯୁଗର ଶିଶୁପାଳଙ୍କୁ)

ସେହିପରି 'କଂସବଧ ସୁଆଙ୍ଗ'ରେ ଲେଖିଛନ୍ତି -

''ହିଟ୍‌ଲର ବାଣୀ ଇତିହାସ କଥା
ପୁଣି ତା ବିଂଶ ଦଫା
ତିଷ୍ଠିଲା ନାହିଁ ଜନବିଶ୍ୱାସ
କରିଦେଲା ସବୁ ଦଫା ।''

କବି ବୈକୁଣ୍ଠନାଥ ସମାଜ ସଚେତନ ଶିଳ୍ପୀ । ସମାଜ ବିରୋଧୀ ବା ସାମୂହିକ ସ୍ୱାର୍ଥବିରୋଧୀ କାର୍ଯ୍ୟକଳାପ ସେ ଯେଉଁଠାରେ ଲକ୍ଷ୍ୟ କରିଛନ୍ତି, ସେଠାରେ ସେ ହୋଇଉଠିଛନ୍ତି ତୀବ୍ର ପ୍ରତିକ୍ରିୟାଶୀଳ । ସାମ୍ୟବାଦୀ ଚେତନାର କବିଭାବରେ ତାଙ୍କ ଦେହରେ ମୋହର ବାଜି ନ ଥିଲେହେଁ ତାଙ୍କ କବିତାର ଭାବଧାରାହିଁ ତାଙ୍କୁ ସାମ୍ୟବାଦୀ ବା ବିପ୍ଳବୀ କବି ଭାବରେ ସ୍ୱୀକୃତି ପ୍ରଦାନ କରିଛି । ତାଙ୍କ କବିତାଗୁଡ଼ିକରେ ଯେପରି ଏକ ସୁନ୍ଦର ପୃଥିବୀ ଗଠନ ନିମିତ୍ତ ପ୍ରେରଣା ରହିଛି, ସେହିପରି ରହିଛି ମଣିଷ ଜୀବନର ଅସହାୟତା, ଜୀବନଯନ୍ତ୍ରଣା, ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ମଣିଷର ଆର୍ଥିକ ସଂକଟ, ବୁଭୁକ୍ଷୁ ମଣିଷର ଆର୍ତ୍ତଚିତ୍କାର ସଂପର୍କରେ ଦରଦୀ ମନୋବୃତ୍ତି । ଏହି କାରଣରୁ କବି ବୈକୁଣ୍ଠନାଥଙ୍କୁ ଜଣେ ସାମ୍ୟବାଦୀ କବିର ମର୍ଯ୍ୟାଦା ପ୍ରଦାନ କରାଗଲେ କୌଣସି ଐତିହାସିକ ତ୍ରୁଟି ହେବ ବୋଲି ମନେହୁଏ ନାହିଁ ।

# ଔପନ୍ୟାସିକା ସୁଧାଂଶୁବାଳା

ସ୍ୱାଧୀନତୋତ୍ତର କାଳରେ ଓଡ଼ିଆ ଉପନ୍ୟାସ ରଚନାରେ ଲେଖନୀ ଚାଳନା କରିଥିବା ମୁଷ୍ଟିମେୟ ନାରୀପ୍ରତିଭାମାନଙ୍କ ମଧ୍ୟରେ ଔପନ୍ୟାସିକା ସୁଧାଂଶୁବାଳା ପଣ୍ଡା ଅନ୍ୟତମ । ଏକ ସଂସ୍କୃତିସଂପନ୍ନ ପରିବାରରେ ଜନ୍ମଲାଭ କରିଥିବା ଏହି ନାରୀ ପ୍ରତିଭାଟି ଶିକ୍ଷାର ସର୍ବୋଚ୍ଚ ସୋପାନରେ ଅଧିରୂଢ଼ ହୋଇ ପାରି ନ ଥିଲେହେଁ ବଂଶଗତ ତଥା ଜନ୍ମଗତ କଳାର ଅଧିକାରିଣୀ ରୂପେ ଓଡ଼ିଆ ସାହିତ୍ୟକୁ ବିଭିନ୍ନ ଦିଗରୁ ସମୃଦ୍ଧ କରିବାକୁ ସମର୍ଥା ହୋଇଛନ୍ତି । କଳା ସର୍ବଦା ଜନ୍ମଗତ ଅଧିକାର ଓ ପ୍ରତିଭାସାପେକ୍ଷ । ପାରଂପରିକ ଶିକ୍ଷାର ଦେହଳୀ ମଧ୍ୟରେ ଏହାକୁ ଆବଦ୍ଧ କରାଯାଇ ନ ପାରେ । ଏହି ପରିପ୍ରେକ୍ଷୀରେ ସ୍ମରଣକୁ ଆସନ୍ତି ବଙ୍ଗଳାର ବିଶିଷ୍ଟ ଔପନ୍ୟାସିକା ଆଶାପର୍ଣ୍ଣା ଦେବୀ । ପୁରୁଷ-ପ୍ରଧାନ ସମାଜରେ ନାରୀଶିକ୍ଷା ଆଶାନୁରୂପ ସଫଳତା ଲାଭ କରି ନ ଥିବା କାରଣରୁ ସେ ଉଚ୍ଚଶିକ୍ଷାରୁ ବଞ୍ଚିତା ହେଲେହେଁ ଜନ୍ମଗତ ପ୍ରତିଭା ତାଙ୍କୁ ବଙ୍ଗଳା ସାହିତ୍ୟରେ ଏକ ଶ୍ରେଷ୍ଠ ଔପନ୍ୟାସିକାର ସ୍ୱୀକୃତି ପ୍ରଦାନ କରିଛି । ସେହି କାରଣରୁ ଭାରତର ସର୍ବୋଚ୍ଚ ସାହିତ୍ୟ ପୁରସ୍କାର ଜ୍ଞାନପୀଠ ବିଜେତ୍ରୀୟ ହୋଇପାରିଛନ୍ତି । ଉପଯୁକ୍ତ ପରିବେଶ ଓ ବାତାବରଣ ପ୍ରତିଭା ବିକାଶରେ ସହାୟତା କରିଥାଏ । ବୋଧହୁଏ ଏହି କାରଣରୁ ସୁଧାଂଶୁବାଳା ପାରଂପରିକ ଶିକ୍ଷାରୁ ବଞ୍ଚିତା ହୋଇ ବି ସାଧନା ଓ ସିଦ୍ଧି ବଳରେ ଓଡ଼ିଆ ସାହିତ୍ୟରେ ଜଣେ ସଫଳ ସାହିତ୍ୟସ୍ରଷ୍ଟାରୂପେ ପରିଚିତା ହୋଇପାରିଛନ୍ତି ।

ସୁଧାଂଶୁବାଳା ପଣ୍ଡାଙ୍କର ପ୍ରତିଭା ସାହିତ୍ୟର ବିଭିନ୍ନ ବିଭାଗରେ ପରିବ୍ୟାପ୍ତ । ପ୍ରଥମେ ସେ କବିତା ରଚନାରେ ଲେଖନୀ ଚାଳନା କରିଥିଲେ । 'ମନ୍ଦାକିନୀର କୂଳେ' ଶିରୋନାମାରେ ତାଙ୍କର ଏକ କବିତା ସଂକଳନ ପ୍ରକାଶ ଲାଭ କରିଛି ଏବଂ ଅନ୍ୟତମ ସଂକଳନ 'ମୋ ଗୀତିକବିତା' ପ୍ରକାଶ ଅପେକ୍ଷାରେ । କବିତା ପରେ ସେ ରଚନା କରନ୍ତି କ୍ଷୁଦ୍ରଗଳ୍ପ । ଶତାଧିକ ଗଳ୍ପ ତାଙ୍କର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ଲାଭ କରିଛି ଏବଂ ଏଥିପାଇଁ ସେ ଜଣେ ଗାଳ୍ପିକାର ସ୍ୱୀକୃତି ମଧ୍ୟ ଲାଭ କରିଛନ୍ତି । ତାଙ୍କର ଗଳ୍ପଗୁଡ଼ିକ 'ଯେ ଅଛୁଆଁ ଛୁଇଁ ଦେଲା', 'ନବବର୍ଷର ସକାଳ', 'କଣ୍ଟିଡ଼୍ କାନ୍ତା', 'ବିଭକ୍ତିହୀନ ଗଦ୍ୟ', 'ପ୍ରାଣ ଓ ପ୍ରଣୟ' ଆଦି ସଂକଳନରେ ପ୍ରକାଶିତ । ଏହାଛଡ଼ା 'ବ୍ୟଥା ଓ ବେପଥୁ', 'ତିଥି ଅତିଥିର ସ୍ମାରକୀ',

'Moon and I' ଆଦି ଗଳ୍ପ ସଂକଳନଗୁଡ଼ିକ ପ୍ରକାଶ ଅପେକ୍ଷାରେ ପଡ଼ିରହିଛି । ଆକାଶବାଣୀ ସହିତ ସଂଶ୍ଳିଷ୍ଟ ହୋଇ ଲେଖିକା ନାଟକ ରଚନାରେ ମନୋନିବେଶ କରିଛନ୍ତି । ତାଙ୍କର 'ବକୁଳ ବନର ରାଧା' ଧାରାବାହିକ ଭାବେ ଆକାଶବାଣୀଦ୍ୱାରା ପ୍ରଚାରିତ ହୋଇ ବହୁ ଶ୍ରୋତାଙ୍କୁ ମୁଗ୍ଧ କରିଛି । ପରବର୍ତ୍ତୀ କାଳରେ ଏହା ପୁସ୍ତକାକାରରେ ପ୍ରକାଶିତ ହୋଇଛି । ଆକାଶବାଣୀ କଟକ ଓ ସମ୍ବଲପୁରରୁ ତାଙ୍କର ବହୁ ନାଟକ ପ୍ରଚାର ହୋଇ ତାଙ୍କୁ ଜଣେ ନାଟ୍ୟକାର ରୂପେ ସ୍ୱୀକୃତି ପ୍ରଦାନ କରିଛି । 'ନାଟକଗୁଚ୍ଛ' ଶିରୋନାମାରେ ପ୍ରଚାରିତ ନାଟକଗୁଡ଼ିକ ଏଯାବତ୍ ପ୍ରକାଶ ଅପେକ୍ଷାରେ ରହିଛି । ନାଟକ ରଚନା ପରେ ସୁଧାଂଶୁବାଳା ଉପନ୍ୟାସ ରଚନା କରନ୍ତି । ପ୍ରକାଶକଙ୍କ ଉତ୍ସାହ ଏବଂ ଉପନ୍ୟାସର ଲୋକପ୍ରିୟତା ମୁଖ୍ୟତଃ ତାଙ୍କୁ ଉପନ୍ୟାସ ରଚନା ପାଇଁ ପ୍ରେରଣା ଯୋଗାଇଛି । ତାଙ୍କର ପ୍ରଥମ ଉପନ୍ୟାସ 'ଅବ୍ୟକ୍ତ ବେଦନା' ପ୍ରଥମେ 'ଜନସାହିତ୍ୟ'ରେ ପ୍ରକାଶ ପାଏ ଏବଂ ପରେ 'ଜେ. ମହାପାତ୍ର ଏଣ୍ଡ କୋ' ଙ୍କ ଦ୍ୱାରା ପୁସ୍ତକ ଆକାରରେ ପ୍ରକାଶିତ ହୁଏ । ସେହିପରି ତାଙ୍କର ଦ୍ୱିତୀୟ ଉପନ୍ୟାସ 'ମୋ ଲେଖା ଅଶ୍ରୁର କାଳିରେ' ସେହି ଜନସାହିତ୍ୟ ପତ୍ରିକାର ୧୭ ବର୍ଷ ୧୦-୧୧ ସଂଖ୍ୟା, ମେ ମାସ ୧୯୭୨ ମସିହାରେ ପ୍ରକାଶିତ ହୋଇଥିଲେହେଁ ତାହା ଏ ଯାବତ୍ ସ୍ୱତନ୍ତ୍ର ରୂପେ ପୁସ୍ତକଭାବରେ ପ୍ରକାଶ ପାଇ ନାହିଁ । ୧୯୮୭ ମସିହାରେ ତାଙ୍କର ଅନ୍ୟତମ ଉପନ୍ୟାସ 'ମନଉପତ୍ୟକାର ଉପାଖ୍ୟାନ' ଉତ୍କଳ ସାହିତ୍ୟ ସମାଜଦ୍ୱାରା ଶ୍ରେଷ୍ଠ ଉପନ୍ୟାସ ରୂପେ ପାଣ୍ଡୁଲିପି ପ୍ରତିଯୋଗିତାରେ ପୁରସ୍କୃତ ହୁଏ ଏବଂ ୧୯୯୧ ମସିହାରେ ଓଡ଼ିଶା ବୁକ୍‌ଷ୍ଟୋରଦ୍ୱାରା ପ୍ରକାଶିତ ହୁଏ । ତାଙ୍କର ଅନ୍ୟାନ୍ୟ ଉପନ୍ୟାସଗୁଡ଼ିକ ଯଥାକ୍ରମେ ୧୯୮୯ ସଲୋନୀ, ୧୯୯୪ 'ଅଧିକରୁ କିଛି ଉର୍ଦ୍ଧ୍ୱ', ୧୯୯୫ 'ପୀଡ଼ାର ପରିଭାଷା' ଆଦି ପ୍ରକାଶ ପାଏ । ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ ଏକ ଉପନ୍ୟାସ 'ମା, ମାୟା ଓ ମମତା' ଏ ପର୍ଯ୍ୟନ୍ତ ପ୍ରକାଶ ପାଇ ନାହିଁ । 'ଗଙ୍ଗା' ଉପନ୍ୟାସଟି ସଂପୂର୍ଣ୍ଣ ହେବା ପୂର୍ବରୁ ସେ ଇହଲୀଳା ତ୍ୟାଗ କରିଛନ୍ତି । ସୁଧାଂଶୁବାଳା ତାଙ୍କର ସାହିତ୍ୟ ପ୍ରତିଭାପାଇଁ 'ଯଦୁମଣି ସାହିତ୍ୟ ସଂସଦ' , 'ନୀଳଶୈଳ', 'ଧରିତ୍ରୀ', 'ଚଲାପଥ', 'ଗୋକର୍ଣ୍ଣିକା', 'ଚିନ୍ତା ଓ ଚେତନା', 'ପରିଚୟ' , 'ସୁଧନ୍ୟା', 'ଉତ୍କଳ ସାହିତ୍ୟ ସମାଜ' ଆଦି ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

ଭାରତୀୟ ସାମାଜିକ ଜୀବନରେ ନାରୀର ଭୂମିକା ମହତ୍ତ୍ୱପୂର୍ଣ୍ଣ ହେଲେହେଁ, ପୁରୁଷ-ପ୍ରଧାନ ସମାଜରେ ପ୍ରକୃତପକ୍ଷେ ନାରୀର ଭୂମିକା ଅତୀବ ଗୌଣ । ଆମ ପୁରାଣମାନଙ୍କରେ ନାରୀର ବହୁମୁଖୀ ଭୂମିକା ସ୍ୱୀକୃତି ଲାଭ କରିଛି । ମାତା, ଭଗ୍ନୀ, ପତ୍ନୀ ଆଦି ବିଭିନ୍ନ କ୍ଷେତ୍ରରେ ତାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ବାସ୍ତବକ୍ଷେତ୍ରରେ ନାରୀ ବହୁ ପରିମାଣରେ ଅବହେଳିତା । ସ୍ୱାଧୀନତା ପରବର୍ତ୍ତୀ କାଳରେ ଆଧୁନିକ ଭାରତୀୟ ସମାଜରେ ଅନ୍ୟାନ୍ୟ ବହୁବିଧ ସମସ୍ୟାପରି ନାରୀ ସମସ୍ୟାଟି ମୁଖ୍ୟ ହୋଇ ଉଠିଛି । ସଂପ୍ରତି ବିଭିନ୍ନ କ୍ଷେତ୍ରରେ

ନାରୀମାନଙ୍କର ପ୍ରତିଯୋଗିତା ଆରମ୍ଭ ହୋଇଛି । ଗୃହକର୍ମଠାରୁ ବିମାନ ପରିଚାଳନା-ଏପରିକି ମହାକାଶ ଯାତ୍ରା ନାରୀମାନଙ୍କର ପାରଂପରିକ ଅବଳା ସଂଜ୍ଞାକୁ ବହୁ ପରିମାଣରେ ଦୂର କରିପାରିଛି । ଏହାସତ୍ତ୍ୱେ ନାରୀ ସ୍ୱାଧୀନ କିମ୍ବା ସ୍ୱାବଲମ୍ବନଶୀଳା-ପ୍ରଶ୍ନର ଉତ୍ତର ଏବେ ବି ସନ୍ତୋଷଜନକ ନୁହେଁ । ନାରୀପ୍ରଗତିର ସମସ୍ତ ଦ୍ୱାର ଉନ୍ମୁକ୍ତ ସତ୍ତ୍ୱେ ତଥାପି ସତେଯେପରି ନାରୀପ୍ରଗତିର ଚଳନ୍ତି ରଥ କେଉଁ ଅଧାବାଟରେ ଅଟକି ରହିଛି । ସାଂପ୍ରତିକ ସମାଜରେ ପରିଲକ୍ଷିତ ନାରୀଜୀବନର ଅସହାୟତା, ନିଃସଙ୍ଗତା, ନାରୀପ୍ରତି ପୁରୁଷ ସମାଜର ଅବହେଳା ମନୋବୃତ୍ତି, ନାରୀ ମନସ୍ତତ୍ତ୍ୱ, ନାରୀଜୀବନର ଆଦର୍ଶବତ୍ତା ଆଦିକୁ ଔପନ୍ୟାସିକା ସୁଧାଂଶୁବାଳା ତାଙ୍କ ଉପନ୍ୟାସଗୁଡ଼ିକରେ ରୂପାୟିତ କରିବାକୁ ଚେଷ୍ଟା କରିଛନ୍ତି । ଔପନ୍ୟାସିକା ନିଜେ ଜଣେ ନାରୀ ହୋଇଥିବାରୁ ନାରୀ ସମସ୍ୟା ଓ ନାରୀ ଜାତି ପ୍ରତି ଏକ ସମ୍ବେଦନଶୀଳ ମନୋଭାବ ପ୍ରକାଶ ପାଇଛି । ତାଙ୍କ ଉପନ୍ୟାସଗୁଡ଼ିକ ମୁଖ୍ୟତଃ ନାରୀକୈନ୍ଦ୍ରିକ । ତେଣୁ ତାଙ୍କ ସୃଷ୍ଟିରେ ନାରୀର ଭୂମିକା ପୁରୁଷଠାରୁ ଊର୍ଦ୍ଧ୍ୱରେ । ଉପନ୍ୟାସରେ ଅନ୍ୟାନ୍ୟ ଚରିତ୍ରଗୁଡ଼ିକ ଏହି କେନ୍ଦ୍ରୀୟ ନାରୀଚରିତ୍ର ଚତୁଃପାର୍ଶ୍ୱରେ କେବଳ ଘୂରି ବୁଲିଛନ୍ତି । ଉପନ୍ୟାସର କଥାବସ୍ତୁ ମଧ୍ୟ ନାରୀ ଚରିତ୍ରମାନଙ୍କଦ୍ୱାରା ନିୟନ୍ତ୍ରଣାଧୀନ । ପାରଂପରିକ ସମାଜ ବ୍ୟବସ୍ଥା ବିରୋଧରେ ସୁଧାଂଶୁବାଳାଙ୍କ ନାରୀଚରିତ୍ରଗୁଡ଼ିକ ପ୍ରତିକ୍ରିୟାଶୀଳ ଅଥଚ ପାରଂପରିକ ମନୋବୃତ୍ତିଠାରୁ ବିଶେଷ ଦୂରବର୍ତ୍ତୀ ନୁହନ୍ତି । ଭାଗ୍ୟ, ଭଗବାନ୍ ଓ ରୂଢ଼ିବାଦୀ ଚିନ୍ତାଧାରାଦ୍ୱାରା ସଂକ୍ରମିତ ଏହି ଚରିତ୍ରଗୁଡ଼ିକ ସାମାଜିକ ଜୀବନଧାରାରେ ସହାୟିକା ହେବା ପରିବର୍ତ୍ତେ ନାରୀସୁଲଭ ଦୁର୍ବଳତା ନେଇ ଆତ୍ମସମର୍ପିତା ।

'ଅବ୍ୟକ୍ତ ବେଦନା' ସୁଧାଂଶୁବାଳାଙ୍କ ପ୍ରଥମ ଉପନ୍ୟାସ । ମୁଖ୍ୟତଃ ଦୁଇଟି ନାରୀଚରିତ୍ର ଆନି ଓ ଅଜନ୍ତା ଏବଂ ପୁରୁଷ ଚରିତ୍ର ଶିତିକଣ୍ଠଙ୍କୁ ଉପଜୀବ୍ୟ କରି ଉପନ୍ୟାସଟି ରଚିତ । ଅନ୍ୟାନ୍ୟ କେତେକ ଚରିତ୍ର ପ୍ରାସଙ୍ଗିକ ଭାବେ ଉପନ୍ୟାସ ମଧ୍ୟକୁ ଆସିଛନ୍ତି । ଆନି ଉପନ୍ୟାସର ମୁଖ୍ୟ ଚରିତ୍ର । ତା' ଜୀବନର ଆଶା-ନିରାଶା, ସୁଖ-ଦୁଃଖ ଓ କାରୁଣ୍ୟକୁ ଭିତ୍ତି କରି ଉପନ୍ୟାସର ବିଷୟବସ୍ତୁ ଗତିଶୀଳ । ଉପନ୍ୟାସର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଆନି ଜୀବନର ଘଟଣାପ୍ରବାହ ପାଠକକୁ ଯୁଗପତ୍ ସୁଖ ଓ ଦୁଃଖ ସାଗରରେ ନିମଜ୍ଜନ କରେ । ଗୋଟିଏ ନାରୀମନର ପ୍ରେମ-ପ୍ରଣୟ, ସୁଖ-ଦୁଃଖ, ଅସହାୟତା, ନିଃସଙ୍ଗତା ଓ ମାନସିକ କ୍ରିୟା-ପ୍ରତିକ୍ରିୟା ଚମତ୍କାର ରୂପ ଲାଭ କରିଥିଲେହେଁ ବିଷୟବସ୍ତୁର ଏକରୂପତା ଏହାକୁ ଏକ ଲଘୁ ଉପନ୍ୟାସରେ ପରିଣତ କରିଛି । ଉପନ୍ୟାସକୁ ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଭାଗ ଶିତିକଣ୍ଠ ସହିତ ଆନିର ବିବାହଠାରୁ ସନ୍ତାନ ଲାଭ ପର୍ଯ୍ୟନ୍ତ ଗତିଶୀଳ । ଏହି ଭାଗରେ ଆନି ଏବଂ ଶିତିକଣ୍ଠଙ୍କ ସୁଖମୟ ଦାଂପତ୍ୟ ଜୀବନ ବର୍ଣ୍ଣିତ, ଯାହା ସଚରାଚର ପରିଲକ୍ଷିତ । ଶରୀର ମିଳନ ପ୍ରତି ଗଭୀର ଆସକ୍ତି ଓ ତଜ୍ଜନିତ ପ୍ରତିକ୍ରିୟା ଆନି ଚରିତ୍ରକୁ ଏକ ଆଦର୍ଶ ଗୃହିଣୀ ରୂପେ ପ୍ରତିପାଦନ କରିବା ଅପେକ୍ଷା ଏକ ଶରୀରକାମୀ

ନାରୀରେ ପରିଣତ କରିଛି । ଏପରିକି ବିବାହ ପୂର୍ବରୁ ତାର ଅବଚେତନ ମନର ବିଭିନ୍ନ ପ୍ରତିକ୍ରିୟା ଓ ରୁଗ୍‌ଣ ମାନସିକତା ତଥା ବିବାହ ପରେ ଦେବର ରତିସ୍ନିଗ୍ଧ ପ୍ରତି ସାମୟିକ ଆକର୍ଷଣ (ହୁଏତ ସାମାଜିକ ଆବେଦନ ଅନ୍ୟପ୍ରକାର ହୋଇପାରେ) ଆନିକୁ ଏକ କାମପ୍ରପୀଡ଼ିତା ନାରୀରେ ପରିଣତ କରିଛି । ପୁରୁଷ ଓ ନାରୀର ପରସ୍ପର ପ୍ରତି ରହିଥିବା ସ୍ୱାଭାବିକ ପ୍ରକୃତିଗତ ଦୁର୍ବଳତା ଉକ୍ତ ଉପନ୍ୟାସରେ ପ୍ରକାଶିତ । ଉପନ୍ୟାସର ପ୍ରଥମ ଭାଗରେ ଆନି ଏବଂ ଶିତିକଣ୍ଠଙ୍କର ମଧୁର ଦାଂପତ୍ୟଜୀବନ ଉପଭୋଗ୍ୟ; ଯଦିଓ ସେହି ଏକପ୍ରକାର ମାନସିକତା ମଧରେ ନାୟକ ଓ ନାୟିକା ଗତିଶୀଳ । ଉପନ୍ୟାସର କଥାବସ୍ତୁ ଆନିର ବାନ୍ଧବୀ ଅଜନ୍ତାର ଆବିର୍ଭାବ ପରେ ଭିନ୍ନ ରୂପ ଧାରଣ କରେ । ପୁରୁଷର ନିଜ ପତ୍ନୀ ଅପେକ୍ଷା ଅନ୍ୟ ନାରୀ ପ୍ରତି ଦୁର୍ବଳତା ଅଧିକ । ଆନି ପରିବାରରେ ଅଜନ୍ତାର ଉପସ୍ଥିତି ଶିତିକଣ୍ଠକୁ ଦୂରେଇ ନେଇଛି ଆନିଠାରୁ । ଉପନ୍ୟାସର ପ୍ରଥମ ଭାଗରେ ଆନି ଏବଂ ଶିତିକଣ୍ଠଙ୍କର ମଧୁର ଦାଂପତ୍ୟ ଜୀବନ, ଦ୍ୱିତୀୟ ଭାଗରେ ଅଜନ୍ତାର ଆଗମନ ପରେ ବିଷାଦରେ ପରିଣତ ହୋଇଛି । ତେଣୁ ପ୍ରଥମ ଭାଗଟି ମିଳନ ପରିବେଶରେ ଉଷ୍ଣ ହୋଇଉଠିଥିବା ସମୟରେ, ଦ୍ୱିତୀୟ ଭାଗଟି ଦୁଃଖାନ୍ତକ ପରିବେଶରେ ସମାପ୍ତି ଘଟିଛି । ଗୋଟିଏ ନାରୀମନର ଅକୁହା ବେଦନା ସବୁଦିନ ପାଇଁ ଅବ୍ୟକ୍ତ ରହିଯାଇଛି । କାହା ନିକଟରେ ବ୍ୟକ୍ତ କରିବ ନିଜର ବେଦନା ? ଉପନ୍ୟାସର ପରିସମାପ୍ତି ବେଳକୁ ଆନିର ଅସହାୟତା ଓ ନିଃସଙ୍ଗତା ଯେପରି ପାଠକକୁ ମ୍ରିୟମାଣ କରେ, ଠିକ୍ ସେହିପରି ଶିତିକଣ୍ଠର ଅବିଚାର ଓ ନିଜ ପତ୍ନୀ ପ୍ରତି ଅଶୋଭନୀୟ ବ୍ୟବହାର ପାଠକ ମନରେ ପ୍ରତିକ୍ରିୟା ସୃଷ୍ଟି କରେ । ଆନିର ବେଦନା ସାମୟିକ ଭାବେ ପାଠକକୁ ଦୁଃଖାଭିଭୂତ କଲେହେଁ ଉପନ୍ୟାସର ଗଠନଗତ ତ୍ରୁଟି ଏବଂ ବିଭିନ୍ନ ଘଟଣା ମଧରେ ସମନ୍ୱୟର ଅଭାବ ଗ୍ରନ୍ଥଟିର କଳାତ୍ମକ ମୂଲ୍ୟ ହ୍ରାସ କରିଛି । ଏହା ସତ୍ତ୍ୱେ ନାରୀ ମନସ୍ତତ୍ତ୍ୱ ଏବଂ ସୁନ୍ଦର ଚିତ୍ରକଳ୍ପର ପ୍ରୟୋଗ ଉପନ୍ୟାସର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଯଥା-

**ଚିତ୍ରକଳ୍ପ**

୧. ଲିଭିଗଲା ଦୀପର ଧୂଆଁ ଘରସାରା ଲହରେଇ ଲହରେଇ ଖେଳି ବୁଲିଲା ଭଳି ବାପା ଷ୍ଟେସନ ଚାଲିଯିବା ପରେ ବି ତାଙ୍କ କୁହୁଳା ମୁହଁ, ଜ୍ୱଳନ ମନ ଏ ଘରସାରା ସେମିତି ଘୂରିବୁଲୁଛି (ପୃ ୩) ।

୨. ଅନୂଢ଼ା ତରୁଣୀର ମନକୁ ଜଗି ନ ହେଲା ଭଳି, ଖରାଦିନର ସନ୍ଧ୍ୟା ସମୟ ଓ ଶୀତଦିନର ସକାଳକୁ ଜଗି ହୁଏନା । (ପୃ ୨୮)

୩. ଆକାଶ ବକ୍ଷରେ ସୁଶୋଭିତ ତାରକା ତରାଟ ଫୁଲଭଳି ଅଜାଡ଼ି ପଡ଼ିଛି । (ପୃ ୩୧)

୪. ସେଥିରେ ମୋ ଆଖିଡୋଳା ଘସରା ଦର୍ପଣ ଭଳି ଦୀପ୍ତିହୀନ । (ପୃ.୩୫)

୫. ଅଳ୍ପବୟସୀ, ଶୁଭ୍ର ପରିଧାନ ପରିହିତା ଜ୍ୟୋତିର୍ମୟ ଝିଅଟିଏ ହସି ହସି ଖେଳି ବୁଲିଲାଭଳି, ରୂପସୀ ଚନ୍ଦ୍ରମା, ଧରଣୀରେ ଉନ୍ମାଦିନୀ ହୋଇ ହସି ହସି ଲୋଟି ଯାଉଛି । (ପୃ ୪୪)

୬. ଅନୁଭବ କଲି ତାଙ୍କର ଲୋମଶ ବକ୍ଷ, ସତେ ଅବା ଭେଲ୍‌ଭେଟ କନାର ଗୋଟିଏ ପ୍ରଶସ୍ତ ବିଛଣା । (ପୃ ୫୦)

୭. ହସି ହସି ଦୁହେଁ, ଦୁଇଟି ବେଲା ରୁଟି ଏକତ୍ର ରଖି ମିଶାଇ ଦେଲାପରି ଆମେ ଏକାଠି ମିଶିଗଲୁ । (ପୃ ୫୧)

୮. ରିତୁଙ୍କ ପରିହାସ, କାଚ ଗ୍ଲାସର ଖରାଦିନିଆ ବରଫମିଶା କମଳାରସ । (ପୃ ୫୭)

୯. କେରି କେରି ହୋଇ ଆକାଶ ବୁକୁରୁ ଖସିପଡୁଛି ବଟା ହଳଦୀ ରଙ୍ଗର କଅଁଳ ଖରା । (ପୃ ୫୮)

୧୦. ଆନନ୍ଦମିଶା ହସରେ ମୁହଁଟା ତାଙ୍କର ଅସମ୍ଭବ ଭାବେ ଲାଲ ହୋଇଉଠିଛି ସମୁଦ୍ର ଭିତରେ ପହିଲି ସୂର୍ଯ୍ୟର ପ୍ରତିଛବି ଭଳି । (ପୃ ୬୭)

୧୧. ନିମିଷକ ପୂର୍ବର ଅଳସ ଅଙ୍ଗଲତା, ସଜଧୁଆ ସକାଳପରି ସତେଜ ହୋଇ ଉଠିଲା । (ପୃ ୭୫)

୧୨. ସୂଚୀ ଶୁଭ୍ର ପଲ୍ଲୀ ବଧୂଟିଏ ନିଦ୍ରାଗଲାଭଳି ଧାରେ ନଦୀ । (ପୃ ୮୬)

**ନାରୀ ମନସ୍ତତ୍ତ୍ୱ**

୧. ବୟସ ବେଳେ ଗପ କରିବା ଯେମିତି ଏକ ଆନନ୍ଦଦାୟକ ନିଶା, ଠିକ୍ ସେହିଭଳି ବିବାହ ପୂର୍ବରୁ ସ୍ୱାମୀ ଚିନ୍ତାକରିବା ଝିଅମାନଙ୍କର ଏକ ସ୍ୱତଃ ନିଶା । (ପୃ ୨୯)

୨. ପ୍ରଲୋଭିତ ଯୁବକକୁ ଦେଖି ଯୁବତୀ ମୁଗ୍ଧ ହେବା ବୟସର ଧର୍ମ । (ପୃ ୩୦)

୩. ସ୍ତ୍ରୀ ହୋଇ ଚଳିବାକୁ ହେଲେ, ଇଚ୍ଛା ବିରୋଧରେ ଗୁଡ଼ାଏ କଥା ଗୋପନ ରଖିବାକୁ ପଡ଼େ । (ପୃ ୪୯)

ସୁଧାଂଶୁବାଳାଙ୍କ ଦ୍ୱିତୀୟ ଉପନ୍ୟାସ 'ମୋ ଲେଖା ଅଶ୍ରୁର କାଳିରେ' । ପତ୍ରୋପନ୍ୟାସ ଶୈଳୀରେ ରଚିତ ଏହି ଉପନ୍ୟାସଟି । ଦୁଇଟି ପତ୍ରରେ ଉପନ୍ୟାସର ଆରମ୍ଭ ଓ ପରିସମାପ୍ତି । ଦୁଇଜଣ ନାରୀର ବ୍ୟଥା ଏବଂ ବେଦନାର କାହାଣୀ ଉପନ୍ୟାସଟିର ବିଷୟବସ୍ତୁ । ରିନି ଏବଂ ସିପ୍ରା- ସେମାନଙ୍କର ଅତୀତ ଏବଂ ବର୍ତ୍ତମାନର ସୁଖ ଦୁଃଖର କାହାଣୀକୁ ନିର୍ବିକାର ଭାବରେ ପ୍ରକାଶ କରିଛନ୍ତି ଉକ୍ତ ଉପନ୍ୟାସଟିରେ । ପ୍ରଥମ ପତ୍ରଟି ରିନିର ସିପ୍ରା ନିକଟକୁ ଏବଂ ଦ୍ୱିତୀୟ ପତ୍ରଟି ସିପ୍ରାର ରିନି ପାଖକୁ । ପ୍ରସଙ୍ଗକ୍ରମେ ଉପନ୍ୟାସ ମଧ୍ୟରେ ଆଉ ଦୁଇଜଣଙ୍କ ପତ୍ର ପ୍ରକାଶିତ ରିନି ପତ୍ରରେ । ଗୋଟିଏ ପତ୍ର ନରେଶର ପୂର୍ବତନ

ପ୍ରେମିକା ନୀତାର ନରେଶ ନିକଟକୁ ଓ ଅନ୍ୟଟି ନରେଶର ରିନି ପାଖକୁ । କଥାବସ୍ତୁ ମଧ୍ୟରେ ଅନ୍ୟ କେତୋଟି ପତ୍ର ବିଷୟରେ ଅବତାରଣା କରାଯାଇଛି । ମାତ୍ର ତାର ବିଷୟବସ୍ତୁ ସମ୍ବନ୍ଧରେ ଆଲୋକପାତ କରାଯାଇ ନାହିଁ । ଏହି ପତ୍ରୋପନ୍ୟାସର ମୁଖ୍ୟ ଚରିତ୍ର ରିନି; ଯାହାର ଗୁରୁତ୍ୱ ଉପନ୍ୟାସର ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଉପଲବ୍ଧ । ଉପନ୍ୟାସର ଦ୍ୱିତୀୟ ପତ୍ର ସିପ୍ରାର; ଯେଉଁଥିରେ ତାର ଅନୁଭବ ଅଶ୍ରୁସଜଳ ରୂପ ନେଇ ପ୍ରକାଶିତ । ଯେଉଁ ଦୁଇଟି ଚରିତ୍ରଙ୍କୁ ଉପଜୀବ୍ୟ କରି ଉପନ୍ୟାସ ଗତିମୁଖର; ସେମାନେ ପୁଣି ଅନ୍ତରଙ୍ଗ ବାନ୍ଧବୀ । ଅଥଚ ପରସ୍ପରଠାରୁ ବହୁ ଦୂରରେ । ଗୋଟିଏ ପୁରୁଷ ଚରିତ୍ର (ନରେଶ)କୁ କେନ୍ଦ୍ରକରି ଏହି ଦୁଇଟି ନାରୀଚରିତ୍ର ଘୂରି ବୁଲିଥିଲେହେଁ ଶେଷ ପର୍ଯ୍ୟନ୍ତ ପରସ୍ପର ଏକ ପତିର ପତ୍ନୀ ରୂପେ ଅପରିଚିତା । ସିପ୍ରାର ଦ୍ୱିତୀୟ ଚିଠିଟି ଏହି ସମସ୍ୟାର ସମାଧାନ କରିଛି ।

ଯଦିଓ ଉପନ୍ୟାସରେ ଦୁଇଟି ପତ୍ରରୁ ଦୁଇଜଣ ନାରୀ ଜୀବନର ବ୍ୟଥା ଓ କରୁଣତା ପ୍ରକାଶିତ; ରିନିର ପତ୍ର ମଧ୍ୟରେ ଆତ୍ମପ୍ରକାଶ କରିଥିବା ନୀତାର ପତ୍ରଟିରୁ ଆଉ ଏକ ନାରୀ ଜୀବନର କରୁଣତା ବେଶ୍ ବାରି ହୋଇପଡ଼େ । ବଡ଼ ଆଶ୍ଚର୍ଯ୍ୟ ଭାବରେ ଏହି ତିନୋଟି ନାରୀଚରିତ୍ର ଗୋଟିଏ ପୁରୁଷ ସହିତ ସଂଶ୍ଲିଷ୍ଟ ହୋଇପଡ଼ିଛନ୍ତି । ଏଥିମଧ୍ୟରୁ ଜଣେ ପ୍ରେମିକା (ନୀତା) ଓ ଅନ୍ୟ ଦୁଇଜଣ ପତ୍ନୀ । ଏହି ପ୍ରେମିକା ପୁଣି ପୂର୍ବରୁ ଏକପ୍ରକାର ବାଗ୍‌ଦତ୍ତା । ମାତ୍ର ସମୟ ସ୍ରୋତରେ ମୂଳସ୍ରୋତଠାରୁ ବିଚ୍ଛିନ୍ନ ହୋଇଯାଇ ଅନ୍ୟ ଏକ କୂଳ (ଲଳିତ)ରେ ନିରାପଦ ଆଶ୍ରୟ ପାଇଛି ସତ୍ୟ; ମାତ୍ର ଅତୀତ ସ୍ମୃତିର ସ୍ମାରକୀ ସ୍ୱରୂପ ପ୍ରେମିକର ଯେଉଁ ଭ୍ରୂଣ ତା' ଜରାୟୁରେ ଆଶ୍ରୟ ନେଇଛି, ତାହାକୁ ସେ କଦାପି ଭୁଲିପାରି ନାହିଁ । ଅବଶ୍ୟ ଲଳିତର ମହାନତା ନିକଟରେ ସେ ଋଣୀ; କିନ୍ତୁ ନରେଶର ଶଠତାରେ ପ୍ରତିକ୍ରିୟାଶୀଳା ଅଥଚ ଦାବି କରିବାର ନୈତିକ ସାହସ ନାହିଁ । ଅଭିନୟ କୁଶଳୀ ଏକ ପୁରୁଷ ଚରିତ୍ରର ଅନ୍ତଃରୂପକୁ ପ୍ରକାଶ କରିବାପାଇଁ ଏହି ତୃତୀୟ ପ୍ରେମିକା ଚରିତ୍ରଟିର ଅବତାରଣା ।

ଦୁଇଜଣ ନାରୀଙ୍କର ଦୁଇଟି ପତ୍ରରୁ ଦୁଇଜଣ ପୁରୁଷ (ନରେଶ ଓ ଲଳିତ)ଙ୍କ ଚରିତ୍ର ସଂପର୍କରେ ପାଠକ ଅବଗତ ହୋଇଥାଏ । ଯୌବନର ପ୍ରଥମ ସ୍ପର୍ଶ ଓ ଲଳିତଙ୍କର ରିନି ଦେହ ପ୍ରତି ଆକର୍ଷଣ ଏବଂ ବର୍ଷାର ପ୍ରକୋପ ସହିତ ଅନ୍ଧାରର ସୁଯୋଗ ରିନିକୁ ବିପଥଗାମୀ କରିଥିଲା । ଏ କ୍ଷେତ୍ରରେ ରିନିର୍ ମଧ୍ୟ ସଂପୂର୍ଣ୍ଣ ସହଯୋଗ ଓ ସମ୍ମତି ରହିଥିଲା । ଯୌବନରେ ପାଦଦେଇଥିବା ତରୁଣ ତରୁଣୀ ଏହି ସୁଯୋଗର ଅପବ୍ୟବହାର କରି ନ ଥିଲେ । ସେଥିପାଇଁ ଲଳିତଙ୍କୁ କମ୍ ଅନୁତାପ କରିବାକୁ ପଡ଼ି ନାହିଁ, ନିଜ ତ୍ରୁଟିର ସଂଶୋଧନ ପାଇଁ ନିଜ ତରଫରୁ ରିନିକୁ ବିବାହର ପ୍ରସ୍ତାବ ଦେଇଛି । ମାତ୍ର ପିତାମାତାଙ୍କ ଅସମ୍ମତିରେ ବିବାହ କିମ୍ବା ଗୃହତ୍ୟାଗ ପରି ଅସାମାଜିକ ପଦକ୍ଷେପ ନେବାକୁ ରିନି ସ୍ୱୀକୃତି ଦେଇପାରି ନାହିଁ । ନାରୀ ଜୀବନର ଅସହାୟତା ଓ କାରୁଣ୍ୟ ରିନି ଚରିତ୍ରରେ ଫୁଟିଉଠିଛି । ସାମୟିକ ଖିଆଲର ବଶବର୍ତ୍ତୀ ହୋଇ ସେ ଯେଉଁ ଭୁଲ୍ କରିଥିଲା, ସେଥିପାଇଁ ଭବିଷ୍ୟତରେ ତାକୁ ବିରାଟ ମୂଲ୍ୟ ଦେବାକୁ ପଡ଼ିଛି ।

ଅପମାନିତ ଲଳିତ ପାପଗର୍ଭା ନୀତାକୁ ଗ୍ରହଣ କରିବାରେ କୁଣ୍ଠାପ୍ରକାଶ କରି ନାହିଁ । ଏହାଦ୍ୱାରା ତାର ଦେବତ୍ୱ ଗୁଣ ବିକଶି ଉଠିଛି । ମାତ୍ର ନରେଶ ବିବାହ ପୂର୍ବରୁ ଅନ୍ୟ ତରୁଣୀ ସଂସ୍ପର୍ଶରେ ଆସିଥିଲେହେଁ, ଯୌତୁକପାଇଁ ପ୍ରେମିକାକୁ ବଳିଦେବାନିମିତ୍ତ କୁଣ୍ଠିତ ହୋଇ ନାହିଁ । ଡାକ୍ତରଙ୍କ ଭୁଲ୍ କଥାକୁ ସତ୍ୟ ମନେକରି ନିଜର ପତ୍ନୀକୁ ଅକ୍ଳେଶରେ ତ୍ୟାଗକରି ଅନ୍ୟ ଏକ ତରୁଣୀକୁ ପତ୍ନୀଭାବରେ ଗ୍ରହଣ କରିନେଇଛି । ଶିକ୍ଷା, କ୍ଷମତା ଓ ଅର୍ଥର ମୋହ ମଣିଷକୁ କିପରି ଅନ୍ଧ କରିପାରେ, ତାର ଜ୍ୱଳନ୍ତ ନିଦର୍ଶନ ନରେଶ । ଭୁଲ୍ କରିବା ମଣିଷର ପ୍ରକୃତି । ମାତ୍ର ଭୁଲ୍‌କୁ ଯଥାସମୟରେ ସଂଶୋଧନ କରିବା ଉତ୍ତମ ମଣିଷର ଚାରିତ୍ରିକ ବୈଶିଷ୍ଟ୍ୟ । ଲଳିତ ଓ ନରେଶ ଆମ ସମାଜର ଦୁଇ ପରସ୍ପର ବିରୋଧୀ ଚରିତ୍ରର ପ୍ରତୀକ । ନାରୀ ଚରିତ୍ର ଦୃଷ୍ଟିରୁ ସିପ୍ରା ଅତ୍ୟନ୍ତ ମହନୀୟ । ସରଳ ବିଶ୍ୱାସରେ ସେ ନରେଶକୁ ଗ୍ରହଣ କରିନେଇଛି; ମାତ୍ର ତା' ଚରିତ୍ରର ଅନ୍ୟ ଦିଗଟିକୁ ଆବିଷ୍କାର କରିପାରି ନାହିଁ । ନରେଶର ଅଭିନୟରେ ରିନି ଯେଉଁ ଭୁଲ୍ କରି ବସିଥିଲା, ସରଳା ସିପ୍ରା ମଧ ଠିକ୍ ସେହି ଭୁଲ୍ କରିଛି । ରିନିର୍ ପତ୍ର ପ୍ରାପ୍ତି ପରେ ନିଜ ତ୍ରୁଟି ସଂଶୋଧନ ପାଇଁ ଓ ନରେଶକୁ ଶାସ୍ତି ଦେବା ଉଦ୍ଦେଶ୍ୟରେ ଗୃହତ୍ୟାଗ କରିଛି । ଗୃହତ୍ୟାଗଦ୍ୱାରା ତା' ଦୁଃଖର ଅନ୍ତ ନାହିଁ । ଦୁଇଟି ନାରୀର ଜୀବନ ଦୁଇ ବିପରୀତ ଦିଗରେ ଗତି କରିଛି । ତେଣୁ ଉପନ୍ୟାସରେ ସମସ୍ୟା ରହିଛି; ମାତ୍ର ସମାଧାନ ନାହିଁ । ନାରୀର ଅସହାୟତା, କାରୁଣ୍ୟ ଓ ପୁରୁଷର ଅବିଚାର ଉପନ୍ୟାସର ଉପଜୀବ୍ୟ ବିଷୟ । ଔପନ୍ୟାସିକାଙ୍କର ସମାଜପ୍ରତି ବାର୍ତ୍ତା ସ୍ପଷ୍ଟ ହୋଇପାରି ନାହିଁ । ସତେଯେପରି ଭାଗ୍ୟ, ଭଗବାନ୍, ନିଃସଙ୍ଗତା, ଅସହାୟତା ଓ ସର୍ବୋପରି ପରାଧୀନ ମନୋବୃତ୍ତି ନାରୀଜୀବନର ଏକମାତ୍ର ସମ୍ବଳ ବୋଲି ପରୋକ୍ଷରେ ସେ ସୂଚେଇ ଦେଇଛନ୍ତି ।

ଉତ୍କଳ ସାହିତ୍ୟ ସମାଜଦ୍ୱାରା ପୁରସ୍କୃତ 'ମନ ଉପତ୍ୟକାର ଉପାଖ୍ୟାନ' ନାରୀ ସମସ୍ୟା ଉପରେ ଆଧାରିତ ସୁଧାଂଶୁବାଳାଙ୍କ ଅନ୍ୟତମ ଉପନ୍ୟାସ । ଅନ୍ୟାନ୍ୟ ଉପନ୍ୟାସପରି ନାରୀ ଜୀବନର ମହତ୍ତ୍ୱ ପ୍ରତିପାଦନ କରିବା ଉକ୍ତ ଉପନ୍ୟାସର ମୁଖ୍ୟ ଉଦ୍ଦେଶ୍ୟ । ଏହି ଉପନ୍ୟାସଟିରେ ପୁରୁଷ ଅପେକ୍ଷା ନାରୀ, ନାରୀପାଇଁ ଅଧିକ ସମସ୍ୟା ସୃଷ୍ଟି କରିଛି । ଉପନ୍ୟାସର ନାୟିକା ରୀନା, ଯାହାକୁ କେନ୍ଦ୍ରକରି ଉପନ୍ୟାସଟି ଗତିଶୀଳ । କଥାବସ୍ତୁର ବିକାଶ ସହିତ ଆଉ ଚାରୋଟି ନାରୀଚରିତ୍ରଙ୍କ ଆବିର୍ଭାବ ଘଟିଛି ଏଥିରେ । ସେମାନେ ହେଉଛନ୍ତି ସ୍ୱାମୀଦ୍ୱାରା ନିର୍ଯାତିତା, ପରିତ୍ୟକ୍ତା ମୀନା' ସ୍ୱାଧୀନଚେତା ଆଇନ୍‌ଜୀବୀ ଆଶା; ଝିଆରୀ ରୁବି ଓ ରୀନାର ଭାଉଜ ନିଶାମଣି । ପ୍ରସଙ୍ଗକ୍ରମେ ଅନ୍ୟ ଏକ ଆଦର୍ଶ ବାଲ୍ୟବିଧବା ନାରୀଚରିତ୍ର 'ପ୍ରୀତି'ର ଆବିର୍ଭାବ ଘଟିଛି ସାମୟିକ ଭାବରେ । କେବଳ ନିଶାମଣିଙ୍କ ବ୍ୟତୀତ ଅନ୍ୟାନ୍ୟ ନାରୀ ଚରିତ୍ରଗୁଡ଼ିକ ବିଭିନ୍ନ ପରିସ୍ଥିତି ଓ ପରିବେଶଦ୍ୱାରା ନିର୍ଯାତିତା । ମୀନା ନିର୍ଯାତିତା ନିଜ ସ୍ୱାମୀଙ୍କଦ୍ୱାରା । ପ୍ରୀତି ନିର୍ଯାତିତା ପାରଂପରିକ ରକ୍ଷଣଶୀଳ ସମାଜଦ୍ୱାରା । ଆଶା ସାମୟିକ ଭାବେ ସମାଜର ତଥାକଥିତ

ଯୌତୁକ ସପକ୍ଷବାଦୀଙ୍କଦ୍ୱାରା ନିର୍ଯାତିତା ହୋଇ ବିବାହ ନ କରିବାକୁ ପ୍ରତିଜ୍ଞାବଦ୍ଧ । ରୁବି ସାମୟିକଭାବେ ନିଜ ମା'ଦ୍ୱାରା ଏପରିକି ଉଚ୍ଚଶିକ୍ଷା ଭାବରୁ ସ୍ୱାମୀଦ୍ୱାରା ସମାଲୋଚିତା । ଉପନ୍ୟାସର ପ୍ରାରମ୍ଭରୁ ରୀନାପାଇଁ ନିଜର ଭାଇ ଏବଂ ଭାଉଜ ପ୍ରତିକୂଳ ପରିବେଶ ସୃଷ୍ଟି କରିଛନ୍ତି । ସେ ଶିକ୍ଷିତା, ସୁନ୍ଦରୀ, ଗୃହକର୍ମ ନିପୁଣା, କର୍ମଜୀବୀ ମହିଳା । ଏହା ସତ୍ତ୍ୱେ ତା' ନିର୍ଯାତନାର ଅନ୍ତ ନାହିଁ । ଅତୀତର ସହପାଠିନୀ ଓ ବର୍ତ୍ତମାନର ଭାଉଜ ନିଶାମଣିର ଜିଘାଂସା ଅନେକ ସମୟରେ ତାକୁ ଶୋକାତୁରା କରିଛି । ଏଥିପାଇଁ ଘର ଛାଡ଼ି ସେ ଆଶ୍ରୟ ନେଇଛି ହଷ୍ଟେଲରେ । ଏହା ସତ୍ତ୍ୱେ କୌଣସି ପରିସ୍ଥିତିରେ ନାରୀକୁ ପରାଜୟର ଗ୍ଳାନି ଦେବାପାଇଁ ଔପନ୍ୟାସିକା ଚେଷ୍ଟା କରି ନାହାନ୍ତି ବରଂ ସମସ୍ତଙ୍କୁ ସ୍ୱାଧୀନଚେତା, ଆତ୍ମନିର୍ଭରଶୀଳା କରି ଗଢ଼ି ତୋଳିବାର ଉଦ୍ୟମ କରିଛନ୍ତି । ସେ ଜାଣନ୍ତି ନାରୀ କେବଳ ନାରୀକୁ ସହାୟତା କରିପାରେ । ତା ଦୁର୍ବଳ ମନରେ ଆଶାର ଆଲୋକ ଜାଳିଦେଇପାରେ । ସେହି କାରଣରୁ ନିର୍ଯାତିତା ମୀନାକୁ ରୀନା ଓ ଆଶା ସାହାଯ୍ୟର ହାତ ବଢ଼ାଇ ଦେଇଛନ୍ତି । ତାକୁ ସ୍ୱାବଲମ୍ବନଶୀଳା କରିଛନ୍ତି । ଏହାସତ୍ତ୍ୱେ ନାରୀ ଜୀବନର ଅସହାୟତା ଓ ଦୁଃଖକୁ ଗୋପନ କରିପାରି ନାହାନ୍ତି । ପୁରୁଷ ବ୍ୟତିରେକେ ନାରୀ ଯେ ଅସଂପୂର୍ଣ୍ଣା ଏହା ଉପନ୍ୟାସର ବିଭିନ୍ନ କ୍ଷେତ୍ରରେ ପ୍ରତିପାଦନ କରିଛନ୍ତି । ଅସହାୟ ମୁହୂର୍ତ୍ତରେ କିମ୍ବା ନିର୍ଜନ ପରିବେଶରେ ନାରୀ ପୁରୁଷର ସାନ୍ନିଧ ଖୋଜେ ତାର ଅଜାଣତରେ । ଅର୍ଥର ପ୍ରାଚୁର୍ଯ୍ୟ ସତ୍ତ୍ୱେ ଆଶାପରି ଆଶାବାଦିନୀ ନାରୀ ବେଳେବେଳେ କିପରି ଅଜଣା ଅଭାବର ଅନୁଭବରେ ଅନ୍ୟମନସ୍କା ହୋଇଉଠେ । ସ୍ୱାବଲମ୍ବନଶୀଳା ରୀନା ମଧ୍ୟ ଏଥିରୁ ବାଦ୍ ପଡ଼ି ନାହିଁ । ଆଦର୍ଶ ଚରିତ୍ର 'ପ୍ରୀତିଅପା' ସ୍ୱାବଲମ୍ବନଶୀଳା ହେଲେହେଁ ବାଲ୍ୟବିଧବା ଯୋଗୁଁ ତା' ଅନ୍ତରର ବ୍ୟଥା ବେଳେବେଳେ ଶୋକରେ ରୂପାନ୍ତରିତ ହୁଏ । ପୁରୁଷ ସମାଜ ବିରୋଧରେ ସ୍ୱର ଉତ୍ତୋଳନ କରୁଥିବା ଆଶା ଜୀବନର ଅସହାୟତାକୁ ଉପଲବ୍ଧି କରି ପୁରୁଷ ଅଶେଷ ନିକଟରେ ଆତ୍ମସମର୍ପଣ କରେ । ଉପନ୍ୟାସର ଶେଷ ପର୍ଯ୍ୟାୟରେ ନାୟିକା ରୀନା ଡାକ୍ତରଙ୍କୁ ନିଜର ସାଥୀରୂପେ ଗ୍ରହଣ କରିନିଏ । ନାରୀ ନିକଟରେ ପୁରୁଷର ଭୂମିକା ସଂପର୍କରେ ସୂଚନା ଦେଇ ଔପନ୍ୟାସିକା ଲେଖିଛନ୍ତି ''କାୟା ଛାଡ଼ି ଛାୟା କୁଆଡ଼େ ଯାଇ ନ ପାରିଲା ପରି, ସୂର୍ଯ୍ୟଙ୍କୁ ଛାଡ଼ି ପ୍ରଭା କୁଆଡ଼େ ଯାଇପାରିନି କି ଚନ୍ଦ୍ରଙ୍କୁ ଛାଡ଼ି ପ୍ରଭା କୁଆଡ଼େ ଯାଇପାରେନି ..... । ଠିକ୍ ସେହିପରି ପୁରୁଷ ବିନା ସ୍ତ୍ରୀ କୁଆଡ଼େ ରହିପାରେନି ।'' ତେବେ ନାରୀ ଯେ ସର୍ବଦା ଅବଳା ନୁହେଁ, ସମୟ ଓ ସୁଯୋଗ ପାଇଲେ ପୁରୁଷ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସମର୍ଥା ; ରୀନା, ଆଶା ଓ ମୀନା ଏବଂ ପ୍ରୀତିଅପାଙ୍କ ଚରିତ୍ରକୁ ବିଶ୍ଳେଷଣ କଲେ ତାର ପ୍ରମାଣ ମିଳେ । ପୁରୁଷ ଏବଂ ନାରୀର ଉପଯୁକ୍ତ ସମବାୟରେ ଆଦର୍ଶ ସମାଜ ଗଠିତ ହୋଇଥାଏ । ନାରୀ ଜୀବନର ବହୁ ସମସ୍ୟା ଉକ୍ତ ଉପନ୍ୟାସରେ ଉତ୍କୀର୍ଣ୍ଣ ଏବଂ କେତେକ ସମସ୍ୟା ସମାଧାନରେ ଔପନ୍ୟାସିକା ସଫଳକାମ ମଧ୍ୟ ।

ଉପନ୍ୟାସଟି ସୁଖପାଠ୍ୟ ହେଲେହେଁ ଏହାର କେତେକ ତ୍ରୁଟି ଉପନ୍ୟାସଟିର କାଳଜୟୀ ମୂଲ୍ୟ ହ୍ରାସ କରିଛି । ଅପ୍ରାସଙ୍ଗିକ ପୃଷ୍ଠା ପୃଷ୍ଠା ଉପଦେଶର ଅବତାରଣା ପାଠକକୁ ମାନସିକ କ୍ଳାନ୍ତି ଦେଇଥାଏ । 'ରୀନା ଜଣେ ଲେଖିକା' - ଏହି ବାକ୍ୟଟିର ବାରମ୍ବାର ଅବତାରଣା କରି ଲେଖିକାର ବିଜ୍ଞାପନ ଦେବାଦ୍ୱାରା ଉପନ୍ୟାସର ଘଟଣାପ୍ରବାହ ବାରମ୍ବାର ବାଧାପ୍ରାପ୍ତ ହୋଇଛି । ଅନେକ କ୍ଷେତ୍ରରେ ରାମାୟଣ ଓ ମହାଭାରତର ଉପାଖ୍ୟାନ ତଥା ନାରୀଜୀବନର ଆଦର୍ଶ ସଂପର୍କୀୟ ଅପ୍ରାସଙ୍ଗିକ ଭାଷଣ ଉପନ୍ୟାସର କଳାଗତ ମୂଲ୍ୟ ହ୍ରାସ କରିଛି । ଉପନ୍ୟାସର ବଡ଼ ତ୍ରୁଟି ହେଉଛି ସ୍ଥାନ, କାଳ ଓ ପାତ୍ରଗତ ସଂହତିର ଅଭାବ । ଉଦାହରଣସ୍ୱରୂପ - ଆଶାର ଜନ୍ମଦିନ ଉପଲକ୍ଷେ ଆୟୋଜିତ ପାର୍ଟିରେ ମୀନାର ଭୂମିକା ମହତ୍ତ୍ୱପୂର୍ଣ୍ଣ । ଡ୍ରଇଁ ରୁମ ସଜାଇବାଠାରୁ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତି ଓ ପରିବେଷଣ- ପ୍ରତ୍ୟେକ କ୍ଷେତ୍ରରେ ତାର ଉପସ୍ଥିତି ରହିଛି । ଏପରିକି ଆଶାର ଜନ୍ମଦିନ ପାଇଁ ନୂଆ ନୂଆ ବିଦେଶୀ ରେକର୍ଡ଼ ସଂଗ୍ରହ କରିଥିବା ବିଷୟ ଔପନ୍ୟାସିକା ସୂଚିତ କରିଛନ୍ତି । ତେଣୁ ଆଶାର ଜନ୍ମ ଦିନରେ ମୀନାର ଉପସ୍ଥିତି ପ୍ରମାଣିତ । ଜନ୍ମଦିନ ପରଦିନ ଆଶା ସହିତ ଅଶେଷର ବିବାହ । ଜନ୍ମଦିନ ସେ ପ୍ରାୟ ଅତିଥିମାନଙ୍କର ବିଦାୟ ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟରେ ବ୍ୟସ୍ତ ରହି ବିଳମ୍ବିତ ରାତ୍ରିରେ ବିଶ୍ରାମ ନେଇଛି । ମାତ୍ର ଉପନ୍ୟାସର ୨୧୧ ପୃଷ୍ଠାରେ ଔପନ୍ୟାସିକା ସମୟଗତ ଐକ୍ୟ ବିସ୍ମୃତ ହୋଇ ତ୍ରୁଟିପୂର୍ଣ୍ଣ ତଥ୍ୟ ପ୍ରଦାନ କରିଛନ୍ତି । ଜନ୍ମଦିନ ରାତିରେ ଉପସ୍ଥିତ ଥିବା ମୀନା ପରଦିନ ଆଶାର ବିବାହ ବିଷୟ ଜାଣିପାରିଲା ନାହିଁ କିପରି ? ମୀନା କେତେବେଳେ ମୋହନ ଘରକୁ ଗଲା ? ଔପନ୍ୟାସିକା ଲେଖିଛନ୍ତି ସେଇ ଯେ ଯାଇଛି ମୀନା ଆଉ ଆସିନି । ଆଶା ଏମିତି ବାହା ହୋଇଗଲା ଯେ, ମୀନାକୁ ଖବର ଦେଇ ଜଣାଇବା ସମ୍ଭବ ହେଲାନି । ପୁଣି ମୀନାର ପ୍ରଶ୍ନ ଆଶାଦୀ କ'ଣ ନିଜେ ତାଙ୍କ ବାହାଘର ଠିକ୍ କଲେ ? କେମିତି ଏମିତି ବାହାଘର ହେଲା ?' (ପୃ ୨୧୪) । ଉପନ୍ୟାସର ୧୭୭ ପୃଷ୍ଠାରେ ନିମନ୍ତ୍ରିତ ଅତିଥିମାନଙ୍କୁ ରୀନା ଓ ଆଶା ବିଦାୟ ଦେଇ ଆସିବା ପରେ ଔପନ୍ୟାସିକା ଲେଖିଛନ୍ତି - "ଆମେ ଦୁହେଁ ଗେଟ୍ ପାଖରୁ ଲେଉଟି ଆସି ମୀନାକୁ ଖୋଜିଲୁ । ବୁଢ଼ୀ କହିଲା - ମୀନା ଦିଦୀ ଖାଇକରି ପିଲାଙ୍କୁ ନେଇ ଶୋଇବାକୁ ଗଲେଣି ।" ଏହିପରି ପରସ୍ପର ବିରୋଧୀ ମତ ତଥା କାଳଗତ ଐକ୍ୟର ଅସଂହତି ଉପନ୍ୟାସର କଳାଧର୍ମକୁ ନଷ୍ଟ କରିଛି । ଫକୀରମୋହନଙ୍କ 'ରେବତୀ'ର ଜେଜୀମା'ର ଧାରଣା ଥିଲା - ରେବତୀ ପାଠ ପଢ଼ିବାରୁ ପୁଅ ବୋହୂ ମଲେ ଓ ବାସୁଦେବ ରେବତୀକୁ ପାଠ ପଢ଼ାଇବାରୁ ସେ ମଲା । ଫକୀରମୋହନଙ୍କ ସମୟ ଏବଂ ସୁଧାଂଶୁବାଳାଙ୍କ ସମୟ ମଧ୍ୟରେ ଅର୍ଦ୍ଧଶତାବ୍ଦୀରୁ ଅଧିକ ସମୟ ପାର୍ଥକ୍ୟ । ଅଥଚ ଅଶେଷ ତା' ମାକୁ ବର୍ଣ୍ଣବୋଧ ପଢ଼ାଇବାରୁ ତା' ମା' ମଲା ବୋଲି ଲୋକେ କହୁଥିବା କଥା ଔପନ୍ୟାସିକା ଲେଖିଛନ୍ତି - ଆହା ! ବର୍ଣ୍ଣବୋଧ ଶେଷ ହୋଇନି ମାଆ ଚାଲିଗଲେ । ଲୋକେ ଅପବାଦ ଦେଲେ, ପଢ଼ିଲାରୁ ମଲା । (ପୃ ୧୯୩)

ଔପନ୍ୟାସିକାଙ୍କର ଏହି ବକ୍ତବ୍ୟ ପ୍ରସଙ୍ଗାନୁକୂଳ ଓ ସମୟୋଚିତ ହୋଇପାରି ନାହିଁ । ଉପଦେଶର ଆଧିକ୍ୟ, ସ୍ୱାସ୍ଥ୍ୟରକ୍ଷା ସଂପର୍କୀୟ ଅଯଥା ଅଭିଭାଷଣ ଏବଂ ଉପନ୍ୟାସକୁ ଉଦ୍ଦେଶ୍ୟମୂଳକଭାବେ ଦୀର୍ଘ କରିବାକୁ ଯାଇ ଅନୌଚିତ୍ୟ ପ୍ରସଙ୍ଗର ଅବତାରଣା ଏହାର କଳାଧର୍ମ ନଷ୍ଟ କରିଛି । ଏହାସତ୍ତ୍ୱେ କେତେକ କ୍ଷେତ୍ରରେ ଚମତ୍କାର ଚିତ୍ରକଳ୍ପ ଓ ବର୍ଣ୍ଣନା ବୈଚିତ୍ର୍ୟ ଉପନ୍ୟାସଟିକୁ ଆକର୍ଷଣୀୟ କରିପାରିଛି । ଯଥା - ''ଯେମିତି ଆମେ ଦି'ଜଣ ଦି'ଟି ମହମ କଣ୍ଢେଇ ! (ପୃ ୧୨୩) । ମୁଁ ଗେଟ୍ ବନ୍ଦକରି ତାକୁ ଚାହିଁଦେଖିଲି, ସେ ଚୁପ୍‌ଚାପ୍ ଠିଆ ହୋଇ ରହିଛି ଗୋଟିଏ ଅବୁଝା ସୁର୍ ପରି ।'' (ପୃ ୨୧୭) ଇତ୍ୟାଦି ।

'ସଲୋନୀ' ଉପନ୍ୟାସଟିର ନାମକରଣ ମୁଖ୍ୟ ନାୟିକାର ନାମାନୁଯାୟୀ କରାଯାଇଛି । ଭାରତୀୟ ନାରୀର ଯଥାର୍ଥ ପ୍ରତିନିଧି 'ସଲୋନୀ' । ଜୀବନଯୁଦ୍ଧରେ ବାରମ୍ବାର କ୍ଷତବିକ୍ଷତ ହେବା ସତ୍ତ୍ୱେ ଭାରତୀୟ ମୂଲ୍ୟବୋଧ, ସାଂସ୍କୃତିକ ପରଂପରା ଓ ନାରୀର ମହନୀୟ ଭାବଧାରାରୁ କଦାପି ବିଚ୍ୟୁତ ହୋଇ ନାହିଁ । ସ୍ୱପ୍ନ ଦେଖିବା ବୟସରେ ସେ ହେଲା ବିଧବା । ହସ୍ତଗ୍ରନ୍ଥି ପଡ଼ିଗଲା ପରେ ତରୁଣୀଟି ପତ୍ନୀର ସଂଜ୍ଞାଲାଭ କରେ । ସ୍ୱାମୀ ସଂସ୍ପର୍ଶରେ ନ ଆସି ମଧ ସଲୋନୀ ହୋଇଛି ବିଧବା । ସ୍ୱପ୍ନର ମୀନାର ଗଢ଼ି ଠିକ୍ ରୂପଦାନ ସମୟରେ ଦୁର୍ଘଟଣାରେ ତାର ଜୀବନର ଗତି ହୋଇଛି ପରିବର୍ତ୍ତିତ । ଶାଶୁ ଗୃହକୁ ଯିବାର ଭାଗ୍ୟ ତାର ଆସି ନାହିଁ । ପୁରୁଷ ପ୍ରଧାନ ସମାଜରେ ନାରୀର ସ୍ୱାଧୀନତା ସୀମିତ । ମାଡ୍ରାସରେ ଅଶୋକ ସହିତ ପରିଚୟ ପରେ ସେମାନଙ୍କ ମଧ୍ୟରେ ସଂପର୍କଟିଏ ଗଢ଼ିଉଠୁଥିବା ସମୟରେ ପିତାଙ୍କ ନିର୍ଦ୍ଦେଶରେ ଅନ୍ୟଜଣଙ୍କ ଭାଗ୍ୟ ସହିତ ତାର ଭାଗ୍ୟ ଛନ୍ଦି ହୋଇଯାଏ । ଶ୍ୱଶୁରଘରକୁ ଯିବା ସମୟରେ ଦୁର୍ଘଟଣାରେ ସେ ହରାଏ ତାର ସ୍ୱାମୀକୁ । ଏହି ଧକ୍‌କା ସହି ମାନସିକ ପ୍ରସ୍ତୁତ ହେବା ସମୟରେ ଅଚାନକ ବିଶ୍ୱବିଦ୍ୟାଳୟରେ ସାକ୍ଷାତ୍ ହୁଏ ଅଶୋକ ସହିତ । ଜୀବନର ଗତି ଭିନ୍ନ ରୂପ ଗ୍ରହଣ କରିବା ସମୟରେ ପିତାଙ୍କ ନିର୍ଦ୍ଦେଶରେ ଅନ୍ୟଜଣେ ଦ୍ୱିତୀୟ ପକ୍ଷ ବର ସହିତ ତାର ବିବାହ ନିର୍ଦ୍ଦିଷ୍ଟ ହୋଇଯାଏ । ସୌଭାଗ୍ୟବଶତଃ ବର ତରଫରୁ ଏହି ପ୍ରସ୍ତାବ ଭାଙ୍ଗିଯିବାରୁ ସମଗ୍ର ପରିବାର ମାନସିକ ସ୍ଥିରତା ହରାଇ ବସୁଥିବା ସମୟରେ ଦେବଦୂତ ପରି ଅଶୋକର ଆବିର୍ଭାବ ଉଭୟ ପରିବାର ଓ ସଲୋନୀ ମନରେ ଆଶାର ଦୀପକୁ ପ୍ରଜ୍ୱଳିତ କରେ । ଗ୍ରାମଦେବତୀ ସମ୍ମୁଖରେ ପତିପତ୍ନୀ ରୂପେ ପରିଚିତ ହେବା ପରେ ଗୃହ ପ୍ରତ୍ୟାବର୍ତ୍ତନର ଯୋଜନା ପ୍ରସ୍ତୁତ କରିବା ସମୟରେ ଅଚାନକ ରୂଢ଼ିବାଦୀ ପିତାଙ୍କର ଆବିର୍ଭାବ ସେମାନଙ୍କ ଦାଂପତ୍ୟ ଜୀବନରେ ଝଡ଼ ସୃଷ୍ଟି କରେ । ଅସୀମ ଦାଶ ଚୌଧୁରୀ ଶିକ୍ଷିତ ଅଥଚ ରୂଢ଼ିବାଦୀ ହୋଇଥିବାରୁ ପୁତ୍ରର ଆଦର୍ଶବାଦୀ ଚିନ୍ତାଧାରାକୁ ଗ୍ରହଣ କରିପାରି ନାହାନ୍ତି । ପତିପ୍ରାଣା ସଲୋନୀ ଅଶୋକର ପରିବାରରେ ଅସନ୍ତୋଷ ସୃଷ୍ଟି ନ କରିବା ଉଦ୍ଦେଶ୍ୟରେ ଆତ୍ମଗୋପନ କରେ । ଇନ୍ଦ୍ରୀପଲ୍ଲୀ ଓ ପଦ୍ମାଳୟାଙ୍କ ପ୍ରେରଣା ଓ ଉତ୍ସାହ ପାଇ ସର୍ବଭାରତୀୟ ପୋଲିସ୍ ଚାକିରି ଲାଭକରେ । ଟ୍ରେନିଂରୁ ଫେରିବା ସମୟରେ ସାକ୍ଷାତ୍

ହୁଏ ଅସୀମ ଚୌଧୁରୀଙ୍କ ସହିତ । ସଲୋନୀର ସୌନ୍ଦର୍ଯ୍ୟ, ବ୍ୟକ୍ତିତ୍ୱ ଓ ବିଦ୍‌ବତ୍ତାଦ୍ୱାରା ମୁଗ୍‌ଧ ହୋଇ ଅସୀମ ନିଜ ତରଫରୁ ପୁତ୍ର ଅଶୋକ ସହିତ ବିବାହ ପ୍ରସ୍ତାବ ଦିଅନ୍ତି । ସେହିଠାରେ ସାକ୍ଷାତ୍ ହୁଏ ଅଶୋକ ସହିତ । ପଦ୍ମାଳୟାଙ୍କ ତତ୍ତ୍ୱାବଧାନରେ ପୁନଃ ବିବାହକାର୍ଯ୍ୟ ସାଧିତ ହୁଏ । ସଲୋନୀର ଚାରିତ୍ରିକ ମହତ୍ତ୍ୱ ଉପନ୍ୟାସର ମୁଖ୍ୟ ଆକର୍ଷଣ । ଜଣେ କନ୍ୟାଭାବରେ, ବିଧବା ନାରୀ ଭାବରେ ଓ ସର୍ବୋପରି ବଧୂ ଭାବରେ ତାର ଆକର୍ଷଣୀୟ ଚରିତ୍ର ପାଠକକୁ ପ୍ରଲୁବ୍‌ଧ କରେ । ସଲୋନୀ- ସତେଯେପରି ତପସ୍ୱିନୀଟିଏ; ସାଧନା ଯା'ର ଧର୍ମ, ପ୍ରତୀକ୍ଷା ଯା'ର ତପସ୍ୟା, କର୍ମ ଯା'ର ଆଦର୍ଶ । ଜଣେ ଭାରତୀୟ ଆଦର୍ଶମୟୀ ନାରୀର ସମସ୍ତ ଗୁଣ ତା' ନିକଟରେ ପୁଞ୍ଜୀଭୂତ । ଔପନ୍ୟାସିକାଙ୍କର ଉଦ୍ୟମ ଏକ୍ଷେତ୍ରରେ ନିଶ୍ଚିତ ଭାବରେ ପ୍ରଶଂସାଯୋଗ୍ୟ । ସୁନ୍ଦର ଚିତ୍ରକଳ୍ପର ବ୍ୟବହାରଦ୍ୱାରା ଗ୍ରନ୍ଥଟିର କଳାଗତ ମୂଲ୍ୟ ବୃଦ୍ଧି ପାଇଛି । ନିମ୍ନରେ ସେଥିରୁ କେତୋଟି ଉଦାହରଣ ପ୍ରଦାନ କରାଗଲା -

୧. ଆଉ ମଫସଲୀ ଗାଁର ହିଡ଼ ଉପରେ ରାସ୍ତାପରି କେମିତି ମାଟିଆ ମାଟିଆ ଧୂଳି ଧୂସରିତ କରୁଣ କରୁଣ ମଥାର ସୀମନ୍ତ । (ପୃ-୩୦)

୨. ଧଳା ଶାଢ଼ି ବ୍ଲାଉଜରେ ମନେହେଉଛି, କେତେ ଧୀର ନମ୍ର ସଂଯତ ବଗୁଲୀଟିଏ ଅବା । (ପୃ-୩୧)

୩. ସଲୋନୀ ବି ପଦ୍ମାଳୟାଙ୍କ ବାଣୀକୁ ଶୀତରାତିର ଉହ୍ଲେଇ ପରି ଧରି ବସିଛି । (ପୃ-୧୨୧)

୪. ଅଚିହ୍ନା ଅଜଣା ଦୁଇଟି ମହମ କଣ୍ଢେଇପରି ବସି ରହିଛନ୍ତି ଦୁହେଁ । (ପୃ-୨୦୬)

୫. ମନେରଖ ! ନାରୀ କେବଳ ପୁରୁଷ ପାଇଁ ଆଲୋକର ଶିଖା ନୁହେଁ, ଗୃହକୋଣର ସ୍ନିଗ୍‌ଧ ଦୀପାଲୋକ ! ଉଦ୍ଦାମ ହାୱା ନୁହେଁ, ଛାୟାଘେରା ଗ୍ରାମ ପ୍ରାନ୍ତରର ମୃଦୁ ହିଲ୍ଲୋଳ । (ପୃ-୭୨)

୬. ବଂଶୀର ସ୍ୱର ଯେମିତି ସବୁବେଳେ ବିରହର ସ୍ୱରପରି ମନେହୁଏ, ବଡ଼ ମଣିଷଙ୍କ ବାକ୍ୟ ସେମିତି ସବୁବେଳେ ବେଦବାକ୍ୟ ପରି ମନେହୁଏ । (ପୃ-୭୨)

'ସଲୋନୀ' ସୁଧାଂଶୁବାଳାଙ୍କ ର ଏକ ସଫଳ ଉପନ୍ୟାସ ହେଲେହେଁ ଅନ୍ୟାନ୍ୟ ଉପନ୍ୟାସପରି ଅଯଥା ଅବତରଣିକା, ଅପ୍ରାସଂଗିକ ବର୍ଣ୍ଣନା ଓ କାର୍ଯ୍ୟକାରଣର ସମ୍ବନ୍ଧ ନ ଥାଇ ବିଭିନ୍ନ ପୁରାଣର ବାହୁଲ୍ୟ ବର୍ଣ୍ଣନା କେତେକାଂଶରେ ଏହାର କଳାଗତ ମୂଲ୍ୟ ହ୍ରାସ କରିଛି । ଔପନ୍ୟାସିକା ଉପନ୍ୟାସର ଏହି ଦୁର୍ବଳ ଦିଗଟି ପ୍ରତି ସଚେତନ ହୋଇଥିଲେ, ଏହା ନିଶ୍ଚିତ ଭାବରେ ଏକ ଶ୍ରେଷ୍ଠ ଉପନ୍ୟାସ ହୋଇପାରିଥାନ୍ତା ।

'ଅଧିକରୁ କିଛି ଊର୍ଦ୍ଧ୍ୱ' ସୁଧାଂଶୁବାଳାଙ୍କର ଅନ୍ୟତମ ସଫଳ ଉପନ୍ୟାସ । ବୁଦ୍ଧଦେବ ତାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଦେଇ କହିଥିଲେ, କାମନା ହିଁ ଦୁଃଖର କାରଣ । କାମନାର

ବିନାଶରେ ଦୁଃଖର ବିନାଶ । ମାତ୍ର ଆଧୁନିକ ମଣିଷ କାମନା ପଛରେ ଧାଇଁ ଧାଇଁ ଅଣନିଃଶ୍ୱାସୀ । ଆଧୁନିକ ମଣିଷ ଯାହାକୁ ସୁଖ ବୋଲି ଭାବେ, ତାହା ଯେ ପ୍ରକୃତରେ ଦୁଃଖର ହେତୁ ତାହା ସେ ବୁଝିପାରେ ନାହିଁ । ଉପନ୍ୟାସର ମୁଖବନ୍ଧରେ ପ୍ରଦତ୍ତ ଔପନ୍ୟାସିକାଙ୍କ ବକ୍ତବ୍ୟ ସର୍ବାଦୌ ସ୍ମରଣୀୟ ''ଅନୁଭୂତିରୁ ଆସକ୍ତିର ଜନ୍ମ କି ନାହିଁ, ତାହା ଠିକ୍ କହିହେବ ନାହିଁ । ମାତ୍ର ବିନା ଅନୁଭୂତିରୁ ଜନ୍ମଦେଇଥିବା ଆସକ୍ତି କ'ଣ ହୋଇପାରେ ? ଲାଳସା.... ? କହିବା ବାହୁଲ୍ୟ ଯେ, ଲାଳସାର ଊର୍ଦ୍ଧ୍ୱସୀମା ନାହିଁ । ସତେଯେମିତି ତାହା ଅଧିକରୁ କିଛି ଊର୍ଦ୍ଧ୍ୱ...''

ଆଧୁନିକ ମଣିଷ ସୁଖର ଅନୁଧାବନ କରି କରି ଦୁଃଖର ଗହ୍ୱରରେ ପତିତ ହୁଏ । କାରଣ ସୁଖର ସରହଦ ନିର୍ଦ୍ଧାରଣ କରିବାରେ ସେ ଅସମର୍ଥ । ତାର ଲାଳସା, ପ୍ରାଚୁର୍ଯ୍ୟ ତାକୁ ଏପରି ଅନ୍ଧ କରି ଦେଇଥାଏ ଯେ, ଜୀବନର ସତ୍ୟ ଓ ବାସ୍ତବତା ପ୍ରତି ସେ ସଚେତନ ହୋଇପାରେ ନାହିଁ । ମାନବର ଅଭ୍ୟୁଦୟର ଇତିହାସ ଯେପରି ଆକସ୍ମିକ, ସେହିପରି ରୋମାଞ୍ଚକର । ଭାରତର ଆଦର୍ଶମୟ ଜୀବନଯାପନ ପ୍ରଣାଳୀ, ସାଂସ୍କୃତିକ ପରଂପରା ଓ ଆଧ୍ୟାତ୍ମିକ ଜୀବନଧାରା ମଧ୍ୟରେ ହିଁ ଭାରତର ଅତୀତ ଓ ମହାନତା ଲୁକ୍କାୟିତ । ମାତ୍ର ଯେଉଁମାନେ ସାମୟିକ ଉନ୍ମାଦନାରେ ପାଶ୍ଚାତ୍ୟ ଜୀବନଯାପନ ପଦ୍ଧତିକୁ ପ୍ରକୃତ ଜୀବନ ଭାବରେ ଗ୍ରହଣ କରିନେଇଥାନ୍ତି, ସେହିମାନେ ଦୁଃଖ ପାଇଥାନ୍ତି ପରବର୍ତ୍ତୀ ଜୀବନରେ । ଲାଳସାର ଶେଷସୀମା ନାହିଁ; ଯେପରି ଶେଷ ନାହିଁ ମଣିଷର କାମନା ଓ ଆକାଂକ୍ଷାର । ଔପନ୍ୟାସିକାଙ୍କ ଭାଷାରେ ''ମାତ୍ର ଲାଳସାର ସୀମାହୀନ ବ୍ୟାପ୍ତିରେ ଯେଉଁଠି ପହଞ୍ଚିଥିଲେ ମଧ୍ୟ ଅଭ୍ୟୁଦୟର ବିନ୍ଦୁ ନିର୍ଣ୍ଣୟ କରିବା କଷ୍ଟକର ।'' ଜୀବନକୁ ବାସ୍ତବରେ କେତେଜଣ ଅଧ୍ୟୟନ କରିପାରନ୍ତି ? ଜର୍ମାନୀର ବିଶିଷ୍ଟ ଦାର୍ଶନିକ ମାକ୍ସମୁଲାର ଥରେ କହିଥିଲେ, ''ପୃଥିବୀରେ ଯଦି କୌଣସି ଦେଶ ଜ୍ଞାନ ଓ ବୁଦ୍ଧିରେ ଶେଷ ଚୂଡ଼ା ସ୍ପର୍ଶ କରିଥାଏ, ତେବେ ସେ ହେଉଛି ଭାରତ ।'' ଇଂରାଜୀ ଶିକ୍ଷା ମଣିଷକୁ ଭୌତିକ ସୁଖ ପ୍ରଦାନ କରିପାରେ; ମାତ୍ର ତାର ଜ୍ଞାନର ଅୟନକୁ ବିସ୍ତୃତ କରି ନ ପାରେ । ଆଧୁନିକତା ନାମରେ ଆମେ ଆମ ପ୍ରାଚୀନ ପୁରାଣ ଓ ସଂସ୍କୃତ ଶାସ୍ତ୍ରକୁ ଅବହେଳା କରି କ'ଣ ପାଇଛୁ ? କେବଳ ଦୁଃଖ ।

ଉପେନ୍ଦ୍ର ଓ ସୁଶୀଲ - ଉପନ୍ୟାସର ଦୁଇ ମୁଖ୍ୟ ପୁରୁଷ ଚରିତ୍ର । ଜଣେ ପ୍ରାଚ୍ୟ ପରଂପରା ଓ ଅନ୍ୟ ଜଣେ ପାଶ୍ଚାତ୍ୟ ପରଂପରାର ପ୍ରତୀକ । ଉଭୟ ଶିକ୍ଷିତ । ଉପେନ୍ଦ୍ର ସଂସ୍କୃତ ଶିକ୍ଷାପ୍ରାପ୍ତ ହୋଇଥିବାରୁ ପ୍ରାଚ୍ୟ ପରଂପରା ପ୍ରତି ଅନୁରାଗୀ । କୌଣସି ସନ୍ତାନର ଜନକ ନ ହୋଇବି ପତ୍ନୀ ଉମାର ଆଦର୍ଶ ବ୍ୟକ୍ତିତ୍ୱ ଓ ଈଶ୍ୱର ବିଶ୍ୱାସ ଯୋଗୁଁ ସେ ସୁଖୀ । କୁଡ଼ିଆ ଘରଟି ମଧ୍ୟ ତାଙ୍କର ବୈକୁଣ୍ଠପୁର, ଯେଉଁଠାରେ ସର୍ବଦା ଶାନ୍ତିର ରାଜତ୍ୱ । ସୀମିତ ଆଶା ଓ ଆସକ୍ତିହୀନ ଜୀବନ ତାଙ୍କ ସୁଖର ପ୍ରଧାନ କାରଣ । ସୁଶୀଲ ଆଇ.ଏ.ଏସ୍. । ପ୍ରାଚୁର୍ଯ୍ୟ ଓ କ୍ଷମତାରେ ଅନ୍ଧ । କ୍ଲବ୍, ପାର୍ଟି ଏବଂ ବହୁ ନାରୀ ସମ୍ଭୋଗରେ ଜୀବନର ପୂର୍ଣ୍ଣତା

ବୋଲି ସେ ବିଶ୍ୱାସୀ । ପ୍ରାଚ୍ୟ ପରଂପରାର ପ୍ରତୀକ ହାରାମଣି ତାଙ୍କ ଦୃଷ୍ଟିରେ ଅଶିକ୍ଷିତା ଓ ଅମାର୍ଜିତା । କାରଣ ସେ ପାର୍ଟି ଆଟେଣ୍ଡ କରିବାକୁ ଅସମର୍ଥା, ସ୍ୱାମୀ ସହିତ ମଦ୍ୟପାନ ବିମୁଖା, ପାଶ୍ଚାତ୍ୟ ମିଉଜିକ୍ ତାଳରେ ଅନ୍ୟ ପୁରୁଷ ଅଣ୍ଟାଧରି ନୃତ୍ୟ କରିବାରେ ଅସମର୍ଥା । ସେଥିପାଇଁ ସୁଶୀଲଦ୍ୱାରା ସେ ଗ୍ରହଣୀୟ ନୁହନ୍ତି । ସ୍ୱାମୀର ସୁଖପାଇଁ ବିନା ଦ୍ୱିଧାରେ ଗୃହତ୍ୟାଗ କରିଛନ୍ତି । ଆଧୁନିକ ଶିକ୍ଷିତା, ନୃତ୍ୟନିପୁଣା, ଅଙ୍ଗ ପ୍ରଦର୍ଶନରେ ଅଭ୍ୟସ୍ତା, ଇଂରାଜୀ ଭାଷଣରେ ପଟୁ ଏବଂ ବହୁପୁରୁଷ ସମ୍ଭୋଗୀ ତୃଷ୍ଣାକୁ ଗ୍ରହଣ କରି ସୁଶୀଲ ହୋଇଛନ୍ତି କୃତାର୍ଥ । ମାତ୍ର ତୃଷ୍ଣାଙ୍କର ତୃଷ୍ଣାର ଶେଷ କାହିଁ ? ତା'ର ଜନ୍ମ ଗୋଟିଏ ପୁରୁଷର ସାହଚର୍ଯ୍ୟ ପାଇଁ ନୁହେଁ । ଭାରତୀୟ ଜୀବନଧାରା ଓ ପରଂପରାର କୌଣସି ଆଦର୍ଶକୁ ଜାବୁଡ଼ି ଧରିବାର ସେ ପକ୍ଷପାତୀ ନୁହନ୍ତି । ବଞ୍ଚିବାପାଇଁ ଅର୍ଥ ଓ ଶରୀର ସୁଖପାଇଁ ପୁରୁଷର ଆବଶ୍ୟକ । ସୁଶୀଲର ସାମୟିକ ଅନୁପସ୍ଥିତିରେ ଅନ୍ୟ ପୁରୁଷ ସହିତ ସମ୍ଭୋଗରେ ଲିପ୍ତ ହେବାରେ ତାଙ୍କର କୁଣ୍ଠା ନାହିଁ । ତା'ର ପ୍ରକୃତ ପରିଚୟ ଲାଭ ପରେ ସୁଶୀଲ ନୁହନ୍ତି, ତୃଷ୍ଣାହିଁ ତାଙ୍କୁ ଛାଡ଼ପତ୍ର ଦେଇଛନ୍ତି, ନିର୍ଯାତନା ଅଭିଯୋଗରେ ସ୍ୱାମୀକୁ କୋର୍ଟକୁ ନେଇଛନ୍ତି ଓ ପ୍ରଚୁର ପରିମାଣର ଅର୍ଥ ଦାବି କରିଛନ୍ତି । ଲଜ୍ଜା ଓ ଅନୁଶୋଚନାରେ ସୁଶୀଲ ଚାକିରି ତ୍ୟାଗକରି ଲେଖାଲେଖିରେ ମନୋନିବେଶ କରିଛନ୍ତି । ପ୍ରଥମା ପତ୍ନୀ ନିଜ ଆଦର୍ଶରେ ପୁତ୍ର ଗଢ଼ିଛନ୍ତି । ସଂସ୍କୃତ ସାହିତ୍ୟରେ ଶିକ୍ଷାଦାନ ପାଇଁ ଆମେରିକା ପଠାଇଛନ୍ତି । ସମସ୍ତ ଅବହେଳା ସତ୍ତ୍ୱେ ଆମେରିକା ଯାତ୍ରା ସମୟରେ ସୁଶୀଲଙ୍କ ପୁତ୍ର ରୂପେ ନିଜର ପରିଚୟ ଦେଇଛନ୍ତି । ଅକଥନୀୟ ନିର୍ଯାତନା ସତ୍ତ୍ୱେ ସ୍ୱାମୀଙ୍କ ଶାରୀରିକ ଅସୁସ୍ଥତା ସମ୍ବାଦରେ ଉପେନ୍ଦ୍ରଙ୍କ ଅନୁରୋଧକ୍ରମେ ଓ ଦେଢେଇ ମା'ଙ୍କ ପରାମର୍ଶରେ ହାରାମଣି ପୁଣି ଫେରିଆସିଛନ୍ତି ସୁଶୀଲଙ୍କ ନିକଟକୁ ।

ପାର୍ଟି, କ୍ଲବ୍‌ରେ ଜୀବନକୁ ଅନ୍ୱେଷଣ କରୁଥିବା ଆଧୁନିକ ଅପରିଣାମଦର୍ଶୀ ମଣିଷ ସତରେ କେତେ ଦୁଃଖୀ ! ଔପନ୍ୟାସିକାଙ୍କ ଭାଷାରେ ''ଏମାନେ ଏଠାକୁ ଏମିତି ଆସନ୍ତି ସୁଖକୁ ସାଉଁଟି ନେବାପାଇଁ .... । କିନ୍ତୁ ଏମାନଙ୍କ ଅଜଣାରେ ଦୁଃଖ ଏମାନଙ୍କୁ ଲୁଟ୍ କରିନିଏ ।'' (ପୃ-୪୪) । ମାତ୍ର ଉପେନ୍ଦ୍ର ଓ ଉମା-ପ୍ରାଚୁର୍ଯ୍ୟ ନାହିଁ, ଅର୍ଥର ଲାଳସା ନାହିଁ; ଅଥଚ ସେମାନେ କେତେ ସୁଖୀ । ନିଜ ଦୁଃଖକୁ ଅନ୍ୟ ନିକଟରେ ବାଣ୍ଟିଦେଲେ ମଣିଷ ସୁଖୀ ହୁଏ । ଉପେନ୍ଦ୍ର ଓ ଉମା ନିଜ ଦୁଃଖ ଈଶ୍ୱରଙ୍କୁ ଅର୍ପଣ କରିଥିବାରୁ, ଅନ୍ୟ ଦୁଃଖରେ ସହଭାଗୀ ଥିବାରୁ ସେମାନେ ସୁଖୀ । ଅନ୍ୟପାଇଁ ବଞ୍ଚିବା ଭାରତୀୟ ଆଦର୍ଶ । ଲାଳସା ଦୁଃଖର କାରଣ । ଲାଳସାର ଊର୍ଦ୍ଧ୍ୱରେ ଥିବା ଜୀବନ ପ୍ରକୃତ ଜୀବନ ବୋଲି ଭାରତୀୟ ପରଂପରା ପ୍ରଚାର କରେ । ଭାରତର ଉନ୍ନତ ପରଂପରା ଓ ମହତ୍ତ୍ୱ ପ୍ରଖ୍ୟାପନରେହିଁ ଉପନ୍ୟାସର ମହତ୍ତ୍ୱ ନିହିତ । ଚମତ୍କାର ବର୍ଣ୍ଣନା ଓ ରୁଚିଶୀଳ ଚିତ୍ରକଳ୍ପର ବ୍ୟବହାର ଏହାର ଅନ୍ୟତମ ବିଶେଷତ୍ୱ । ଉମାଙ୍କ ଧ୍ୟାନମଗ୍ନା ରୂପର ବର୍ଣ୍ଣନା ଦେବାକୁ ଯାଇ ଔପନ୍ୟାସିକା

ଲେଖିଛନ୍ତି - ''ଗାଁ ଶେଷର ଆମ୍ବତୋଟା ମଥାନ ଉପରେ ଉଇଁ ଉଠିଥିବା ଜହ୍ନପରି ମୁହଁ ଭାରି ମଉନ ... ମଉନ ... ଉଦାସ ... ଉଦାସ'' (ପୃ-୫୨) । ସେହିପରି ଅବଗୁଣ୍ଠନବତୀ ଉମାଙ୍କ ନିଷ୍କ୍ରମଣକୁ ବର୍ଣ୍ଣନା କରି ଲେଖିଛନ୍ତି - ''ଆକାଶ ଛାତିରେ ଖଣ୍ଡେ ଧଳାମେଘ ଭାସିଗଲା ପରି ଦେଖା ଯାଉଥିଲେ ସେ ମୋତେ'' (ପୃ-୫୩) । ଉପନ୍ୟାସର କେତେକ କ୍ଷେତ୍ରରେ ଅଯଥା ବର୍ଣ୍ଣନା ଓ ଅପ୍ରାସଙ୍ଗିକ ଆଲୋଚନା ସ୍ଥାନ ଲାଭ କରିଥିଲେହେଁ, ଅନ୍ୟାନ୍ୟ ଉପନ୍ୟାସ ତୁଳନାରେ ଏହା ଅଧିକ କଳାପୂର୍ଣ୍ଣ ଓ ସାର୍ଥକ ।

'ପୀଡ଼ାର ପରିଭାଷା' ସୁଧାଂଶୁବାଳାଙ୍କର ଶେଷ ପ୍ରକାଶିତ ଉପନ୍ୟାସ । ଉପନ୍ୟାସର ମୁଖ୍ୟ ଚରିତ୍ର ସୀମନ୍ତିନୀକୁ କେନ୍ଦ୍ରକରି କଥାବସ୍ତୁ ଗତିଶୀଳ । ଗୋଟିଏ ନାରୀ ଜୀବନର ଅସହାୟତା ଓ କାରୁଣ୍ୟ ପ୍ରଥମରୁ ପାଠକକୁ ଲୋତକାପ୍ଲୁତ କରେ । ମଣିଷ ଯେତେ ସ୍ୱାଧୀନ ହେଲେ ମଧ ପରିସ୍ଥିତିର ଦାସ, ଉପନ୍ୟାସର ବହୁ ସ୍ଥଳରେ ଏହାର ସୂଚନା ରହିଛି । ଭାଉଜମାନଙ୍କ ପ୍ରତି ଏକ ନେତିବାଚକ ଦୃଷ୍ଟିଭଙ୍ଗୀ ଏଥିରେ ପ୍ରତିଫଳିତ । ନାରୀଟିଏ ଗୋଟିଏ ପରିବାରରୁ ଅନ୍ୟ ଏକ ପରିବାରରେ ପ୍ରବେଶ ପରେ ସେ ତାର ଆଧିପତ୍ୟ ବିସ୍ତାର କରିବାକୁ ଚେଷ୍ଟା କରେ ଓ ଏ କ୍ଷେତ୍ରରେ ତାର ପ୍ରଥମ ଶିକାର ହୋଇଥାଏ ତାର ନଣନ୍ଦ ସୀମନ୍ତିନୀ - ଜ୍ଞାନ, ଗୁଣ, ବୁଦ୍ଧି ସବୁ କ୍ଷେତ୍ରରେ ଅପ୍ରତିଦ୍ୱନ୍ଦ୍ୱୀ ହୋଇଥିଲେହେଁ ପରିସ୍ଥିତିର ଚାପରେ ତା' ଜୀବନର ଗତି ସଂପୂର୍ଣ୍ଣ ବିଡ଼ମ୍ବିତ । ନାରୀ ନିର୍ଯାତନା ଓ ପୀଡ଼ନ କ୍ଷେତ୍ରରେ ପୁରୁଷ ଅପେକ୍ଷା ନାରୀ ଅଧିକ ପରିମାଣରେ ଦାୟୀ । ପରଂପରାହୀନ ପରିବାରର ସଂକୀର୍ଣ୍ଣମନା ତରୁଣୀ ସର୍ବଦା ନିଜର ଆଧିପତ୍ୟ ବିସ୍ତାର କରିବାକୁ ଉଦ୍ୟମ କରେ । ସୀମନ୍ତିନୀର ମୂର୍ଖ ଭାଉଜର ଆବିର୍ଭାବ ଗୃହର ଶାନ୍ତି ଭଙ୍ଗ କରିଛି । ପ୍ରଜାପତି ପରି ଉଡ଼ି ବୁଲୁଥିବା ସୀମନ୍ତିନୀ ଚକ୍ରାନ୍ତର ଜାଲରେ ନିଥର ହୋଇ ପଡ଼ିଛି । ଘୃଣା କରୁଥିବା ଭାଉଜଙ୍କ ଭାଇ ନୀଳିମକୁ ପରିସ୍ଥିତିରେ ପଡ଼ି ବିବାହ କରିଛି, ନିଜର ପରିବାରର ସୁଖପାଇଁ ନିଜକୁ ଉତ୍ସର୍ଗ କରିଛି, ସ୍ୱାମୀକୁ ମଣିଷ କରିଛି, ଆଦର୍ଶ ବଧୂରୂପେ ଶାଶୁର ସେବା କରିଛି; ଅଥଚ ନୀଳିମର ଡେଣା ଲାଗିବା ମାତ୍ରେ ତିନୋଟି ସନ୍ତାନକୁ ସୀମନ୍ତିନୀ ନିକଟରେ ଛାଡ଼ି ଅନ୍ୟ ଏକ ତରୁଣୀକୁ ବିବାହ କରିଯାଇଛି । ଆପତ୍ତି ନାହିଁ ସୀମନ୍ତିନୀର । ପ୍ରାଇମେରୀ ସ୍କୁଲରେ ଶିକ୍ଷକତା କରି ଜୀବନ ନିର୍ବାହ କରିଛି । କନ୍ୟା ପରିଧିର ମାତା ଭାବରେ ପ୍ରିନ୍‌ସିପାଲ (ସୀମନ୍ତିନୀର ଅତୀତ ବାନ୍ଧବୀ)ଙ୍କ ଅନୁରୋଧରେ ନିଜ କମିସନର ଭାଇଙ୍କୁ ଦେଖା କରିବାକୁ ଯାଇ ଅପମାନିତ ହୋଇଛି । ନାରୀଟିଏ ବିନା ଦୋଷରେ ଛାଡ଼ପତ୍ର ପାଇବା ପରେ ଆମର ଅବିବେକୀ ସମାଜ ତା' ପ୍ରତି କିପରି ନିଷ୍ଠୁର ଆଚରଣ ପ୍ରଦର୍ଶନ କରେ, ତାର ଚମତ୍କାର ଉଦାହରଣ ସୀମନ୍ତିନୀ । ଜୀବନଯୁଦ୍ଧରେ ନାରୀଟିଏ ସ୍ୱାବଲମ୍ବନଶୀଳା ହୋଇପାରିଲେ ସମାଜ ତାକୁ ଠିକ୍ ଦୃଷ୍ଟିରେ ଦେଖିପାରେ ନାହିଁ । ନାରୀ ଜୀବନର ଦୁଃଖ, ଅସହାୟତା ଓ ପୀଡ଼ା ଅବର୍ଣ୍ଣନୀୟ । ଏହି ପୀଡ଼ାର ପରିଭାଷାକୁ ଶବ୍ଦରେ ପ୍ରକାଶ କରିବା ସର୍ବଦା ସମ୍ଭବ ନୁହେଁ । ସମାଜର

ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ନ ଆସିବା ପର୍ଯ୍ୟନ୍ତ ଭାଗ୍ୟ ଓ ଭଗବାନ୍‌ଙ୍କ ଦ୍ୱାହିଦେଇ ନାରୀ ନିର୍ଯାତନା ଚାଲିଥିବ । ପୁରୁଷପ୍ରଧାନ ସମାଜରେ ନାରୀର ସ୍ଥିତି କେବଳ ଦୟନୀୟ ନୁହେଁ, ଅବହେଳିତ ମଧ୍ୟ । ସୀମନ୍ତିନୀର ଜୀବନ କରୁଣତାର ଏକ ମହାକାବ୍ୟ । ଉପନ୍ୟାସଟି ଯେପରି ସୁଖପାଠ୍ୟ, ତାର କଳାଗତ ମୂଲ୍ୟ ମଧ୍ୟ ସେହିପରି ଉଚ୍ଚମାନର ।

ସୁଧାଂଶୁବାଳାଙ୍କ ଉପନ୍ୟାସରେ ମୁଖ୍ୟତଃ ନାରୀ ସମସ୍ୟାହିଁ ମୁଖ୍ୟ । ନାରୀ ଜୀବନର ବହୁମୁଖୀ ଦିଗ ଏଥିରେ ଶବଳିତ । କେତେକ କ୍ଷେତ୍ରରେ କଳାଗତ ତ୍ରୁଟି ପରିଲକ୍ଷିତ ହେଲେହେଁ, ତାଙ୍କର ପ୍ରତ୍ୟେକଟି ଉପନ୍ୟାସ ସୁଖପାଠ୍ୟ । ନାରୀଚରିତ୍ର ଉପରେ ଗୁରୁତ୍ୱ ପ୍ରଦାନ କରି ସେ ତାଙ୍କର ଉପନ୍ୟାସ ରଚନା କରିଥିଲେହେଁ, ଆମ ସମାଜର ଅନ୍ୟାନ୍ୟ ବହୁଦିଗ ଏଥିରେ ଉତ୍କୀର୍ଣ୍ଣ । ଦୁଃଖର ବିଷୟ, ଯେତେବେଳେ ତାଙ୍କର ସୃଷ୍ଟି ପରିପକ୍ୱ ଓ ସିଦ୍ଧିଲାଭ ଦିଗରେ ଅଗ୍ରସର, ଠିକ୍ ସେତିକିବେଳେ ତାଙ୍କର ଅକାଳ ବିୟୋଗ ଘଟିଲା । ତାଙ୍କର ଅଚାନକ ବିୟୋଗ, ଓଡ଼ିଆ କଥାସାହିତ୍ୟର ଯେ ଏକ ଅପୂରଣୀୟ କ୍ଷତି ଘଟାଇଲା, ଏଥିରେ ସନ୍ଦେହ ନାହିଁ ।

# 'ସବୁଠାରୁ ଦୀର୍ଘରାତି'ରେ ଚନ୍ଦ୍ରଶେଖରଙ୍କ ଗଳ୍ପମାନସ

ସତୁରୀ ଦଶକ ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟରେ ଚନ୍ଦ୍ରଶେଖର ରଥ ଏକ ବହୁ ପରିଚିତ ନାମ । ଆଧୁନିକ ମଣିଷର ଆଶାହତ ବ୍ୟାକୁଳ ଜୀବନର ହାହାକାର ଓ ତନ୍ମଧ୍ୟରେ ନିହିତ ସାର୍ବଜନୀନ ମାନବାତ୍ମାର କରୁଣ ବିଳାପ ସମ୍ବେଦନଶୀଳତାର ସ୍ପର୍ଶ ନେଇ ତାଙ୍କ କଥାସାହିତ୍ୟକୁ କରିଛି ଋଦ୍ଧିମନ୍ତ । ଯୁଗ ଯୁଗ ଧରି ଦୋହଲି ଯାଉଥିବା ବିଶ୍ୱାସହୀନ ପୃଥିବୀରେ ସେ ତାଙ୍କର ଗଳ୍ପ ମାଧ୍ୟମରେ ଶୁଣାଇଛନ୍ତି ଆଶାର ବାଣୀ । ଜୀବନ ପ୍ରତି ଉଦାର ଦୃଷ୍ଟିଭଙ୍ଗୀ, ଭାରତୀୟ ସଂସ୍କୃତିର ସୁମହାନ୍ ପରମ୍ପରା, ରହସ୍ୟାବୃତ୍ତ ଜୀବନର ଆବରଣ ଉନ୍ମୋଚନ, ଚିରନ୍ତନ ମଣିଷର ବିଶ୍ୱାସବୋଧ ଓ ସ୍ୱପ୍ନଭଙ୍ଗ; ରସୋଚ୍ଛଳ ତଥା ପ୍ରାଣବନ୍ତ ଶୈଳୀ, ଚିତ୍ରକଳ୍ପ ସୃଷ୍ଟିରେ ସ୍ୱାଭାବିକତା, ବିଷୟବସ୍ତୁ ନିର୍ବାଚନରେ ପରିମିତି ବୋଧ, ସର୍ବୋପରି ପ୍ରକାଶଭଙ୍ଗୀରେ ସ୍ୱଚ୍ଛତା ତାଙ୍କ ଗଳ୍ପଗୁଡ଼ିକର ଅନନ୍ୟ ସାଧାରଣ ବୈଶିଷ୍ଟ୍ୟ । ପରିବେଶ ସହିତ ଖାପ ଖୁଆଇ ଚରିତ୍ରମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ କରିବାରେ ସେ ସିଦ୍ଧହସ୍ତ । ବିଷୟୋପଯୋଗୀ ନିର୍ବାଚିତ ଭାଷା ପ୍ରୟୋଗ ସହିତ ସଂହତ, ନିର୍ଦ୍ଦିଷ୍ଟ, ରସୋଚ୍ଛଳ ଶବ୍ଦମାନଙ୍କର ବିଚରଣ ନିମିତ୍ତ ତାଙ୍କ କଥାସାହିତ୍ୟ ଅଙ୍ଗନ ସର୍ବଦା ଉନ୍ମୁକ୍ତ । ଜୀବନ ପ୍ରତି ବିସ୍ତୃତ ଦୃଷ୍ଟିଭଙ୍ଗୀ, ଅନ୍ତଃହୀନ ଜୀବନ ଜିଜ୍ଞାସା, ଉତ୍ତରିତ ଆତ୍ମିକ ଉପଲବ୍ଧି ମଧ୍ୟରେ ଜଗତର ବାସ୍ତବ ସତ୍ୟକୁ ଇଙ୍ଗିତରେ ପ୍ରକାଶ କରିବା କ୍ଷେତ୍ରରେ ତାଙ୍କ ଗଳ୍ପଗୁଡ଼ିକର ବୈଶିଷ୍ଟ୍ୟ ପ୍ରତିପାଦିତ । ଗଳ୍ପର ଉପସଂହାରରେ ଉପନୀତ ହୋଇ ବି ଏକ ଅତୃପ୍ତି ବୋଧ ପାଠକ ପ୍ରାଣକୁ ଶେଷ ପର୍ଯ୍ୟନ୍ତ କବଳିତ କରିଥାଏ । ରବୀନ୍ଦ୍ରନାଥଙ୍କ ''ମନେ ହବେ ଶେଷ ହଇ, ହଯଲନା ଶେଷ'' ମତର ସାର୍ଥକତା ଚନ୍ଦ୍ରଶେଖରଙ୍କ ଅଧିକାଂଶ ଗଳ୍ପରେ ପ୍ରମାଣିତ । ଅନେକ କୁହା ମଧ୍ୟରେ ବହୁ ଅକୁହା ଭାବ ପାଠକକୁ ଯେପରି ସ୍ତବ୍ଧ କରେ, ସେହିପରି ଗଳ୍ପର ଅଚାନକ ପରିଣତି ଏକ ଅଦ୍ଭୁତ ଆର୍ଦ୍ରତାରେ ପାଠକର ପ୍ରାଣକୁ ବିଗଳିତ କରେ । ଚନ୍ଦ୍ରଶେଖରଙ୍କ ଗଳ୍ପଗୁଡ଼ିକର ଏହି ବିଶେଷତ୍ୱହିଁ ସମକାଳୀନ ଓ ପୂର୍ବସୁରୀମାନଙ୍କ ଠାରୁ ତାଙ୍କୁ ସ୍ୱତନ୍ତ୍ର କରି ଚିହ୍ନାଇ ଦିଏ ।

୧୯୭୦ ମସିହା ପରେ ଶ୍ରୀଯୁକ୍ତ ରଥ ଓଡ଼ିଆ ଗଳ୍ପ ସାହିତ୍ୟରେ ଆବିର୍ଭାବ ଲାଭ କରିଥିଲେ ହେଁ ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦିଗରୁ ଏହି ବିଭାଗଟିକୁ ବେଶ୍ ସମୃଦ୍ଧିଶାଳୀ କରିପାରିଛନ୍ତି । 'ଅନେକ ବନ୍ୟା ପରେ', 'ଅଶ୍ୱାରୋହୀର ଗଳ୍ପ', 'ସମ୍ରାଟ୍ ଓ ଅନ୍ୟମାନେ', 'ଅନ୍ୟ ଏକ ସକାଳ', 'ସବୁଯାକ ସ୍ୱପ୍ନ', 'ବାଘସବାର', 'ଏତେ ପାଖରେ ସମୁଦ୍ର', 'ବିକ୍ରିପାଇଁ ଫୁଲମାଳ', 'ସହଯାତ୍ରୀକ', 'ସ୍ୱପ୍ନବାହକ', 'ସବୁଠାରୁ ଦୀର୍ଘରାତି' ଆଦି ଗଳ୍ପ ସଂକଳନଗୁଡ଼ିକ ତାଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ମାରକୀ । ସେ ତାଙ୍କର କ୍ଷୁଦ୍ରଗଳ୍ପ ସୃଷ୍ଟି ନିମିତ୍ତ ସାରଳା ପୁରସ୍କାର ଓ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ବହୁ ବିଭବ ତାଙ୍କ ସୃଷ୍ଟିରେ ବର୍ତ୍ତମାନ । ମଣିଷ ଜୀବନର ଚିରନ୍ତନ ଭାବସତ୍ତାଟିକୁ ଉଖାରି ନିଖାରି ଦେଖିବାର ଦୃଷ୍ଟି ତାଙ୍କ ଗଳ୍ପଗୁଡ଼ିକୁ କାଳଜୟୀ କରିପାରିଛି । ସାମାଜିକ ଜୀବନରେ ପ୍ରତିନିୟତ ନିଷ୍ଠୁର ବାସ୍ତବତାକୁ ସମ୍ମୁଖୀନ ହୋଇ କ୍ଷତବିକ୍ଷତ ହେଉଥିବା ମଣିଷର ତୀବ୍ର ଅନୁଭୂତି ହିଁ ତାଙ୍କ ସୃଷ୍ଟିର ଉପଜୀବ୍ୟ ଉପାଦାନ । ତେଣୁ ସେ ତାଙ୍କ ଗଳ୍ପ ସଂପର୍କରେ 'ଆତ୍ମକଥନ'ରେ କୁହନ୍ତି - ''ଜୀବନଯାତନା ବିଡ଼ମ୍ବନା, ନୈରାଶ୍ୟ ଓ ବ୍ୟର୍ଥତା ସହିତ ଅତି ବିସ୍ତୃତ ଆପଣାପଣ, ମଞ୍ଜ ପାକଳ ମଣିଷର ଧୈର୍ଯ୍ୟ, ସହନଶୀଳତା, ଉଦାରପଣ, ପୁଣି ତାର ସ୍ୱାର୍ଥପରତା, ଶଠତା, କପଟାଚାର ମୋତେ ଖୁବ୍ ଦୋହଲାଇଛି ।'' ସେଥିପାଇଁ ତାଙ୍କର ପ୍ରତିଟି ଗଳ୍ପ ସାମାଜିକ ଅଙ୍ଗୀକାରବଦ୍ଧ । ସମାଜର ଉର୍ବର ଭୂମିରୁ ସାର ସଂଗ୍ରହ କରି ତାଙ୍କର ଗଳ୍ପଗୁଡ଼ିକ ଗୋଟିଏ ଗୋଟିଏ ମହାଦ୍ରୁମ । ଜୀବନକୁ ବାଦ୍ ଦେଇ ତାଙ୍କର ଗଳ୍ପଗୁଡ଼ିକର ଆଲୋଚନା ସଂପୂର୍ଣ୍ଣ ଅକଳ୍ପନୀୟ ।

ବିଭିନ୍ନ ସ୍ୱାଦର ବାରୋଟି ଗଳ୍ପକୁ ନେଇ ତାଙ୍କର ଗଳ୍ପ ସଂକଳନ ସବୁଠାରୁ 'ଦୀର୍ଘରାତି'ର କଳେବର ପରିପୁଷ୍ଟ । ଏହି ସଂକଳନଟି ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ସଂକଳନର ପ୍ରଥମ ଗଳ୍ପର ନାମାନୁଯାୟୀ ପୁସ୍ତକର ନାମକରଣ ହୋଇଛି 'ସବୁଠାରୁ ଦୀର୍ଘରାତି' । ଗୋଟିଏ ରାତି ମଣିଷ ଜୀବନର କେତେ ସ୍ୱପ୍ନକୁ ଭାଙ୍ଗି ଟୁକୁରା ଟୁକୁରା କରିଦିଏ ଉକ୍ତ ଗଳ୍ପଟି ତାର ଜ୍ୱଳନ୍ତ ନିଦର୍ଶନ । ନିମ୍ନମଧ୍ୟବିତ୍ତ ପରିବାରର ଅସହାୟତା ଓ ଆର୍ଥିକ ଦୁରବସ୍ଥାର ଚିତ୍ର ଏଥିରେ ପ୍ରତିପାଦିତ ହୋଇଥିଲେ ହେଁ, ତା'ଠାରୁ ଅଧିକ ଚମତ୍କାରିତା ଲାଭ କରିଛି ରାଜୁର ମାନବିକତା । ରାଜୁ ଚରିତ୍ର ମଧ୍ୟରେ ସତେଯେପରି ଅସହାୟ ଓଡ଼ିଶାରେ ପୁଣି ଥରେ ଉତ୍କଳମଣି ଅବତରି ଯାଇଛନ୍ତି । ସ୍ରଷ୍ଟା ହୃଦୟର ସମସ୍ତ ସହାନୁଭୂତି ଓ ସମ୍ବେଦନା ଲାଭ କରି କାର୍ ଡ୍ରାଇଭର ରାଜୁ ଗୋଟିଏ କ୍ଲାସିକ ଚରିତ୍ରରେ ପରିଣତ ହୋଇଯାଇଛି । ଜୀବନସଂଗ୍ରାମରେ ବାରମ୍ବାର ପରାହତ ରାଜୁ କୌଣସି କାଳେ ଜୀବନ ବିମୁଖୀ ହୋଇ ପଡ଼ି ନାହିଁ । ବରଂ ସମସ୍ତ ନିଷ୍ଠୁର ବାସ୍ତବତା ସତ୍ତ୍ୱେ ବଞ୍ଚିବାପାଇଁ ସେ ତାର ସଂଗ୍ରାମ ଜାରି ରଖିଛି । ନିଜର ପୁତ୍ରସନ୍ତାନ ମୃତ୍ୟୁକୁ ଅପେକ୍ଷା କରିଥିବା ବେଳେ ମାନବିକତାର ଅନୁରୋଧରେ ପ୍ରସବଯନ୍ତ୍ରଣାରେ କଷ୍ଟ ପାଉଥିବା ଆଉ ଏକ ନାରୀର

ବେଦନା ଉପଶମ କରିବାକୁ କାର୍‌ରେ ଡାକ୍ତରଖାନା ବୋହିନେବା କମ୍ ମାନସିକତାର ପରିଚୟ ଦିଏ ନାହିଁ । ପୀଡ଼ିତ ସନ୍ତାନ ଏବଂ ପରିବାର ଉଦ୍ଦେଶ୍ୟରେ ସେଦିନର ସମସ୍ତ ଆୟ ଅକୁଣ୍ଠ ଚିତ୍ତରେ ଯନ୍ତ୍ରଣାକାତର ନାରୀଟି ପାଇଁ ସେ ବ୍ୟୟ କରିଛି । ମଣିଷର ମାନବିକତା ଓ କର୍ତ୍ତବ୍ୟବୋଧ ତାକୁ ଅଟକାଇ ଦେଇଛି ଦୀର୍ଘରାତି ଡାକ୍ତରଖାନାରେ । ହୁଏତ ସେପରି ଏକ ପରିସ୍ଥିତିର ସମ୍ମୁଖୀନ ହୋଇ ନ ଥିଲେ ତା' ଜୀବନର ଗତି ଅନ୍ୟ ପ୍ରକାର ହୋଇପାରିଥାନ୍ତା । ତା' ଆଖିରେ ଆଉଟୁ ପାଉଟୁ ହେଉଥିବା ଟୋକାଟା କ'ଣ ଗୋଟାଏ ବଡ଼ଲୋକ ହୋଇଥାନ୍ତା - ସ୍ୱପ୍ନଟି ହୁଏତ ସାକାର ହୋଇପାରିଥାନ୍ତା । ଭାଗ୍ୟ ଓ ଭଗବାନ୍‌ଙ୍କ ଉପରେ ବିଶ୍ୱାସୀ ସମାଜର ଏହି ନିମ୍ନମଧ୍ୟବିତ୍ତ ଶ୍ରେଣୀ ନିଜର ଦୁଃଖ ଏବଂ ଯନ୍ତ୍ରଣାର ଗରଳକୁ ଅମୃତ ପରି ଆଞ୍ଜୁଳା ଭରି ପିଇଯାଏ । ସମସ୍ତ ଯନ୍ତ୍ରଣା ଓ ପୀଡ଼ା ସହିବା ପାଇଁ ସତେ ଯେପରି ଈଶ୍ୱର ଏହି ପ୍ରକାର ହତଭାଗ୍ୟ ମଣିଷକୁ ଜନ୍ମ ଦେଇଛନ୍ତି । ଏତେ ଯନ୍ତ୍ରଣା ଓ ପ୍ରତିକୂଳ ପରିସ୍ଥିତିରେ ମଣିଷ ଯେ ବଞ୍ଚିରହିପାରେ, ରାଜୁର ଜୀବନ ପର୍ଯ୍ୟାଲୋଚନା ନ କଲେ ସହଜରେ ବୋଧହୁଏ ନାହିଁ । ଶବବାହକ ରୂପେ ଶ୍ମଶାନରେ ମୁଖାଗ୍ନି ଦେବା, ସାମାନ୍ୟ ଔଷଧପାଇଁ ବଡ଼ଲୋକ ହେବାକୁ ଥିବା ସନ୍ତାନଟିକୁ ହରାଇବା, କଷ୍ଟୋପାର୍ଜିତ ଆୟକୁ ଅନ୍ୟପାଇଁ ଖର୍ଚ୍ଚ କରି ପରିବାରକୁ ଉପବାସରେ ରଖାଇବା - ଏହିମାନଙ୍କ ଭାଗ୍ୟରେ ଲେଖା । ଗୋଟିଏ ପାର୍ଶ୍ୱରେ ଅଚିହ୍ନା ସଂପର୍କର ସେତୁ ବାନ୍ଧିବା ସମୟରେ ଅପର ପାର୍ଶ୍ୱରେ ନିଜର ପରିଚିତ୍ ପୃଥିବୀରୁ ଦୂରେଇଯିବା କିପରି ଯନ୍ତ୍ରଣାଦାୟକ ତାହା ରାଜୁର ଜୀବନ ପ୍ରମାଣିତ କରିଥାଏ । ରାଜୁ ଜୀବନର ଚରମ ସତ୍ୟ ଓ ଅସହାୟତା, ସର୍ବୋପରି ତା ମାନବିକ ହୃଦୟର ପରିଚୟ ଏକ ଲଳିତ୍ କାରୁଣ୍ୟରେ ପାଠକର ହୃଦୟକୁ ମଥିତ କରିପକାଏ । ଦାରିଦ୍ର୍ୟର ନିଷ୍ଠୁର କଷାଘାତ ଏବଂ ତୀବ୍ର ଜ୍ୱଳନ ନିମ୍ନ ମଧ୍ୟବିତ୍ତ ପରିବାରର ସବୁ ସୁଖକୁ ବର୍ଷାଦିନର ନଦୀପରି କୂଳ ଉଜାଡ଼ି ନେଇଯାଏ । ଏହା ସତ୍ତ୍ୱେ ମାନବ ସମାଜରେ ସେ ଯେଉଁ ମାନବିକତାର ଫଲ୍‌ଗୁଟିଏ ଖେଳାଇଦିଏ ତାହାହିଁ ଏ ପରିଚିତ ଧରାରେ ତାକୁ ସବୁଦିନପାଇଁ ଅମର କରିଦିଏ । ମଣିଷ ଜୀବନର ଏହି ଅସହାୟ ମୁହୂର୍ତ୍ତ ଏବଂ ନିସ୍ତରଙ୍ଗ ଜଳଧାରା ତଳେ ପ୍ରବାହିତ ଦୁଃଖଦ ସ୍ରୋତରାଶିକୁ ଶିଳ୍ପୀ ଚନ୍ଦ୍ରଶେଖର ଯେପରି ସମ୍ବେଦନଶୀଳତାର ସହିତ ପାଠ କରିଛନ୍ତି, ତାହାହିଁ ତାଙ୍କ ଦରଦୀ ହୃଦୟର ଯଥାର୍ଥ ପରିଚୟ ।

ସଂକଳନର ଦ୍ୱିତୀୟ ଗଳ୍ପ 'ରୁନି ପାଇଁ ନୀରବ ପ୍ରାର୍ଥନା' । ରୁନି ଏବଂ ସାନୁ ମୂକ ଓ ବଧିର । ମାତ୍ର ସେମାନଙ୍କର ବିମଳ ହୃଦୟର ନିର୍ମଳ ପ୍ରେମଭାବ ସମଗ୍ର ସାହିଟିକୁ ଆପଣେଇ ନେଇଛି । ସେମାନଙ୍କର ସାମୟିକ ଅନୁପସ୍ଥିତି ହୋଇଛି ସାହିଟିର ବ୍ୟଥାର କାରଣ । ରୁନି ଆଖିରେ କଥା କୁହେ, ନିଜର ଭାବକୁ ଅନ୍ୟ ନିକଟରେ ଅଭିବ୍ୟକ୍ତ କରେ । ତାର ସ୍ମିତହସଟି ସାହି ସାରା ମଲ୍ଲୀ ଗଜଦନ୍ତ ଫୁଟାଇ ଦିଏ । ସାହିର ଝିଅମାନଙ୍କ ପାଖରେ ସେ ରୁନିଅପା ।

ପାଠ, ସିଲେଇ, ଫ୍ରକ୍ ଜାମା କଟା ସବୁଥିରେ ସେ ଓସ୍ତାଦ । ତାର ଅସହାୟତାର ସୁଯୋଗ ନେବାକୁ କେତେ କାମୁକଙ୍କର ଜଳନ୍ତା ଆଖି ଯେ ତା' ଉପରେ ଭାସି ନ ଆସେ, ତା ନୁହେଁ ମାତ୍ର ତାର ସ୍ନେହ, ନିଷ୍କପଟତା ଓ ନିର୍ଲିପ୍ତ ଚାହାଣି ସେ ଅରଣ୍ୟର ଜନ୍ତୁଗୁଡ଼ିକୁ ସଂଯତ ଏବଂ ଅସହାୟ କରିଦିଏ । ଯେଉଁଦିନ ମିସେସ୍ ମହାରଣା ଫୁଲ ଫୁଟାଇବାର ସଂକେତଟିଏ ଦେଲେ, ସେଦିନ କିପରି ଏକ ଅସହାୟବୋଧ ତାର ସମଗ୍ର ଶରୀରକୁ ବିଚଳିତ କରିଥିଲା । ନିଜର ଅଭିଶପ୍ତ ଜୀବନ ପ୍ରତି ଦୁଃଖ ଆସିଥିଲା, ମାତ୍ର ତାହା ଥିଲା କ୍ଷଣିକ । ମିସେସ୍ ମହାରଣାଙ୍କ ଉତ୍ସାହ ଦେହଲତାରେ ଫୁଲ ଫୁଟେଇବାର ସ୍ୱପ୍ନ ଦେଖାଇଥିଲା । ଚିତ୍ରଶିଳ୍ପୀ ସାନୁର କାନ୍‌ଭାସରେ ମଦର ଏବଂ ଚାଇଲ୍ଡ ଚିତ୍ର ସେମାନଙ୍କ ମିଳିତ ଭବିଷ୍ୟତର ରୂପରେଖକୁ ସ୍ପଷ୍ଟ କରିଥିଲା । ସ୍ୱପ୍ନ ବାସ୍ତବତାର ରୂପ ଗ୍ରହଣ କରିବାକୁ ଯାଇଥିବାରୁ ସାହିସାରା ପିଲାଙ୍କୁ ବଣ୍ଟାଯାଇଥିଲା ଚକୋଲେଟ୍ । ରୁନିର ସ୍ୱଚ୍ଛ ହୃଦୟ ଏବଂ ସ୍ନେହପୂର୍ଣ୍ଣ ବ୍ୟବହାର ସମୁଦାୟ ସାହି ଏବଂ ଅଫିସ୍‌କୁ ଗୋଟିଏ ରଜ୍ଜୁରେ ବାନ୍ଧିପାରିଥିଲା । ନିଜର ସମସ୍ତ ଅସ୍ୱାଭାବିକ ଅବସ୍ଥା ସତ୍ତ୍ୱେ ପ୍ରସବ ଯନ୍ତ୍ରଣାରେ କଷ୍ଟ ପାଉଥିବା ନବଘନ ସ୍ତ୍ରୀ କୁ ସେ ଡାକ୍ତରଖାନାରେ ସେବା ଶୁଶ୍ରୂଷା କରିଥିଲା । ନବଘନର ଦୁର୍ଘଟଣା ଖବର ପାଇ ବଡ଼ ଡାକ୍ତରଖାନାକୁ ସେ ଛୁଟି ଯାଇଥିଲା । ଆଶା ଏବଂ ଆଶ୍ୱାସନାର ବାଣୀରେ ତା' ମନରେ ସୃଷ୍ଟି କରିଥିଲା ବଞ୍ଚି ରହିବାର ଦୁର୍ବାର ଲାଳସା । ନବଘନ ସ୍ତ୍ରୀ ନିକଟକୁ ଫେରିବା ସମୟରେ ତାର ଯନ୍ତ୍ରଣା, ଶିଶୁସନ୍ତାନଟିର କାଳ୍ପନିକ ରୂପ, ମୁଲାୟମ୍ ନବଜନ୍ମର ସ୍ପର୍ଶ ତାକୁ ଏପରି ଆଚ୍ଛନ୍ନ କରିଥିଲା ଯେ, ପାହାଚଗୁଡ଼ିକ ତା ଆଖିରେ ଅସ୍ପଷ୍ଟ ହୋଇଯାଇଥିଲା । ତାର ଯନ୍ତ୍ରଣା କାତର ଦେହ ବିଛାଇ ହୋଇ ପଡ଼ିଥିଲା ବାରଣ୍ଡା ଉପରେ । ରୁନିର ଅଚାନକ ଦୁର୍ଘଟଣା ସାହିଟିକୁ ସ୍ତବ୍‌ଧ କରିଦେଇଥିଲା । ନର୍ସ ଏବଂ ଡାକ୍ତର ବ୍ୟସ୍ତ ହୋଇପଡ଼ିଥିଲେ । ସାହିର ପିଲାଙ୍କଠାରୁ ବୃଦ୍ଧଙ୍କ ପର୍ଯ୍ୟନ୍ତ ରୁନିର ଆରୋଗ୍ୟ ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଥିଲେ । କାରଣ 'ରୁନି କାଲି ସକାଳୁ ଆଖି ଖୋଲି ନ ଚାହିଁଲେ କୌଣସି କଢ଼ ଫୁଟିପାରିବ ନାହିଁ । ସେ ହସି ନ ଦେଲେ ସୂର୍ଯ୍ୟ ଉଇଁପାରିବ ନାହିଁ ।' ମଦର ଟେରେସାଙ୍କ ସାକାର ରୂପ ରୁନି । ଦୟା, କ୍ଷମା ଓ କରୁଣାର ମୂର୍ତ୍ତିମତୀ ଦେବୀ । ଦଳିତ ଅସହାୟ ଓ ଅବହେଳିତଙ୍କ ପାଇଁ ତା' ହୃଦୟରେ ପ୍ରସ୍ତ ପ୍ରସ୍ତ ବେଦନା । ସିଷ୍ଟର ନିବେଦିତାଙ୍କ ପରି ଅସହାୟଙ୍କ ପ୍ରତି ବିଗଳିତ ହୃଦୟା । ସ୍ନେହ ଓ ପ୍ରେମର ପ୍ରତିଭୂ ସେ । ମଦର ଟେରେସାଙ୍କ ବିୟୋଗରେ ଭାରତବର୍ଷରେ ଦଳିତ ଓ ପୀଡ଼ିତ ଯେପରି ଅସହାୟ ହୋଇପଡ଼ିଥିଲେ, ରୁନିର ଦୁର୍ଘଟଣା ଠିକ୍ ସେହିପରି ସାହି ବାସିନ୍ଦାଙ୍କୁ ଅସହାୟ ଓ କରୁଣ କରିଥିଲା । ଯେଉଁ ସ୍ନେହର ଡୋରି ସମୁଦାୟ ସାହି ବାସିନ୍ଦାଙ୍କୁ ଗୋଟିଏ ପ୍ରୀତିର ବନ୍ଧନରେ ଏକାଠି କରିଥିଲା, ତାହା ତୁଟିଯିବାର ଭୟରେ ସେମାନେ ଶଙ୍କିତ ହୋଇ ପଡ଼ିଥିଲେ । ମନର ବ୍ୟଥା ପ୍ରକାଶିତ ହେଉଥିଲା ଆଖିର ଲୁହରେ । ଦରଦୀ ଶିଳ୍ପୀ ଚନ୍ଦ୍ରଶେଖରଙ୍କ ଲେଖନୀରେ ରୁନି ଏକ ସାର୍ବକାଳୀକ ଭାରତୀୟ

ମହିମାମୟୀ ନାରୀ ଚରିତ୍ରରେ ରୂପାନ୍ତରିତ ହୋଇଯାଇଛି । 'ମଦର ଟେରେସା ଓ ସିଷ୍ଟର ନିବେଦିତା' ସମ୍ମିଳିତ ରୂପ ରୁନିର ବିଗ୍ରହ । ଜଗତର ଶୋକ, ଦୁଃଖ ଓ ଯନ୍ତ୍ରଣାର ଉପଶମ ପାଇଁ ସଦା ବ୍ୟଥିତା ରୁନିର ଆରୋଗ୍ୟ ନିମିତ୍ତ କ'ଣ ପ୍ରାର୍ଥନା କରିବାକୁ ପଡ଼ିବ ବୋଲି କହିବାକୁ ପଡ଼ିବ ? ଗୋଟିଏ ପ୍ରାଣର ଭାଷା ଆପେ ଆପେ ସଞ୍ଚରିଯାଇଛି କୋଟିଏ ହୃଦୟକୁ । ତେଣୁ ରୁନି ବ୍ୟକ୍ତିଟିଏ ନ ହୋଇ ଚେତନାଟିଏରେ ରୂପାନ୍ତରିତ ହୋଇଯାଇଛି କାଳଜୟୀ ସ୍ରଷ୍ଟାଙ୍କ ହାତରେ ।

ମଣିଷର ଜୀବନ ବଡ଼ ବିଚିତ୍ର । ସମ୍ମୁଖରେ ମୃତ୍ୟୁକୁ ଦେଖିବି ବିଶ୍ୱାସ କରିବାକୁ ସେ ନାରାଜ । କ୍ଷୁଧା ମଣିଷର ସର୍ବଶ୍ରେଷ୍ଠ ଦୁର୍ବଳତା । ବିଶେଷକରି ଯୌନକ୍ଷୁଧାର ଗଭୀରତା କଳନା କରିବା କଳ୍ପନାତୀତ । ମଣିଷ ଜୀବନପାଇଁ ଏହି କ୍ଷୁଧାର ଆବଶ୍ୟକତା ରହିଛି । କିଛି ମୁହୂର୍ତ୍ତ ପାଇଁ ହେଲେ ବି ମଣିଷର ଯାବତୀୟ ସୁଖଦୁଃଖକୁ ଦୂର କରିବାରେ ଏହା ସମର୍ଥ । ଛଳନାରେ ବଞ୍ଚୁଥିବା ମଣିଷର ନିର୍ମୋକକୁ ଅନାବରଣ କରି ଏହା ତାର ପ୍ରକୃତ ସ୍ୱରୂପ ଉଦ୍‌ଘାଟନ କରିଥାଏ । ପୁଅର ଜନ୍ମବାର୍ଷିକୀ ଉତ୍ସବରେ ନିମନ୍ତ୍ରିତ ଅତିଥି ଯେତେବେଳେ ପେଟର କ୍ଷୁଧା ନିବାରଣ ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ, ଅଚାନକ ସେହି ସନ୍ତାନଟିର ବିୟୋଗ ବାର୍ତ୍ତା ପରିବେଶଟିକୁ ଶୋକାକୁଳ କରିଦେଲା । ଏମିତି ଏକ ଘଟଣା ଘଟିବ ବୋଲି ବୋଧହୁଏ ଗାଳ୍ପିକ ଏକ ଭୟଙ୍କର ପରିବେଶର ସୂଚନା ଦେଇଛନ୍ତି । 'ଓଦା ଓଦା ପାହାଡ଼ ପରି ନିସ୍ତବ୍‌ଧ ଅନ୍ଧାର' ହିଁ ପଶୁତ୍ୱକୁ ଜାଗ୍ରତ କରେ, ଖୋରାକ୍ ପାଇଁ ଗୁମୁରି ଉଠେ । କିଛି ମୁହୂର୍ତ୍ତ ପୂର୍ବରୁ ସନ୍ତାନଟିକୁ ହରାଇଥିବା ପ୍ରମୋଦ ତେଣୁ ଅନ୍ଧାରରେ ଅଳକା ବହିଦାର ମଧରେ ନିଜର ସତ୍ତାଟିକୁ ଅନ୍ୱେଷଣ କରୁଥିଲା । ସଂପର୍କର ସମ୍ବନ୍ଧ କେବଳ ସଂପର୍କ ପାଇଁ । ଅନ୍ତର ଭିତରେ କୁଦା ମାରୁଥିବା ଜନ୍ତୁଟିକୁ ଶୁଆଇ ଦେବାପାଇଁ ଆବଶ୍ୟକ ହୋଇଥାଏ ଆଶ୍ରାଟିଏ । ଅଳକା ବହିଦାର ନିକଟରେ ପ୍ରମୋଦ ସେହି ଆଶ୍ରାଟିକକ ଖୋଜି ପାଇଛି । ଅଳକା ବହିଦାରଙ୍କ ପ୍ରତି ଅତ୍ୟଧିକ ଆକର୍ଷଣ, ଗୋଟିଏ ଛତା ତଳେ ଅଳକା ବହିଦାରର ବାହୁସଂଲଗ୍ନ ପ୍ରମୋଦର ଅବସ୍ଥିତି, ମୋଡ଼ ପାଖରେ ଢଳି ପଡୁଥିବା ଅଳକା ବହିଦାରକୁ ରକ୍ଷା କରିବାକୁ ଯାଇ ଲେଖକଙ୍କର କିମ୍ଭୂତ ଅନୁଭୂତି, ବର୍ଷାରେ ଧାଇଁ ଧାଇଁ ପ୍ରମୋଦର ଗୃହ ପ୍ରବେଶ ଓ ଛତା ଭୁଲିଯିବା ଅନ୍ତରାଳରେ ମଣିଷ ମନର ସେଇ ଆଦିମ ପ୍ରବୃତ୍ତି ହିଁ ପ୍ରକାଶିତ । ଏହା ସତ୍ତ୍ୱେ ଏହି ଚରିତ୍ରଟି ପ୍ରତି ଗାଳ୍ପିକଙ୍କର ସମ୍ବେଦନା କମ୍ ନୁହେଁ । ଅଚାନକ ବୃନ୍ତଚ୍ୟୁତ କଢ଼ଟିର ବ୍ୟଥା ଦରଦୀ ଶିଳ୍ପୀକୁ କମ୍ ଆଘାତ କରି ନାହିଁ । 'ନିମ୍ନ ପାହାଚ' ଗଳ୍ପଟିରେ ମଣିଷ ମନର ସେହି ଅନ୍ଧାର ଦିଗଟି ସୂଚିତ । ଏହି ସଂକଳନର ଅନ୍ୟତମ ଗଳ୍ପ 'ଏଇ ବୋଧେ ଶେଷ ଦୁଃଖ'ରେ ମଣିଷ ମନର ଅସହାୟତା ଓ ସ୍ୱଳ୍ପ ବେତନ ଭୋଗୀ କର୍ମଚାରୀଙ୍କ ଆର୍ଥିକ ଦୁରବସ୍ଥା ମଧ୍ୟରେ ସେମାନଙ୍କର କଳ୍ପିତ, ସ୍ୱପ୍ନ କିପରି ଖଣ୍ଡ ବିଖଣ୍ଡିତ ହୋଇପଡ଼େ, ତାହା ବର୍ଣ୍ଣିତ । ଦୁଃଖର ଶେଷ ନାହିଁ । ମଣିଷର ଜନ୍ମଲଗ୍ନରୁ ହିଁ ସେ ତାର

ସହଚର ରୂପେ ତା ସାଥିରେ ରହିଆସିଛି । ମଣିଷ ନିଜ ପରିବେଶ ବିଚାରରୁ ଅନ୍ୟ ସହିତ ନିଜ ଅବସ୍ଥାକୁ ତୁଳନା କରି ଦୁଃଖ ଲାଭ କରେ । ଅପହଞ୍ଚ ସ୍ୱପ୍ନର ପରିକଳ୍ପନା ମଣିଷକୁ ଅଧିକ ବ୍ୟଥା ଦିଏ । ଦୁଃଖ କାହାର ବା ନାହିଁ, ତିନି ତିନିଟା ଗାଡ଼ିର ମାଲିକ, ବର୍ଷକୁ କୋଟିଏ ଟଙ୍କା ଉପାର୍ଜନ କରୁଥିବା କଣ୍ଟ୍ରାକ୍ଟର ବେଣୁ ପ୍ରଧାନ, ରିକ୍ସାବାଲା ଭୀମା, ଆର୍ମି ଅଫିସର ଜେନା, ଶ୍ରୀପତି ଗୋସ୍ୱାମୀ, ମାନୁ ମହାନ୍ତି ଓଗେର ଅନେକ ଦୁଃଖରେ ଆଉଟୁ ପାଉଟୁ ହେଉଥିବା ଅସହାୟ ଜୀବମାନେ । ଦୁଃଖ କାହାର ବା ଶାରୀରିକ ଅନ୍ୟ କାହାର ବା ମାନସିକ । ବୁଦ୍ଧଦେବ ସେଦିନ ତାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଦେବା ସମୟରେ କହିଥିଲେ ପୃଥିବୀରେ ଜନ୍ମ ହିଁ ଦୁଃଖର କାରଣ । କାମନାର ଆଧିକ୍ୟ ଦୁଃଖକୁ ବହୁଗୁଣିତ କରେ । କୌଣସି ମଣିଷ ନିଜର ପରିବେଶ ଓ ପରିସୀମା ମଧ୍ୟରେ ସୁଖୀ ନୁହେଁ । ଭୋଳାନାଥ ମହାପାତ୍ର ଏମିତି ଦୁଃଖରେ ସନ୍ତୁଳିତ ହେଉଥିବା ସ୍ୱଳ୍ପ ବେତନଭୋଗୀ କର୍ମଚାରୀଟିଏ । ସ୍ୱଳ୍ପ ଆୟ ପରିବାରର ଅଭାବ ପୂରଣରେ ଅସମର୍ଥ । ପତ୍ନୀର ସାମୟିକ ଚାକିରି ଚାଲିଯିବା ପରେ ଏକ ଅଭାବବୋଧ ସମଗ୍ର ପରିବାରକୁ ଗ୍ରାସ କରିଛି । ଗାଁରେ ଟାଉଟରଙ୍କ ପାଇଁ ଅଦାଲତରେ କେସ୍, ପରିବାବାଲାର ଟଙ୍କା ବାକି, ଘରବାଲାର ଘର ଛାଡ଼ିବାକୁ ଧମକ, ଏତେଗୁଡ଼ାଏ ସମସ୍ୟାର ସମାଧାନ ପାଇଁ ଅର୍ଥର ଅଭାବ । ସହରରେ ବାସ କରୁଥିବା ସ୍ୱଳ୍ପ ଆୟକାରୀ ବ୍ୟକ୍ତିଟିର ଜୀବନ ସତେ କେତେ କରୁଣ । ପିଲା କନ୍‌ଭେଣ୍ଟରେ ପଢ଼ିବ, ନିଜର ଅପୂରଣ ସ୍ୱପ୍ନକୁ ସାକାର କରିବ । ଅଫିସ୍‌ର କାମ ବୋଝରେ ସାମାନ୍ୟ ଫୁରୁସଦ୍ ନାହିଁ ଦୁଃଖ ବାଣ୍ଟିବାକୁ । ତଥାପି ଏହା ଭିତରେ ବି ମଣିଷ ସ୍ୱପ୍ନ ଦେଖେ - ଟାଉଟର ଗୋବିନ୍ଦ ଦାସ ପାଞ୍ଚହଜାର ଟଙ୍କା ପଠେଇଦେଇଛି, ପରିବାବାଲା ଝୁଡ଼ିଏ ପରିବା ପଠେଇ ଦେଇଛି, ଘରବାଲା ଚିଠି ଦେଇଛି ଆଉ ଦୁଇବର୍ଷ ରହିବାପାଇଁ, କଚେରିର କେସ୍ ଘୁଞ୍ଚିଯାଇଛି । ମାଗୁଣି ମିଶ୍ର ଘୃଣାରୁ ଓହ୍ଲେଇ ଆସିଛି ଦେବତାର ଆସନକୁ । ସବୁ ଦୁଃଖର ଶେଷ । ପାରିବାରିକ ସମସ୍ୟା, ଆର୍ଥିକ ଚିନ୍ତା ନିମିଷକେ ଦୂରୀଭୂତ । ସାମୟିକ ସୁଖର ଉଲ୍ଲାସ ଦୁଃଖର ବାସ୍ତବ ସ୍ଥିତିକୁ ଭୁଲାଇଛି । କଳ୍ପସୁଖର ସ୍ଥାୟିତ୍ୱ କେତେକ୍ଷଣ ? ବାସ୍ତବ ସ୍ଥିତିକୁ ଫେରିଆସିବା ପରେ ସେହି ଜାଗତିକ ଦୁଃଖର ବୁଢ଼ିଆଣୀ ଜାଲ ଆକାଶ ସାରା ଜାଲ ଗୁନ୍ଥି ହୋଇ ରହିଛି । ମୁଣ୍ଡ ଉପରେ ପାହାଡ଼ ମଡ଼େଇ ହୋଇଯାଇଛି । ଏହାପରେ ସେ ନିଜକୁ ବେକୁବ୍ ବ୍ୟତୀତ ଅନ୍ୟ କ'ଣ କହିପାରେ ? ସାମୟିକ ଆନନ୍ଦରୁ ପୁଣି ବାସ୍ତବ ସ୍ଥିତିକୁ ପାଠକକୁ ଫେରାଇ ଆଣିବା ପରେ ପାଠକ ଚମକି ଉଠେ । ସମ୍ବେଦନାର କ୍ଷୀଣଧାରାଟିଏ ଛୁଟିଯାଏ ଅନ୍ତରରୁ । ପାଠକ ଜାଣିପାରେନା ଏହିଠାରେ ଗଳ୍ପର ଆରମ୍ଭ ନା ପରିଶେଷ ?

କିମ୍ବଦନ୍ତୀକୁ ଆଶ୍ରୟ କରି ଉକ୍ତ ସଂକଳନରେ ଦୁଇଟି ଗଳ୍ପ ସଂଯୋଜିତ । ଗୋଟିଏ ତିଳିଛ ମହାପାତ୍ର ଓ ଅନ୍ୟଟି ଦୀନବନ୍ଧୁ ଦାସ । ଏହି ଗଳ୍ପ ମାଧ୍ୟମରେ ଲେଖକ ଓଡ଼ିଆମାନଙ୍କର

ଆଧ୍ୟାତ୍ମିକ ବିଶ୍ୱାସ ଓ ଆତିଥ୍ୟ ପରାୟଣତା ସଂପର୍କରେ ସୂଚାଇଛନ୍ତି । ଭକ୍ତ ଏବଂ ଭଗବାନ୍‌ଙ୍କ ମଧ୍ୟରେ ସମ୍ବନ୍ଧ କିପରି ନିବିଡ଼, ଆନ୍ତରିକ ଓ ପ୍ରଗାଢ଼, ତାହା ଏଥିରେ ପ୍ରମାଣିତ । ଜଗନ୍ନାଥଙ୍କ ସେବକ ତିଳିଛ ମହାପାତ୍ର । ବନମାଳୀର ଫୁଲ ଆଣିବାରେ ବିଳମ୍ବ ଯୋଗୁଁ ସେବାକାର୍ଯ୍ୟ ଅସଂପୂର୍ଣ୍ଣ । ହଠାତ୍ ଗଜପତି ପ୍ରତାପରୁଦ୍ରଙ୍କ ଆବିର୍ଭାବ ତିଳିଛ ମହାପାତ୍ରଙ୍କୁ ହତବାକ୍ କରିଛି । ମନ୍ଦିରରେ ଫୁଲ ନାହିଁ । ଗଜପତିଙ୍କୁ ଦେବେ କ'ଣ ? ଅନ୍ତରାତ୍ମାର ନିର୍ଦ୍ଦେଶରେ ନିଜ ମୁଣ୍ଡର ଚମ୍ପାଫୁଲ ଗଜପତିଙ୍କ ହସ୍ତରେ ଟେକିଦେଇଛି ସେ । ସେ ନିଜେ ବି ଜାଣେନା କିପରି ଏହା ସମ୍ଭବ ହେଲା । କଥାଟା କିନ୍ତୁ ଲୁଚି ରହିପାରିଲା ନାହିଁ । ଫୁଲରେ ବାଳ । କ୍ରୋଧିତ ଗଜପତି । ଶାସ୍ତି ଦେବାକୁ ଉନ୍ମୁଖ ପାରିଷଦ । ଭକ୍ତ ବିମୂଢ଼ । ଅପରାଧବୋଧରେ ଜଡ଼ସଡ଼ । ଭକ୍ତ ମନ ରକ୍ଷାପାଇଁ ଭଗବାନ୍ କିନ୍ତୁ ଚଉବାହା । ଅତୀତରେ ଏମିତି ବହୁ ପ୍ରମାଣ ରହିଛି । ବର୍ତ୍ତମାନ ସମସ୍ୟା କିନ୍ତୁ ଭିନ୍ନ । ଜଗନ୍ନାଥଙ୍କ ମୁଣ୍ଡରେ ବାଳ ଆସିଲା କୁଆଡୁ ? ଭକ୍ତର ପରୀକ୍ଷା । ଖୋଦ୍ ଗଜପତି ପ୍ରମାଣପାଇଁ ଜଗନ୍ନାଥଙ୍କ ସମୀପରେ ଉପସ୍ଥିତ । ଆଶ୍ଚର୍ଯ୍ୟ ଗଜପତି । ଗୋଛାଏ କଳାଭଅଁର ପରି ବାଳ ପଛକୁ ଝୁଲି ପଡ଼ିଛି । ଅବିଶ୍ୱାସ ସନ୍ଦେହରେ ଝିଙ୍କି ଆଣିଲେ ବାଳ ପୁଳାଏ । ଧାର ଧାର ଛୁଟିଲା ରକ୍ତ । ଜଡ଼ ଗଜପତି । ଭଗବାନ୍‌ଙ୍କ ରକ୍ତଧାର ଭକ୍ତ କପାଳରେ । ଭକ୍ତ ଭଗବାନ୍‌ଙ୍କ ଅଭେଦ ରୂପ । ଜୟଲାଭ କଲା ଭକ୍ତ । ଭକ୍ତର ଉଦ୍ଧାର ପାଇଁ ଭଗବାନ୍‌ଙ୍କ ଲୀଳାର ପଟାନ୍ତର ନାହିଁ । ଏମିତିତ କେତେ କିମ୍ବଦନ୍ତୀ, କେତେ ବିଶ୍ୱାସର କଥା ଓଡ଼ିଶା ମାଟିର ପାଣି ପବନରେ ମିଶି ରହିଛି । ଗୀତାର ବାଣୀ - ''ସର୍ବଧର୍ମାନ୍ ପରିତ୍ୟଜ୍ୟ, ମାମେକଂ ଶରଣଂ ବ୍ରଜ, ଅହଂତ୍ୱାଂ ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।'' ଆତ୍ମସମର୍ପଣ ଭାବ ଭକ୍ତ ଓ ଭଗବାନ୍‌ଙ୍କୁ ଏକ କରେ । ଗୋଟିଏ ବୀଜର ଦୁଇଟି ପତ୍ର ପରି ଏକାକାର । ସେଠି ଶୋକ, ଦୁଃଖ ସବୁର ଅବସାନ । ସେହିପରି ଆଉ ଏକ କିମ୍ବଦନ୍ତୀ ଦୀନବନ୍ଧୁ ଦାସ ମହାଭାରତର ଅନ୍ୟତମ ଶ୍ରେଷ୍ଠବୀର ମହାଦାନୀ କର୍ଣ୍ଣଙ୍କୁ ମନେପକାଇ ଦିଏ । ଅତିଥିଙ୍କ ଦାବି ପୁତ୍ର କାଟି ତା ମାଂସ ରାନ୍ଧିବାକୁ । ଅକୁଣ୍ଠିତ ଚିତ୍ତରେ ପରିପୂରଣ କରେ କର୍ଣ୍ଣ ଅତିଥିଙ୍କ ଅଭିଳାଷ । ପୁଣି ପୁତ୍ର ମାଂସ ପିତାଙ୍କୁ ଖାଇବାକୁ ଅତିଥିଙ୍କର ନିର୍ଦ୍ଦେଶ । କର୍ଣ୍ଣ ଆଦେଶ ଅମାନ୍ୟ କଲେ ଅତିଥି ବିମୁଖ ହେବେ । ଗୃହର ଅମର୍ଯ୍ୟାଦା ହେବ । କର୍ଣ୍ଣ ଅତିଥିଙ୍କ ସମୀପରେ ଉପବେଶନ କଲେ । ଅଦ୍ଭୁତ ଘଟଣା ଘଟିଗଲା ମୁହୂର୍ତ୍ତକ ମଧ୍ୟରେ । ଅତିଥିଙ୍କ ନିର୍ଦ୍ଦେଶ ପୁତ୍ରକୁ ଡାକ । ମୃତ ପୁତ୍ର ଆସିବ କିପରି ? ତଥାପି ଅତିଥିଙ୍କୁ ଅବଜ୍ଞା କରାଯାଇ ନ ପାରେ । କର୍ଣ୍ଣ ପୁତ୍ରର ନାମଧରି ଡାକିଲେ । ପୁତ୍ର, ପିତାଙ୍କ ଡାକରେ ଦାଣ୍ଡରୁ ଦୌଡ଼ିଆସିଲା । ଅନୁରୂପ ଘଟଣା ଘଟିଛି ଦୀନବନ୍ଧୁଙ୍କ କ୍ଷେତ୍ରରେ । ଈଶ୍ୱରଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି । ଅତିଥିଙ୍କ ସେବାହିଁ ତାଙ୍କ ପାଇଁ ଦେଶ ସେବା । ବଡ଼ପୁଅ ଘରେ ମରିପଡ଼ିଛି, ଅତିଥି କିନ୍ତୁ ଚାହୁଁଛନ୍ତି ଆମିଷ ଭୋଜନ । ସାଧାରଣ ସାମାଜିକ ମଣିଷ ପକ୍ଷରେ ଯାହା ଅସମ୍ଭବ । ତଥାପି ଅତିଥିଙ୍କୁ ନିରାଶ କରାଯାଇ ନ ପାରେ । ଦୁଃଖର

ପାହାଡ଼ ହୃଦୟ ବିଦୀର୍ଣ୍ଣ କରୁଥିଲେ ହେଁ ଅତିଥି ସେବାପାଇଁ ସମଗ୍ର ପରିବାର ବ୍ୟସ୍ତ । ଅତିଥିଙ୍କ ନିର୍ଦ୍ଦେଶରେ ପରିବାରର ସମସ୍ତ ସଦସ୍ୟ ଆମିଷ ଭୋଜନ ପାଇଁ ବସିଲେ । କଠୋର ପରୀକ୍ଷା । ପରିବାରର ସଦସ୍ୟମାନଙ୍କ ମୁଖରେ ସଂସାରର ରହସ୍ୟ ଉନ୍ମୋଚିତ ହେଉଛି । ସେହି ପୁରୁଣା କଥା ବ୍ୟାଖ୍ୟା ନୂତନ । ଜୀବନ ଏବଂ ଜଗତ ସଂପର୍କରେ ନିରାସକ୍ତ ଦୃଷ୍ଟିଭଙ୍ଗୀ । ଆତ୍ମା ଓ ଜଗତର ସତ୍ୟ ଜାଣିବାରେ ସମସ୍ତ ପରିବାରକୁ ତାହା ନୂତନ ଦୃଷ୍ଟିଶକ୍ତି ଦେଇଛି । ଜୀବନ୍ମୁକ୍ତ ସେମାନେ । ସଂସାରରେ ବାସ କରିବି ସଂସାର ପ୍ରତି ନିରାସକ୍ତ । ଅତିଥିଙ୍କ ଅମୃତ ଦୃଷ୍ଟି ତେଣୁ ମୃତ ସନ୍ତାନକୁ ଜୀବନ ଦାନ କଲା । ଏମିତି ଶୁଦ୍ଧ ମଣିଷଙ୍କ ପରୀକ୍ଷା ପାଇଁ ଦେବତାମାନେ ମର୍ତ୍ତ୍ୟକୁ ଅବତରଣ କରନ୍ତି । ସେଇଥିପାଇଁ ଭାଗବତରେ କୁହାଯାଇଛି - "ମଣିଷ ମଧେ ଦିବ୍ୟ ଜ୍ଞାନ । ଦେଖି ସନ୍ତୋଷ ଭଗବାନ ।" ଏହି ଦିବ୍ୟଜ୍ଞାନର ଅଧିକାରୀ ଦାସେଙ୍କ ପରିବାର । ଆଧୁନିକ ଯୁଗର ବସ୍ତୁବାଦୀ ମଣିଷ ଏହି ଦିବ୍ୟଜ୍ଞାନ ହରାଇଥିବାରୁ ଅସନ୍ତୋଷର ବହ୍ନିରେ ପ୍ରଜ୍ଜ୍ୱଳିତ । ଅହଙ୍କାର ପ୍ରମତ୍ତ ମଣିଷ ଅନ୍ୟର ଧ୍ୱଂସ ସାଧନ କରିବାକୁ ଯାଇ ନିଜର କବର ଖୋଳୁଛି । ବିମୂଢ଼ ମଣିଷ ନିଜ ଜନ୍ମ ରହସ୍ୟ ସଂପର୍କରେ ଅଜ୍ଞ । ଆଧାତ୍ମିକ ଚେତନାର ବିନାଶ ଯୋଗୁଁ ଦିବ୍ୟ ଚେତନା ଅବଲୁପ୍ତ । ଚତୁର୍ଦ୍ଦିଗରେ ଅଶାନ୍ତ ବାତାବରଣ । ମୁକ୍ତିର ପଥ ଅବରୁଦ୍ଧ । ମଣିଷର ସେହି ଅସହାୟତାରୁ ମୁକ୍ତି ପାଇଁ ପୁଣି ସେଇ ଦିବ୍ୟ ଆଧାତ୍ମିକ ଚେତନାର ଆବଶ୍ୟକ ହୋଇଛି । ଏହି ଚେତନା ମଣିଷ ହୃଦୟରେ ସ୍ନେହ, ପ୍ରେମ ଓ ଶ୍ରଦ୍ଧାର ମନ୍ଦାକିନୀ ଧାରା ପ୍ରବାହିତ କରେ । ସାଂପ୍ରତିକ ବିଶ୍ୱରେ ମୂଲ୍ୟବୋଧର ଯେତେବେଳେ ଅବକ୍ଷୟ ଘଟୁଛି ଠିକ୍ ସେତିକିବେଳେ ଗାଳ୍ପିକଙ୍କର ଏହି ଆଧାତ୍ମିକ କିମ୍ବଦନ୍ତୀମୂଳକ ଗଳ୍ପଗୁଡ଼ିକ ମଣିଷ ମନରେ ମାନବିକତାବୋଧ ଜାଗ୍ରତ କରି ତାକୁ ଏକ ଦିବ୍ୟ ଚେତନାରେ ଉଦ୍‌ବୁଦ୍ଧ କରିପାରିବ, ସନ୍ଦେହ ନାହିଁ ।

ଚନ୍ଦ୍ରଶେଖରଙ୍କ ସୃଷ୍ଟିରେ କେବଳ ନିମ୍ନମଧ୍ୟବିତ୍ତ ସଂପ୍ରଦାୟଙ୍କ ଜୀବନ ଚିତ୍ର ପ୍ରଦତ୍ତ ହୋଇ ନାହିଁ, ତାଙ୍କ ସୃଷ୍ଟିରେ ଉଚ୍ଚ ଅଭିଜାତ ମଣିଷ-ଜୀବନର ହତାଶାବୋଧ ଏବଂ ଅସହାୟତାର ଚିତ୍ର ମଧ୍ୟ ବେଶ୍ ମାର୍ମିକ ଓ ହୃଦୟସ୍ପର୍ଶୀ । ନିମ୍ନ ମଧ୍ୟବିତ୍ତ ପରିବାରର ଅଧିକାଂଶ ସମସ୍ୟା ଅର୍ଥନୀତିକୁ କେନ୍ଦ୍ରକରି । ମାତ୍ର ଉଚ୍ଚ ମଧ୍ୟବିତ୍ତ ପରିବାରର ସମସ୍ୟା ଅଧିକାଂଶ କ୍ଷେତ୍ରରେ ଦେହ ବିଷୟକ । ମଣିଷ ମନର ଅଧିକାଂଶ ସଂଗୁପ୍ତ କାମନା ଯୌନ ଚିନ୍ତାରୁ ସୃଷ୍ଟି । ଉଚ୍ଚ ମଧ୍ୟବିତ୍ତ ପରିବାରରେ ଏହା ଅତ୍ୟନ୍ତ ଉତ୍କଟ । ଭୋଗବାଦୀ ସର୍ବସ୍ୱ ଚିନ୍ତାଧାରାରୁ ଜନ୍ମଲାଭ କରିଥିବା ଏହି ସଂପ୍ରଦାୟଟି ସଂପୂର୍ଣ୍ଣ ଭାବେ ଯୌନ କାମନା ପ୍ରପୀଡ଼ିତ ଗୋଟିଏ ଗୋଟିଏ ଜାନ୍ତବ ପଶୁ । ସାମାଜିକ ସଂପର୍କ, ଶୁଚିତା ଓ ମୂଲ୍ୟବୋଧ ଏମାନଙ୍କ ନିକଟରେ ମୂଲ୍ୟହୀନ । ମଣିଷର ଦେହକ୍ଷୁଧା ଖାଦ୍ୟ ଏବଂ ଅର୍ଥନୀତିକୁ କେନ୍ଦ୍ରକରି ସୃଷ୍ଟି ହୋଇଥିବା ସମୟରେ ମନର କ୍ଷୁଧା ମୁଖ୍ୟତଃ ଯୌନ ଚିନ୍ତାରୁ ସୃଷ୍ଟିଲାଭ କରିଥାଏ । ନାରୀ ସମ୍ଭୋଗରେ ହିଁ ଏହାର ପ୍ରଶମନ । ଅଭିଜାତ ସଂପ୍ରଦାୟ, ବିଶେଷକରି ରାଜପରିବାରମାନଙ୍କରେ ଏହା

ଅତ୍ୟନ୍ତ ଉତ୍କଟ । ବର୍ତ୍ତମାନ ରାଜା ନ ଥିଲେ ହେଁ, ସେମାନଙ୍କ ରକ୍ତପରମ୍ପରାରୁ ଜନ୍ମଲାଭ କରିଥିବା ଏବେକାର ବଂଶଧରଗଣ ସେଥିରୁ ମୁକ୍ତ ନୁହଁନ୍ତି । 'ଘର ନିଲାମ ହେଉଛି' ଗଳ୍ପରେ ଏହିପରି ଏକ ସମସ୍ୟା ଉତ୍‌ଥାପିତ । ଏହା ସତ୍ତ୍ୱେ ସେହି ଅଭିଜାତ ସଂପ୍ରଦାୟଙ୍କ ଅସହାୟତା ପ୍ରତି ଶିଳ୍ପୀ ଅନ୍ତରର ଗଭୀର ସମ୍ବେଦନା ପ୍ରକାଶିତ । ସାଂପ୍ରତିକ ସମୟରେ ଯୌନ କ୍ରିୟାକୁ କେନ୍ଦ୍ରକରି ବହୁ ହତ୍ୟାଘଟଣା ସଂଘଟିତ ହେଉଛି । କେଉଁଠି ପ୍ରେମିକ ସହିତ ମିଶି ସ୍ୱୈରିଣୀନାରୀ ନିଜ ସ୍ୱାମୀକୁ ହତ୍ୟା କରୁଛି ତ, ଅନ୍ୟ କେଉଁଠାରେ ପୁରୁଷ ନିଜ ପତ୍ନୀ ସହିତ ଅନ୍ୟ ପୁରୁଷର ସମ୍ଭୋଗ କ୍ରୀଡ଼ା ସନ୍ଦର୍ଶନ କରି ପ୍ରଣୟୀ ପ୍ରଣୟିନୀକୁ ହତ୍ୟା କରୁଛି । ସଂପ୍ରତି ଏହା ଏକ ସାମାଜିକ ସମସ୍ୟାରେ ପରିଣତ ହୋଇଛି । ଅବକ୍ଷୟଗ୍ରସ୍ତ ରାମପୁର ଜମିଦାର ବଂଶର ଉତ୍ତରାଧିକାରୀ ସ୍ୱରାଜ ସ୍ୱରୂପ ସିଂହ ଏବଂ ସ୍ୱାଧୀନ ସ୍ୱରୂପ ସିଂହ ସେହି କ୍ଷୟିଷ୍ଣୁ ସଭ୍ୟତାର ପ୍ରତୀକ । ସ୍ୱରୂପର ପତ୍ନୀ ଛନ୍ଦା ସହିତ ସ୍ୱାଧୀନର ଅଶୋଭନୀୟ ଆଚରଣ (ଛନ୍ଦା ସ୍ୱୀକୃତିରେ) ଏବଂ ପରିଣାମରେ ଉଭୟଙ୍କର ମୃତ୍ୟୁ, ସ୍ୱରୂପର ଦେଶାନ୍ତରୀ କିମ୍ବା ଗୋପନୀୟତା, ମିଥ୍ୟା ଆଭିଜାତ୍ୟର ପ୍ରତୀକ ଘରର ନିଲାମ ମଧ୍ୟରେ ସାଂପ୍ରତିକ ଉଚ୍ଚ ବଂଶଜମାନଙ୍କର ଅଧଃପତନକୁ ସୂଚାଇ ଦିଆଯାଇଛି । ପ୍ରାଚୁର୍ଯ୍ୟ କେବଳ ଶାନ୍ତିର କାରଣ ହୋଇ ନ ପାରେ । ସମସ୍ତ ପ୍ରାଚୁର୍ଯ୍ୟ ଓ ବିଳାସ ମଧ୍ୟରେ ପରିବର୍ଦ୍ଧିତ ଆଧୁନିକ ଅଭିଜାତ ମଣିଷର ମାନସିକ ଅସହାୟତା କେତେ ଦୟନୀୟ ଓ ଭୟଙ୍କର ତାର ଏକ ଚମତ୍କାର ଅଥଚ ସ୍ପଷ୍ଟ ଚିତ୍ର 'ଘର ନିଲାମ ହେଉଛି' ଗଳ୍ପ ।

ଭାରତରେ ଇଂରାଜୀ ଶିକ୍ଷାର ପ୍ରସାର ସଂପର୍କରେ ମତଦେଇ ଲର୍ଡ଼ ମାକଲେ କହିଥିଲେ - ଏହି ଶିକ୍ଷାର ପ୍ରସାର ଫଳରେ ଏ ଦେଶର ଜନସାଧାରଣ ରଙ୍ଗରେ ଭାରତୀୟ ହେଲେ ହେଁ, ରୁଚି ଓ ଆଦର୍ଶରେ ହେବେ ଇଂରେଜ । ପରବର୍ତ୍ତୀ ସମୟରେ ଭାରତରେ ତାହାହିଁ ଘଟିଛି । ପାଶ୍ଚାତ୍ୟବାସୀଙ୍କ ଜୀବନଯାପନ ପ୍ରଣାଳୀକୁ ଯେ ଯେତେ ପରିମାଣରେ ବିଶ୍ୱସ୍ତ ଭାବରେ ଅନୁସରଣ କରିପାରିଲା, ସେ ହେଲା ସେହି ପରିମାଣରେ ମଡର୍ଣ୍ଣ । ସଂପ୍ରତି ଆଧୁନିକ ସଭ୍ୟତା କହିଲେ ବାର୍‌ରେ ମଦ୍ୟପାନ ବା ହୋଟେଲ୍‌ରେ ବଲଡ୍ୟାନ୍‌ସ । ଆଧୁନିକ ପ୍ରାଚ୍ୟ ମଣିଷ ହୋଟେଲକୁ ମନ୍ଦିରରେ ପରିଣତ କରିବାକୁ ଯାଇ ଅଦ୍ଭୁତ ରୁଚି ପ୍ରଦର୍ଶନ କରୁଛି । ପ୍ରାଚ୍ୟ ସଭ୍ୟତା ଓ ସଂସ୍କୃତିକୁ ପଦାଘାତ କରି ପାଶ୍ଚାତ୍ୟ ଜଗତର ସମସ୍ତ ଅକରଣୀୟ କର୍ତ୍ତବ୍ୟ ତା' ପାଖରେ ଉଚିତ କର୍ତ୍ତବ୍ୟ ହୋଇଛି । ଅର୍ଥର ନିଶା ଏବଂ ମଡର୍ଣ୍ଣ ହେବାର ବ୍ୟାକୁଳତା ତାକୁ ନିଜର ପରମ୍ପରା ଓ ଆଦର୍ଶଠାରୁ ଦୂରେଇ ନେଇଛି । ପ୍ରାଚୁର୍ଯ୍ୟ ଗର୍ବରେ ଶିଳ୍ପୀର ଶିଳ୍ପକୁ ଅମର୍ଯ୍ୟାଦା କରୁଛି । ଶିଳ୍ପୀ ଦରିଦ୍ର ହେଲେହେଁ ନିଜ ଶିଳ୍ପ ପ୍ରତି ରହିଥାଏ ତାର ଅପୂର୍ବ ସମ୍ବେଦନା । ତା' ଶିଳ୍ପର ବିକୃତ ରୂପ ତାକୁ ଆଘାତ ଦିଏ । ସେ ହୁଏ ପ୍ରତିକ୍ରିୟାଶୀଳ । 'ସେ ତୁମ ମା ପରା' ଗଳ୍ପରେ ଏହି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରା ମଧ୍ୟରେ ରହିଥିବା ଦ୍ୱନ୍ଦ୍ୱକୁ ଦେଖାଇ ଦିଆଯାଇଛି । କୈଳାସ ମହାରଣା ଜଣେ ଶିଳ୍ପୀ । କୌଣସି

ଫରମାସରେ ସେ ମୂର୍ତ୍ତି ଗଢ଼େ ନାହିଁ । ଯେ ପର୍ଯ୍ୟନ୍ତ ତା' ଭିତରେ ପ୍ରେରଣାଟିଏ ସୃଷ୍ଟି ନ ହୋଇଛି, ସେ ପର୍ଯ୍ୟନ୍ତ ସେ ନିହାଣ କିମ୍ବା ପଥରରେ ହାତ ଦିଏ ନାହିଁ । ହୋଟେଲ ମନ୍ଦିର ପାଇଁ ମୂର୍ତ୍ତିଟିଏ ଗଢ଼ିବାକୁ ସେହି ପ୍ରେରଣାର ମୁହୂର୍ତ୍ତଟିକୁ ସେ ଅପେକ୍ଷା କରିଥିଲା । ପ୍ରେରଣା ମଧ୍ୟ ଲାଭକଲା ଓ ପଥର ଏବଂ ନିହାଣର ମିଳିତ ସହଯୋଗରେ କମନୀୟ ରୂପ ନେଇ ଜନ୍ମନେଲେ ଦିଗମ୍ବରୀ ମହାକାଳୀ । ହୋଟେଲ ରିସେପ୍‌ସନ ହଲ୍ ଲାଉଞ୍ଜ୍‌ର ଏକ ପାର୍ଶ୍ୱରେ ଶୋଭା ପାଇଲେ ମା' ଦିଗମ୍ବରୀ । ବିଦେଶୀ - ବିଦେଶିନୀ ମଦ୍ୟ ଗ୍ଲାସ ହାତରେ ମୂର୍ତ୍ତି ସ୍ପର୍ଶ କରି ଅଦ୍ଭୁତ ରୋମାଞ୍ଚ ଲାଭ କଲେ । ମାତ୍ର ଚତୁର୍ଭୁଜା ମହାକାଳୀଙ୍କୁ ନିଶାଗ୍ରସ୍ତ ଅବସ୍ଥାରେ ସାହେବମାନେ ଦେଖି ବେଳେ ବେଳେ ଭୟରେ ପ୍ରଳାପ କରି ଉଠିଲେ । ବ୍ୟବସାୟ ଦୃଷ୍ଟିରୁ ମୂର୍ତ୍ତିର ଦୁଇଟି ହସ୍ତ କାଟି ଦେବାର ବ୍ୟବସ୍ଥା ହେଲା । ପ୍ରାଚ୍ୟ ଆଦର୍ଶକୁ ସମ୍ମାନ ପ୍ରଦର୍ଶନ କରୁଥିବା କେତେକ ହୋଟେଲ କର୍ମଚାରୀଙ୍କ ସହାୟତାରେ ଦେବୀମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇ ପୁରୁଣା ପାଟଣାରେ ବିରାଜିତ ହୋଇଛନ୍ତି । ସନ୍ତାନର ପ୍ରାର୍ଥନା ପୂର୍ଣ୍ଣ ହୋଇଛି । ନିଜ ମାତାର ସମ୍ମାନ ରକ୍ଷା ପାଇଛି । ଶିଳ୍ପୀ ଥାନାକୁ ବୁହାହୋଇ ଯାଇଛି, ତଥାପି ମା' ରୂପେ ଥରେ ଯାହାକୁ ସମ୍ମାନ ଦେଇଛି ତାର ଅମର୍ଯ୍ୟାଦା କରିପାରି ନାହିଁ । ପାଶ୍ଚାତ୍ୟ ସଭ୍ୟତାର ଅନ୍ଧ ମୋହ ସାଂପ୍ରତିକ ମଣିଷକୁ କିପରି ଜରାଗ୍ରସ୍ତ କରିବା ସଂଗେ ସଂଗେ ନିଜର ଆଦର୍ଶ ସଂସ୍କୃତି ପ୍ରତି ବୀତସ୍ପୃହ କରିଛି ତା' ଏଥିରେ ଦେଖାଇ ଦିଆଯାଇଛି ।

'ଛୁଇଁଲେ ଉଭାନ୍ ହୋଇଯିବ' ଏକ ମନସ୍ତାତ୍ତ୍ୱିକ ଗଳ୍ପ । ଗୋଟିଏ ଗୋଟିଏ ଖିଆଲ ବେଳେ ବେଳେ ମଣିଷକୁ ଏପରି ଜାବୋଡ଼ି ବସେ, ଯାହା କବଳରୁ ମୁକ୍ତିଲାଭ କରିବା କଷ୍ଟ ହୋଇପଡ଼ିଥାଏ । ଜଣକର ଖିଆଲ ଅନ୍ୟ ନିକଟରେ ସତ୍ୟପରି ଉପଲବ୍ଧି ହେଲେ ତାର ଏକ ମାନସିକ ପ୍ରଭାବ ପରିବାରର ସମସ୍ତଙ୍କ ଉପରେ ପଡ଼ିଥାଏ । ମଣିଷ ସ୍ୱାର୍ଥର ଦାସ । ଏହି ସ୍ୱାର୍ଥକୁ ଭିତ୍ତିକରି ସଂପର୍କର ବନ୍ଧନ । ଯେଉଁ ସ୍ୱାର୍ଥକୁ କେନ୍ଦ୍ରକରି ବନ୍ଧନର ରଜ୍ଜୁ ଦୃଢ଼ ହୋଇଥାଏ, ତାର ପରିପୂରଣରେ ସେହି ରଜ୍ଜୁ ହଠାତ୍ ଛିଡ଼ିଯାଏ । ତପ୍‌ରେ ଲୋକାଚାର ଓ କର୍ତ୍ତବ୍ୟବୋଧକୁ ଆଖି ଆଗରେ ରଖି ମଣିଷ ପରଜନ୍ମର ମୁକ୍ତି ପାଇଁ କିଛି କରିଥାଏ । ଆତ୍ମା ଅବିନଶ୍ୱର । ତାର ମୃତ୍ୟୁ ନାହିଁ । ଗୀତା ତେଣୁ କହିଛି ଏହା ଅସ୍ତ୍ରଦ୍ୱାରା ଛିଡ଼େ ନାହିଁ, ପାଣିରେ ବୁଡ଼େ ନାହିଁ କିମ୍ବା ନିଆଁରେ ପୋଡ଼େ ନାହିଁ । ସେ ଚିର ଅମର । କେବଳ ଯାହା ଘଟର ହିଁ ପରିବର୍ତ୍ତନ ହୋଇଥାଏ । ସେହି ପରିବର୍ତ୍ତନର ପ୍ରକୃତ ତତ୍ତ୍ୱ ଉପଲବ୍ଧି କରି ନ ପାରି ମଣିଷ ମୃତ୍ୟୁ ପାଇଁ ଦୁଃଖ କରେ, କ୍ରନ୍ଦନ କରେ । ଆତ୍ମା ଛୁଇଁ ହୁଏ ନାହିଁ ମାତ୍ର ସତ୍ତାକୁ ଉପଲବ୍ଧି କରିହୁଏ । ଲୌକିକ ଜଗତର ସତ୍ୟ ପ୍ରକୃତ ସତ୍ୟ ନୁହେଁ । ଯାହା ସତ୍ୟ, ତାହା ଚିରନ୍ତନ । ଶବ୍ଦ, ସ୍ପର୍ଶ ଓ ଆସ୍ୱାଦନର ଉର୍ଦ୍ଧ୍ୱରେ ତାର ସ୍ଥିତି । ସ୍ଥୂଳ ଶରୀରକୁ ସ୍ପର୍ଶ କରିହୁଏ, ଯାହାର ବାସ୍ତବ ପ୍ରକୃତ ସତ୍ତା ସନ୍ଦିହାନ । ମାତ୍ର ସୂକ୍ଷ୍ମସତ୍ତା, ଯାହା ବାସ୍ତବ ତାହା ସ୍ପର୍ଶଠାରୁ ଦୂରରେ । ତେଣୁ ମଣିଷ ଏହି ସ୍ଥୂଳ ଶରୀର ପ୍ରତି ଆକୃଷ୍ଟ ନ ହୋଇ ସେହି ସୂକ୍ଷ୍ମସତ୍ତା ସହିତ ଅନ୍ତରଙ୍ଗତା

ସ୍ଥାପନ କରିପାରିଲେ ତାର ଜନ୍ମ ସାର୍ଥକ ହୋଇଥାଏ । ମୃତ୍ୟୁ ତାକୁ ଜଡ଼ କରିପାରେ ନାହିଁ । ଅବିନଶ୍ୱର ଆତ୍ମା ହିଁ ସତ୍ୟ ଯାହା ସ୍ପର୍ଶଶୂନ୍ୟ, ଅନୁଭବ ଦ୍ୱାରା ବୋଧଗମ୍ୟ । ଜୀବନର ଏହି ପରମ ଓ ଚରମ ସତ୍ୟଟିକୁ ଗାଳ୍ପିକ ମନସ୍ତତ୍ତ୍ୱ ଦୃଷ୍ଟିକୋଣରୁ ଦାର୍ଶନିକ ଢଙ୍ଗରେ ବର୍ଣ୍ଣନା କରିଛନ୍ତି ।

ଭାରତ ପରି ଗ୍ରୀଷ୍ମପ୍ରଧାନ ଦେଶରେ ବସନ୍ତ କେତେବେଳେ ଆସେ ପୁଣି କେତେବେଳେ ଫେରିଯାଏ, ତାର ଠିକଣା କେହି ରଖିପାରେନା । ମାତ୍ର ବସନ୍ତର ଆଗମନ ପାଇଁ ପ୍ରତୀକ୍ଷାର ଅନ୍ତ ନାହିଁ । ବସନ୍ତ ଫୁଲର ଋତୁ, ଆନନ୍ଦର ଋତୁ । ଆନନ୍ଦର ମୁହୂର୍ତ୍ତଗୁଡ଼ିକ ବେଶ୍ କ୍ଷଣସ୍ଥାୟୀ । ତଥାପି ଏହି ସ୍ୱଳ୍ପ ସମୟ ମଣିଷ ହୃଦୟର କଳାପଟାରେ ସବୁଦିନ ପାଇଁ ଧଳା ଅକ୍ଷରରେ ଲିପିବଦ୍ଧ ହୋଇ ରହିଯାଏ । ମଧ୍ୟବିତ୍ତ ପରିବାରର ଡାଲି ଚାଉଳ ହିସାବ, ଅଳନ୍ଧୁ ପରିପୂର୍ଣ୍ଣ ରୋଷେଇ ଘର, ଭଙ୍ଗା ଟେବୁଲ ଚେୟାର, ପାଣି ଗଳୁଥିବା ସରକାରୀ କ୍ୱାର୍ଟରର ଅଣନିଃଶ୍ୱାସୀ ପରିବେଶରୁ କିଛିକ୍ଷଣ ପାଇଁ ଦୂରେଇଯାଇ ପ୍ରାଚୁର୍ଯ୍ୟ ପରିପୂର୍ଣ୍ଣ ବିଳାସ କକ୍ଷରେ ସ୍ୱଳ୍ପକ୍ଷଣ ପାଇଁ ହେଲେ ବି ଆଶ୍ରୟ ପାଇଥିବା ମଧ୍ୟବିତ୍ତ ପରିବାରଟି ପାଇଁ ତାହା ବସନ୍ତ ଋତୁ ନ ହୋଇ ଅନ୍ୟ କ'ଣ ହୋଇପାରେ ? ଝର୍କା ନ ଥିବା ବୁନ୍ଧା ଘର ଭିତରେ ଋତୁହୀନ ଦୀର୍ଘ ପ୍ରହର ସବୁ ଅତିକ୍ରାନ୍ତ କରୁଥିବା ମଣିଷଗୁଡ଼ାକ ଆଭିଜାତ୍ୟ ପରିପୂର୍ଣ୍ଣ ବିରାଟ ଅଟ୍ଟାଳିକାରେ ତିନିଦିନ ଆଶ୍ରୟ ନେବା କମ୍ ସୌଭାଗ୍ୟର କଥା ନୁହେଁ । ଗ୍ରୀଷ୍ମର ରୌଦ୍ର ତାପରେ ଜର୍ଜରିତ (ଜୀବନଯନ୍ତ୍ରଣା) ମଣିଷ ଭାଗ୍ୟରେ ତିନିଦିନ ବସନ୍ତର ଆବିର୍ଭାବ ସବୁଦିନପାଇଁ ମନେ ରହିବା ସ୍ୱାଭାବିକ । ବସନ୍ତର ମୁଲାୟମ ସ୍ପର୍ଶ ଓ ଆହ୍ୱାନ କ୍ଷଣସ୍ଥାୟୀ ହେଲେ ହେଁ, ମଧୁର ଏବଂ ଚିତ୍ତଉଦ୍‌ଫୁଲ୍ଲକ । ଏହିପରି ଦୁର୍ଭାଗା ମାନବ ଭାଗ୍ୟରେ ନିଶ୍ଚିତ ଭାବରେ ବର୍ଷକ ଏକ ଋତୁ, ଋତୁକ ତିନି ଦିନ ବ୍ୟତୀତ ଅନ୍ୟ କ'ଣ ହେବ ?

ସାଂପ୍ରତିକ ସମାଜରେ ଘଟୁଥିବା ସାଂପ୍ରଦାୟିକ ଦଙ୍ଗା ଓ ତାର ବିଷମ ପରିଣତିକୁ ଉପଜୀବ୍ୟ କରି ରଚିତ 'କମଳେଶ୍ୱରୀ' ଗଳ୍ପ । ଅବକ୍ଷୟଗ୍ରସ୍ତ ସମାଜରେ ସାମାନ୍ୟ କଥାକୁ କେନ୍ଦ୍ରକରି ଦଙ୍ଗା ଉପୁଜିବା ସଂଗେ ସଂଗେ ସାଧାରଣ ଧନ ଜୀବନ ବିପନ୍ନ ହୋଇପଡୁଛି । ଏହାର ସୁଯୋଗ ନେଇ କେତେକ ଅସାମାଜିକ ମଣିଷ ନିରୀହା ଅସହାୟା ନାରୀମାନଙ୍କ ପ୍ରତି ପାଶବିକ ଆକ୍ରମଣ କରିଥାନ୍ତି । ସଂପ୍ରତି ସମାଜରେ ଆଦର୍ଶବତ୍ତା ଓ ବ୍ୟକ୍ତିରୁଚିବୋଧ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ପହଞ୍ଚିଛି । ସହୃଦୟତା ଓ ବନ୍ଧୁତା ଆଜି ଅଭିଧାନର କଳେବର ମଣ୍ଡନ କରିଛି । ଦଙ୍ଗା ଭୟରେ ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ମଣିଷଗୁଡ଼ିକ କମଳେଶ୍ୱରୀ ପରି ଅସହାୟା ନାରୀଟିକୁ ସାହାଯ୍ୟ ଓ ସମବେଦନା ଜଣାଇବାକୁ ଆଗେଇ ଆସିଛନ୍ତି । ପାଶବିକ ଅତ୍ୟାଚାର କରିବାକୁ ଆସିଥିବା ଜନ୍ତୁଟିକୁ ହତ୍ୟାକରି ମହାକାଳୀ ରୂପ ଧାରଣ କରିଥିବା କମଳେଶ୍ୱରୀ ଅଭୟ ଦେଇ କହିଛି - ''ବାବୁମାନେ, ମା' ମାନେ ଘରକୁ ଯାଅ, କବାଟ ପକାଇ ଦିଅ । ଅନ୍ଧାର ମାଡ଼ି ଆସୁଛି । ମୁଁ ତମକୁ ଜଗିଛି । ମତେ ଡର

ଭୟ ନାହିଁ । ମୁଁ ଏ ରାସ୍ତାରେ ରାତିସାରା ପହରା ଦେବି । ମତେ କେହି କିଛି କରିପାରିବେ ନାହିଁ । ମୋ ପାଖ ପଶିଲେ ମୁଁ ପନିକିରେ ହାଣି ଦେବି ।'' ଏହା ସତ୍ତ୍ୱେ ସମସ୍ତ କଲୋନୀ ବାସିନ୍ଦା ଯେପରି ଗୋଟିଏ ପରିବାରର ସଦସ୍ୟରେ ପରିଣତ ହୋଇଯାଇଛନ୍ତି । ସାରାରାତି ଜଗିବସିଛନ୍ତି ରାସ୍ତା ଉପରେ ସମସ୍ତଙ୍କୁ ଅଭୟ ଦେବାପାଇଁ । ସାଧାରଣ ଖଟିଖିଆ ନାରୀ କମଳୀର ସାହସ ଓ ମହାନୁଭବତା, ମଣିଷର ମଣିଷ ପ୍ରତି ମମତ୍ୱବୋଧ ଓ ସଦିଚ୍ଛା ଗଳ୍ପଟିର ଆକର୍ଷଣୀୟ ବିଭାଗ । କମଳୀ ସାଧାରଣ ନାରୀଟିଏରୁ କମଳଈଶ୍ୱରୀରେ ପରିଣତ ହୋଇଯାଇଛି ।

ଏହି ଗଳ୍ପ ସଂକଳନର ଶେଷ ଗଳ୍ପ 'ପ୍ରଶ୍ନ ବାଚକ' ଶେଷ ପର୍ଯ୍ୟନ୍ତ ପାଠକ ନିକଟରେ ଏକ ପ୍ରଶ୍ନବାଚୀ ହୋଇ ରହିଯାଇଛି । ଏହା ଗୋଟିଏ ରହସ୍ୟ ରୋମାଞ୍ଚଧର୍ମୀ ଗଳ୍ପ ପରି ମନେହୁଏ । ଶେଷ ପର୍ଯ୍ୟନ୍ତ ପାଠକ ସନ୍ଦେହ ଓ ସଂଶୟର ଦୋଳାରେ ଦୋଳାୟିତ ରହିଛନ୍ତି । ବୋଧହୁଏ ସଂପ୍ରତି ବିଭିନ୍ନ ବୈଜ୍ଞାନିକ ଉପାୟରେ ମଣିଷମାନଙ୍କର ଅଙ୍ଗଛେଦ କରାଯାଉଥିବା ବିବରଣୀକୁ ଆଧାର କରି ଏହି ଗଳ୍ପଟି ରଚିତ । ଘର ମାଲିକ ଓ ମାଲିକାଣୀ ଏହି ସଂସ୍ଥାର ଏକ ଏକ ସଦସ୍ୟ ହୋଇପାରନ୍ତି । ସୁନ୍ଦରୀ ତରୁଣୀମାନଙ୍କୁ ଅସ୍ତ୍ର କରି ଆଜି ଯେଉଁ ଶରୀର ଛେଦ ବ୍ୟବସାୟ ଚାଲିଛି ଏହାର ପରିସମାପ୍ତି କେବେ, କଳନା କରିବା କଠିନ । ସମଗ୍ର ବିଶ୍ୱରେ ମଧ୍ୟ ଅନୁରୂପ ର୍ୟାକେଟ୍ କାର୍ଯ୍ୟକାରୀ । କାଶ୍ମୀରୀ ସୁନ୍ଦରୀର ପ୍ରଲୋଭନ ଯୁବସମାଜକୁ ଉଦ୍‌ଭ୍ରାନ୍ତ କରିଛି । ଏହାର ପରିଣତି ସଂପର୍କରେ ଅଜ୍ଞ ଥିବାରୁ, ଅକ୍ଳେଶରେ ଶିକାର ହେବା ସ୍ୱାଭାବିକ୍ । ତଥାପି ଗଳ୍ପଟିର ଶେଷ ପର୍ଯ୍ୟନ୍ତ କୈଳାସ ମହାପାତ୍ର ଏବଂ ସୁଧା କୁସୁମ ଘରର ରାକ୍ଷସ ପରି ପୁରୁଷ ଓ ନାରୀ ତଥା ସୁନ୍ଦରୀ କାଶ୍ମୀରୀ ରମଣୀଟି ପାଠକଙ୍କ ନିକଟରେ ପ୍ରଶ୍ନବାଚୀ ରହି ଯାଇଛନ୍ତି । ନାମକରଣ ଦୃଷ୍ଟିରୁ ଗଳ୍ପଟି ବେଶ୍ ସାର୍ଥକ ।

## ସବୁଠାରୁ ଦୀର୍ଘରାତିରେ ଶୈଳୀବିଚାର

ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ ଗଳ୍ପଶୈଳୀ ଅନନ୍ୟ ସାଧାରଣ । ପ୍ରତିଟି ଗଳ୍ପରେ ତାଙ୍କର ଏକ ନିଜସ୍ୱ ଶୈଳୀ ରହିଛି । ସେହି କାରଣରୁ ସେ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର ବାରିହୋଇପଡ଼ନ୍ତି । ତାଙ୍କର ଶୈଳୀ ମୁଖ୍ୟତଃ ବ୍ୟଞ୍ଜନାଧର୍ମୀ ଓ ପରିମିତିବୋଧକୁ ଅପେକ୍ଷା ରଖେ । ବେଶି କିଛି ନ କହି ଗୋଟିଏ ଗୋଟିଏ ଶବ୍ଦ ବା ବାକ୍ୟ ମଧ୍ୟରେ ସେ ସବୁ କଥା କହିପାରନ୍ତି । ପୁଣି ସଂଳାପଯୁକ୍ତ ନାଟକୀୟ ଶୈଳୀ ଯୋଗୁଁ ଏହା ଅଧିକ ଆକର୍ଷଣୀୟ । ନିମ୍ନରେ ତାଙ୍କ ଶୈଳୀ ବିଶେଷତ୍ୱ ସମ୍ବନ୍ଧରେ କେତେକ ଉଦାହରଣ ପ୍ରଦତ୍ତ କରାଗଲା ।

**(କ) ଧ୍ୱନ୍ୟାତ୍ମକ ଶବ୍ଦ ପ୍ରୟୋଗ** -ଝିମ୍ ଝିମ୍, ଆଖିକୋଣ କୁଞ୍ଚ କୁଞ୍ଚ, ଲୋକ ପୁଞ୍ଜି ପୁଞ୍ଜି, ଆଖି ଥମ୍ ଥମ୍, ଚୁପ୍ ଚୁପ୍ କଥା, ଚାଇଁ ଚାଇଁ ଟୋକା, ସମସ୍ତେ କାନ୍ଦ କାନ୍ଦ, ଗହ ଗହ ଆଲୁଅ, ଚହ ଚହ ସଂଗୀତ, ଚିକ୍ ଚିକ୍ ଆଖି, ଫିସ୍ ଫିସ୍ କଥା, ଛନ୍ ଛନ୍, ଝର

ଝର ବର୍ଷା, କୁର୍ କୁର୍ ହସ, ଯାଇଁ ଯାଇଁ, ଧପ୍ ଧପ୍ ଚାଲି, ସକ୍ ସକ୍ କାନ୍ଦ, ପତଙ୍ଗ ଫଡ଼୍ ଫଡ଼୍, କୁଈ କୁଈ ହସ, କଳା ମଚ୍ ମଚ୍ ରଙ୍ଗ, ଟହ ଟହ ଆଖି, ଲହ ଲହ କ୍ରୋଧ, ଦୁମ୍ ଦାମ୍ ପାଦ ଶବ୍ଦ, ହାଡ଼ କିଣ୍ କିଣ୍, କଟମଟ ଚାହାଣି ଇତ୍ୟାଦି । ଏହି ଶବ୍ଦଗୁଡ଼ିକ ଦ୍ୱାରା ବାକ୍ୟ ସୁଖକର ଓ ପରିବେଶ ଜୀବନ୍ତ ହୋଇପାରିଛି ।

**(ଖ) ପାତ୍ରମୁଖୀ ଭାଷା** - ପାତ୍ରମୁଖୀ ଭାଷା ପ୍ରୟୋଗରେ ଚନ୍ଦ୍ରଶେଖର ସିଦ୍ଧହସ୍ତ । ଏହାଦ୍ୱାରା କଥନଭଙ୍ଗୀକୁ ସେ ବାସ୍ତବ କରିପାରିଛନ୍ତି । ଅଣଓଡ଼ିଆ ବ୍ୟକ୍ତିଙ୍କ ମୁଖରେ ହିନ୍ଦୀ ଭାଷା ବେଶ୍ ପାତ୍ରୋପଯୋଗୀ -

(୧) ମୁଝେ ମାଲୁମ୍ ହେ ଆପ୍ ଚାୟମେ କମ୍ ସକ୍କର ପସନ୍ଦ କରତେ ହେଁ । ମେ ତୋ ଓ୍ୱହି ପୁରାନେ ଆଦତ ସେ ଅଢ଼ାଇ ଚାମଚ୍ ଲେତି ହୁଁ ।

(୨) ଅଭିବି ଆପ୍ ଓ୍ୱହି ମଜାକ୍ କରତେ ହୈ । ଆରେ ଆପ ଅପନି ବୋଲି ମେ ବାତ୍ କିଜିୟେ । କ୍ୟା ଗଡ଼ର କର୍ ରହେ ହେଁ ? (ପ୍ରଶ୍ନବାଚକ)

ପୁରୀପଣ୍ଡା ତିଳିଛ ମହାପାତ୍ରର ଭାଷା - ମୁଁ ଛାର କିଙ୍କରର ଅପ୍ରାଧ କ୍ଷମା ହୋଇଯାଉ ମଣିମା । ମୁଁ କି ବୁଝେ ତୋର ଅନନ୍ତ ଗତି । ରତ୍ନପୀଢ଼ା ଉପରୁ ଯାହାକୁ ଯେଭଳି ଆଜ୍ଞା ମିଳିବ ସେଇଭଳି ସିନା ଇନ୍ଦ୍ର କୁବେର ଖଟିବେ । ଶ୍ରୀ ଅଙ୍ଗ ସେବାକୁ ମୁଁ କାହୁଁ ଭାଜନ ଠାକୁରେ, ମଣିମା ଖଟଣିକୁ ମୁଁ କାହୁଁ ସମର୍ଥ ? ମନେହେଲା ଟେକିନେଲୁ । ଏ ଅଧମକୁ କୃତାର୍ଥ କଲୁ । (ତିଳିଛ ମହାପାତ୍ର)

**(ଗ) ସଂଳାପ ଓ ନାଟକୀୟତା** - କ'ଣ ହେଲା ? ତୁଟା ଗୋଟା ନାଲାଏକ, ସଇତାନ କାହାଁକା । ଘରେ ପୁଅ ବେମାର ପଡ଼ିଛି ଅଥଚ ତୁ ପଳେଇଚୁ ଖଟିକି ! କ'ଣ ନା ମିଟର ମୋଡ଼ି ଯେଉଁ ଦି'ପଇସା ଚୋରି କରିଥିଲୁ ତାକୁ ପିଇଦେବା ପାଇଁ (ସବୁଠାରୁ ଦୀର୍ଘରାତି) । କିଏ ମଗାଇଲା ଡ୍ରିଙ୍କ୍ । ସାର୍ ଛୁଅନ୍ତି ନାହିଁ ବୋଲି ଜାଣିନା ? ମୁଁ ସାର୍ ଆଦୌ ପିଏ ନାହିଁ । ଏମିତି ପାଟିରେ କେତେବେଳେ କେମିତି - ହେ-ହେ- ଆବେ ଏଗୁଡ଼ାକ ଉଠା ! ଏ ଟେବୁଲକୁ ପୋଛ । କିଛି ମନେ କରିବେ ନାହିଁ ସାର୍ - ଏଗୁଡ଼ାକ ଅଭ୍ୟାସରେ ଏମିତି କରିପକାନ୍ତି । (ବର୍ଷକ ଏକ ଋତୁ : ଋତୁକ ତିନି ଦିନ)

**(ଘ) ରୂପ ବର୍ଣ୍ଣନା** - ପାଇଜାମା, ପଞ୍ଜାବି ଦୁପଟ୍ଟ । ଠିଆ ନାକ ଟଣା ଟଣା ଭ୍ରୂରୁ । କାଶ୍ମୀରର ସ୍ଥିର ହ୍ରଦ ଆଉ ଅସୁମାରି ଫୁଲର ଉପବନ ସତେ ବା ସେ ନାରୀ ମୂର୍ତ୍ତିର ଉପାଦାନ । (ପ୍ରଶ୍ନବାଚକ ଗଳ୍ପର ସୁନ୍ଦରୀ ତରୁଣୀର ବର୍ଣ୍ଣନା) ତିଳିଛ ମହାପାତ୍ର ମଥାରେ କୁମ୍ଭପରି ଶ୍ରୀମନ୍ତ ଜୁଡ଼ା । ସେଥିରେ ଦରଫୁଟା ଯୋଡ଼ିଏ ଚମ୍ପା । ଦୁଧ ପିଠଉ ପରି ଦେହରେ ଡାଳିମ୍ବ ରଙ୍ଗର ପାଟ ପାଞ୍ଜ । ଓସାର ବୁକୁ ଉପରେ ଲମ୍ବମାନ ଦୁଇସୋରା ରୁଦ୍ରାକ୍ଷ ମାଳି । ଦର୍ପଣ ପରି କପାଳରେ ଚନ୍ଦନ ଟୋପା (ତିଳିଛ ମହାପାତ୍ରର ରୂପ ବର୍ଣ୍ଣନା) ।

(ଙ) **ପରିବେଶ ବର୍ଣ୍ଣନା** - ସହରରେ କର୍ଫୁ ଚାଲିଛି । ଆଜକୁ ତିନିଦିନ ହେଲା କେହି ରାସ୍ତାକୁ ଓହ୍ଲାଇ ନାହିଁ । ଘର ଭିତରେ ସମସ୍ତେ ଚୁପ୍‌ଚାପ୍ ବସିଛନ୍ତି । ହାତ ଧରାଧରି ହୋଇ ଦେହକୁ ଦେହ ଲାଗି ବସିଛନ୍ତି । ଶୋଇଲେ ଏକାଠି ଗୋଟେ ବଖରାରେ ମଳାବାନ୍ଧି ଶୋଉଛନ୍ତି । ବାରମ୍ବାର ବୟସ୍କମାନେ ଯାଇ ଦେଖି ଆସୁଛନ୍ତି କବାଟରେ ଭିତରପଟୁ ତୋଡ଼ା ପଡ଼ିଛି କି ନାହିଁ । ପିଲାମାନେ ଖେଳୁ ନାହାନ୍ତି - ହସୁ ନାହାନ୍ତି, ଡବ ଡବ ଆଖିରେ ବଡ଼ମାନଙ୍କୁ ଚାହୁଁଛନ୍ତି । (କମଳେଶ୍ୱରୀ)

(ଚ) ବିଭିନ୍ନ ଚିତ୍ରକଳ୍ପ ପ୍ରୟୋଗରେ ଭାବକୁ ପ୍ରଭାବଶାଳୀ କରି ପ୍ରକାଶ କରିବାରେ ଶ୍ରୀ ରଥଙ୍କ ବିଶେଷତ୍ୱ ପ୍ରମାଣିତ । ଏହି ଚିତ୍ରକଳ୍ପଗୁଡ଼ିକରୁ ତାଙ୍କ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ -

ଭାରି ଭାରି ବିପଣିରେ ଟଳମଳ ନାଆ ପରି ତା' ଗୋଡ଼ ଅସ୍ଥିର ପଡୁଥିଲା (ସବୁଠାରୁ ଦୀର୍ଘରାତି)

ପାଣି ହାଣ୍ଡି ପରି ଟଳମଳ ଗର୍ଭାବସ୍ଥା (ସବୁଠାରୁ ଦୀର୍ଘରାତି)

ତାଂକୁ ଲାଗୁଥିଲା ସତେ ବା ସେ ଚର୍ବି ଲାଗିଥିବା, ଅଣ୍ଡା ଧରିଥିବା ଚିକ୍‌କଣ କୁକୁଡ଼ାଟିଏ (ରୁନି ପାଇଁ ନୀରବ ପ୍ରାର୍ଥନା)

ଓଦା ଓଦା ପାହାଡ଼ ପରି ନିସ୍ତବ୍ଧ ଅନ୍ଧାର (ନିମ୍ନ ପାହାଡ଼)

ତା' ମୁହଁ ଦର୍ପଣ ପରି ଜଳୁଥାଏ (ଏଇ ବୋଧେ ଶେଷ ଦୁଃଖ)

ଦାନ୍ତରେ ଖରାପଡ଼ି ହୀରାଖଣ୍ଡି ପରି ଝଟକିଲା (ଏଇ ବୋଧେ ଶେଷ ଦୁଃଖ)'

ଗୁଡ଼ାଏ ଚର୍ବିଳ ମାଂସ ଖାଇ ଦେଇ ମେଦବହୁଳ ରାକ୍ଷସଟାଏ ସତେବା ଢହ୍ଲ ଆଲୁଅରେ ହାଇ ମାରୁଛି (ସେ ତୁମ ମା' ପରା)

ଖାଲି ରାସ୍ତାରେ ସକାଳ ଖରା ଭାରି ନିରୀହ, ଏକାକୀ ଆଚମ୍ବିତ ପିଲାଟିଏ ପରି ଅସହାୟ (ସେ ତୁମ ମା' ପରା)

ଘର ମଝିରେ ଚିପୁଡ଼ା ଓଦା ଲୁଗା ପରି ମଣିଷଟାଏ ଝୁଲିଛି ଛାତରୁ (ଛୁଇଁଲେ ଉଭାନ୍ ହୋଇଯିବ)

ସକାଳ ପାହିଲା ବାସ୍ନା ତା'ର ଉଷୁମ ବାମ୍ଫ ପରି (ବର୍ଷକ ଏକ ଋତୁ : ଋତୁକ ତିନିଦିନ)

ତା ମୁଠା ଭିତରେ ମୋ ବାଁ ଡେଣାଟି ମଲା ଗଡ଼ିଶା ପରି ନିଶ୍ଚେଷ୍ଟ ଓହଳି ରହିଲା । (ପ୍ରଶ୍ନବାଚକ)

ବିଭିନ୍ନ ଦୃଷ୍ଟିରୁ ବିଚାର କଲେ ସବୁଠାରୁ ଦୀର୍ଘରାତି ଏକ ସଫଳ ଗଳ୍ପ ସଂକଳନ । ବ୍ୟଞ୍ଜନାଧର୍ମୀ ବାକ୍ୟ ପ୍ରୟୋଗ, କିମ୍ବଦନ୍ତୀର ସାର୍ଥକ ବିନ୍ୟାସ, ନାଟକୀୟ ଉପସ୍ଥାପନ ଶୈଳୀ, ରହସ୍ୟଧର୍ମିତା, ଚିତ୍ରକଳ୍ପର ଯଥାର୍ଥ ପ୍ରୟୋଗ, ଶାଣିତ ଶବ୍ଦର ବ୍ୟବହାର, ଭାବର ଅବାଧ ବିଚରଣ, ଏକମୁଖୀ ଗତି, ପରିଣତିରେ ଚମତ୍କାରିତା ଓ ଅତୃପ୍ତିର ଝଲକ ଏହି ଗଳ୍ପ ସଂକଳନଟିକୁ କାଳଜୟୀ ମୂଲ୍ୟ ପ୍ରଦାନ କରିଛି । ଚରିତ୍ର ଚିତ୍ରଣ ଓ ଚରିତ୍ରମାନଙ୍କର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଅତ୍ୟନ୍ତ ହୃଦ୍ୟ । ଅଳ୍ପ କେତେକ ଦେଶଜ ଶବ୍ଦର ପ୍ରୟୋଗ ପ୍ରସଙ୍ଗକୁ ଭାବଗର୍ଭକ କରିପାରିଛି । ଶ୍ରୀରଥଙ୍କ ଗଳ୍ପ ଜଗତ ବିଚିତ୍ରବର୍ଣ୍ଣା । ବାସ୍ତବ ଜୀବନର ରୂପକାର ଭାବେ ଓଡ଼ିଆ ଗଳ୍ପ ସାହିତ୍ୟରେ ଚନ୍ଦ୍ରଶେଖର ରଥ ଅମର ହୋଇ ରହିବେ ।

# ବିଂଶ ଶତକର ଓଡ଼ିଆ ଭ୍ରମଣ ସାହିତ୍ୟ

ପୃଥିବୀ ଗୋଟିଏ ବିରାଟ ଗ୍ରନ୍ଥ - ସେଣ୍ଟ୍ ଅଗଷ୍ଟାଇନ୍‌ଙ୍କ ଏହି ମନ୍ତବ୍ୟଟି ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ଜଣେ ସାଧାରଣ ବ୍ୟକ୍ତି ପକ୍ଷରେ ସମଗ୍ର ଜୀବନକାଳ ମଧ୍ୟରେ ଏହି ବିଶ୍ୱକୁ ପରିଭ୍ରମଣ କରିବା କିମ୍ବା ତାର ରୂପ, ରସ ଓ ଗନ୍ଧକୁ ଆସ୍ୱାଦନ କରିବା ସମ୍ଭବ ନୁହେଁ । ତେଣୁ ବିଶ୍ୱକୁ କେତେକାଂଶରେ ଜାଣିବାପାଇଁ ଆବଶ୍ୟକ ହୋଇଥାଏ ଭ୍ରମଣ ସାହିତ୍ୟର । ବ୍ୟକ୍ତି ବିଶେଷଙ୍କ ଭ୍ରମଣଜନିତ ଅନୁଭୂତିର କଳାତ୍ମକ ପରିପ୍ରକାଶ ହେଉଛି ଭ୍ରମଣ ସାହିତ୍ୟ । ଜୀବନକୁ ଜାଣିବାପାଇଁ, ଅନୁଭବ କରିବାପାଇଁ, ତାର ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ରହିଛି ବହୁ ଅଜଣା ଓ ଆଶ୍ଚର୍ଯ୍ୟ ଉପାଦାନମାନ । ମଣିଷର ଜିଜ୍ଞାସାବୋଧ ସେହି ଅଜଣା ଉପାଦାନମାନଙ୍କ ନିକଟରେ ତାକୁ ପହଞ୍ଚାଇ ଦେଇଥାଏ । ଗୃହର ଚତୁଷ୍କୋଣ ମଧ୍ୟରେ ଆବଦ୍ଧ ମନ ସତତ ମୁକ୍ତିର ଅନ୍ୱେଷଣ କରେ । ପକ୍ଷୀଟିଏ ପରି ବିସ୍ତାରିତ ଗଗନଙ୍କେ ଉଡ଼ି ବୁଲିବାର ଅଭୀପ୍‌ସା ପୋଷଣ କରେ । ମାନବର ଏହି ନୂତନକୁ ଜାଣିବାର ଅଭିପ୍ରାୟରୁ ଜନ୍ମନିଏ ପର୍ଯ୍ୟଟନ ପିପାସା । ସେ ଯାହା ଦର୍ଶନ ଓ ଅନୁଭବ କରିଛି, ତାର ପୃଷ୍ଠପଟରେ ଯେଉଁ ସୂକ୍ଷ୍ମ ଅନୁଭୂତିର ପ୍ରେରଣା ରହିଛି, ତାର ବିଶ୍ଳେଷଣ କରି ପରିପ୍ରକାଶ କରିବାହିଁ ଭ୍ରମଣ ସାହିତ୍ୟ ।

ଗତାନୁଗତିକ ଜୀବନଧାରାରୁ କିଛିକ୍ଷଣପାଇଁ ମୁକ୍ତ ହେବାକୁ ଏହି ଭ୍ରମଣ ପିପାସା ଘରବନ୍ଧା ମଣିଷକୁ ବ୍ୟାକୁଳ କରିଆସିଛି । ମାନସିକ ଅବସାଦ ଓ କ୍ଲାନ୍ତି ଦୂରୀକରଣରେ ଭ୍ରମଣର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ବୋଧହୁଏ ସେହି କାରଣରୁ କୁହାଯାଇଛି Travelling has proved to be a great leveller of mental disparities. ''ଦେଖିଥିବା ବିଷୟର ସାର୍ଥକ ବିଷୟ ନିର୍ବାଚନ ଓ ତାର ରସ ରୂପାୟନ ଅର୍ଥାତ୍ ଦୃଷ୍ଟପଦାର୍ଥର ରସ ବିକାଶୋପଯୋଗୀ ଉପଯୁକ୍ତ ପରିବେଷଣହିଁ ଭ୍ରମଣ ସାହିତ୍ୟର ଯଥାର୍ଥ ପ୍ରାଣକେନ୍ଦ୍ର । ପର୍ଯ୍ୟଟକର ପ୍ରାଣବନ୍ତ ଅନୁଭୂତିର ସହାୟତାରେ ବିଷୟ ନିର୍ବାଚନ ଓ ତାର ରସ ରୂପାୟନ ଯେଉଁଠି ହୁଏ ଯେତେ ମୌଳିକ ଓ ସୃଷ୍ଟିସୌନ୍ଦର୍ଯ୍ୟଗର୍ଭିତ ସେ ଭ୍ରମଣ ସାହିତ୍ୟ ସେଠି ସେତେ ହୁଏ ଅଭିନବ ଓ ରସ ଉଲ୍ଲାସକ, ତାର ସୃଷ୍ଟିଧର୍ମ ସେଠି ସେତେ ହୁଏ ସାର୍ଥକ ଓ ଚିରନ୍ତନ ।'' (ସାମନ୍ତରାୟ ଡଃ ନଟବର - ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-

୧୯୭୦- (ଭୁବନେଶ୍ୱର-ପୃ-୫୪୭) । ଲେଖକର ଅନ୍ତର୍ଦ୍ଦୃଷ୍ଟି ଓ ତାର ରସପ୍ରାଣ ଅଭିବ୍ୟକ୍ତି ଭ୍ରମଣ ସାହିତ୍ୟର ମୂଳ ଉପଜୀବ୍ୟ । ଜୀବନ ଓ ଜଗତକୁ ଜାଣିବାର ନିବିଡ଼ ଏକାତ୍ମବୋଧରୁ ଏହାର ସୃଷ୍ଟି । ସୃଷ୍ଟିଧର୍ମକୁ ସାର୍ଥକ ଓ ଚିରନ୍ତନ ରୂପ ଦେବା କ୍ଷେତ୍ରରେ ଅନୁଭୂତିର ଆନ୍ତରିକତା ପ୍ରମୁଖ ଭୂମିକା ଗ୍ରହଣ କରେ । ''ଭ୍ରମଣ ଅନୁଭୂତି ଓ ଅଭିଜ୍ଞତା ସବୁ ଶରତ ସନ୍ଧ୍ୟାର ଗଙ୍ଗଶିଉଳି ଫୁଲପରି ଫୁଟି ବାସ ଚହଟାଇ ସକାଳ ହେବା ସଙ୍ଗେ ସଙ୍ଗେ ତାହା ଝରିଯାଏ । ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଲିପିବଦ୍ଧ ନ କଲେ ତାହା ବିସ୍ମୃତି କୋଳରେ ହଜିଯାଏ । ପରେ ସେଗୁଡ଼ିକୁ ସ୍ମୃତିରୁ ଉଦ୍ଧାର କରିବା ସମ୍ଭବ ହୁଏ ନାହିଁ । ସ୍ମୃତିରେହିଁ ବିଲୀନ ହୋଇଯାନ୍ତି ଅନେକ ନୂଆ ମଣିଷ ଓ ବହୁ ବିଚିତ୍ର ଅଭିଜ୍ଞତା ।'' (ମହାନ୍ତି ଡଃ ଜାନକୀବଲ୍ଲଭ - ଆମେରିକାରୁ ୟୁରୋପ, ଆଫ୍ରିକା ଏକ ଦୃଷ୍ଟିପାତ-କବି ମନୀଷୀ-ଓଡ଼ିଶା ବୁକ୍‌ଷ୍ଟୋର- ୧୯୮୩, ପୃ-୨୨୦) । ସଂକୀର୍ଣ୍ଣ ସୀମାବଦ୍ଧତା ମଣିଷର ଦୃଷ୍ଟିଭଙ୍ଗୀକୁ ରୁଗ୍‌ଣ କରିଦିଏ । ଦୃଷ୍ଟିଭଙ୍ଗୀର ପ୍ରସାରଣ ଓ ଜୀବନର ବିଚିତ୍ର ରହସ୍ୟମୟ ଜଗତର ଉପଲବ୍‌ଧିପାଇଁ ଭ୍ରମଣ ସାହିତ୍ୟର ଭୂମିକା ନିଶ୍ଚିତ ଭାବେ ଗୁରୁତ୍ୱପୂର୍ଣ୍ଣ । ସାର୍ଥକ ଭ୍ରମଣ ସାହିତ୍ୟ ଜ୍ଞାନର ପରିସୀମାକୁ ବ୍ୟାପ୍ତ କରେ, ଅଜ୍ଞାନତା ଓ ଅନ୍ଧବିଶ୍ୱାସର ନିଗଡ଼ରୁ ମୁକ୍ତି ଦେଇ ଆଲୋକର ପଥ ନିର୍ଦ୍ଦେଶ କରେ । ଦିବ୍ୟ ଅନୁଭୂତିରେ ହୃଦୟକୁ ପୁଲକିତ କରେ । There is no denying the fact that travelling unravels the spectrum of life, in all its intensity and vitality. It unfolds before our very eyes the cycle of time-past, present and future (Travelling is Education - Competition Master, July, 1992-P-891) । ବାସ୍ତବରେ ଭ୍ରମଣ ସାହିତ୍ୟ ଏକ ଅଭିନବ ଧାରା, ଏକ ମିଶ୍ରଧାରା । ଏଥିରେ ଉପନ୍ୟାସର ବର୍ଣ୍ଣନାଚାତୁରୀ, କ୍ଷୁଦ୍ରଗଳ୍ପର ଇଙ୍ଗିତଧର୍ମିତା, ପ୍ରବନ୍ଧର ତଥ୍ୟଧର୍ମିତା, ନାଟକର ଉତ୍କଣ୍ଠା, କବିତାର ସ୍ୱତଃସ୍ଫୂର୍ତ୍ତତା ଏବଂ ନୂତନାନ୍ୱେଷାର ରୋମାଞ୍ଚ ପୂରି ରହିଥାଏ । ସେଇଥିପାଇଁ ବହୁପୁରାତନ ହେଲେହେଁ ଷ୍ଟିଭେନ୍‌ସନ୍‌ଙ୍କ 'ଗଧସହ ଭ୍ରମଣ' ସ୍ୱେନ୍ ହେଡିନ୍‌ଙ୍କ 'ମୋର ଯାଯାବର ଜୀବନ', ଆଣ୍ଟାନେଦ୍‌ଙ୍କ 'ରାତିଗାଡ଼ି' ଏ୍ ଯାବତ୍ ବିଶ୍ୱର ଏକ ଏକ ସାର୍ଥକ ଭ୍ରମଣ ସାହିତ୍ୟରୂପେ ମାନ୍ୟତା ଲାଭ କରିଛି ।

ଜୀବନର ବିଶାଳତା ଓ ଜଗତର ବୈଚିତ୍ର୍ୟ ତଥା ରହସ୍ୟାତ୍ମକତାକୁ ଅନୁଭବ କରିବା କ୍ଷେତ୍ରରେ ଭ୍ରମଣ ସାହିତ୍ୟର ରହିଛି ବଳିଷ୍ଠ ଭୂମିକା । ହୃଦୟ ମଧ୍ୟରେ ସଞ୍ଚିତ ଅଳନ୍ଧୁକୁ ସଫାକରି ଏହା ନୂତନ ଆଲୋକର ପଥ ନିର୍ଦ୍ଦେଶ କରେ, ଜୀବନ୍‌କୁ ଦିଏ ପରିପୂର୍ଣ୍ଣତାର ରୂପ । ଏହି କାରଣରୁ ଆଧୁନିକ ଯୁଗରେ ଭ୍ରମଣ ସାହିତ୍ୟର ଗୁରୁତ୍ୱ ଉପଲବ୍‌ଧି କରାଯାଉଥିବାରୁ ତାହାକୁ ସାହିତ୍ୟର ଏକ ସ୍ୱତନ୍ତ୍ର ବିଭାଗ ରୂପେ ଅନୁମୋଦନ ମିଳିଛି ।

**ପର୍ଯ୍ୟଟନ ସାହିତ୍ୟ : ପୃଷ୍ଠଭୂମି** - ଓଡ଼ିଆ ସାହିତ୍ୟ ଜଗତରେ ପର୍ଯ୍ୟଟନ ସାହିତ୍ୟ ବିଭାଗଟି ବେଶ୍ କିଛି ଦିନର ପୁରୁଣା କଥା ନୁହେଁ । ଅବଶ୍ୟ ଆମ ପ୍ରାଚୀନ ସାହିତ୍ୟରେ ପର୍ଯ୍ୟଟନର କେତେକ ବିବରଣୀ ଦେଖିବାକୁ ମିଳେ । ଆଧୁନିକ ଅର୍ଥରେ ସେଗୁଡ଼ିକ ଯଥାର୍ଥ ପର୍ଯ୍ୟଟନ ସାହିତ୍ୟ ଅନ୍ତର୍ଭୁକ୍ତ ନୁହେଁ । ଇଂରାଜୀ ଶିକ୍ଷାର ବିସ୍ତାର, ଯୋଗାଯୋଗର ଉନ୍ନତି, ପତ୍ରପତ୍ରିକା ପ୍ରକାଶନ ଓ ସର୍ବୋପରି ବିଭିନ୍ନ କାରଣରୁ ଦେଶପର୍ଯ୍ୟଟନର ସୁଯୋଗ; ପର୍ଯ୍ୟଟନ ସାହିତ୍ୟ ସୃଷ୍ଟି ନିମିତ୍ତ ପୃଷ୍ଠଭୂମି ତିଆରି କରିଛି । ଓଡ଼ିଶା ସମ୍ପର୍କରେ ପ୍ରାଥମିକ ପର୍ଯ୍ୟାୟରେ ଯେଉଁ ଇତିହାସଗୁଡ଼ିକ ରଚିତ ହୋଇଥିଲା, ତାହା ମୁଖ୍ୟତଃ ପରୋକ୍ଷ ଜ୍ଞାନ ଆଧାରିତ ହୋଇଥିବାରୁ ସେଥିରୁ ପରିଭ୍ରମଣର ଏକ ସ୍ୱଷ୍ଟଚିତ୍ର ଉପଲବ୍ଧ ହେବା ସମ୍ଭବ ନୁହେଁ । ହଣ୍ଟର, ଷ୍ଟର୍ଲିଂ, ରାଜେନ୍ଦ୍ରଲାଲ ମିତ୍ର, ବର୍ଣ୍ଣିଲ୍, କନିଂହମ୍, ହୁଏନ୍‌ସାଂ ଓ ଫାହିୟାନ୍‌ଙ୍କ ଇତିହାସ, ପ୍ରତ୍ନତତ୍ତ୍ୱ, ଭୌଗୋଳିକ ବୃତାନ୍ତାଦି ଏହିପରି ପରୋକ୍ଷ ଜ୍ଞାନ ଉପରେ ଆଧାରିତ । ଏହାସତ୍ତ୍ୱେ ଓଡ଼ିଆ ପର୍ଯ୍ୟଟନ ସାହିତ୍ୟ ସୃଷ୍ଟି ମୂଳରେ ଏଗୁଡ଼ିକର ଅବଦାନ କମ୍ ନୁହେଁ । ପରବର୍ତ୍ତୀ କାଳରେ ଜଗବନ୍ଧୁ ସିଂହ, ପରମାନନ୍ଦ ଆଚାର୍ଯ୍ୟ, Duavta Barbosa, T.A.Bourey, Kittoe, G.F. reckie, Thomas Mothe, ସତ୍ୟନାରାୟଣ ରାଜଗୁରୁ, ବି.ସି.ରାୟ ଆଦି ଓଡ଼ିଶା ସଂପର୍କୀୟ କେତେକ ପ୍ରାମାଣିକ ତଥ୍ୟ ପ୍ରଦାନ କରିଛନ୍ତି । ଏହି ସମୟରେ ବିଶ୍ୱପର୍ଯ୍ୟଟନ ପରିପ୍ରେକ୍ଷୀରେ ଓଡ଼ିଶାର ଗୁରୁତ୍ୱ ବୃଦ୍ଧି ପାଇଛି । ଏହାର ପ୍ରାକୃତିକ ରୂପବିଭବ , ସାଂସ୍କୃତିକ ବୈଚିତ୍ର୍ୟ ଓ ଧାର୍ମିକ ଭାବ-ଭାବନା ବହୁ ବିଦେଶୀ ଓ ସ୍ୱଦେଶୀଙ୍କୁ ଆକୃଷ୍ଟ କରିଛି । ବଲ୍ଲଭାଚାର୍ଯ୍ୟ, ନିମ୍ବାର୍କ, ଶ୍ରୀଚୈତନ୍ୟ, ବୁଦ୍ଧ ଓ ମହାବୀରଙ୍କ ପରି ଧର୍ମପ୍ରଚାରକ ତଥା ମୌର୍ଯ୍ୟ ସମ୍ରାଟ୍ ଅଶୋକ ଓ ଗୁପ୍ତନରପତି ସମୁଦ୍ରଗୁପ୍ତଙ୍କ ପରି ସାମ୍ରାଜ୍ୟବାଦୀ ବିଭିନ୍ନ କାରଣରୁ ଓଡ଼ିଶାମାଟିରେ ପାଦ ଥାପିଛନ୍ତି । ଏତଦ୍‌ବ୍ୟତୀତ ଟଲେମି, ଫାହିୟାନ୍, ହୁଏନ୍‌ସାଂ, ଆଲ୍‌ବାରୁଣି, ମାର୍କପୋଲୋ ଏବଂ ଇବନ୍‌ବତୁତାଙ୍କ ପରି ବିଦେଶୀ ପର୍ଯ୍ୟଟକ ଓଡ଼ିଶା ଆଗମନ କରି ତା'ର ପ୍ରାଚୁର୍ଯ୍ୟ, ଧାର୍ମିକ ଉଦାରତା ଓ ସାଂସ୍କୃତିକ ବିଭବ ଦେଖି ଅଭିଭୂତ ହୋଇ ପଡ଼ିଛନ୍ତି । ସେହିମାନଙ୍କ ବିବରଣୀ ପ୍ରକାଶ ପାଇବାରେ ବିଶ୍ୱମାନଚିତ୍ରରେ ଓଡ଼ିଶାର ଗୁରୁତ୍ୱ ବୃଦ୍ଧିପାଇଛି ଏବଂ ବହୁ ଓଡ଼ିଆ ସେମାନଙ୍କ ଦ୍ୱାରା ପ୍ରେରଣା ଲାଭକରି ଓଡ଼ିଶାକୁ ବିଶ୍ୱଦରବାରରେ ପ୍ରତିଷ୍ଠିତ କରିବାର ଆଗ୍ରହ ପ୍ରକାଶ କରିଛନ୍ତି । ପରେ ପରେ ବିଭିନ୍ନ କାର୍ଯ୍ୟପାଇଁ ଓଡ଼ିଆମାନେ ଓଡ଼ିଶା ତଥା ଭାରତ ବାହାରକୁ ଯିବାର ସୁଯୋଗ ଲାଭକରି ସେମାନଙ୍କର ଅନୁଭୂତିକୁ କଳାତ୍ମକଭାବରେ ଲିପିବଦ୍ଧ କରିବାକୁ ଯେତେବେଳେ ଆଗ୍ରହ ପ୍ରକାଶ କରିଛନ୍ତି, ସେହିଠାରୁ ଆରମ୍ଭ ହୋଇଛି ଓଡ଼ିଆ ପର୍ଯ୍ୟଟନ ସାହିତ୍ୟର ନୂତନ ଦିଗନ୍ତ ।

**ପର୍ଯ୍ୟଟନ ସାହିତ୍ୟର ବିଭାଗୀକରଣ** - ପର୍ଯ୍ୟଟକର ଅନୁଧ୍ୟାନ, ସମାଜସଂପୃକ୍ତି, ବିଚାରବୋଧ ଓ ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ଏହାକୁ ମୁଖ୍ୟତଃ ସ୍ୱଦେଶାନୁଭୂତି

ମୂଳକ ଓ ବିଦେଶାନୁଭୂତିମୂଳକ - ଏହିପରି ଦୁଇଭାଗରେ ବିଭକ୍ତ କରାଯାଇପାରେ । ସ୍ୱଦେଶାନୁଭୂତିମୂଳକ ପର୍ଯ୍ୟଟନ ସାହିତ୍ୟ ମଧ୍ୟରେ ଓଡ଼ିଶା ତଥା ଭାରତ ଭ୍ରମଣ ଜନିତ ଅନୁଭୂତିକୁ ଅନ୍ତର୍ଭୁକ୍ତ କରାଯାଇପାରେ । ବିଂଶ ଶତକ ପୂର୍ବରୁ ଏହିପ୍ରକାର ପର୍ଯ୍ୟଟନ ସାହିତ୍ୟ ଥିଲା ମୁଖ୍ୟତଃ ପଦ୍ୟାଶ୍ରୟୀ । ବିଂଶ ଶତକ ପ୍ରାରମ୍ଭରେ ଏହି ପର୍ଯ୍ୟଟନ ସାହିତ୍ୟ ଗଦ୍ୟାଶ୍ରୟୀ ହେବା ସଙ୍ଗେ ସଙ୍ଗେ ଓଡ଼ିଶାର ଭୌଗୋଳିକ ସୀମା ଅତିକ୍ରମ କରି ଧୀରେ ଧୀରେ ଭାରତାଭିମୁଖୀ ହୋଇପଡ଼ିଲା ଓ ପରେ ପରେ ବିଶ୍ୱ ଦିଗରେ ଅଗ୍ରସର ହେବାକୁ ଲାଗିଲା । ସ୍ୱଦେଶ ଅନୁଭୂତିମୂଳକ ପର୍ଯ୍ୟଟନ ସାହିତ୍ୟର ଆତ୍ମିକ ବିଭବକୁ ଲକ୍ଷ୍ୟ କରି ଏହାକୁ ମୁଖ୍ୟତଃ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ । ଯଥା - (କ) କର୍ତ୍ତବ୍ୟ ପ୍ରଣୋଦିତ (ଖ) ଭ୍ରମଣ ଜନିତ ଓ ତୀର୍ଥାଟନ ସମ୍ପର୍କୀୟ ।

କର୍ତ୍ତବ୍ୟ ଅନୁରୋଧରେ କେତେକ ଓଡ଼ିଆ ଦେଶଭ୍ରମଣ କରିବାକୁ ଯାଇଥିବା ସମୟରେ, ସେହି ଦେଶର କେତେକ ବୈଶିଷ୍ଟ୍ୟ ତାଙ୍କ ହୃଦୟକୁ ଆନ୍ଦୋଳିତ କରିଛି ଏବଂ ଏହି ଆନ୍ଦୋଳନର ପରିପ୍ରକାଶ ଘଟିଛି କେତୋଟି ସାହିତ୍ୟ କୃତିରେ । ସୂର୍ଯ୍ୟକାନ୍ତ ଦାସଙ୍କ 'ନାଗାରାଇଜ', ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ 'ରାଜଭବନରୁ ହସ୍ତଲିପି' ଇତ୍ୟାଦି ଏହି ଜାତୀୟ କେତୋଟି କର୍ତ୍ତବ୍ୟ ପ୍ରଣୋଦିତ ପର୍ଯ୍ୟଟନ ସାହିତ୍ୟ । ଦୈନନ୍ଦିନ କାର୍ଯ୍ୟବ୍ୟସ୍ତତାରୁ ମୁକ୍ତି ପାଇବା ଉଦ୍ଦେଶ୍ୟରେ ତଥା ବିଭିନ୍ନ ସ୍ଥାନ ପରିଭ୍ରମଣ କରି ସାମୟିକ ଶାନ୍ତିଲାଭ ଆଶାରେ ବ୍ୟକ୍ତିବିଶେଷ ଦେଶ ପର୍ଯ୍ୟଟନକୁ ଅଗ୍ରାଧିକାର ଦେଇଥାନ୍ତି । ସ୍ଥାନ ବିଶେଷର ବିଶେଷତ୍ୱ ସେମାନଙ୍କ ହୃଦୟରେ ଭାବର ଯେଉଁ ହିଲ୍ଲୋଳ ସୃଷ୍ଟି କରିଥାଏ, ତାର ପରିପ୍ରକାଶ ପାଇଁ ସେମାନେ ଗ୍ରହଣ କରିଥାନ୍ତି ଏକ କଳାର ମାଧ୍ୟମ । ସେହି ଅନୁଭୂତିର କଳାତ୍ମକ ପ୍ରକାଶ ହେଉଛି ପର୍ଯ୍ୟଟନ ସାହିତ୍ୟ । ଗୋଲୋକ ବିହାରୀ ଧଳଙ୍କ 'ତାଜମହଲର ଦେଶେ', 'ଗଙ୍ଗାରୁ ଗୋଦାବରୀ'; କୁଞ୍ଜବିହାରୀ ଦାଶଙ୍କ 'ମୋ ସ୍ୱପ୍ନର କାଶ୍ମୀର' ଆଦି ହେଉଛି ଏହି ଶ୍ରେଣୀୟ ପର୍ଯ୍ୟଟନ ସାହିତ୍ୟ ।

ଓଡ଼ିଶାର ଆଧ୍ୟାତ୍ମିକ ପରମ୍ପରାରେ ତୀର୍ଥସ୍ଥାନ ପରିଭ୍ରମଣର ଗୁରୁତ୍ୱ ସର୍ବାଧିକ । ପାପ ପୁଣ୍ୟ, ଇହକାଳ-ପରକାଳ, ଗତି-ମୁକ୍ତି ଉପରେ ଥିବା ଅକଳ୍ପନୀୟ ବିଶ୍ୱାସ ଓ ଧାରଣା ମଣିଷକୁ ତୀର୍ଥସ୍ଥାନ ଭ୍ରମଣ କରିବା ନିମିତ୍ତ ପ୍ରଚୋଦିତ କରିଥାଏ । ହୃଦୟର ଶାନ୍ତି ଓ ମନର ପବିତ୍ରତା ପାଇଁ ଏହି ଧର୍ମଭୀରୁ ମଣିଷ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନ ପରିଭ୍ରମଣ କରେ ଏବଂ ତା'ର ସେହି ଆଧ୍ୟାତ୍ମିକ ବିଶ୍ୱାସକୁ ପରିପ୍ରକାଶ ନିମିତ୍ତ ବ୍ୟାକୁଳ ହୋଇ ଉଠେ । ହୃଦୟର ଏହି ପ୍ରେରଣାରୁ ଯେଉଁ ସାହିତ୍ୟଟି ଜନ୍ମଲାଭ କରେ, ସେଥିରେ ପୂରି ରହିଥାଏ ଯୁଗଯୁଗର ବିଶ୍ୱାସବୋଧ ଓ ଆଧ୍ୟାତ୍ମିକ ଭାବଭାବନା । ଅନନ୍ତ ନାରାୟଣ ସେନ୍‌ଙ୍କ 'ସେତୁବନ୍ଧ ରାମେଶ୍ୱର', ପଣ୍ଡିତ କୁଳମଣି ଦାସଙ୍କ 'ହିମାଳୟ ପଥେ', ଆର୍ତ୍ତତ୍ରାଣ ମିଶ୍ରଙ୍କ 'ଦେବଭୂମି ଦାକ୍ଷିଣାତ୍ୟ' ଆଦି ଏହି ଶ୍ରେଣୀୟ ପର୍ଯ୍ୟଟନ ସାହିତ୍ୟାନ୍ତର୍ଭୁକ୍ତ ।

## ଓଡ଼ିଆ ପର୍ଯ୍ୟଟନ ସାହିତ୍ୟ

ଭ୍ରମଣ ସାହିତ୍ୟ ଉଭୟ ପଦ୍ୟ ଓ ଗଦ୍ୟରେ ରଚିତ ହେଲେହେଁ, ଗଦ୍ୟରେ ରଚିତ ଭ୍ରମଣ ସାହିତ୍ୟ ଅଧିକ ଜନପ୍ରିୟ ଓ ହୃଦୟଗ୍ରାହୀ । ଆଧୁନିକ ଯୁଗର ଅଧିକାଂଶ ଭ୍ରମଣ ସାହିତ୍ୟ ଗଦ୍ୟରେ ରଚିତ । ବିଂଶ ଶତକରେ ଯଥାର୍ଥତଃ ଓଡ଼ିଆ ଭ୍ରମଣ ସାହିତ୍ୟର ଜନ୍ମ, ଯଦିଓ ଊନବିଂଶ ଶତକର ଶେଷପାଦରେ ଅଳ୍ପ କେତେକ ପଦ୍ୟ ଓ ଗଦ୍ୟରେ ଭ୍ରମଣ ସାହିତ୍ୟ ପରିଲକ୍ଷିତ ହୋଇଥାଏ । ଗୋବିନ୍ଦ ରଥଙ୍କ କଲିକତା ବର୍ଣ୍ଣନା (୧୮୭୫), କଟକ ଦର୍ଶନ (୧୮୮୫) ଲାଟ୍ ଦର୍ଶନ ଆଦି ବର୍ଣ୍ଣନାତ୍ମକ ଦୀର୍ଘ କବିତା । କେବଳ ବର୍ଣ୍ଣନା ବା ବିବରଣୀ ପ୍ରଦାନ କରାଗଲେ ତାହା ଯଥାର୍ଥ ଭ୍ରମଣସାହିତ୍ୟ ହୋଇ ନ ପାରେ । ସେହି ଦୃଷ୍ଟିରୁ ଦାମୋଦର ପଟ୍ଟନାୟକ 'କପିଳାସ କ୍ଷେତ୍ର' (୧୮୮୫), ବ୍ୟାସକବି ଫକୀରମୋହନଙ୍କ 'ଉତ୍କଳ ଭ୍ରମଣ' (୧୮୯୨), ରାଧାନାଥଙ୍କ 'ଚିଲିକା', ବାସୁଦେବ ସୁଢଳଦେବଙ୍କ 'ଚିତ୍ରୋତ୍ପଳା' ବା ଚିନ୍ତାମଣି ମହାନ୍ତିଙ୍କ 'ଧରାକୋଟ ଦର୍ଶନ' ଆଦିକୁ ଭ୍ରମଣ ସାହିତ୍ୟ ପର୍ଯ୍ୟାୟଭୁକ୍ତ କରିପାରିବା ନାହିଁ । ରାଧାନାଥଙ୍କ 'ଟିପାଖାତା'ରୁ ବହୁସ୍ଥାନର ବିବରଣୀ ମିଳିପାରିବ । ତାହା କ'ଣ ବାସ୍ତବରେ ଭ୍ରମଣ ସାହିତ୍ୟ ? ଭ୍ରମଣ ସାହିତ୍ୟରେ ଲେଖକର ଅନୁଭୂତି, ଚିନ୍ତାଧାରା ରସଘନ ଭାବରେ ପ୍ରକାଶିତ ହେବା ଉଚିତ । ଏହି ଦୃଷ୍ଟିରୁ 'ଭ୍ରମଣକାରୀର ପତ୍ର' ବା 'ବାମଣ୍ଡା' କିଛି ପରିମାଣରେ ଭ୍ରମଣ ସାହିତ୍ୟୋପଯୋଗୀ । କିନ୍ତୁ ଶଶିଭୂଷଣ ରାୟଙ୍କ 'ଦାକ୍ଷିଣାତ୍ୟ ଭ୍ରମଣ' (୧୮୯୬) ଏକ ସାର୍ଥକ ଭ୍ରମଣ ସାହିତ୍ୟ । ବିଦେଶ ଭ୍ରମଣ ସମୟରେ ବିଭିନ୍ନ ସ୍ଥାନ ଭ୍ରମଣଜନିତ ବିଚିତ୍ର ଅନୁଭୂତି ଓ ପ୍ରକୃତିର ରମଣୀୟ ଶୋଭା ବର୍ଣ୍ଣନାରେ ପୁସ୍ତକଟି ଅତ୍ୟନ୍ତ ଭାବଗର୍ଭକ । ଏତଦ୍‌ବ୍ୟତୀତ ବିଭିନ୍ନ ସ୍ଥାନର ତଥ୍ୟ ପ୍ରଦାନରେ ଏହା ଏକ ଅମୂଲ୍ୟ ଗ୍ରନ୍ଥ । ସତେଯେପରି ପ୍ରକୃତି ତାର ନିଜ କଥା ଏଥିରେ କହି ଚାଲିଛି । 'ଉତ୍କଳର ଋତୁଚିତ୍ର', 'ଉତ୍କଳର ପ୍ରକୃତି', 'ଆଧୁନିକ ତାଳଚେର', 'ବଡ଼ମ୍ବା ପ୍ରକୃତି' ଆଦିରେ ବିଭିନ୍ନ ସ୍ଥାନର କିଛି କିଛି ବିବରଣୀ ପ୍ରଦତ୍ତ ହୋଇଛି । 'ଚିକିଟିରେ ଚାରିଦିନ' ତାଙ୍କର ଅନ୍ୟ ଏକ ଭ୍ରମଣ ଅନୁଭୂତି ଗ୍ରନ୍ଥ । ଶଶିଭୂଷଣଙ୍କ ଭ୍ରମଣସାହିତ୍ୟରେ ଭାରତର ବିଭିନ୍ନ ସ୍ଥାନ ଯଥା - ଅଯୋଧ୍ୟା, ଦିଲ୍ଲୀ, ବାରାଣସୀ, ଆଗ୍ରା, ହରିଦ୍ୱାର, ଲକ୍ଷ୍ନୌ, ମଥୁରା, ବୃନ୍ଦାବନ, ଦାର୍ଜିଲିଂ ଆଦି ସ୍ଥାନ ଭ୍ରମଣର ଅନୁଭୂତିକୁ ଚମତ୍କାର ଭାବରେ ପ୍ରକାଶ କରିଛନ୍ତି । ଭାରତର ବିଭିନ୍ନ ସ୍ଥାନ ଭ୍ରମଣଜନିତ ଅନୁଭୂତିକୁ ଅନ୍ୟ ଯେଉଁମାନେ କଳାତ୍ମକ ଭାବରେ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି, ସେମାନଙ୍କ ମଧ୍ୟରୁ ଫକୀରମୋହନଙ୍କ 'ଉଆଲଟେୟାର ଦର୍ଶନ', ଅନନ୍ତ ନାରାୟଣ ସେନ୍‌ଙ୍କ 'ସେତୁବନ୍ଧ ରାମେଶ୍ୱର', ଚନ୍ଦ୍ରଶେଖର ନନ୍ଦଙ୍କର 'ଦାର୍ଜିଲିଂ', କେଶବଚନ୍ଦ୍ର ପତିଙ୍କ 'ନକ୍‌ସାଲବାଡ଼ି', କୃଷ୍ଣଚନ୍ଦ୍ର ସେନ୍‌ଙ୍କ 'ବାରାଣସୀ ଅଭିମୁଖେ', ଶ୍ରୀପତି ମିଶ୍ରଙ୍କ 'ଶିମଳା ପୁସ୍ତକ', ଶ୍ରୀବସ୍ତ ପଣ୍ଡାଙ୍କ 'ତୀର୍ଥଯାତ୍ରା' ଆଦି ପ୍ରଧାନ । ଜଳନ୍ଧର ଦେବ ତାଙ୍କ ଡାଏରୀର କିୟଦଂଶରେ କଲିକତାରୁ ରେଲ୍‌ଯୋଗେ ବିଜୟନଗର

ଯାତ୍ରା କରିବା ଅବକାଶରେ ବିଭିନ୍ନ ଅନୁଭୂତିକୁ ପ୍ରକାଶ କରିଛନ୍ତି । ଏତଦ୍‌ବ୍ୟତୀତ ମାନ୍ଦ୍ରାଜ, ସେତୁବନ୍ଧର ରାମେଶ୍ୱର, ଉଆଲଟେୟାର, ମଦୁରା ଆଦି ଦକ୍ଷିଣ ଭାରତର ବିଭିନ୍ନ ସ୍ଥାନର ବିବରଣୀ ଏଥିରେ ଲିପିବଦ୍ଧ । ସ୍ୱାସ୍ଥ୍ୟ ପରିବର୍ତ୍ତନ ନିମିତ୍ତ ସିଂହଳ ଯାଇଥିବା ସମୟରେ ତାର ଐତିହାସିକ ଓ ଭୌଗୋଳିକ ଚିତ୍ରକୁ ମଧ୍ୟ ସେ ଚମତ୍କାର ଭାବେ ପ୍ରକାଶ କରିଛନ୍ତି । କୁଳମଣି ଦାଶଙ୍କ 'ହିମାଳୟ ପଥେ' ପୁସ୍ତକରେ ବିଭିନ୍ନ ଦର୍ଶନୀୟ ସ୍ଥାନର ବିବରଣୀ, ପ୍ରାକୃତିକ ଦୃଶ୍ୟରାଜି ରୂପଲାଭ କରିଛି । ଋଷିକେଶ, ଡେରାଡୁନ, ଲଛମନଝୋଲା ଆଦିର ବାସ୍ତବ ଓ ପ୍ରାକୃତିକ ଦୃଶ୍ୟରେ ଏହା ପରିପୂର୍ଣ୍ଣ । ପଣ୍ଡିତ ଗୋପବନ୍ଧୁ ଦାସ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଆଦର୍ଶରେ ଗଠିତ 'ଶାନ୍ତିନିକେତନ' ଦର୍ଶନ ପରେ ଯେଉଁ ଅନୁଭୂତି ଲାଭ କରିଥିଲେ ତାହା ସେ 'ବୋଲ୍‌ପୁର ଶାନ୍ତିନିକେତନ'ରେ ପ୍ରକାଶ କରିଛନ୍ତି । ଗୋଦାବରୀଶ ମିଶ୍ରଙ୍କ 'କୋଣାର୍କ ଦର୍ଶନ' ପ୍ରବନ୍ଧରେ କୋଣାର୍କ ଦର୍ଶନ ଜନିତ ଅନୁଭୂତିର ସଫଳ ପରିପ୍ରକାଶ ଘଟିଛି । ୧୯୨୦-୩୭ ମଧ୍ୟରେ ଚିନ୍ତାମଣି ମହାନ୍ତିଙ୍କ 'କଟକରେ ଚାରିଦିନ', 'ପୁଣ୍ୟପୀଠ', 'ଚିଲିକା ଭ୍ରମଣ', 'କଳାହାଣ୍ଡି ଭ୍ରମଣ', 'ଲାଞ୍ଜିଗଡ଼ ଭ୍ରମଣ', 'ଜୟପୁର' ଆଦି ଗ୍ରନ୍ଥ ରଚନା କରି ସେଥିରେ ସେହି ସ୍ଥାନମାନଙ୍କର ପ୍ରାକୃତିକ ସୌନ୍ଦର୍ଯ୍ୟ, ଜନଜୀବନ, ସାମାଜିକ ବିଚାରବୋଧ ତଥା ରାଜବଂଶାବଳୀର ବିବରଣୀ ପ୍ରଦାନ କରାଯାଇଥିଲେହେଁ ଏହା ତଥ୍ୟପ୍ରଧାନ ହୋଇ ପଡ଼ିଛି । ଭ୍ରମଣର ବୈଚିତ୍ର୍ୟ ଓ ବିସ୍ମୟବୋଧ ଏଥିରେ ଦେଖିବାକୁ ମିଳେ ନାହିଁ ।

ଇଂରାଜୀ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ କେତେକ ଓଡ଼ିଆ ଉଚ୍ଚଶିକ୍ଷା ଲାଭ ଉଦ୍ଦେଶ୍ୟରେ ବା ପରିଭ୍ରମଣ ଉଦ୍ଦେଶ୍ୟରେ ପାଶ୍ଚାତ୍ୟ ଦେଶମାନଙ୍କୁ ଗମନ କରି ସେମାନଙ୍କର ଅନୁଭୂତିକୁ ପ୍ରକାଶ କରିଛନ୍ତି । ୧୯୪୭ ମସିହା ପୂର୍ବରୁ ଏହି ବିଦେଶ ଅନୁଭୂତି ସଂପର୍କୀୟ ପୁସ୍ତକମାନଙ୍କର ସଂଖ୍ୟା ନିତାନ୍ତ ସ୍ୱଳ୍ପ । ପୁଣି ଯେଉଁମାନେ ବିଦେଶ ଭ୍ରମଣ କରିବାର ସୁଯୋଗ ଲାଭ କରିଛନ୍ତି, ସେମାନେ ସମସ୍ତେ ନିଜର ଅନୁଭୂତିକୁ ପ୍ରକାଶ କରିବାକୁ ଇଚ୍ଛା ପ୍ରକାଶ କରି ନାହାନ୍ତି । ଯେଉଁ ମୁଷ୍ଟିମେୟ କେତେକ ବ୍ୟକ୍ତିବିଶେଷଙ୍କ ଅନୁଭୂତି କାହାଣୀ ପତ୍ର, ପ୍ରବନ୍ଧ ଆଦି ମାଧ୍ୟମରେ ଦେଖିବାକୁ ମିଳେ, ସେମାନଙ୍କ ମଧ୍ୟରୁ ଶ୍ରୀ ମହେଶ ଚନ୍ଦ୍ର ରାୟଙ୍କ ଜାପାନ ପ୍ରବାସୀଙ୍କର ପତ୍ର, ଟୋକିଓରୁ କଲିକତା ଆଦି ପ୍ରଧାନ । ଶୈଳବାଳା ଦେବୀଙ୍କର 'ବିଲାତପ୍ରବାସ'ରେ ସେଠାରେ ତାଙ୍କର ଅନୁଭୂତି, ଇଂରେଜ ଜାତିର ରୀତିନୀତି, ସମୟ ସଚେତନତା ଆଦି ସଂପର୍କରେ ବର୍ଣ୍ଣନା କରାଯାଇଛି । ଶ୍ରୀ କୈଳାସ ଚନ୍ଦ୍ର ଭରତଙ୍କ 'ଜାପାନ ଯାତ୍ରା'ରେ ଜାପାନର ରାଜବଂଶ, ଜାପାନୀମାନଙ୍କର ଶିଳ୍ପବିଦ୍ୟା ଓ କଳାବିଦ୍ୟା ସଂପର୍କରେ ସୂଚନା ପ୍ରଦାନ କରାଯାଇଥିଲେହେଁ ଭ୍ରମଣ ସାହିତ୍ୟର ରମ୍ୟତା ଏଥିରେ ପରିଲକ୍ଷିତ ହୋଇ ନ ଥାଏ । ଭୁବନାନନ୍ଦ ଦାସଙ୍କର 'ବିଲାତପତ୍ର'ରେ ଇଂରେଜ ଜାତିର ଆଚାର-ବ୍ୟବହାର, ଚାଲିଚଳଣି, ପାରିବାରିକ ସଂପର୍କ, ଆଦର୍ଶବତ୍ତା, ଚରିତ୍ର ଓ ରୀତିନୀତି

ସଂପର୍କରେ ଉଲ୍ଲେଖ ରହିଛି । ଇଂରେଜ ଜାତିର ଚାରିତ୍ରିକ ଅନୁଶୀଳନ କ୍ଷେତ୍ରରେ ଏହା ଏକ ଉତ୍କୃଷ୍ଟ ଗ୍ରନ୍ଥ । ରାମକୃଷ୍ଣ ତ୍ରିପାଠୀଙ୍କର 'ମେସୋପଟାମିଆ ଯାତ୍ରା'ରେ ବିଦେଶଯାତ୍ରାର ବିବିଧ ଅନୁଭୂତିକୁ ପ୍ରକାଶ କରାଯିବାର ଉଦ୍ୟମ ହୋଇଛି । ପରବର୍ତ୍ତୀ ସମୟରେ ରଚିତ ଅନ୍ନଦାଶଙ୍କର ରାୟଙ୍କର 'ବିଲାତୀ ଚିଠି', ପ୍ରାଣକୃଷ୍ଣ ପରିଜାଙ୍କର 'କେମ୍ବ୍ରିଜ ଅଧିବାସ', ନୃସିଂହ ଚରଣ ମହାନ୍ତିଙ୍କର 'ପଶ୍ଚିମ ପଥେ' ଆଦିରେ ବିଦେଶ ଭ୍ରମଣଜନିତ ଅନୁଭୂତି ବର୍ଣ୍ଣିତ ହୋଇଥିଲେହେଁ ଏହା ବହୁ ପରିମାଣରେ ବିବରଣୀ ପ୍ରଧାନ ଓ କଳାମୂଲ୍ୟ ରହିତ । ଯେଉଁ ପ୍ରକାର ଅନୁଭୂତି ଓ କଳାପାଟବତା ଗୋଟିଏ ରଚନାକୁ ରସସ୍ନିଗ୍ଧ ଏବଂ ମନୋଜ୍ଞ କରିପାରେ, ଏହି ରଚନାଗୁଡ଼ିକରେ ତାର ଅଭାବ ପରିଲକ୍ଷିତ ହୋଇଥାଏ । ଅବଶ୍ୟ ପ୍ରାଣକୃଷ୍ଣ ପରିଜାଙ୍କ ରଚନାରେ କିଛି ପରିମାଣରେ କଳାଗତ ମୂଲ୍ୟ ରହିଛି ।

ସ୍ୱାଧୀନତା ପୂର୍ବରୁ ରଚିତ ହୋଇଥିବା ଭ୍ରମଣ କାହାଣୀ ମଧ୍ୟରେ ଡଃ ମାୟାଧର ମାନସିଂହଙ୍କ 'ପଶ୍ଚିମ ପଥିକ' ଏକ ସ୍ୱତନ୍ତ୍ର ଆସନ ଦାବି କରେ । ଗଳ୍ପ, ଉପନ୍ୟାସପରି ଏହି ଭ୍ରମଣ ଗ୍ରନ୍ଥଟି ଆମୋଦଦାୟକ । ଲେଖକଙ୍କ ଅନୁଭୂତି ଏପରି ରସପୂର୍ଣ୍ଣ ଓ କାବ୍ୟିକ ରୀତିରେ ବର୍ଣ୍ଣିତ ଯେ ଥରେ ପୁସ୍ତକଟି ଧରିଲେ ଶେଷ ନ କରି ରହିହୁଏ ନାହିଁ । ଏଥିରେ ସେ ଦେଶର ଶିକ୍ଷାପଦ୍ଧତି, ଜୀବନଧାରା, ସଂସ୍କୃତି, ଆଦର୍ଶବତ୍ତା, ସୁଖ-ଦୁଃଖ, କର୍ମପ୍ରବଣତା ବେଶ୍ ଚମତ୍କାର ଭାବେ ବର୍ଣ୍ଣିତ । ତାଙ୍କର 'ମହାନଦୀରେ ଜ୍ୟୋତ୍ସ୍ନା ବିହାର' ଏବଂ 'କମଳାୟନ' କାବ୍ୟର 'ପୋର୍ଟ ସୟଦର' ବର୍ଣ୍ଣନାରୁ ତାଙ୍କ ଭ୍ରାମ୍ୟମାଣ ଜୀବନର କେତେକ ପରିଚୟ ଦେଖିବାକୁ ମିଳେ ।

ସ୍ୱାଧୀନତା ପରବର୍ତ୍ତୀ ସମୟରେହିଁ ବାସ୍ତବରେ ଓଡ଼ିଆ ଭ୍ରମଣ ସାହିତ୍ୟ ସମୃଦ୍ଧି ଲାଭ କରିଛି । ଭାରତ ସରକାରଙ୍କ ବୃତ୍ତିଲାଭ କରି ବା ଆଲୋଚନା ଚକ୍ରରେ ଅଂଶ ଗ୍ରହଣ ପାଇଁ ଅଥବା ଭ୍ରମଣ ଉଦ୍ଦେଶ୍ୟରେ କିମ୍ବା କୌଣସି ରାଜନୀତିକ କାର୍ଯ୍ୟ ନିମିତ୍ତ ଓଡ଼ିଶାରୁ ବହୁ ବିଶିଷ୍ଟ ବ୍ୟକ୍ତି ବିଭିନ୍ନ ଦେଶକୁ ଯାତ୍ରା କରିଛନ୍ତି । ଏମାନଙ୍କ ମଧ୍ୟରେ ଅଛନ୍ତି ଶିକ୍ଷାବିତ୍, ଅଧ୍ୟୟନ ପିପାସୁ, ଐତିହାସିକ, ଦାର୍ଶନିକ, ସାହିତ୍ୟିକ, ରାଜନୀତିକ, ମନସ୍ତାତ୍ତ୍ୱିକ, ବୈଜ୍ଞାନିକ, ସାମ୍ବାଦିକ, ସମାଜସେବୀ ଇତ୍ୟାଦି । ସେମାନେ ସେମାନଙ୍କର ନିଜ ଦୃଷ୍ଟିକୋଣରୁ ପରିଭ୍ରମଣ ଜନିତ ଅନୁଭୂତିକୁ ରୂପ ଦେଇଥିବାରୁ ଭ୍ରମଣ କାହାଣୀରେ ବୈଚିତ୍ର୍ୟ ପରିଲକ୍ଷିତ ହୋଇଛି ।

ଡଃ ଶ୍ରୀରାମଚନ୍ଦ୍ର ଦାଶ ୧୯୫୩ ମସିହାରେ ଉଚ୍ଚଶିକ୍ଷା ନିମିତ୍ତ ଜର୍ମାନ୍ ଯାତ୍ରା କରି ସେଠାକାର ସ୍ୱାଧୀନ ବାତାବରଣ ମଧ୍ୟରେ ଦେଢ଼ବର୍ଷକାଳ ରହି ଯେଉଁ ଅନୁଭୂତି ଲାଭ କରିଥିଲେ, ତାହାକୁ ସେ ପ୍ରକାଶ କରିଛନ୍ତି ତାଙ୍କ ପୁସ୍ତକ 'ଇଉରୋପରେ ମୋ ଅନୁଭୂତି'ରେ । ଜର୍ମାନ୍‌ର ବିଭିନ୍ନ ବିଶ୍ୱବିଦ୍ୟାଳୟ, ପଶ୍ଚିମ ଓ ପୂର୍ବ ବର୍ଲିନ୍‌ର ସାମାଜିକ, ସାଂସ୍କୃତିକ ଅବସ୍ଥା, ଖାଦ୍ୟପେୟ, ଶିକ୍ଷାପ୍ରଣାଳୀ, ଜର୍ମାନ୍‌ବାସୀଙ୍କ କର୍ମପ୍ରବଣତା, ଆଦର୍ଶବତ୍ତା ଓ ସେଠାକାର

ବିଭିନ୍ନ ଦର୍ଶନୀୟ ସ୍ଥାନ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରକାଶ କରିଛନ୍ତି ଏହି ପୁସ୍ତକଟିରେ । ସରଳଭାଷା ଏବଂ ଚମତ୍କାର ବର୍ଣ୍ଣନା ଗ୍ରନ୍ଥଟିକୁ ସୁଖପାଠ୍ୟ କରିପାରିଛି । ବିଶିଷ୍ଟ ଶିକ୍ଷାବିତ୍ ଡଃ ସଦାଶିବ ମିଶ୍ର ୧୯୫୮ ମସିହାରେ ଆମେରିକା ଯାଇଥିବା ସମୟରେ ସେଠାକାର ଅନୁଭୂତିକୁ ଲିପିବଦ୍ଧ କରିଛନ୍ତି 'ମାର୍କିନ୍ ପରିକ୍ରମା' ଗ୍ରନ୍ଥରେ । ଯାତ୍ରାରମ୍ଭଠାରୁ ରୋମ୍‌ରେ ପହଞ୍ଚିବା, ଆମେରିକାର ଶିକ୍ଷାପରିଷଦରେ ଯୋଗଦାନ, ବିଭିନ୍ନ ସ୍ଥାନ ପରିଭ୍ରମଣ, ଆମେରିକାର କଳା-ଗୋରା ଭେଦ; ନାଏଗ୍ରା, ରଚେଷ୍ଟର, ଆଣ୍ଟିଅକ୍ କଲେଜ୍ ଡେଟ୍ରଇଟ୍, ମାଉଣ୍ଟ ପ୍ଲେଜାଣ୍ଟ, ସିକାଗୋ, ସାନ୍‌ଫ୍ରାନ୍‌ସିସ୍କୋ, ଗ୍ରାଣ୍ଡ୍ କାନିୟନ୍, ଫିଲାଡେଲଫିଆ, ପିଟ୍‌ସବର୍ଗ ଆଦି ସ୍ଥାନର ବିବରଣୀ ତଥା ଆମେରିକାବାସୀଙ୍କ ଜୀବନଯାପନ ପ୍ରଣାଳୀ, ଲୋକମାନଙ୍କର ଆଚାର-ବ୍ୟବହାର, ଚଳଚଞ୍ଚଳତା, ପ୍ରାଚୁର୍ଯ୍ୟ, ଅସହାୟତା, ଶୃଙ୍ଖଳାଜ୍ଞାନ, ଶିକ୍ଷାପଦ୍ଧତି ଆଦି ସମ୍ପର୍କରେ ଚମତ୍କାର ବିବରଣୀ ପ୍ରଦାନ କରିଛନ୍ତି । ଆମେରିକା ସଂପର୍କୀୟ ବହୁ ପ୍ରାମାଣିକ ବିବରଣୀ ଯୋଗୁଁ ଗ୍ରନ୍ଥଟିର ଐତିହାସିକ ମୂଲ୍ୟ ସ୍ୱୀକୃତ ।

ଡଃ କୁଞ୍ଜବିହାରୀ ଦାଶଙ୍କ ଅନ୍ୟାନ୍ୟ ରଚନା ପରି ଭ୍ରମଣ ସାହିତ୍ୟଗୁଡ଼ିକ ମଧ୍ୟ ରସସ୍ନିଗ୍ଧ । ଅନୁଭୂତିର ନିବିଡ଼ତା ତାଙ୍କ ଭ୍ରମଣ ସାହିତ୍ୟଗୁଡ଼ିକୁ ସ୍ୱାଦ୍ୟ ଓ କାଳଜୟୀ କରିପାରିଛି । କେବଳ ଗଦ୍ୟରେ ନୁହେଁ, କେତେକ କବିତାରେ ମଧ୍ୟ ତାଙ୍କର ଏହି ଭ୍ରମଣ ଅନୁଭୂତି ଲିପିବଦ୍ଧ । ବାଗ୍ରା, ଡୁଡୁମା ଓ କଙ୍କାଳର ଲୁହରେ ପ୍ରଥମେ ଭ୍ରାମ୍ୟମାଣ ମନର ଯେଉଁ ପରିପ୍ରକାଶ ଘଟିଥିଲା, ତାର ପରିପୁଷ୍ଟ ରୂପ ଦେଖିବାକୁ ମିଳେ ଲଙ୍କାଯାତ୍ରା, ମୋ ସ୍ୱପ୍ନର କାଶ୍ମୀର, ପଥ ଓ ପଥିକ, ଆମେରିକାରୁ ୟୁରୋପ, ଆଫ୍ରିକା; ଦୁଇଦିଗନ୍ତର ଆକାଶ, ଆମେରିକା ପୁନଶ୍ଚ ଆଦି ଭ୍ରମଣ ଗ୍ରନ୍ଥଗୁଡ଼ିକରେ । 'ମୋ ସ୍ୱପ୍ନର କାଶ୍ମୀର'ରେ କାଶ୍ମୀରର ସାମାଜିକ ଓ ସାଂସ୍କୃତିକ ଜୀବନ, ତାର ଇତିହାସ, ପ୍ରାକୃତିକ ଦୃଶ୍ୟାବଳୀ, ନାରୀଜୀବନର ଚିତ୍ର, କୃଷକମାନଙ୍କର ଅବସ୍ଥାଦିର ଚିତ୍ରଣ ସମୟରେ ଯେଉଁଠାରେ ସେ ଭାବପ୍ରବଣ ହୋଇପଡ଼ିଛନ୍ତି, ସେଠାରେ ତାଙ୍କ ହୃଦୟରୁ କବିତାର ଧାରା ଝରିଆସିଛି । ଆବେଗ ଓ ବାସ୍ତବତାର ସୁ-ସମନ୍ୱୟ ଘଟିଛି ଏଥିରେ । 'ଲଙ୍କାଯାତ୍ରା'ରେ ଶ୍ରୀଲଙ୍କା ଯାତ୍ରାର ବିଚିତ୍ର ଅନୁଭୂତି, ସେଠାକାର ଜନଜୀବନ, ସାମାଜିକ ଅବସ୍ଥା, ଦାରିଦ୍ର୍ୟ, ପ୍ରାକୃତିକ ଦୃଶ୍ୟାବଳୀର ସୁନ୍ଦର ବର୍ଣ୍ଣନା ରହିଛି । 'ପଥ ଓ ପଥିକ'ରେ ଆଠଟି ଭ୍ରମଣ ବୃତ୍ତାନ୍ତ ସଂଯୋଜିତ । ଏଥିରୁ ଲେଖକଙ୍କର ପ୍ରକୃତି ପ୍ରୀତି, ସହଯାତ୍ରୀମାନଙ୍କ ସମ୍ପର୍କରେ ଟିପ୍‌ପଣୀ ଓ ବିଚିତ୍ର ଅନୁଭୂତି ପ୍ରକାଶିତ । 'ଦୁଇଦିଗନ୍ତର ଆକାଶ'ରେ ସିମଳା ଓ ଅନ୍ୟକେତେକ ସ୍ଥାନର ପ୍ରାକୃତିକ ସୁଷମା, ଅବସ୍ଥିତି, ଦର୍ଶନୀୟ ସ୍ଥାନ ତଥା ସାହିତ୍ୟିକ, ସାଂସ୍କୃତିକ ଓ ଐତିହାସିକ ଘଟଣାବଳୀକୁ ସ୍ଥାନ ଦେଇଛନ୍ତି । 'ଆମେରିକାରୁ ଇଉରୋପ, ଆଫ୍ରିକା' ଗୋଟିଏ ବିଶାଳ ଗ୍ରନ୍ଥ । ଆମେରିକା, ଇଉରୋପ ଏବଂ ଆଫ୍ରିକା ଭ୍ରମଣ ସମୟରେ (ଜୁନ୍ ୧୯୬୬ରୁ ଅଗଷ୍ଟ ୧୯୬୭) ଯେଉଁ ଅନୁଭୂତି ଲାଭ କରିଥିଲେ, ତାହାକୁ ସୁସଜ୍ଜିତ କରି ଏହି ବିରାଟ ଭ୍ରମଣ ପୁସ୍ତକଟି ରଚନା

କରିଛନ୍ତି । ଏଥିରେ ସେ ଯେପରି ବିଭିନ୍ନ ଦେଶର ଲୋକଚରିତ୍ର ଅଧ୍ୟୟନ, ସ୍ଥାନର ପ୍ରାକୃତିକ ସୁଷମାର ଅବତାରଣା, ଜନସାଧାରଣଙ୍କର ସାଂସ୍କୃତିକ ଓ ସାମାଜିକ ଜୀବନଚିତ୍ର ତଥା ବିଭିନ୍ନ ଦେଶ ଏବଂ ସ୍ଥାନର ଐତିହାସିକ ବିବରଣୀ ପ୍ରଦାନ କରିଛନ୍ତି, ସେଥିରୁ ତାଙ୍କ ଅନ୍ୱେଷାବୋଧର ଯଥାର୍ଥ ପରିଚୟ ମିଳେ । ବିଦଗ୍ଧ ରସିକତା ସହିତ ବିଭିନ୍ନ ତତ୍ତ୍ୱ ଓ ତଥ୍ୟର ଅପୂର୍ବ ସମାବେଶ ଘଟିଛି ଏହି ପୁସ୍ତକଟିରେ । ଇଉରୋପର ବିଭିନ୍ନ ସ୍ଥାନ, ମେଳା-ମହୋତ୍ସବ, ଆମୋଦ-ପ୍ରମୋଦ, ରୂପ ବୈଚିତ୍ର୍ୟ; ତିନୋଟି ଦେଶର ଅଭିଜ୍ଞତା - ସବୁ ଯେପରି ଜୀବନ୍ତ ଓ ସତେଜ ଏଥିରେ । 'ଆମେରିକା ପୁନଶ୍ଚ'ରେ ଆମେରିକାର ଭିନ୍ନ ଏକ ରୂପ ପ୍ରକାଶିତ । ଆମେରିକାବାସୀଙ୍କ ପ୍ରାଚୁର୍ଯ୍ୟ, ଶୃଙ୍ଖଳା, ସମୟାନୁବର୍ତ୍ତିତା କବିଙ୍କୁ ଆକୃଷ୍ଟ କରିଛି । ଯୁବସମ୍ପ୍ରଦାୟର ଅସହାୟତା ତାଙ୍କୁ ଦୁଃଖ ଦେଇଛି । ଭାରତୀୟ ପାରିବାରିକ ସ୍ନେହ-ସମ୍ପର୍କ ସେ ଖୋଜି ପାଇ ନାହାନ୍ତି । ମାତ୍ର ଜୀବନପାଇଁ ଯେଉଁ ପ୍ରାଚୁର୍ଯ୍ୟର ଆବଶ୍ୟକତା, ତାହା ସେଠାରେ ସୁଲଭ । ଡଃ ଦାଶଙ୍କ ସ୍ୱାଭାବିକ ବର୍ଣ୍ଣନାଶୈଳୀ ତାଙ୍କର ଭ୍ରମଣ ଗ୍ରନ୍ଥଗୁଡ଼ିକୁ ସୁଖପାଠ୍ୟ କରିପାରିଛି ।

ଡଃ ବିଦ୍ୟାଧର ମିଶ୍ରଙ୍କ 'ବିକଶିତ ପାଶ୍ଚାତ୍ୟ ଜଗତ'ରେ ଇଉରୋପର ବିଭିନ୍ନ ଅନୁଭୂତି କଳାତ୍ମକ ରୂପ ନେଇ ପ୍ରକାଶିତ । ୧୯୫୩-୫୫ ମଧ୍ୟରେ ସେ ଇଂଲଣ୍ଡ ଏବଂ ଫ୍ରାନ୍ସର ପ୍ୟାରିସ୍ ସହର, ୧୯୭୧ରେ ରୋମ୍, ଜେନିଭା, ଫ୍ରାଙ୍କଫର୍ଟ ସହର, ୧୯୭୮ରେ କାନାଡ଼ା, ସାନ୍‌ଫ୍ରାନ୍‌ସିସ୍‌କୋ, ଲସ୍ ଆଞ୍ଜେଲସ୍, ୱାଶିଂଟନ, ନିଉୟର୍କ, ଇଟାଲୀ, ସୁଇଜରଲ୍ୟାଣ୍ଡ ଆଦି ବିଭିନ୍ନ ସହରରେ ଅବସ୍ଥାନ କାଳରେ ଯେଉଁ ଅନୁଭୂତି ଲାଭ କରିଥିଲେ, ଉକ୍ତ ପୁସ୍ତକରେ ତାହା ଲିପିବଦ୍ଧ କରିଛନ୍ତି । ଡଃ ମିଶ୍ର ଜଣେ ଅର୍ଥନୀତିଜ୍ଞ ହୋଇଥିବାରୁ ସେ ଦେଶମାନଙ୍କର ଅର୍ଥନୀତି, ବିଭିନ୍ନ ଯୋଜନାର କାର୍ଯ୍ୟକାରିତା, ଜନସାଧାରଣଙ୍କର ସାମାଜିକ, ରାଜନୀତିକ ଜୀବନପ୍ରଣାଳୀ ସମ୍ବନ୍ଧରେ ଚମତ୍କାର ଆକଳନ ପ୍ରସ୍ତୁତ କରିଛନ୍ତି । ଏତଦ୍‌ବ୍ୟତୀତ ଉପରୋକ୍ତ ଦେଶଗୁଡ଼ିକରେ ପ୍ରଚଳିତ ଉତ୍ସବାନୁଷ୍ଠାନ, ଶିକ୍ଷାପଦ୍ଧତି, ଦର୍ଶନୀୟ ସ୍ଥାନ, ପ୍ରାଚୀନ କୀର୍ତ୍ତି, ପ୍ରାକୃତିକ ପରିବେଶ ଇତିହାସାଦି ସମ୍ପର୍କରେ ମଧ୍ୟ ବିଶଦ ବିବରଣୀ ପ୍ରଦତ୍ତ କରିଛନ୍ତି । ବହୁ ବିବରଣୀରେ ଗ୍ରନ୍ଥଟି ପରିପୂର୍ଣ୍ଣ ହୋଇଥିବାରୁ ତାର କଳାଗତ ମୂଲ୍ୟ ହ୍ରାସ ପାଇଛି ।

କଥାକାର ସୁରେନ୍ଦ୍ର ମହାନ୍ତିଙ୍କ 'ପେକିଂଡାଏରୀ' ଏକ ଅଭିନବ ଭ୍ରମଣ ବୃତ୍ତାନ୍ତ । ୧୯୫୯ ମସିହା ସେପ୍ଟେମ୍ବର ମାସରେ ତତ୍କାଳୀନ ଚୀନ୍ ଜାତୀୟ କଂଗ୍ରେସର ଅଧ୍ୟକ୍ଷ ଲିଉସ୍ ଓ ଚୀଙ୍କ ନିମନ୍ତ୍ରଣ କ୍ରମେ ଭାରତ ପାର୍ଲିଆମେଣ୍ଟର ଯେଉଁ ପ୍ରତିନିଧିଦଳ ବାଚସ୍ପତି ଅନନ୍ତଶୟନମ୍ ଆୟଙ୍ଗାରଙ୍କ ନେତୃତ୍ୱରେ ଚୀନ ପରିଭ୍ରମଣରେ ଯାଇଥିଲେ, ସୁରେନ୍ଦ୍ର ମହାନ୍ତି ଥିଲେ ସେହି ପ୍ରତିନିଧିଦଳର ଅନ୍ୟତମ ସଦସ୍ୟ । ୧୯୫୯ ସେପ୍ଟେମ୍ବର ୨୮ ତାରିଖରୁ ଅକ୍ଟୋବର ୨୬ ତାରିଖ ପର୍ଯ୍ୟନ୍ତ କମ୍ୟୁନିଷ୍ଟ ଚୀନରେ ଏହି ପ୍ରତିନିଧିଦଳ ଭ୍ରମଣ କରିବାର

ସୁଯୋଗ ପାଇଥିଲେ । ଜଣେ ରାଜନୀତିକ ନେତା ଭାବରେ ଶ୍ରୀଯୁକ୍ତ ମହାନ୍ତି ସେଠାକୁ ଯାଇଥିଲେହେଁ, ସାହିତ୍ୟିକର ଦୃଷ୍ଟି ନେଇ ଚୀନ୍‌କୁ ଦେଖିଛନ୍ତି । ମୁଖ୍ୟତଃ ସାମାଜିକ, ଆର୍ଥନୀତିକ, ଐତିହାସିକ ଓ ପ୍ରଶାସନିକ ଦୃଷ୍ଟିକୋଣରୁ ସେ ଚୀନ୍‌କୁ ପର୍ଯ୍ୟାଲୋଚନା କରିଛନ୍ତି । ମାତ୍ର ଏ ସମସ୍ତ ମଧ୍ୟରେ ଯେଉଁ ବିଭାବଟି ପାଠକମାନଙ୍କୁ ଅଧିକ ଆକୃଷ୍ଟ କରେ, ତାହା ହେଉଛି ତାଙ୍କର କଳାତ୍ମକ ଦୃଷ୍ଟିଭଙ୍ଗୀ । ଏକ ମାନବିକ ଦୃଷ୍ଟିକୋଣରୁ ସେ ଦେଖିଛନ୍ତି ଚୀନ୍‌କୁ । ଚୀନ୍‌ବାସୀଙ୍କର ଜୀବନଯାପନ ପ୍ରଣାଳୀ, କଷ୍ଟ ସହିଷ୍ଣୁତା, କର୍ମ ପ୍ରବଣତା, କଠୋର ସାମାଜିକ ବ୍ୟବସ୍ଥା, ଖାଦ୍ୟ-ପେୟ, ରାଜନୀତିକ ଧର୍ମାଚାର, ପୋଷାକ-ପରିଛଦ, ଶିକ୍ଷା ଓ ବିଚାରାଳୟ, କୃଷିକର୍ମ, ଶୈକ୍ଷିକ ଉନ୍ନତି, ବେକାର ସମସ୍ୟା, ଆର୍ଥିକ ପୁନର୍ଗଠନ, ପଞ୍ଚବାର୍ଷିକ ଯୋଜନା, ବିଭିନ୍ନ ସ୍ଥାନର ଇତିହାସ ଓ ଛାତ୍ରଜୀବନକୁ ସେ ତନ୍ନ ତନ୍ନ ବିଶ୍ଳେଷଣ କରିଛନ୍ତି । କବିତ୍ୱପୂର୍ଣ୍ଣ ସଂଳାପ, ବର୍ଣ୍ଣନାଚାତୁରୀ, ଉପମା ଓ ଚିତ୍ରକଳ୍ପର ମନୋରମ ସଂଯୋଗ, ମଣିଷର ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏହି ଭ୍ରମଣକାହାଣୀଟିକୁ ଏକ ଶ୍ରେଷ୍ଠ ସାହିତ୍ୟିକ କୃତିରେ ପରିଣତ କରିପାରିଛି । ଓଡ଼ିଆ ପର୍ଯ୍ୟଟନ ସାହିତ୍ୟ ଇତିହାସରେ 'ପେକିଂଡାଏରୀ' ଏହି ଦୃଷ୍ଟିରୁ ସ୍ୱତନ୍ତ୍ର ମାନ୍ୟ ଦାବି କରେ ।

ଶ୍ରୀହର୍ଷ ମିଶ୍ର ୧୯୬୦ ମସିହାରେ ଏକ ସାମ୍ବାଦିକ ଦଳରେ ଇଂଲଣ୍ଡ ପରିଦର୍ଶନ କରିବା ସମୟରେ ଯେଉଁ ଅନୁଭୂତି ଲାଭ କରିଥିଲେ, ତାହା ସେ ଲିପିବଦ୍ଧ କରିଛନ୍ତି 'ପଶ୍ଚିମ ଦିଗନ୍ତ' ପୁସ୍ତକରେ । ଶ୍ରୀହର୍ଷ ମିଶ୍ର ଜଣେ ସାମ୍ବାଦିକ ହୋଇଥିବାରୁ ଇଂଲଣ୍ଡର ବିଭିନ୍ନ ବିଷୟରେ ସମ୍ବାଦ ସଂଗ୍ରହ କରିଛନ୍ତି । ବିଶେଷକରି ଇଂଲଣ୍ଡର ଅତୀବ ବିଭବ, ସାଂପ୍ରତିକ ଅବସ୍ଥା, ଦେଶର ସାମାଜିକ ଜୀବନ, ସାଂସ୍କୃତିକ ବିଚାରବୋଧ, ସାମ୍ବାଦିକଙ୍କ ସ୍ୱାଧୀନତା, ଜନସାଧାରଣଙ୍କ ଜୀବନଯାପନ ପ୍ରଣାଳୀ ଓ ସେମାନଙ୍କର ଭବିଷ୍ୟତ ଆଶା ଏବଂ ବିଶ୍ୱାସକୁ କଳାତ୍ମକ ଢଙ୍ଗରେ ପ୍ରକାଶ କରିପାରିଛନ୍ତି ।

ଓଡ଼ିଆ ପର୍ଯ୍ୟଟନ ସାହିତ୍ୟର ବିକାଶଧାରାରେ ଗୋଲୋକ ବିହାରୀ ଧଳଙ୍କ ଭୂମିକା ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ତାଙ୍କର ଲଣ୍ଡନଚିଠି, ଆମେରିକା ଅନୁଭୂତି, ତାଜମହଲର ଦେଶେ, ଗଙ୍ଗାରୁ ଗୋଦାବରୀ ଆଦି ଗୋଟିଏ ଗୋଟିଏ ସଫଳ ଭ୍ରମଣ ଗ୍ରନ୍ଥ । ପ୍ରଥମ ଦୁଇଟି ଗ୍ରନ୍ଥ ପାଶ୍ଚାତ୍ୟ ଅନୁଭୂତି ସମ୍ପନ୍ନ ହୋଇଥିବା ସମୟରେ ଶେଷୋକ୍ତ ଦୁଇଟିରେ ସ୍ୱଦେଶ ଅନୁଭୂତି ଲିପିବଦ୍ଧ । ଇଂଲଣ୍ଡ ଓ ଆମେରିକାବାସୀଙ୍କ ପ୍ରାଚୁର୍ଯ୍ୟ, ବିଳାସ, ଭଦ୍ରତା, ସାଧୁତା, ଶୃଙ୍ଖଳାଜ୍ଞାନ, କର୍ତ୍ତବ୍ୟବୋଧ, ସମୟ ସଚେତନତା ଲେଖକଙ୍କୁ ବିସ୍ମିତ କରିଛି । ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ମଧ୍ୟରେ ମଧ୍ୟ ସେମାନେ କର୍ମମୁଖର । ଇଂଲଣ୍ଡ ଓ ଆମେରିକା ମଧ୍ୟରୁ ଆମେରିକାକୁ ଅଧିକ ମହତ୍ତ୍ୱ ଦେଇଛନ୍ତି । ଆନ୍ତରିକତା, ଆତିଥ୍ୟ, ପ୍ରାଚୁର୍ଯ୍ୟ, କର୍ମପ୍ରବଣତା - ପ୍ରତ୍ୟେକ କ୍ଷେତ୍ରରେ ଆମେରିକା ବେଶ୍ କେତେ ପାଦ ଆଗରେ । ଏହାସତ୍ତ୍ୱେ ଉଭୟ ଦେଶର କର୍ତ୍ତବ୍ୟବୋଧ, ଶିଷ୍ଟାଚାର ଓ ଶୃଙ୍ଖଳାଜ୍ଞାନ ଅନୁକରଣୀୟ ବୋଲି ଲେଖକଙ୍କର

ମତ । ସମସ୍ତ ସୁଗୁଣ ମଧ୍ୟରେ ସେ ଉଭୟ ଦେଶର ଜାତୀୟ ଚରିତ୍ରର କେତେକ ଦୁର୍ବଳତା ପ୍ରକାଶ କରିବାକୁ ଭୁଲି ନାହାନ୍ତି । ସେଠାର ନାରୀ ବିଳାସୀ: ମାତ୍ର ମାଆ ହେବାକୁ ଅଯୋଗ୍ୟା । ପାରିବାରିକ ଜୀବନର ବିଶୃଙ୍ଖଳା ସର୍ବତ୍ର ବିଦ୍ୟମାନ । ସମ୍ପର୍କ ଆନ୍ତରିକତାହୀନ । ଭାରତୀୟ ପରିବାରର ମହନୀୟ ଆଦର୍ଶ, ଗରିମା ଓ ସୌହାର୍ଦ୍ଦ୍ୟ ସେଠାରେ ଦୁର୍ଲଭ । 'ତାଜମହଲର ଦେଶେ' ଓ 'ଗଙ୍ଗାରୁ ଗୋଦାବରୀ'ରେ ଭାରତୀୟ ସାମାଜିକ ଜୀବନ, କର୍ମକୁଣ୍ଠତା, ପ୍ରଶାସନ ଓ ଶୈକ୍ଷିକ ବ୍ୟବସ୍ଥା, ଆତ୍ମପ୍ରୌଢ଼ ସହିତ ଭାରତୀୟ ଆଦର୍ଶବୋଧ, ପ୍ରାକୃତିକ ସୁଷମା, ହରଦ୍ୱାର, ମସୁରୀ, ଡେରାଡୁନ, ହୃଷୀକେଶ, ମହୀଶୂର, ଧୂଆଁଧାର, ଖଜୁରାହୋ, ସାଞ୍ଚି, ବିଦିଶା, ବେତ୍ରବତୀ, ଶାନ୍ତିନିକେତନ, ତାଜମହଲ ଆଦି ବହୁ ସ୍ଥାନର ଚମତ୍କାର ବିବରଣୀ ପ୍ରକାଶିତ । ଅନୁଭୂତିର ନିବିଡ଼ତା, ତୁଳନାତ୍ମକ ଦୃଷ୍ଟିଭଙ୍ଗୀ, ସହଜ ସରଳ ଭାଷା ତାଙ୍କ ପର୍ଯ୍ୟଟନ ସାହିତ୍ୟଗୁଡ଼ିକୁ ରୁଚିପୂର୍ଣ୍ଣ ଓ ଶିକ୍ଷାତ୍ମକ କରିପାରିଛି ।

ଓଡ଼ିଆ ପର୍ଯ୍ୟଟନ ସାହିତ୍ୟ ଇତିହାସରେ ଚିତ୍ତରଞ୍ଜନ ଦାସ ଏକ ସ୍ମରଣୀୟ ନାମ । ଡେନମାର୍କର ଚିଠି (୨ଟି), ଭାରତରୁ ଚୀନ୍, ଶିଳାତୀର୍ଥ, ନେପାଳପଥେ, ଗଞ୍ଜାମାଳରେ ସାତଦିନ ଆଦି ଗ୍ରନ୍ଥରୁ ତାଙ୍କ ଭ୍ରମଣକାରୀ ଚିତ୍ତବୃତ୍ତିର ଯଥାର୍ଥ ପରିଚୟ ମିଳେ । ଉଦାର ମାନବିକ ହୃଦୟ ନେଇ ସେ ଦେଖିଛନ୍ତି ଜର୍ମାନ୍ ଓ ଚୀନ୍‌କୁ । ତା'ରି ମଧ୍ୟରେ ସେ ସେହି ଦେଶର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଅବସ୍ଥା; ଜନସାଧାରଣଙ୍କ ରୀତି-ନୀତି, ଚାଲି-ଚଳଣି, ବିଳାସ ଓ ଅସହାୟ ଜୀବନ, ସାହିତ୍ୟ ସଂପଦ, ସମ୍ବାଦ ଓ ସମସ୍ୟାର ବିସ୍ତୃତ ଆଲୋଚନା କରିଛନ୍ତି । ଶିଳାତୀର୍ଥ, ନେପାଳପଥେ, ଗଞ୍ଜାମାଳରେ ସାତଦିନ ଆଦିରେ ଲୋକଜୀବନ ଅନୁଶୀଳନରେ ଉଦାର ଦୃଷ୍ଟିଭଙ୍ଗୀ, ସାମାଜିକ ସମସ୍ୟା ସହିତ ବିଭିନ୍ନ ସ୍ଥାନର କାବ୍ୟିକ ବର୍ଣ୍ଣନା, ଦାର୍ଶନିକ ସୁଲଭ ଦୃଷ୍ଟିଭଙ୍ଗୀ, ସାଂସ୍କୃତିକ ଐତିହ୍ୟ ଆଦିର ଚମତ୍କାର ବର୍ଣ୍ଣନା ପ୍ରଦାନ କରିଛନ୍ତି । ତାଙ୍କର ଅଧିକାଂଶ ଭ୍ରମଣ ସାହିତ୍ୟ ରମ୍ୟରଚନାଧର୍ମୀ ଓ ଦାର୍ଶନିକ ଭାବସମ୍ବଳିତ ।

ଉମେଶଚନ୍ଦ୍ର ପାଣିଗ୍ରାହୀଙ୍କ "ଯାତ୍ରୀ" ଗ୍ରନ୍ଥରେ ଧଉଳିପଥେ, ବାରୁଣୀଯାତ୍ରୀ, ନରସିଂହପୁର ସ୍ମୃତି, ଅମର କଣ୍ଟକ ପଥେ, ସନ୍ଧେଇଭଞ୍ଜ ଗୁମ୍ଫା ଆଦି ପାଞ୍ଚୋଟି ବିଭିନ୍ନ ସ୍ଥାନର ଅନୁଭୂତି ବର୍ଣ୍ଣିତ । ତାଙ୍କର ଅନ୍ୟତମ ଭ୍ରମଣ ବୃତ୍ତାନ୍ତ 'ପଥପ୍ରାନ୍ତେ'ରେ ରାଞ୍ଚିର ଆଦିମ ଅଧିବାସୀଙ୍କ ଜୀବନଧାରା ସମ୍ପର୍କରେ ବିଶ୍ଳେଷଣ ରହିଛି । ତତ୍ପରେ ସେହି ଅଞ୍ଚଳର ଲୌକିକ ଜୀବନ, ପୂଜା ପାର୍ବଣ, ବିଶ୍ୱାସବୋଧ, କୁସଂସ୍କାର ଏବଂ ଜୀବନଚର୍ଯ୍ୟାକୁ ବର୍ଣ୍ଣନା କରିଛନ୍ତି । 'ଆଜିର ଆମେରିକା', 'ତରୁଣ ତୁର୍କୀ', 'ପ୍ରଶାନ୍ତ ମହାସାଗରରେ ଅଶାନ୍ତି' ଆଦି ଗ୍ରନ୍ଥକୁ ଅନୁବାଦ କରି ଓଡ଼ିଆ ପର୍ଯ୍ୟଟନ ସାହିତ୍ୟର ପରିସରକୁ ସମୃଦ୍ଧ କରିଛନ୍ତି ।

ଶ୍ରୀମତୀ ଆଦରମଣି ଦାସ ୧୯୬୮ ମସିହାରେ ଲଣ୍ଡନ ଯାଇଥିବା ସମୟରେ ଯେଉଁ ଅନୁଭୂତି ଲାଭ କରିଥିଲେ, ତାହା ସେ ପ୍ରକାଶ କରିଛନ୍ତି 'ମୋ ବିଲାତ ଅନୁଭୂତି' ଗ୍ରନ୍ଥରେ । ଏଥିରେ ସେ ବିଲାତର ମିଉଜିଅମ୍, ଚିଡ଼ିଆଖାନା, ବକିଙ୍ଗହାମ୍ ପ୍ୟାଲେସ୍, ହାଇଡପାର୍କ, ଟ୍ରାଫଲଗାର ସ୍କୋୟାର, ହାମ୍ପଟନ୍ କୋର୍ଟପ୍ୟାଲେସ, ପାର୍ଲିଆମେଣ୍ଟ ଆଦି ବିଭିନ୍ନ ସ୍ଥାନର ବର୍ଣ୍ଣନା ସହିତ ସେଠାକାର ପ୍ରାକୃତିକ ଦୃଶ୍ୟ, ପାଣିପାଗ, ସାମାଜିକ ରୀତି-ନୀତି, ଶିଷ୍ଟାଚାର, ନାରୀମାନଙ୍କର ସାମାଜିକ ଅଧିକାର, ଶିଶୁମାନଙ୍କର ରକ୍ଷଣାବେକ୍ଷଣ, ଖାଦ୍ୟ-ପେୟ, ପୋଷାକ-ପରିଚ୍ଛଦ, ରାସ୍ତାଘାଟ, ପାରିବାରିକ ଜୀବନ, ବଜାରହାଟ, ଶିକ୍ଷାକେନ୍ଦ୍ର, ପୁସ୍ତକାଗାର, ବିଶ୍ୱାସବୋଧ, ଆଧାତ୍ମିକ ଭାବନା, ରନ୍ଧନଶାଳା, ନୃତ୍ୟ-ସଙ୍ଗୀତ, ସ୍ୱାସ୍ଥ୍ୟକେନ୍ଦ୍ର, କୃଷି ବ୍ୟବସ୍ଥା, ସୌନ୍ଦର୍ଯ୍ୟବୋଧ ଆଦି ସମ୍ପର୍କରେ ବିସ୍ତୃତ ଚିତ୍ର ପ୍ରଦାନ କରିଛନ୍ତି । ସରଳଭାଷାରେ ପୁସ୍ତକଟି ରଚିତ ହୋଇଥିବାରୁ ସୁଖପାଠ୍ୟ ହୋଇପାରିଛି ।

'ଜାପାନ ଜାତକ'ର ଲେଖକ ରାଧାନାଥ ରଥ ଜଣେ କିରାଣି ରୂପେ ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିବା ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ତାଙ୍କୁ ଜାପାନ ଯିବାକୁ ପଡ଼ିଥିଲା । ଜାପାନରେ ଦୁଇବର୍ଷ ରହଣି ମଧ୍ୟରେ ସେ ଜାପାନକୁ ଯେପରି ଦେଖିଛନ୍ତି, ଅନୁଭବ କରିଛନ୍ତି; ସରଳ ଓ ନିରାଡ଼ମ୍ବର ଭାଷାରେ ତାହାକୁ ପ୍ରକାଶ କରିଯାଇଛନ୍ତି । ଜାପାନର ଅନ୍ତରାତ୍ମାକୁ ଚିହ୍ନିବାର ପ୍ରୟାସ ବେଶ୍ ଆନ୍ତରିକତାପୂର୍ଣ୍ଣ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜାପାନର ଧ୍ୱଂସାବଶେଷ ତାଙ୍କୁ ମ୍ରିୟମାଣ କରିଛି । ଦରଦୀ ହୃଦୟ ନେଇ ଜାପାନବାସୀଙ୍କ ଦୁଃଖକୁ ଉପଲବ୍ଧି କରିବାର ପ୍ରୟାସ କରିଛନ୍ତି । ବିଶ୍ୱଯୁଦ୍ଧର ଧ୍ୱଂସକାରୀ ଆତଙ୍କପରେ ମଧ୍ୟ ଜାପାନୀବାସୀ ସାହସ ହରାଇ ନାହାନ୍ତି । ବୀର ଦର୍ପରେ ପୁଣି ଦେଶ ଗଠନରେ ଲାଗି ପଡ଼ିଛନ୍ତି । ଶ୍ରୀରଥ ଦୁଇବର୍ଷ ମଧ୍ୟରେ ଜାପାନର ଅଭ୍ୟୁଦୟ ଦେଖି ବିସ୍ମିତ ହୋଇଛନ୍ତି । ସେମାନଙ୍କର ସମୟାନୁବର୍ତ୍ତିତା, କଠୋର ପରିଶ୍ରମ, ସାମାଜିକ ଚଳଣି, ଅତିଥିପରାୟଣତା, କୃଷିବ୍ୟବସ୍ଥା, କୁଟୀର ଶିଳ୍ପ, ନାରୀମାନଙ୍କର ଉତ୍ସର୍ଗୀକୃତ ମନୋଭାବ, ସେବାପରାୟଣତା, ବିବାହ-ପ୍ରଥା, ପୂଜା-ପାର୍ବଣ, ପୁଷ୍ପପ୍ରୀତି, ଶିଳ୍ପ, କୁଟୀର ଶିଳ୍ପ, ସଙ୍ଗଠନ, ଦର୍ଶନୀୟସ୍ଥାନ, ଆର୍ଥନୀତିକ ଉଦାରୀକରଣ - କୌଣସିଟି ବାଦ୍ ପଡ଼ି ନାହିଁ ତାଙ୍କ ଆଖିରୁ । ଜାପାନବାସୀଙ୍କ ହୃଦୟ ଓ ଜାପାନର ଅନ୍ତଃରୂପ ଜାଣିବା କ୍ଷେତ୍ରରେ ଏହି ଗ୍ରନ୍ଥଟି ବେଶ୍ ଏକ ଉପାଦେୟ ପୁସ୍ତକ, ଅସ୍ୱୀକାର କରାଯାଇ ନ ପାରେ ।

ଡଃ ବୈଦ୍ୟନାଥ ମିଶ୍ରଙ୍କ ବିଦେଶାନୁଭୂତି 'ବିଦେଶଯାତ୍ରା', 'ଆଜିର ଇଂଲଣ୍ଡ ଓ ୟୁରୋପ', 'ସେ ଦେଶର କଥା', 'ପାଶ୍ଚାତ୍ୟ ଅନୁଭୂତି' ଆଦି ପୁସ୍ତକରେ ଲିପିବଦ୍ଧ । ଇଉରୋପର ବିଭିନ୍ନ ଦେଶ ପରିଭ୍ରମଣ ସମୟରେ ସେ ଦେଶର ରାଜନୀତି, ଇତିହାସ, ସଂସ୍କୃତି, ଅର୍ଥନୀତି, ସାମାଜିକ ଚାଲି-ଚଳଣି, କାର୍ଯ୍ୟପଦ୍ଧତି, ଲୋକଚରିତ୍ର, ବିଭିନ୍ନ ଦର୍ଶନୀୟ ସ୍ଥାନ, ଶିକ୍ଷାପଦ୍ଧତି ଆଦିକୁ ତୀକ୍ଷ୍ଣ ଦୃଷ୍ଟିଦେଇ ଲକ୍ଷ୍ୟ କରିଛନ୍ତି । ତାଙ୍କର 'ପାଶ୍ଚାତ୍ୟ ଅନୁଭୂତି'

ଗ୍ରନ୍ଥରେ ଡଃ ସୁକାନ୍ତ କୁମାର ମିଶ୍ରଙ୍କର ତିନୋଟି ପରିଚ୍ଛେଦ ଏବଂ ଶ୍ରୀମତୀ ବାସନ୍ତୀ ମିଶ୍ରଙ୍କର ଗୋଟିଏ ପରିଚ୍ଛେଦ ସଂଯୁକ୍ତ ହୋଇଛି । ଏଥିରେ ଡଃ ବୈଦ୍ୟନାଥ ମିଶ୍ରଙ୍କର ଆମେରିକା ଏବଂ ଫ୍ରାନ୍‌ସର ଅନୁଭୂତି ସ୍ଥାନ ପାଇଥିବା ସମୟରେ ଡଃ ସୁକାନ୍ତ ମିଶ୍ରଙ୍କର ଆମେରିକା ଓ ଶ୍ରୀମତୀ ବାସନ୍ତୀ ମିଶ୍ରଙ୍କର ଫ୍ରାନ୍‌ସ ଅନୁଭୂତି ରହିଛି । ତିନିଜଣ ଲେଖକ ଓ ଲେଖିକାଙ୍କ ସମବାୟରେ ପୁସ୍ତକଟି ପ୍ରକାଶିତ ହୋଇଥିଲେହେଁ, ଡଃ ବୈଦ୍ୟନାଥ ମିଶ୍ରଙ୍କର ଅନୁଭୂତି ନିବିଡ଼ ଓ ବର୍ଣ୍ଣନା ବେଶ୍ ଜୀବନ୍ତ ।

ଡଃ କୃଷ୍ଣପ୍ରସାଦ ମିଶ୍ର ୧୯୬୩ ମସିହାରେ କାନାଡ଼ା ଯାଇଥିବା ସମୟରେ ଯେଉଁ ଅନୁଭୂତି ଲାଭ କରିଥିଲେ, ତାହା ସେ ପ୍ରକାଶ କରିଛନ୍ତି ତାଙ୍କ 'କାନାଡ଼ା ଡାଏରୀ' ପୁସ୍ତକରେ । ଡଃ ମିଶ୍ର ଜଣେ ଦାର୍ଶନିକ ଓ କଥାକାର ହୋଇଥିବାରୁ ଦର୍ଶନ ଏବଂ ସାହିତ୍ୟର ଦୃଷ୍ଟିରେ ସେ ଆବିଷ୍କାର କରିଛନ୍ତି କାନାଡ଼ାକୁ । ସେଠାକାର ଜନଜୀବନ, ପ୍ରାକୃତିକ ଅବସ୍ଥିତି, ଶିକ୍ଷା, ସଂସ୍କୃତି, ସାମାଜିକ ଜୀବନଧାରା ଓ ଲୋକମାନଙ୍କର ସମୟାନୁବର୍ତ୍ତିତା ସମ୍ପର୍କରେ ସୂକ୍ଷ୍ମ ବିଶ୍ଳେଷଣ ପ୍ରଦତ୍ତ କରିଛନ୍ତି । ଦାର୍ଶନିକ ଦୃଷ୍ଟିରୁ ଜୀବନର ସତ୍ୟ ସମ୍ପର୍କରେ ବିଶ୍ଳେଷଣ କରିବା ସମୟରେ ସାହିତ୍ୟର କଳାନୁଭବ ସେହି ଅନୁଭୂତିକୁ ଅଧିକ ପ୍ରାଣବନ୍ତ କରିପାରିଛି ।

ଡଃ ଗୋପାଳଚନ୍ଦ୍ର ମିଶ୍ରଙ୍କ 'ରୁଷ ଅନୁଭୂତି' ରୁଷିଆ ସମ୍ପର୍କୀୟ ଏକ ପ୍ରାମାଣିକ ଗ୍ରନ୍ଥ । ୧୯୭୯ ମସିହାରେ ରୁଷ ଯାଇଥିବା ସମୟରେ ସେ ଦେଶର ଜନସାଧାରଣଙ୍କ ନିବିଡ଼ ସମ୍ପର୍କରେ ଆସିବାର ସୁଯୋଗ ଲାଭ କରିଥିଲେ । ଛଅସପ୍ତାହ ରହଣି ମଧ୍ୟରେ ରୁଷଦେଶର ସାମାଜିକ ଜୀବନ, ଭାଷା-ସଂସ୍କୃତି, ଲୋକଚଳଣି, ରୁଷର ଇତିହାସ, ବିଭିନ୍ନ ଦର୍ଶନୀୟସ୍ଥାନ, ଜନସାଧାରଣଙ୍କ ରାଷ୍ଟ୍ରପାଇଁ ଉତ୍ସର୍ଗୀକୃତ ଜୀବନ, ବିଭିନ୍ନ ସାହିତ୍ୟିକ ଅନୁଷ୍ଠାନ; ତାର ଭୌଗୋଳିକ ବିବରଣ ସମ୍ପର୍କରେ ଜୀବନ୍ତ ଚିତ୍ର ପ୍ରଦାନ କରିଛନ୍ତି । ରୁଷକୁ ଅନୁଭବ କରିବାରେ ତାଙ୍କ ସୂକ୍ଷ୍ମ ଦୃଷ୍ଟିଭଙ୍ଗୀର ଯଥାର୍ଥ ପରିଚୟ ମିଳେ ଏହି ଗ୍ରନ୍ଥରେ ।

ଡଃ ଭୁବନେଶ୍ୱର ବେହେରା ପେସାରେ ଯନ୍ତ୍ରୀ ହେଲେହେଁ ନିଶାରେ ଜଣେ ବିଦଗ୍ଧ ସାହିତ୍ୟ ସ୍ରଷ୍ଟା । ବିଶିଷ୍ଟ ଲଳିତ ନିବନ୍ଧକାର ରୂପେ ବହୁ ଗୌରବର ଅଧିକାରୀ ସେ । ପଶ୍ଚିମ ଆଫ୍ରିକାର ଲାଇବେରିଆ ଗଣରାଜ୍ୟର ଇଞ୍ଜିନିୟରିଂ ଓ ବୈଷୟିକ ଶିକ୍ଷା ପରାମର୍ଶଦାତା ଭାବେ ପଶ୍ଚିମ ଆଫ୍ରିକାରେ ଯେଉଁ ଅନୁଭୂତି ଲାଭ କରିଥିଲେ, ତାହା ସେ 'ପଶ୍ଚିମ ଆଫ୍ରିକାରେ ଓଡ଼ିଆ ଢେଙ୍କି' ଭ୍ରମଣ ଗ୍ରନ୍ଥରେ ପ୍ରକାଶ କରିଛନ୍ତି । ପଶ୍ଚିମ ଆଫ୍ରିକାର ସାମାଜିକ ଜୀବନ, ଖାଦ୍ୟପେୟ, ବୈଷୟିକ ଉନ୍ନତି, ଚାଲି-ଚଳଣିକୁ ରମ୍ୟରଚନା ଶୈଳୀରେ ଉପସ୍ଥାପନା କରି ଏକ ଚମତ୍କାର ଭ୍ରମଣ ସାହିତ୍ୟ ରଚନା କରିଛନ୍ତି । କଳାର ସମସ୍ତ ଗୌରବ ନେଇ ଗ୍ରନ୍ଥଟି ପ୍ରକାଶିତ ।

ଶ୍ରଦ୍ଧାକର ସୂପକାରଙ୍କ 'ଆମେରିକା ଅନୁଭୂତି' ଓ 'ରୁଷିଆ ଭ୍ରମଣ' ଦୁଇଟି ଭିନ୍ନ ରୁଚିର ଭ୍ରମଣ ଗ୍ରନ୍ଥ । ଏକାଧିକ ସଂସ୍କରଣରୁ ଗ୍ରନ୍ଥର ଲୋକପ୍ରିୟତା ସହଜରେ ଅନୁମେୟ ।

ଆମେରିକାର ଜନଜୀବନକୁ ସମ୍ବେଦନଶୀଳ ହୃଦୟରେ ଲକ୍ଷ୍ୟ କରିଛନ୍ତି । ଟରାଣ୍ଟୋ ସହରରେ ଅନୁଷ୍ଠିତ ଓଡ଼ିଆ ସମ୍ମିଳନୀରେ ଯୋଗ ଦେଇଛନ୍ତି । ଯୁକ୍ତରାଷ୍ଟ୍ର ଶସ୍ୟ ଭଣ୍ଡାରର ପ୍ରାଚୁର୍ଯ୍ୟ ଦେଖି ଅଭିଭୂତ ହୋଇଛନ୍ତି । ସେଠାକାର ଶିକ୍ଷାବ୍ୟବସ୍ଥା, ୱାଶିଂଟନ ସହରର ବିଶାଳତା, ବିଭିନ୍ନ ଦର୍ଶନୀୟ ସ୍ଥାନ, ଓଣ୍ଟେରିଓ ହ୍ରଦ ନିକଟରେ ବିଶ୍ୱର ସର୍ବୋଚ୍ଚ ମୀନାର ସି.ଏନ୍.ଟାୱାର ତାଙ୍କୁ ଆକୃଷ୍ଟ କରିଛି । ରୁଷିଆର ଲୋକଜୀବନଧାରାକୁ ସେ ପର୍ଯ୍ୟବେକ୍ଷଣ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରପ୍ରତି ବ୍ୟକ୍ତିବିଶେଷଙ୍କ ଆନୁଗତ୍ୟକୁ ପ୍ରଶଂସା କରିଛନ୍ତି । ଜନସାଧାରଣଙ୍କ କର୍ମପ୍ରବଣତା, ଶିଷ୍ଟାଚାର ଓ ସେମାନଙ୍କର ଜୀବନକୁ ପର୍ଯ୍ୟବେକ୍ଷଣ କରିଛନ୍ତି । ଭାରତ ସହିତ ଆମେରିକା ଓ ରୁଷିଆର ପ୍ରାଚୁର୍ଯ୍ୟ ତୁଳନା କରିଛନ୍ତି । ଭାବର ଗାମ୍ଭୀର୍ଯ୍ୟ, ବର୍ଣ୍ଣନାର ଚମତ୍କାରିତା ଓ ମନୋରମ ଶୈଳୀ ଭ୍ରମଣ ଗ୍ରନ୍ଥଦୁଇଟିର ମର୍ଯ୍ୟାଦା ବୃଦ୍ଧି କରିଛି ।

ଗୋବିନ୍ଦ ଦାସଙ୍କ 'ଦେଶେ ଦେଶେ' ବିଲାତ ତଥା ଅନ୍ୟକେତେକ ଇଉରୋପଦେଶ ପରିଭ୍ରମଣଜନିତ ଅନୁଭୂତିର ଏକ ରସସ୍ନିଗ୍ଧ ପରିପ୍ରକାଶ । ଇଂଲଣ୍ଡରେ ପ୍ରବେଶ ପୂର୍ବରୁ ବମ୍ବେ ଏବଂ ଜଳଜାହାଜର ବିଚିତ୍ର ଅନୁଭୂତିକୁ ଚମତ୍କାର ଢଙ୍ଗରେ ପ୍ରକାଶ କରିଛନ୍ତି । ବମ୍ବେକୁ ସେ ଏକ ମିନି ଇଂଲଣ୍ଡ ସହିତ ତୁଳନା କରିଛନ୍ତି । ଏତଦ୍‌ବ୍ୟତୀତ ଇଂଲଣ୍ଡର ପାଣିପାଗ, ବିଲାତ ପାର୍ଲିଆମେଣ୍ଟ, ପାର୍ଲିଆମେଣ୍ଟର ଆଇନ୍ ପ୍ରଣୟନ ପଦ୍ଧତି, ସଦସ୍ୟମାନଙ୍କ ଗୃହରେ ଆଚରଣ, ରାଜନୀତି, ସାମନ୍ତବାଦୀ ଚିନ୍ତାଧାରା, ପ୍ୟାରିସ୍‌ର ଜୀବନଯାତ୍ରା ଫରାସୀ ବ୍ୟକ୍ତିଙ୍କ ବ୍ୟବହାର, ବିରୁଟ୍‌ର ଅନୁଭୂତି, ଜର୍ମାନୀ ବାସୀଙ୍କ ନିଷ୍ଠା, କର୍ମପ୍ରବଣତା, ଭେନିସ୍ ନଗରର ତୁଙ୍ଗ ଅଟ୍ଟାଳିକା ତାର ଇତିହାସ, ବେଲଗ୍ରେଡର ଜୀବନ୍ତ ଅନୁଭୂତି, ସାଂସ୍କୃତିକ ଆଚାର, ଆଫ୍ରିକା ଦେଶର ଜନଜୀବନ, କୃଷିବ୍ୟବସ୍ଥା ତଥା ଇଉରୋପଦେଶମାନଙ୍କର ଦର୍ଶନୀୟ ସ୍ଥାନକୁ ଉପନ୍ୟାସ ଶୈଳୀରେ ବର୍ଣ୍ଣନା କରିଥିବାରୁ ଗ୍ରନ୍ଥଟି ସୁଖପାଠ୍ୟ ହୋଇପାରିଛି । 'ଦେଶେଦେଶେ' ପୁସ୍ତକଟି ବିଭିନ୍ନ ଅନୁଭୂତିର ଏକ ଚମତ୍କାର କଳାସୃଷ୍ଟି ।

କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ''ଗଲିଅଇଲି ରୁଷଜର୍ମାନୀ'' ଗ୍ରନ୍ଥରେ ଏହି ଦୁଇଟି ଦେଶର ସାମାଜିକ ଓ ସାଂସ୍କୃତିକ ପରିଚୟ ସହିତ ଜନଜୀବନର ଜୀବନଧାରା, କର୍ତ୍ତବ୍ୟନିଷ୍ଠା ଏବଂ ଆନୁଷଙ୍ଗିକ ବହୁ ବିଷୟ ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଗୁରୁଚରଣ ପଟ୍ଟନାୟକଙ୍କ 'ରୁଷ୍‌ରେ ଯାହା ଦେଖିଲି' ରେ ରୁଷ ଦେଶ ତଥା ଜନସାଧାରଣଙ୍କ ବିଭିନ୍ନ କାର୍ଯ୍ୟପଦ୍ଧତିକୁ ଆଲୋଚନା କରାଯାଇଛି । ରାଧାନାଥ ରଥଙ୍କ 'ଆମେରିକା ଡାଏରୀ', 'ନବସଭ୍ୟତାର ଦେଶ' ଆଦି ଗ୍ରନ୍ଥରେ ପାଶ୍ଚାତ୍ୟ ଦେଶମାନଙ୍କର ବିଭିନ୍ନ ଦିଗକୁ ବିସ୍ତୃତ ଆଲୋଚନା କରିବା ସହିତ ଜନସାଧାରଣଙ୍କ ମାନସିକ ଭାବାବେଗର ଚମତ୍କାର ବିବରଣୀ ପ୍ରଦାନ କରିଛନ୍ତି । ରାଧାନାଥଙ୍କ 'ନାନା ଦେଶ ନାନା କଥା'ରେ ବିଭିନ୍ନ ପାଶ୍ଚାତ୍ୟ ଦେଶ ପରିଭ୍ରମଣ ଜନିତ ଅନୁଭୂତି ବେଶ୍ ସହଜ ଓ ସରଳ ଭାଷାରେ ବର୍ଣ୍ଣିତ ହୋଇଛି ।

ବହୁଦିନ ପୂର୍ବରୁ ନୃସିଂହ ମହାନ୍ତିଙ୍କ 'ବିଲାତ କଥା'ରେ ଦରିଆ ସେପାରି ମଣିଷଙ୍କ ଜୀବନଧାରା ଓ ବ୍ୟକ୍ତିଗତ ଅନୁଭୂତି ବର୍ଣ୍ଣିତ ହୋଇଥିବା ସମୟରେ ବେଦୁଇନ୍‌ଙ୍କ 'ଭୁଲି ନାହଁ' ଓ 'ଦୃଷ୍ଟିପାତ'ରେ କେତେକ ଭୌଗୋଳିକ ସ୍ଥାନର ବିବରଣୀ, ଦୈନ୍ୟଜୀବନର କାହାଣୀ ଓ ମଣିଷ ପ୍ରତି ସମ୍ବେଦନଶୀଳତା ପ୍ରକାଶ ପାଇଛି । ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ 'ରାଜଭବନରୁ ହସ୍ତଲିପି'ରେ ଅରୁଣାଚଳପ୍ରଦେଶର ବିସ୍ତୃତ ବିବରଣୀ ପ୍ରଦତ୍ତ । ରାଜ୍ୟପାଳ ରୂପେ କାର୍ଯ୍ୟ କରିବା ସମୟରେ ଅରୁଣାଚଳବାସୀଙ୍କ ଜୀବନଧାରାକୁ ଅନୁଶୀଳନ କରିଛନ୍ତି । ସେମାନଙ୍କର ଧାର୍ମିକ ଜୀବନ, ଶିକ୍ଷାଗତ ଅବସ୍ଥା, ସାମାଜିକ ଓ ସାଂସ୍କୃତିକ ଅବସ୍ଥା, ମିସ୍‌ନାରୀମାନଙ୍କ କୁ-ପ୍ରଚାରର ପ୍ରଭାବ, ଜନସାଧାରଣଙ୍କ ମାନବିକତା, ନୃତ୍ୟ-ସଙ୍ଗୀତ, ଦର୍ଶନୀୟ ସ୍ଥାନ ଓ ଲୋକମାନଙ୍କର ଖୋଲାଜୀବନ ସମ୍ବନ୍ଧରେ ଆଲୋଚନା କରିଛନ୍ତି ।

ଓଡ଼ିଆ କଥାସାହିତ୍ୟକୁ ବିଭିନ୍ନ ଦିଗରୁ ସମୃଦ୍ଧ କରିଥିବା ମନୋଜ ଦାସ ଓଡ଼ିଆ ପର୍ଯ୍ୟଟନ ସାହିତ୍ୟରେ ମଧ୍ୟ ଏକ ବିଶେଷ ସ୍ଥାନ ଦାବି କରିଥାନ୍ତି । ଛାତ୍ର ଜୀବନରେ ଆଫ୍ରୋ-ଏସୀୟ ଛାତ୍ର ସମ୍ମିଳନୀରେ ଯୋଗଦେବାକୁ ଯାଇ ଯେଉଁ ଅନୁଭୂତି ଲାଭ କରିଥିଲେ ତାହା ସେ ପ୍ରକାଶ କରିଛନ୍ତି ତାଙ୍କର ପ୍ରଥମ ଭ୍ରମଣ କାହାଣୀ '[illegible]ଆ ଚିଠି'ରେ । ଶ୍ରୀ ଅରବିନ୍ଦଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ ନିମିତ୍ତ ଇଂଲଣ୍ଡ ଯାଇ ଯେଉଁ ଉପାଦାନ ସଂଗ୍ରହ କରିଥିଲେ ତାହାକୁ ପୁଞ୍ଜିକରି ସେ ରଚନା କରିଛନ୍ତି 'ଦୂରଦୂରାନ୍ତର' । ଅନ୍ତରଙ୍ଗ ଭାରତ ୧ମ ଓ ୨ୟ ଭାଗ ତାଙ୍କର ଅନ୍ୟତମ ସଫଳ ଭ୍ରମଣ ବୃତ୍ତାନ୍ତ । ତାଙ୍କ ଭ୍ରମଣକାହାଣୀଗୁଡ଼ିକ ପାଠକର ବୌଦ୍ଧିକ ବିକାଶରେ ସହାୟତା କରିବା ସଙ୍ଗେ ସଙ୍ଗେ ବହୁ ମନୋରଞ୍ଜକ ଉପାଦାନରେ ଭରପୂର । ଗୋଟିଏ କଥାରେ କହିଲେ ଇତିହାସ, ରାଜନୀତି, ସମାଜନୀତି, ନୃତତ୍ତ୍ୱ, ଦର୍ଶନ ଏବଂ କଳାର ମଧୁର ସମନ୍ୱୟ ଘଟିଛି ତାଙ୍କ ଭ୍ରମଣ ସାହିତ୍ୟଗୁଡ଼ିକରେ । ବ୍ୟକ୍ତିଚରିତ୍ରର ଅବବୋଧ ଏବଂ ଇତିହାସର କବରତଳୁ ମାନବିକ ସଭ୍ୟତାର ଆବିଷ୍କାର କ୍ଷେତ୍ରରେ ଶ୍ରୀ ଦାସଙ୍କ ସୂକ୍ଷ୍ମ ବିଚାରବୋଧର ପରିଚୟ ମିଳିଥାଏ । ପରିଭ୍ରମଣ ଉଦ୍ଦେଶ୍ୟରେ ଯାଇଥିବା ଦେଶର ଜନସାଧାରଣଙ୍କ ଆଚାର-ବ୍ୟବହାର, ସାମାଜିକ ଜୀବନଧାରା, ସାଂସ୍କୃତିକ ଅବସ୍ଥା, ଧାର୍ମିକ ବିଚାରବୋଧ, ମଣିଷର ସୂକ୍ଷ୍ମ ମନସ୍ତତ୍ତ୍ୱ, ରାଜତନ୍ତ୍ର ଆଦି ବିଷୟରେ ଚମତ୍କାର ବିଶ୍ଳେଷଣ କରିଛନ୍ତି ତାଙ୍କ ସୃଷ୍ଟି ସମୂହରେ । ବର୍ଣ୍ଣନାର ଚମତ୍କାରିତା, ଗଭୀର ରସବୋଧ, ଉତ୍କଣ୍ଠା, ବ୍ୟଞ୍ଜନାଧର୍ମୀ ଭାଷା ଓ ସର୍ବୋପରି ସୌନ୍ଦର୍ଯ୍ୟାତ୍ମକ ଦୃଷ୍ଟିଭଙ୍ଗୀ ତାଙ୍କ ଭ୍ରମଣ କାହାଣୀଗୁଡ଼ିକୁ ବିଶେଷ ମର୍ଯ୍ୟାଦା ପ୍ରଦାନ କରିଥାଏ ।

ସାଂପ୍ରତିକ କାଳରେ ଡଃ ସୂର୍ଯ୍ୟକାନ୍ତ ଦାସଙ୍କ ଭ୍ରମଣ କାହାଣୀଗୁଡ଼ିକର ସ୍ୱତନ୍ତ୍ର ମହତ୍ତ୍ୱ ରହିଛି । ତାଙ୍କର 'ମସ୍କୋଦର୍ଶନ', 'ନାଗାରାଇଜ', 'ଆମେରିକାଦର୍ଶନ' ଆଦି ଗୋଟିଏ ଗୋଟିଏ ସଫଳ ଭ୍ରମଣ କାହାଣୀ । ପାରଂପରିକ ରୀତିରେ ଭ୍ରମଣ କାହାଣୀ ରଚନାର ସେ ପରିପନ୍ଥୀ । ତାଙ୍କର ଭ୍ରମଣ କହାଣୀଗୁଡ଼ିକ ପାଠକ ସମ୍ମୁଖରେ ଏକ ନିର୍ଦ୍ଦିଷ୍ଟ ସ୍ଥାନର ଫଟୋଚିତ୍ର

ତୋଳିଧରେ । 'ମସ୍କୋଦର୍ଶନ'ର ଦୁଇଟି ଦିଗ ରହିଛି । ପ୍ରଥମଟି ମସ୍କୋର ପର୍ଯ୍ୟଟନ ବିବରଣ ଓ ଅନ୍ୟଟି ହେଉଛି ସେଠାକାର ଅଧିବାସୀଙ୍କ ଜୀବନଦର୍ଶନ । ଏହି ପୁସ୍ତକଟିରେ ମସ୍କୋର ବିଭିନ୍ନ ସ୍ଥାନ, ତାର ଇତିହାସ, ସାମାଜିକ ଓ ଆର୍ଥିକ ଦିଗ, ଦେଶବାସୀଙ୍କ ଚାଲି-ଚଳଣି ସହିତ ସମାଜବାଦୀ ଦର୍ଶନ, ଇତିହାସ; ଦେଶର କୃଷି, ଶିକ୍ଷା ଓ ପ୍ରଶାସନିକ ଅବସ୍ଥା, ସାମାଜିକ ମୂଲ୍ୟବୋଧ, ଚିକିତ୍ସା ବ୍ୟବସ୍ଥା ଏବଂ ଭାରତ ସହିତ ସମ୍ପର୍କ ଆଦିର ବିସ୍ତୃତ ବିବରଣୀ ରହିଛି । ସେହିପରି ନର୍ଥ ଇଷ୍ଟର୍ଣ୍ଣହିଲ ୟୁନିଭରସିଟି, ନାଗାଲାଣ୍ଡରେ ଚାରିବର୍ଷ ଅଧ୍ୟାପନା କାଳରେ ନାଗାଲାଣ୍ଡ ସମ୍ପର୍କରେ ଯେଉଁ ବିସ୍ତୃତ ବିବରଣୀ ସଂଗ୍ରହ କରିଥିଲେ, ତାର କଳାତ୍ମକ ରୂପ ପରିଲକ୍ଷିତ ହୁଏ 'ନାଗାରାଇଜ' ଗ୍ରନ୍ଥରେ । ନାଗାଲାଣ୍ଡର ଜନଜୀବନ, ଆର୍ଥନୀତିକ ଅଭିବୃଦ୍ଧି, ସଂସ୍କୃତି, ନୃତ୍ୟ-ସଙ୍ଗୀତ, ପର୍ବ-ପର୍ବାଣି, ଖାଦ୍ୟ-ପାନୀୟ, ପ୍ରେମ ଓ ବିବାହ ତଥା ଜନସାଧାରଣଙ୍କ ବିଭିନ୍ନ ବୈଚିତ୍ର୍ୟ ସମ୍ପର୍କରେ ଏହି ପୁସ୍ତକଟି ଗୋଟିଏ ପ୍ରାମାଣିକ ଦଲିଲ । ସମାଜତତ୍ତ୍ୱଠାରୁ ନୃତତ୍ତ୍ୱ ପର୍ଯ୍ୟନ୍ତ - ସବୁଦିଗରୁ ସେ ନାଗାମାନଙ୍କର ଜୀବନକୁ ଆଲୋଚନା କରିଛନ୍ତି । ୧୯୫୮ ମସିହାରେ ଆମେରିକା ଯାଇଥିବା ସମୟରେ ସେଠାକାର ସାମାଜିକ, ରାଜନୀତିକ, ଆର୍ଥନୀତିକ, ସାଂସ୍କୃତିକ ଜୀବନ ତଥା ବ୍ୟକ୍ତିଚରିତ୍ର ସମ୍ପର୍କରେ ଯେଉଁ ପ୍ରତ୍ୟକ୍ଷ ଜ୍ଞାନ ଲାଭ କରିଥିଲେ ତାର ପରିଚୟ ପରିଲକ୍ଷିତ ହୁଏ 'ଆମେରିକା ଦର୍ଶନ'ରେ । ସରଳଭାଷା, ବିଭିନ୍ନ ତଥ୍ୟର ସହଯୋଗରେ ତାଙ୍କର ପ୍ରତ୍ୟେକଟି ଭ୍ରମଣ ସାହିତ୍ୟ ଉପାଦେୟ ।

କଥାକାର ଅଖିଳ ମୋହନ ପଟ୍ଟନାୟକଙ୍କ 'ଅନ୍ୟଦେଶ' ଏକ ଚମତ୍କାର ଭ୍ରମଣ ବୃତ୍ତାନ୍ତ । ଲେଖକ ସ୍ୱୟଂ ଜଣେ ଉଚ୍ଚକୋଟୀର ଗାଳ୍ପିକ ହୋଇଥିବାରୁ ଏହି ଭ୍ରମଣ କାହାଣୀଟିରେ ତାଙ୍କର ରସଚେତନା, ଘଟଣା ଗୁଂଫନ ବର୍ଣ୍ଣନାଚାତୁରୀ ଓ ସ୍ଥାନ ବିଶେଷର ବିବରଣୀ ପ୍ରଦାନ କାଳରେ ଅନ୍ତର୍ଦୃଷ୍ଟି ପାଠକକୁ ବେଶ୍ କିଛି ସମୟ ଧରି ବାନ୍ଧି ରଖିପାରିଥାଏ ।

ଶରତଚନ୍ଦ୍ର ମିଶ୍ରଙ୍କ 'ଇଉରୋପ ଦେଖା' ଲଣ୍ଡନ ପରିଭ୍ରମଣ ଜନିତ ଅନ୍ୟତମ ମନୋରମ ଭ୍ରମଣ ବୃତ୍ତାନ୍ତଟିଏ । ଜଣେ ପୋଲିସ ଅଫିସର ଭାବରେ ବିଦେଶ ଯାଇ ଅଧ୍ୟୟନ ପିପାସା ଚରିତାର୍ଥ କରିବାର ଯେଉଁ ସ୍ୱପ୍ନ ଦେଖିଥିଲେ, ଲଣ୍ଡନ ଯାଇ ତାହା ଚରିତାର୍ଥ କରିପାରିଛନ୍ତି । ଲଣ୍ଡନରେ ରହଣି ସମୟରେ ଏହି ସହରଟିକୁ ଜାଣିବାର ଆନ୍ତରିକ ପ୍ରଚେଷ୍ଟା କରିଛନ୍ତି । ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପଢ଼ିବା ସମୟରେ ଏହି କଲେଜଟିର ଅତୀତ ଇତିହାସ, ସାଂପ୍ରତିକ ଅବସ୍ଥା ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଛନ୍ତି । ଏହାଛଡ଼ା ଲଣ୍ଡନବାସୀଙ୍କ ଦୃଷ୍ଟିରେ ଭାରତୀୟଙ୍କ ମର୍ଯ୍ୟାଦା, ସେମାନଙ୍କର ଜୀବନପ୍ରବାହ, ପାରିବାରିକ ଅବସ୍ଥା, ପ୍ରଶିକ୍ଷଣ ବ୍ୟବସ୍ଥା, ସାମାଜିକ ଦ୍ୱନ୍ଦ୍ୱ, ଆଚାର-ବିଚାର, ଆମୋଦ-ପ୍ରମୋଦ, ଚାଲି-ଚଳଣି ସମ୍ବନ୍ଧରେ ଆଲୋଚନା କରିଛନ୍ତି । ବର୍ଣ୍ଣନାରେ ବିଶେଷ ଚମତ୍କାରିତା ନ ଥିଲେହେଁ; ଅନୁଭୂତିର ନିବିଡ଼ତା ଗ୍ରନ୍ଥଟିର ମର୍ଯ୍ୟାଦା ବୃଦ୍ଧି କରିଛି । ନଚିକେତା ଦାସଙ୍କ ବର୍ଲିନ୍ ସହରରେ

କିଛିଦିନର ଅବସ୍ଥାନର ଅନୁଭୂତିକୁ ନେଇ 'ବର୍ଲିନ୍ ବର୍ଲିନ୍' ଗ୍ରନ୍ଥଟି ରଚିତ । ଏଥିରେ ବର୍ଲିନ ସହରର କେତେକ ଅଭିଜାତ ସ୍ଥାନ, ଜାପାନବାସୀଙ୍କ ସହୃଦୟତା, ସଙ୍ଗୀତ-ନୃତ୍ୟ, ସମୟାନୁବର୍ତ୍ତିତା, ପରିଶ୍ରମ, ଆତିଥ୍ୟ, ତା'ର ପ୍ରାକୃତିକ ପରିବେଶ, ବର୍ଲିନ ସହରର ଇତିହାସ ଆଦି ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଉପନ୍ୟାସ ଶୈଳୀରେ ଗ୍ରନ୍ଥଟି ବର୍ଣ୍ଣିତ ହୋଇଥିବାରୁ ସୁଖପାଠ୍ୟ ହୋଇପାରିଛି ।

ବିଶିଷ୍ଟ କବି ସୀତାକାନ୍ତ ମହାପାତ୍ରଙ୍କ 'ଅନେକ ଶରତ' ଏକ ଅଭିନବ ଭ୍ରମଣ ବୃତ୍ତାନ୍ତ । କବି ସୋଭିଏତ ୟୁନିୟନ୍, ଯୁଗୋସ୍ଲୋଭିଆ ଓ ରୁମାନିଆ ପରିଭ୍ରମଣ ସମୟରେ ଯେଉଁ ବିଚିତ୍ର ଅନୁଭୂତି ଲାଭ କରିଥିଲେ, ତାର କାବ୍ୟିକ ଆଲେଖ୍ୟ ଏହି ଭ୍ରମଣ ଗ୍ରନ୍ଥଟି । ଜଣେ କବିର ଦୃଷ୍ଟି ନେଇ ସେ ଏହି ତିନୋଟି ପୂର୍ବ-ୟୁରୋପୀୟ ଦେଶକୁ ଦେଖିଛନ୍ତି; ଦରଦୀ ମଣିଷପରି ଜନସାଧାରଣଙ୍କ ଜୀବନଯାପନ ପ୍ରଣାଳୀକୁ ଅନୁଭବ କରିଛନ୍ତି । ଉପରୋକ୍ତ ଦେଶତ୍ରୟର ସାମାଜିକ ଆଚାର-ବିଚାର, ଚାଲି-ଚଳଣି, ସଂସ୍କୃତି, ଇତିହାସ, ବ୍ୟକ୍ତିତ୍ୱ ଓ ସାହିତ୍ୟାଦିକୁ ଗଭୀର ବିଶ୍ଳେଷଣାତ୍ମକ ଦୃଷ୍ଟିଭଙ୍ଗୀ ନେଇ ପ୍ରକାଶ କରିଛନ୍ତି । ନିବିଡ଼ ଅନୁଭବ, ଆବେଗାତ୍ମକ ଭାଷା, ନିରପେକ୍ଷ ବିଚାର, ଗଭୀର ମନନଶୀଳତା ଯୋଗୁଁ ଗ୍ରନ୍ଥଟି ଉପଭୋଗ୍ୟ ହୋଇପାରିଛି । କବିତ୍ୱପୂର୍ଣ୍ଣ ଭାଷା, ଚିତ୍ରକଳ୍ପ ଆଦିର ପ୍ରୟୋଗ ଗ୍ରନ୍ଥଟିର କଳାତ୍ମକ ମୂଲ୍ୟ ବୃଦ୍ଧି କରିପାରିଛି ।

ସାଂପ୍ରତିକ ଓଡ଼ିଆ କଥାସାହିତ୍ୟର ଅନ୍ୟତମ କୁଶଳୀ କାରିଗର କିଶୋରୀ ଚରଣ ଦାସଙ୍କ 'ଚେନାଏ ପୃଥିବୀ ଚିରୁଡ଼ାଏ ଘର' ଭିନ୍ନ ସ୍ୱାଦର ଏକ ଭ୍ରମଣଗ୍ରନ୍ଥ; ପାରମ୍ପରିକ ଭ୍ରମଣ ସାହିତ୍ୟ ରଚନାର ସଂପୂର୍ଣ୍ଣ ବିପରୀତଧର୍ମୀ । ଏଥିରେ ସର୍ବମୋଟ ତେରଟି ଭ୍ରମଣ କାହାଣୀ ସଂଯୋଜିତ, ଯେଉଁଥିରେ ଦେଶ-ବିଦେଶର ବିଭିନ୍ନ ଅନୁଭୂତି ବର୍ଣ୍ଣିତ । ଏହି ଭ୍ରମଣ କାହାଣୀଗୁଡ଼ିକର ନାମକରଣରେ ମଧ୍ୟ ଲେଖକଙ୍କର ବୈଶିଷ୍ଟ୍ୟ ବାରିହୋଇପଡ଼େ । ଆଫ୍ରିକା, ଭିଏତନାମ, ଅଷ୍ଟ୍ରେଲିଆ, କାନାଡ଼ା, ଯୁକ୍ତରାଷ୍ଟ୍ର ଆମେରିକା, ଥାଇଲାଣ୍ଡ ଆଦି ବିଭିନ୍ନ ଦେଶର ଅନୁଭୂତି ଏଥିରେ ରହିଛି । କୌଣସି ଭ୍ରମଣ କାହାଣୀରେ ବିବରଣୀ ପ୍ରଦାନ କରାଯାଇ ନାହିଁ; ପରନ୍ତୁ ପ୍ରତ୍ୟେକଟି କାହାଣୀ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମୌଳିକ ଗଳ୍ପରେ ରୂପାନ୍ତରିତ ହୋଇଯାଇଛି । ସୂକ୍ଷ୍ମଭାବରେ ବିଚାର ନ କଲେ ଲେଖକଙ୍କ ବକ୍ତବ୍ୟଟି ସ୍ପଷ୍ଟ ହୋଇପାରେ ନାହିଁ । ଏହି କାହାଣୀଗୁଡ଼ିକ ମଧ୍ୟରେ ଦ୍ୟୋତିତ ହୋଇ ଉଠିଛି ଗୋଟିଏ ଗୋଟିଏ ଜାତିର ଜୀବନଯନ୍ତ୍ରଣା, ମାନବିକ ସ୍ନେହ-ଶ୍ରଦ୍ଧା, ସାମାଜିକ ଚଳଣି, ଆଚାର-ବ୍ୟବହାର, ଶିକ୍ଷା, ସଭ୍ୟତା ଓ ସଂସ୍କୃତି । ସୂଚନାଧର୍ମୀ ବକ୍ତବ୍ୟ ସହିତ ନିରପେକ୍ଷ ଦୃଷ୍ଟିଭଙ୍ଗୀ ଓ ସର୍ବୋପରି ଆନ୍ତରିକ ଅନୁଭୂତି ଏହାର ସୌକର୍ଯ୍ୟ ବୃଦ୍ଧିରେ ସହାୟତା କରିପାରିଛି ।

ପ୍ରଶାସକ ସହଦେବ ସାହୁ ଅକ୍ସଫୋର୍ଡରେ ଅନୁଷ୍ଠିତ ହୋଇଥିବା ବିପର୍ଯ୍ୟୟ ପାଇଁ ପ୍ରସ୍ତୁତି ଓ ଉଦ୍ଧାର କାର୍ଯ୍ୟ କ୍ରମ ପରିଚାଳନା ସମ୍ପର୍କୀୟ ଦଶ ସପ୍ତାହ ବ୍ୟାପୀ ଏକ ଉନ୍ନୟନ

କର୍ମଶାଳାରେ ଯୋଗ ଦେବାପାଇଁ ଲଣ୍ଡନ ଯାଇଥିଲେ । ୧୯୮୫ ମସିହା ଏପ୍ରିଲ୍ ୨୮ରୁ ଜୁଲାଇ ୯ ତାରିଖ ପର୍ଯ୍ୟନ୍ତ ସେ ସେଠାରେ ଅବସ୍ଥାନ କରିଥିଲେ । ଏହି ସମୟ ମଧ୍ୟରେ ଇଂଲଣ୍ଡର ଲୋକଜୀବନ, ପ୍ରଶାସନିକ ଅବସ୍ଥା, ଶିକ୍ଷାପଦ୍ଧତି, ବ୍ୟବସାୟ ସଂସ୍ଥା, ସେଠାକାର ସାମାଜିକ ଓ ସାଂସ୍କୃତିକ ଅବସ୍ଥା, ଖାଦ୍ୟପେୟ, ଉତ୍ସବ-ଅନୁଷ୍ଠାନ, ବଜାର ଦର, ବ୍ୟାଙ୍କ୍ କାରବାର, ପାର୍କ, ମେଳା-ମହୋତ୍ସବ, ବିଚାରାଳୟ ଆଦି ସମ୍ପର୍କରେ ଯେଉଁ ଅନୁଭୂତି ଲାଭ କରିଥିଲେ, ତାହା ଉକ୍ତ ପୁସ୍ତକରେ ସେ ବର୍ଣ୍ଣନା କରିଛନ୍ତି । ଶ୍ରୀ ସାହୁ ଜଣେ ପ୍ରଶାସକ ହୋଇଥିବାରୁ ସେ ଦେଶର ବିଭିନ୍ନ କାର୍ଯ୍ୟକଳାପ ଓ ବସ୍ତୁକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରିବା ସଙ୍ଗେ ସଙ୍ଗେ ପ୍ରାଚ୍ୟ ଦେଶବାସୀଙ୍କ ଜୀବନପଦ୍ଧତି ସହିତ ତାର ଏକ ତୁଳନାତ୍ମକ ବିଚାର ଉପସ୍ଥାପନ କରିଛନ୍ତି ।

ବିଶିଷ୍ଟ ଐତିହାସିକ ଡଃ ମନ୍ମଥନାଥ ଦାସଙ୍କ 'ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ' ଆତ୍ମଜୀବନୀ ଓ ଭ୍ରମଣ କାହାଣୀର ଏକ ଅପୂର୍ବ ସମନ୍ୱୟ । ଡଃ ଦାସ ଉଚ୍ଚଶିକ୍ଷା ତଥା ବିଭିନ୍ନ ଆଲୋଚନା ଚକ୍ରରେ ଭାଗନେବା ନିମିତ୍ତ ବିଶ୍ୱର ବହୁସ୍ଥାନ ପରିଭ୍ରମଣର ସୁଯୋଗ ପାଇଛନ୍ତି । ଇଂଲଣ୍ଡ, ଆମେରିକା, ଜର୍ମାନ୍, ଅଷ୍ଟ୍ରେଲିଆ, ରୁଷ୍, ଜାପାନ ଆଦି ବହୁସ୍ଥାନକୁ ଯାଇ ସେଠାକାର ଜନଜୀବନ ସମ୍ପର୍କରେ ଆସିଛନ୍ତି । ନିବିଡ଼ ଭାବରେ ଅନୁଭବ କରିଛନ୍ତି ସେହି ଦେଶମାନଙ୍କର ଜୀବନଯାପନ ପ୍ରଣାଳୀକୁ । ଅନୁସନ୍ଧାନ କରିଛନ୍ତି ଜାତିର ଇତିହାସକୁ । ଉପଭୋଗ କରିଛନ୍ତି ବିଭିନ୍ନ ଦର୍ଶନୀୟ ସ୍ଥାନ । ଭ୍ରମଣ କରିଥିବା ଦେଶର ସାମାଜିକ, ସାଂସ୍କୃତିକ, ଆର୍ଥନୀତିକ ଅବସ୍ଥାର ପର୍ଯ୍ୟାଲୋଚନା କରିଛନ୍ତି । ଇତିହାସର କଙ୍କାଳରୁ ଉଦ୍ଧାର କରିଛନ୍ତି ଜାତିର ଇତିହାସକୁ । ଡଃ ଦାସ ଜଣେ ଐତିହାସିକ ହେଲେହେଁ, ତାଙ୍କର ସୌନ୍ଦର୍ଯ୍ୟ ଦୃଷ୍ଟି ବେଶ୍ ତୀକ୍ଷ୍ଣ । ଦୃଷ୍ଟି ତାଙ୍କର ଇତିହାସନିଷ୍ଠ ମାତ୍ର ଅନୁଭବ ଜଣେ ସଚ୍ଚା ସାହିତ୍ୟିକର । ତେଣୁ ଏହି ଭ୍ରମଣ ଗ୍ରନ୍ଥଟିରେ ସାହିତ୍ୟ ଓ ଇତିହାସର ମଧୁର ସମନ୍ୱୟ ସଂଘଟିତ ହୋଇପାରିଛି ।

ଭୂପେନ ମହାପାତ୍ରଙ୍କ 'ଉପତ୍ୟକାର ଉପକଥା' (୧୯୯୬) ଓ 'ଅପୂର୍ବ ପୂର୍ବ' ଦୁଇଟି ଚମତ୍କାର ଭ୍ରମଣ ଗ୍ରନ୍ଥ । ପ୍ରଥମ ଗ୍ରନ୍ଥରେ ଆସାମ ସଂପର୍କରେ ବିସ୍ତୃତ ବିବରଣୀ କଳାତ୍ମକ ଢଙ୍ଗରେ ବର୍ଣ୍ଣିତ । ଲେଖକ ସ୍ୱୟଂ ଜଣେ ଗାଳ୍ପିକ ହୋଇଥିବାରୁ ଏହାର ପ୍ରତିଟି ପରିଚ୍ଛେଦ ଗୋଟିଏ ଗୋଟିଏ ଉତ୍କୃଷ୍ଟ ଗଳ୍ପର ଭ୍ରମ ସୃଷ୍ଟି କରେ । ଆସାମବାସୀଙ୍କ ଜୀବନଯାପନ ପ୍ରଣାଳୀ, ଆତିଥେୟତା, ପୂଜାପାର୍ବଣ, କଳା-ସାହିତ୍ୟ-ସଂସ୍କୃତି, ଶିକ୍ଷା, ପ୍ରଶାସନିକ ବ୍ୟବସ୍ଥା ତଥା ଦର୍ଶନୀୟ ସ୍ଥାନମାନଙ୍କର ଏକ କଳାପୂର୍ଣ୍ଣ ବିବରଣୀଗ୍ରନ୍ଥ 'ଉପତ୍ୟକାର ଉପକଥା' । ସେହିପରି ଦ୍ୱିତୀୟ ଗ୍ରନ୍ଥ 'ପୂର୍ବଅପୂର୍ବ' (୧୯୯୯)ରେ ମେଘାଳୟ, ତ୍ରିପୁରା, ଅରୁଣାଚଳପ୍ରଦେଶ, ନାଗାଲାଣ୍ଡ, ଭୁଟାନ ଆଦି ସ୍ଥାନର କେବଳ ବିବରଣୀ ରହି ନାହିଁ; ପରନ୍ତୁ ଉକ୍ତ ସ୍ଥାନଗୁଡ଼ିକର ଲୋକଜୀବନ ସହିତ ଲେଖକ ନିଜକୁ ସଂପୃକ୍ତ କରିଦେଇଥିବାରୁ ଗ୍ରନ୍ଥଟି ଐତିହାସିକ ଉପନ୍ୟାସର ଭ୍ରମ ସୃଷ୍ଟିକରିବାକୁ ସମର୍ଥ ହୋଇଛି । ସରଳଭାଷା, ଗଳ୍ପର

ବ୍ୟଞ୍ଜନା ଧର୍ମିତା, ଉପନ୍ୟାସର ବର୍ଣ୍ଣନାଚାତୁରୀ, କବିତ୍ୱପୂର୍ଣ୍ଣ ଭାବ ସର୍ବୋପରି ଲେଖକଙ୍କର ସମ୍ବେଦନଶୀଳ ଦରଦୀଭାବ ଶ୍ରୀଯୁକ୍ତ ମହାପାତ୍ରଙ୍କ ଭ୍ରମଣ ଗ୍ରନ୍ଥଦ୍ୱୟକୁ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିପାରିଛି ।

ଲକ୍ଷ୍ୟ କରିବାର କଥା ସ୍ୱାଧୀନତୋତ୍ତର କାଳରେ ଯେତେ ଭ୍ରମଣ ସାହିତ୍ୟ ରଚିତ ହୋଇଛି, ଅଧିକାଂଶ ଭ୍ରମଣ ସାହିତ୍ୟରେ ଆମେରିକା ଓ ଇଂଲଣ୍ଡର ଅନୁଭୂତି ବେଶ୍ ପ୍ରତୁଳ । ଅଧିକାଂଶ ଭ୍ରମଣକାରୀଙ୍କୁ ଏହି ଦୁଇଟି ଦେଶ ଅଧିକଭାବରେ ଆକର୍ଷଣ କରିଛି । ବୋଧହୁଏ ଜ୍ଞାନ-ବିଜ୍ଞାନ ଚର୍ଚ୍ଚା ତଥା ପ୍ରାଚୁର୍ଯ୍ୟ କ୍ଷେତ୍ରରେ ଏହି ଦୁଇଟି ଦେଶ ବିଶ୍ୱରେ ଅଗ୍ରଗଣ୍ୟ ହୋଇଥିବାରୁ ଭ୍ରମଣକାରୀଗଣ ସ୍ୱତଃ ଆକୃଷ୍ଟ ହୋଇ ପଡ଼ିଛନ୍ତି ଏହି ଦୁଇଟି ଦେଶ ଭ୍ରମଣ ପାଇଁ । ଅନ୍ୟ ଯେଉଁ ଭ୍ରମଣକାରୀଗଣ ଆମେରିକାର ଅନୁଭୂତିକୁ ପାଥେୟ କରି ଭ୍ରମଣ ସାହିତ୍ୟ ସୃଷ୍ଟି କରିଛନ୍ତି, ସେମାନଙ୍କ ମଧ୍ୟରୁ ହୃଦାନନ୍ଦ ରାୟଙ୍କର 'ଯେତିକି ଦେଖିଛି ଆମେରିକା ଯେତିକି ବୁଝିଛି', ପ୍ରମୋଦ କୁମାର ମହାପାତ୍ରଙ୍କ 'ଆଜିର ଆମେରିକା', ରମାମଣି ମିଶ୍ରଙ୍କ 'ଆମେରିକା ଚିଠି', ବ୍ରଜମୋହନ ପ୍ରଧାନଙ୍କର 'ଆମେରିକା ଯାତ୍ରୀ' ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ 'ତୃଷ୍ଣା' ଆଦି ପ୍ରଧାନ । ଏହି ଭ୍ରମଣ କାହାଣୀଗୁଡ଼ିକରେ ଆମେରିକାର ଲୋକଜୀବନଧାରା, ଐଶ୍ୱର୍ଯ୍ୟ, ଜ୍ଞାନ-ବିଜ୍ଞାନ, ତା'ର ଅତୀତ ଐତିହ୍ୟ, ସଂସ୍କୃତି ଓ ଇତିହାସ ଆଦିର ଚମତ୍କାର ଚିତ୍ର ପ୍ରଦତ୍ତ ହୋଇଛି । ସେହିପରି ଡଃ ଜଗନ୍ନାଥ ପ୍ରସାଦ ଦାସଙ୍କ 'ମନସ୍ତାତ୍ତ୍ୱିକର ମସ୍କୋଭ୍ରମଣ', ପ୍ରତିଭା ରାୟଙ୍କ 'ମୈତ୍ରୀ ପାଦପର ଶାଖା ପ୍ରଶାଖା'ରେ ରୁଷ୍ ଦେଶର ଏକ ସଜୀବ ଚିତ୍ର ଉତ୍ତୋଳିତ । ଏତଦ୍ ବ୍ୟତୀତ ବିଜୁ ପଟ୍ଟନାୟକଙ୍କର 'ବୁଲାନିଶା', ଡଃ ଗଣେଶ୍ୱର ମିଶ୍ରଙ୍କ 'ସମୁଦ୍ର ସେପାରେ', 'କ୍ୟାଣ୍ଟବରୀ କାହାଣୀ'; ଦେବେଶ ଦାସଙ୍କ 'ରୋମ୍‌ଠାରୁ ରମନା'; ପଞ୍ଚାନନ ମହାନ୍ତିଙ୍କ 'ପୂର୍ବରୁ ପଶ୍ଚିମ', ଜଗନ୍ନାଥ ମହାନ୍ତିଙ୍କ 'ଦୂରଦୂରାନ୍ତ', ଗୋକୁଳାନନ୍ଦ ମହାପାତ୍ରଙ୍କ 'ନୀଳଚକ୍ରବାଳ ସେପାରେ', 'ପାଶ୍ଚାତ୍ୟ ସ୍ମୃତି', ମନମୋହନ ମିଶ୍ରଙ୍କ 'ନବଯୌବନର ଦେଶ', ଉଦୟନାଥ ମିଶ୍ରଙ୍କ 'ଭାତ ଓ ବିଲାତ', ଶାନ୍ତନୁ ଆଚାର୍ଯ୍ୟଙ୍କ 'କରଞ୍ଜିଆ ଡାଏରୀ', ଗୁରୁପ୍ରସାଦ ମହାନ୍ତିଙ୍କ 'ପାତାଳ ପୁରୀର ହାଲଚାଲ୍', ରାମାନନ୍ଦ ତ୍ରିପାଠୀଙ୍କ 'ଜଙ୍ଗଲ ଭ୍ରମଣ', ସୁସ୍ମିତା ବାଗ୍‌ଚୀଙ୍କ 'ମୋ ଝର୍କାରୁ ପୃଥବୀ', ଆଶୁତୋଷ ପ୍ରସାଦ ପଟ୍ଟନାୟକଙ୍କ 'ପ୍ରାଚୀ ଓ ପ୍ରତୀଚି', ନୃସିଂହ ମହାନ୍ତିଙ୍କ 'ବିଲାତ କଥା', ଶତ୍ରୁଘ୍ନ ନାଥଙ୍କ 'ବିଲାତ କଥା', ଗୋପୀନାଥ ମହାପାତ୍ରଙ୍କ 'ଅଷ୍ଟ୍ରେଲିଆ ଭ୍ରମଣ' ଆଦି ଗ୍ରନ୍ଥରୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ବହୁ ବିଷୟ ବେଶ୍ କଳାତ୍ମକ ଢଙ୍ଗରେ ବର୍ଣ୍ଣିତ । ଏମାନଙ୍କ ବ୍ୟତୀତ ଚିନ୍ତାମଣି ପାଣିଗ୍ରାହୀ, ବିଶ୍ୱନାଥ ପଶାୟତ, ଡଃ ଗଗନେନ୍ଦ୍ର ନାଥ ଦାଶ, ଗିରିଜାଚନ୍ଦ୍ର ନାୟକ ଆଦି ନିଜର ଭ୍ରମଣାନୁଭୂତିକୁ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରି ଓଡ଼ିଆ ସାହିତ୍ୟର ଏହି ବିଭାଗଟିକୁ ସମୃଦ୍ଧ କରିଛନ୍ତି ।

ତୀର୍ଥସ୍ଥାନ ଭ୍ରମଣ ଉଦ୍ଦେଶ୍ୟରେ ଓଡ଼ିଶାର ବହୁ ସାଧୁପଣ୍ଡିତ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରି ସେମାନଙ୍କର ଅନୁଭୂତିକୁ ଲିପିବଦ୍ଧ କରିଛନ୍ତି । ଏହିପରି ଗ୍ରନ୍ଥମାନଙ୍କ ମଧ୍ୟରେ ଅନୀଲ ଦେ'ଙ୍କ ଅମୃତ ସନ୍ଧାନେ (ହିମାଳୟ ଭ୍ରମଣ), ଗୋରାଚାନ୍ଦ ମିଶ୍ରଙ୍କ 'ଶିରିଡ଼ିରୁ ପୁଟପର୍ତ୍ତୀ', ମହାପାତ୍ର ଯତୀନ୍ଦ୍ର କୁମାରଙ୍କ 'ନର୍ମଦା-କନ୍ୟାକୁମାରୀ', 'ଏକ ତୀର୍ଥ ନଗରୀର ଉପକଥା', 'ବ୍ରାହ୍ମଣୀରୁ ବ୍ରହ୍ମପୁତ୍ର', 'କେତେ ଦେବାଳୟ କେତେ ଲୋକାଳୟ', ଭାଗବତ ଦାସଙ୍କ 'ନୀଳାଦ୍ରିରୁ ସହ୍ୟାଦ୍ରି, ଆର୍ତ୍ତତ୍ରାଣ ମିଶ୍ରଙ୍କ 'ଦ୍ୱାରକା ପଥେ', 'ଦ୍ୱାରକା ପ୍ରଭାସ', 'ତୁଷାର ତୀର୍ଥ ଅମର ନାଥ', 'ଦେବଭୂମି ଦାକ୍ଷିଣାତ୍ୟ', 'ତିନିସାଗର ସଙ୍ଗମ', 'ଅପରୂପା ନେପାଳ', 'ମରୁପ୍ରାନ୍ତେ ରାଜସ୍ଥାନ', ନୀଳମଣି ମିଶ୍ରଙ୍କ 'ଭାରତଦର୍ଶନ-ତୀର୍ଥଭ୍ରମଣ', ବିଭୂତି ଭୂଷଣ ମହାନ୍ତିଙ୍କ 'ମର୍ତ୍ତ୍ୟବୈକୁଣ୍ଠ' ଆଦି ପ୍ରଧାନ । ଏହି ସମସ୍ତ ଗ୍ରନ୍ଥକୁ କେବଳ ନିଛକ ତୀର୍ଥଭ୍ରମଣଜନିତ ପୁସ୍ତକ ଭାବରେ ଗ୍ରହଣ କରାଯାଇ ନ ପାରେ । ତୀର୍ଥସ୍ଥାନ ସହିତ ସେହି ସ୍ଥାନର ପ୍ରାକୃତିକ ଦୃଶ୍ୟ, ଭୂଗୋଳ, ବ୍ୟକ୍ତିବିଶେଷ ତଥା ଜାତିର ସାଂସ୍କୃତିକ ଜୀବନ ଆଦି ସମ୍ବନ୍ଧରେ ମଧ୍ୟ ହୃଦୟସ୍ପର୍ଶୀ ଆଲୋଚନା ରହିଛି ।

ଓଡ଼ିଆରେ ରଚିତ ହୋଇଥିବା ଭ୍ରମଣକାହାଣୀଗୁଡ଼ିକ ମୁଖ୍ୟତଃ ବିଦେଶ ଓ ସ୍ୱଦେଶ ଅନୁଭୂତି ପରିପୁଷ୍ଟ । ଏହା ମଧ୍ୟରୁ ଅନେକ ବିବରଣାତ୍ମକ । ପୁଣି କେତେକ ସାହିତ୍ୟିକ ସୁଷମା ରଚିତ ହୋଇଥିବାରୁ ପାଠକୀୟ ଶ୍ରଦ୍ଧା ଆକର୍ଷଣ କରିପାରନ୍ତି ନାହିଁ । ଯଥାର୍ଥରେ ମାତ୍ର ଅଳ୍ପ କେତେକ ଭ୍ରମଣ କାହାଣୀ କାଳଜୟୀ ହେବାର ଦାବି କରିବାକୁ ସମର୍ଥ । ନିଜର ପରିଭ୍ରମଣ ଜନିତ ଅନୁଭୂତିକୁ ବ୍ୟକ୍ତ କରିଦେଲେ ତାହା କଦାପି ବିଶିଷ୍ଟ ସୃଷ୍ଟିର ମର୍ଯ୍ୟାଦା ଦାବି କରି ନ ପାରେ । ଯେଉଁଠାରେ ଲେଖକର ଅନୁଭୂତି ଆନ୍ତରିକତାପୂର୍ଣ୍ଣ, ଦୃଷ୍ଟିଭଙ୍ଗୀ ନୂତନ ଅନ୍ୱେଷାର ଜିଜ୍ଞାସାବୋଧ ଚିର ଭାସ୍ୱର, ସେଠାରେ ଭ୍ରମଣ ସାହିତ୍ୟ ଚିରକାଳ ମୂଲ୍ୟବୋଧରେ ଭାସ୍ୱର ହୋଇଉଠେ । ଏହାସତ୍ତ୍ୱେ ଓଡ଼ିଆ ଭ୍ରମଣ ସାହିତ୍ୟ ଆଦୌ ଦରିଦ୍ର ନୁହେଁ; ଏହାର ଭବିଷ୍ୟତ ବେଶ୍ ସମ୍ଭାବନାମୟ ।

# ବିଂଶ ଶତକର ଓଡ଼ିଆ ଆତ୍ମଜୀବନୀ

ଯେତେବେଳେ କୌଣସି ସ୍ରଷ୍ଟା ନିଜର ଆତ୍ମକଥାକୁ କଳାସୃଷ୍ଟି ମାଧ୍ୟମରେ ପ୍ରକାଶ କରିବାକୁ ଚେଷ୍ଟା କରେ, ସେତେବେଳେ ତାହା ଆତ୍ମଜୀବନୀର ରୂପଲାଭ କରେ । ଏଥିରେ ସ୍ରଷ୍ଟା ନିଜ ସୃଷ୍ଟିର ନାୟକ । 'ଆତ୍ମଜୀବନୀ' ସ୍ରଷ୍ଟା ଆତ୍ମବିଶ୍ଳେଷଣର ସାକାର ରୂପ । ଏହା ସଂପୂର୍ଣ୍ଣ ଭାବେ ଆତ୍ମକୈନ୍ଦ୍ରିକ । ଆତ୍ମସମୀକ୍ଷା, ଆତ୍ମ ସଂଶୋଧନ ଓ ଆତ୍ମପ୍ରତିଷ୍ଠା କାମନାରୁ ଏହାର ସୃଷ୍ଟି । ନିରାସକ୍ତ ଭାବେ ଆତ୍ମବୀକ୍ଷଣ, ବିସ୍ମୃତ ଅତୀତ ମଧ୍ୟରେ ନିମଜ୍ଜିତ ହୋଇ ଆତ୍ମ ଆବିଷ୍କାର ବଡ଼ ଦୁରୂହ କାର୍ଯ୍ୟ । ଆତ୍ମଜୀବନୀ ଏକ କଥାରେ ସ୍ରଷ୍ଟା ପୁରୁଷଙ୍କ ଆତ୍ମୋପଲବ୍ଧିର ଧାରାବାହିକ ଇତିହାସ । (ମିଶ୍ର ଶ୍ରୀନିବାସ - ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ - ପୃ-୪୮୦, ବିଦ୍ୟାପୁରୀ - ୧୯୯୫) । ଆତ୍ମଚରିତ ସଂପୂର୍ଣ୍ଣ ବ୍ୟକ୍ତିଗତ ହୋଇଥିଲେହେଁ ଏଥିରୁ ସମକାଳୀନ ସମାଜର ବହୁ ଅମୂଲ୍ୟ ରତ୍ନ ଲାଭ ହୋଇଥାଏ । ଜଣେ ସଚେତନ ଆତ୍ମଜୀବନୀକାରଙ୍କ ସୃଷ୍ଟିରେ ସମକାଳୀନ ସମାଜର ରାଜନୀତିକ, ସାମାଜିକ, ଆର୍ଥନୀତିକ, ସାଂସ୍କୃତିକ ତଥା ଜାତୀୟ ଜୀବନର ସ୍ପଷ୍ଟ ପ୍ରତିଫଳନ ଘଟିଥାଏ । ଜୀବନର ଅନ୍ତହୀନ ଜଟିଳତା, ବିଚିତ୍ର କାହାଣୀ, ନିର୍ବାଚିତ କେତେକ ଘଟଣା ଓ ତାର ପରିବେଷଣ ଏବଂ ଅଭିବ୍ୟକ୍ତିର ସୁଠାମତାରେ ଆତ୍ମଜୀବନୀର ଗୌରବ ଉପଲବ୍ଧ । Autobiography means therefore discrimination and selection in face of the endless complexity of life, selection of facts, distribution of emphasis, choice expression (Ray Pascal - The Design and truth in Autobiography - P-10, 1960) ଆତ୍ମଜୀବନୀ କେବଳ ଆତ୍ମକଥା ନୁହେଁ; ସମସାମୟିକ ସମାଜର ଆତ୍ମଲିପି ମଧ୍ୟ ।

ଐତିହାସିକ ଉପାଦାନ ଆତ୍ମଜୀବନୀକୁ ସାର୍ଥକ ଓ ପ୍ରାମାଣିକ କରେ । ମହାନ୍ ଆତ୍ମଜୀବନୀକାରଙ୍କ ସୃଷ୍ଟିରୁ ସମକାଳ ସମାଜ ଇତିହାସ ଉପଲବ୍ଧ ହୁଏ । କାର୍ଲାଇଲ୍‌ଙ୍କ ଭାଷାରେ, "History is the essence of humorous biographies. If one wants to know the memoirs of History, let him look into the lives of greatmen." ଆତ୍ମଚରିତ ସଭ୍ୟତାର ଚିନ୍ତା ଓ ଚେତନାର ସ୍ତରକୁ ଉନ୍ନୀତ

କରିବାରେ ସହାୟତା କରିଥାଏ ବୋଲି ଗେଟେ ମତବ୍ୟକ୍ତ କରିଛନ୍ତି । ମାତ୍ର ବର୍ଣ୍ଣାଡ଼ ଶ' ଆତ୍ମଜୀବନୀକୁ egoism ବା ଆତ୍ମଶ୍ଲାଘାର ପରିଚାୟକ ବୋଲି କହିବା ସଙ୍ଗେ ସଙ୍ଗେ ସମସ୍ତ ଆତ୍ମଜୀବନୀ ମିଥ୍ୟାବୋଲି ଘୋଷଣା କରିଛନ୍ତି । (All autobiographies are lies) ସାଧାରଣତଃ ଅଧିକାଂଶ ଆତ୍ମଜୀବନୀକାର ନିଜର ଦୋଷଦୁର୍ବଳତା ପ୍ରକାଶ କରିବାରେ କୁଣ୍ଠା ପ୍ରକାଶ କରିଥାନ୍ତି । ନିଜ ଜୀବନର ଗୋପନୀୟ ତଥ୍ୟ ପ୍ରକାଶ କରିବା ସମୟରେ କେତେକ ଆତ୍ମଜୀବନୀକାର ମିଥ୍ୟା ଓ ଛଳନାର ଆଶ୍ରୟ ନେଇଥାନ୍ତି । ଏହାଦ୍ୱାରା ଆତ୍ମଜୀବନୀ ରଚନାର ବାସ୍ତବ ଉଦ୍ଦେଶ୍ୟ ଫଳବତୀ ହୋଇ ନ ଥାଏ । ସମୟେ ସମୟେ ରଚୟିତା ବାଲ୍ୟଘଟଣା ପ୍ରକାଶ କରିବା ସମୟରେ ଅତୀତର ସ୍ମୃତି ଉପରେ ନିର୍ଭର କରୁଥିବାରୁ ସେଥିରେ ତ୍ରୁଟି ରହିବା ସ୍ୱାଭାବିକ । ଏତଦ୍‌ବ୍ୟତୀତ କେତେକ ଶୁଣାଖବର ଓ ଅନ୍ୟର କହିବା କଥା ଉପରେ ନିର୍ଭର କରି ଆତ୍ମଜୀବନୀ ରଚନାରେ ପ୍ରବୃତ୍ତ ହେଉଥିବାରୁ ସେଥିରେ ଉପାଦାନଗତ ବାସ୍ତବ ତଥ୍ୟର ଯଥାଯଥ ସନ୍ନିବେଶ ହୋଇପାରେ ନାହିଁ । କିନ୍ତୁ ଆତ୍ମଚରିତର ମୂଳ ଆବେଦନ କେବଳ ଲେଖକର ଅକପଟ ସ୍ୱୀକାରୋକ୍ତି ଉପରେ ନିର୍ଭର କରି ନ ଥାଏ । ନିଜ ଅଭିଜ୍ଞତା ମାଧ୍ୟମରେ ଏକ ସାର୍ବଜନୀନ ଅଭିଜ୍ଞତାର ପ୍ରତିଫଳନ କରାଇପାରିଲେ ଚରିତ-ସାହିତ୍ୟର ଚରମ ସଫଳତା ପ୍ରତିପାଦିତ ହୋଇଥାଏ । ଏପରି ଆତ୍ମଜୀବନୀ ପାଠଦ୍ୱାରା ସମୁଦାୟ ମାନବଜାତି ସହିତ ଏକାତ୍ମଭାବ ଜାତ ହୋଇପାରେ । ତେଣୁ ଆତ୍ମକଥାରେ ସ୍ୱାଭାବିକତା ଓ ନିଷ୍କପଟତା ସହିତ ସହୃଦୟତାର ସ୍ପର୍ଶ ରହିଲେ ତାହା ରସୋତ୍ତୀର୍ଣ୍ଣ ହୋଇଥାଏ । (ନାୟକ ଲାବଣ୍ୟ - ଓଡ଼ିଆ ଚରିତ ସାହିତ୍ୟ, ପୃ-୨୭, ୧୯୮୮) କୌଣସି ଆତ୍ମଜୀବନୀ ସ୍ୱୟଂସଂପୂର୍ଣ୍ଣ ନୁହେଁ । କାରଣ ରଚୟିତା ତାର ଜୀବନକାଳ ମଧ୍ୟରେ ଏହାର ରଚନା ଶେଷ କରିଥାଏ । ଅବଶିଷ୍ଟ ଜୀବନର ଅନେକ ଗୁରୁତ୍ୱପୂର୍ଣ୍ଣ ଘଟଣା ପରଦାର ଅନ୍ତରାଳରେ ରହିଯାଇଥାଏ ।

ବାସ୍ତବ ଓ ସତ୍ୟ ଉପାଦାନ ଭିତ୍ତିରେ ରଚିତ ଆତ୍ମଜୀବନୀ ସମାଜର ମଙ୍ଗଳ ବିଧାନ କରେ । ଭବିଷ୍ୟତ ବଂଶଧରଙ୍କ ପାଇଁ ମାର୍ଗ ଉନ୍ମୋଚନ କରେ । ବିଶିଷ୍ଟ ବ୍ୟକ୍ତିଙ୍କ ଦୃଷ୍ଟିରେ ସାଧାରଣ ଜନତା ନିଜ ଜୀବନକୁ ଦେଖିବାକୁ ପ୍ରୟାସ ଜାରି ରଖେ । ସମାଜ ଓ ଜାତିର ଉନ୍ନତିକଳ୍ପେ ଆତ୍ମୋତ୍ସର୍ଗ କରିବାର ପ୍ରେରଣା ଲାଭ କରେ । ପ୍ରକୃତ ଆତ୍ମଜୀବନୀ ନୀତି ଏବଂ ଆଦର୍ଶର ବାର୍ତ୍ତାବହ । ତେଣୁ ପ୍ରତ୍ୟେକ ଆତ୍ମଜୀବନୀ ବାସ୍ତବ ସତ୍ୟର ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ଆବଶ୍ୟକ । ଆତ୍ମଜୀବନୀ ରଚନାର ତିନୋଟି ଉଦ୍ଦେଶ୍ୟ ସଂପର୍କରେ ସୂଚନା ଦେଇ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସାମାଜିକ ଆନ୍ଦୋଳନର ଅନ୍ୟତମ ପୁରୋଧା ମନମୋହନ ଚୌଧୁରୀ କୁହନ୍ତି - ଏକରେ ଅତୀତର ଏକ ସମୀକ୍ଷା ଭବିଷ୍ୟତର ପଥକୁ ଆଲୋକିତ କରିବାପାଇଁ x x ଦୁଇରେ ଋଣ ସ୍ୱୀକାର । ମଣିଷ ସ୍ୱୟଂଭୂ ନୁହେଁ । ସେ ଇତିହାସର ପ୍ରବାହର ଏକ ପରିଣତି । କେତେ ଆତ୍ମୀୟସ୍ୱଜନ, ଗୁରୁଜନ, ସାଙ୍ଗସାଥୀ,

ପ୍ରତିବେଶୀ, ଏପରିକି ସ୍ୱଚ୍ଛ ପରିଚିତ ବା ଅପରିଚିତ ବ୍ୟକ୍ତିଙ୍କ କ୍ଷଣିକ ସାନ୍ନିଧ, ସ୍ନେହ, ସେବା ଓ ସହଯୋଗ ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱକୁ ରୂପ ଦେବାରେ ସାହାଯ୍ୟ କରେ x x ତିନିରେ ପ୍ରତ୍ୟେକ ବ୍ୟକ୍ତିର ଜୀବନରୁ, ଅଭିଜ୍ଞତାରୁ ସେ ଯେତେ ଅକିଞ୍ଚନ ହେଇଥାଉ ପଛେ, ଅନ୍ୟମାନଙ୍କର କିଛି ଶିଖିବାର ଥାଏ । (କୈଫିୟତ - କସ୍ତୁରୀ ମୃଗସମ)

ବିଶ୍ୱ ସାହିତ୍ୟରେ ପ୍ରଥମେ ୧୮୯୦ ମସିହାରେ କବି ରବାର୍ଟ ସାଉଦେ 'ଅଟୋବାଇଓଗ୍ରାଫି' ଶବ୍ଦ ବ୍ୟବହାର କରିଥିଲେ । ପୂର୍ବରୁ ଏଥିପାଇଁ ଜର୍ଣ୍ଣାଲ, ଲାଇଫ୍‌ମେମୋୟର୍‌ସ, କନଫେସନ୍, ଡାଏରୀ ଆଦି ଶବ୍ଦ ବ୍ୟବହୃତ ହେଉଥିଲା । ବିଶ୍ୱରେ ପ୍ରସିଦ୍ଧି ଲାଭ କରିଥିବା କେତେଗୁଡ଼ିଏ ବିଶିଷ୍ଟ ଆତ୍ମଜୀବନୀ ହେଉଛି, ଅଗଷ୍ଟାଇନ୍‌ଙ୍କର 'Confession.' ରୁଷୋଙ୍କ 'ଆତ୍ମଜୀବନୀ', ଗେଟେଙ୍କ 'Poetry and truth', ଆଲେକ୍‌ଜାଣ୍ଡର ଡୁମାଙ୍କ 'Pere', ହେଲେନ୍ କେଲେରଙ୍କ 'The story of my life', ହିଟ୍‌ଲରଙ୍କ 'Mein Kempf', ଚର୍ଚ୍ଚିଲଙ୍କର 'War Memoirs', ଚାର୍ଲସ୍ ଡିକେନ୍‌ସଙ୍କ 'Great expectation', ବର୍ଣ୍ଣାଡ୍ ଶ'ଙ୍କ 'Sixteen self sketches', ଜୁଲଫିକର ଅଲ୍ଲି ଭୁଟ୍ଟୋଙ୍କ 'If I am Assassinated', ବେନ୍‌ଜିର ଭୁଟୋଙ୍କ 'Daughter of the East' ଆଦି ପ୍ରଧାନ । ଏତଦ୍‌ବ୍ୟତୀତ ଦସ୍ତୋୟଭସ୍କି, ଟଲଷ୍ଟୟ, ହବର୍ଟ ସ୍ପେନ୍‌ସର, ସ୍କଟ୍, ହଂକସଲେ, ଜେ.ଏସ୍.ମିଲ, ଜନ ରସ୍କିନ୍, ହେନେରୀଫୋର୍ଡ଼, କିପଲିଙ୍ଗ୍, ହେନେରୀ ଜେମ୍‌ସ, ବେଞ୍ଜାମିନ୍ ଫ୍ରାଙ୍କଲିନ୍, ଗର୍କି, ଚେଷ୍ଟରଟନ୍, ଏଚ୍.ଜି. ୱେଲ୍‌ସ୍, ଡବ୍ଲ୍ୟୁ. ବି.ଇଟ୍‌ସ ଆଦିଙ୍କ ନାମ ମଧ୍ୟ ସ୍ମରଣୀୟ । ଊନବିଂଶ ଶତକରେ ଭାରତୀୟ ସାହିତ୍ୟରେ ପ୍ରଥମେ ଆତ୍ମଜୀବନୀ ରଚନାର ପ୍ରୟାସ ହୋଇଥିଲା । ଅବଶ୍ୟ ମୋଗଲ ଶାସନ କାଳରେ କେତୋଟି ମୂଲ୍ୟବାନ୍ ଆତ୍ମକଥା ରଚିତ ହୋଇଥିଲେ ହେଁ ପ୍ରଶାସନର ନିଷ୍ଠୁରତା ମଧ୍ୟରେ ତାହା ଚିରଦିନ ପାଇଁ ଅବଲୁପ୍ତ ହୋଇଯାଇଛି । ଏ କ୍ଷେତ୍ରରେ ଆନ୍ଦ୍ରିୟା ବ୍ରଟେନ୍‌ଗନ୍‌ଙ୍କ ଭୂମିକା ବେଶ୍ ପ୍ରଶଂସନୀୟ । ସେ ପ୍ରଥମକରି ଶାହାଜାହାନ୍‌ଙ୍କ କନ୍ୟା ଜାହାନ୍ନାରାଙ୍କର ଆତ୍ମକାହାଣୀକୁ ବିଶ୍ୱ ସମକ୍ଷରେ ଉପସ୍ଥାପିତ କରି ମୋଗଲ ଶାସନର ଏକ ଅନ୍ଧକାର ଇତିହାସକୁ ଆଲୋକକୁ ଆଣିଛନ୍ତି । ଗୋଟିଏ ନିରୀହା ବିରହିଣୀ ନାରୀର ଆତ୍ମକଥା ଓ ଅସହାୟତା ଏଥିରେ ବେଶ୍ ମାର୍ମିକତାର ସହିତ ଲିପିବଦ୍ଧ । ଇଂରାଜୀ ଶିକ୍ଷା ଓ ଚିନ୍ତା-ଚେତନା ସଂସ୍ପର୍ଶରେ ଆସି ବହୁ ଭାରତୀୟ ବିଦ୍ୱାନ୍ ଓ ଜନନାୟକ ସେମାନଙ୍କ ଆତ୍ମକଥାକୁ ଲିପିବଦ୍ଧ କରିବାର ପ୍ରୟାସ କରିଛନ୍ତି । ଏହି ଆତ୍ମଜୀବନୀଗୁଡ଼ିକ ମଧ୍ୟରେ ମହାତ୍ମାଗାନ୍ଧୀଙ୍କ 'My experiments with truth', ଜବାହରଲାଲ ନେହରୁଙ୍କ 'Discovery of India', ନେତାଜୀ ସୁଭାଷ ଚନ୍ଦ୍ରଙ୍କର 'Indian struggle', ସର୍ଦ୍ଦାର ପଟେଲଙ୍କ 'Freedom at midnight', ମହମ୍ମଦ ଅଲ୍ଲିଙ୍କ 'The greatest, My own story', ଅରବିନ୍ଦଙ୍କ 'Life Divine', ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ 'ଆତ୍ମଚରିତ', ରବୀନ୍ଦ୍ରନାଥଙ୍କ 'ଜୀବନ ସ୍ମୃତି',

'ଛେଲେବେଲା', ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କ 'ଆମାର ସାହିତ୍ୟ ଜୀବନ', ଶିଳ୍ପୀ ଅବନୀନ୍ଦ୍ର ନାଥଙ୍କର 'ଆପନ୍ କଥା', କମଳା ଦାସଙ୍କ 'My story' ବିଶେଷଭାବରେ ଉଲ୍ଲେଖଯୋଗ୍ୟ ।

ଓଡ଼ିଆ ସାହିତ୍ୟରେ ଆତ୍ମଜୀବନୀ ରଚନାର ପ୍ରୟାସ ବିଂଶ ଶତକର ପ୍ରଥମ ଦଶନ୍ଧିରୁ ଆରମ୍ଭ । ବହୁ ବ୍ୟକ୍ତି ନିଜର ସ୍ମୃତି, ଅନୁଭୂତିକୁ ବିଭିନ୍ନ ଭାବରେ ବ୍ୟକ୍ତ କରିଛନ୍ତି । ଏହା ମଧ୍ୟରେ ରହିଛି ଅନେକ ପରିମାଣରେ ସ୍ମୃତିଚିତ୍ର ଓ ଖଣ୍ଡିତ ଜୀବନ ଚିତ୍ର । ମୁଁ ମୋର ଆଲୋଚନାରେ ସେଗୁଡ଼ିକୁ ଆତ୍ମଜୀବନୀ ପର୍ଯ୍ୟାୟରେ ଆଲୋଚନା କରିଛି । ଏଗୁଡ଼ିକ ଧାରାବାହିକ ଆତ୍ମକଥା ନ ହେଲେହେଁ ସ୍ରଷ୍ଟାଚିତ୍ତର ଯେଉଁ ଗଭୀର ଅଭିଜ୍ଞତା ଓ ଅନୁଭୂତି ଏଥିରେ ପ୍ରକାଶିତ ହୋଇଛି, ତାହା ଅନେକାଂଶରେ ଆତ୍ମଜୀବନୀ ପର୍ଯ୍ୟାୟବାଚୀ । ଓଡ଼ିଆ ସାହିତ୍ୟରେ ଆତ୍ମଜୀବନୀ ରଚନାର ପଥିକୃତ୍ ଉଦ୍ୟମ ଆରମ୍ଭ କରିଥିଲେ କବିବର ରାଧାନାଥ ରାୟ । ତାଙ୍କର 'ଆତ୍ମ ନିବେଦନ' ୧୯୦୭ ମସିହାରେ ପ୍ରକାଶିତ । ରାଧାନାଥଙ୍କ ଜୀବନୀଲେଖକ ଶ୍ରୀ ଦୁର୍ଗା ଚରଣ ରାୟ ରାଧାନାଥଙ୍କ ଆତ୍ମକଥା ନାମକ ପ୍ରକାଣ୍ଡ ପୁସ୍ତକ' ଅପ୍ରକାଶିତ ରହିଛି ବୋଲି କ୍ଷୋଭ ପ୍ରକାଶ କରିଛନ୍ତି । ତାଙ୍କର 'ଆତ୍ମକଥା'ରେ କ'ଣ ଲେଖାଯାଇଛି, ତାହା ଏଯାବତ୍ ଅନ୍ଧକାର ମଧ୍ୟରେ ଆତ୍ମଗୋପନ କରିଛି । ମାତ୍ର ସେ ତାଙ୍କର 'ଆତ୍ମନିବେଦନ'ରେ ନିଜର ସ୍ଖଳିତ ଚରିତ୍ର ପାଇଁ ଅନୁତାପ କରିଛନ୍ତି । ରାଧାନାଥଙ୍କ ଆତ୍ମଗ୍ଲାନିରୁ ତାଙ୍କ ଚରିତ୍ରର ବିଶେଷ ଦିଗଟି ଉନ୍ମୋଚିତ ହୋଇଥାଏ ।

ଓଡ଼ିଆ ସାହିତ୍ୟରେ ପ୍ରଥମ ସାର୍ଥକ ଆତ୍ମଜୀବନୀକାର ଭାବେ ଫକୀରମୋହନ ସେନାପତି ଗୌରବର ଅଧିକାରୀ । ତାଙ୍କ 'ଆତ୍ମଜୀବନଚରିତ'ର କେତେକାଂଶ ପ୍ରଥମେ ୧୯୧୫ ମସିହାରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ ପାଇଥିଲା । ତତ୍ପରେ ୧୯୧୬ ମସିହାରେ ସତ୍ୟବାଦୀ ମାସିକ ପତ୍ରିକାରେ ଓ ପରେ ପରେ ୧୯୧୮ରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ୧୯୨୭ ମସିହାରେ ଏହା ପୁସ୍ତକାକାରରେ ପ୍ରକାଶଲାଭ କଲା । କେବଳ ଓଡ଼ିଆ ସାହିତ୍ୟ କାହିଁକି, ସମଗ୍ର ଭାରତୀୟ ସାହିତ୍ୟରେ ଫକୀରମୋହନଙ୍କ 'ଆତ୍ମଜୀବନୀଚରିତ' ଏକ ଅନବଦ୍ୟ କୃତି । ଏହା ଗୋଟିଏ ଆତ୍ମଜୀବନୀ ହେଲେହେଁ ଉପନ୍ୟାସର ସମସ୍ତ କଳାପରିପାଟୀ ଏଥିରେ ବିଦ୍ୟମାନ । ତାଙ୍କ ଜୀବନର ସୁଦୀର୍ଘ ଅନୁଭୂତି, ତତ୍କାଳୀନ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଅବସ୍ଥା ଏଥିରେ କଳାତ୍ମକ ରୂପ ନେଇ ପ୍ରକାଶିତ । ଏହା ଏକ କାଳଜୟୀ ଜୀବନ କାହାଣୀ । ଓଡ଼ିଆ ସାହିତ୍ୟରେ ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ବହୁ ଜୀବନ ଚରିତ, ଆତ୍ମକାହାଣୀ ଏବଂ କିଛି ଚରିତ ଉପନ୍ୟାସ ରଚିତ ହୋଇଥିଲେହେଁ ଫକୀରମୋହନଙ୍କ 'ଆତ୍ମଜୀବନଚରିତ' ପରି ଆଉ କେହି ହୋଇପାରି ନାହାନ୍ତି । ତାହା ଏକାଧାରରେ ଉପନ୍ୟାସ ଓ ଇତିହାସର ଅପୂର୍ବ ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ସୃଷ୍ଟି କରିଥାଏ । (ପଟ୍ଟନାୟକ ପଠାଣି-ଜୀବନୀ ସାହିତ୍ୟ - ଏକ

ଅଧ୍ୟୟନ, ପୃ-୬୫, ୧୯୭୭) ନାଟକର ଉକ୍ରଣ୍ଠା, ଗଳ୍ପର କାହାଣୀଧର୍ମିତା, ଉପନ୍ୟାସର ବର୍ଣ୍ଣନାତ୍ମକତା, ରହସ୍ୟ ଉପନ୍ୟାସର ରୋମାଞ୍ଚକତା, ଭ୍ରମଣ ସାହିତ୍ୟର ବିଚିତ୍ର ଅନୁଭୂତି, କବିତାର ସ୍ୱତଃସ୍ଫୂର୍ତ୍ତ ଉଚ୍ଛ୍ୱାସ ସବୁ ଯେପରି ଏଥିରେ ସମାବିଷ୍ଟ ହୋଇଯାଇଛି । ଅର୍ଦ୍ଧଶତାବ୍ଦୀର ବିଭିନ୍ନ ଅନୁଭୂତି, ବହୁ ଘଟଣା ଏବଂ ସର୍ବୋପରି ଓଡ଼ିଶାର ସାମାଜିକ ଜୀବନ ଏଥିରେ ରୂପଲାଭ କରିଛି । ଏଥିରେ ଅତିରଞ୍ଜନତା ରହିଛି, ସ୍ରଷ୍ଟା ନିଜର କେତେକ ତ୍ରୁଟିକୁ ଲୋକଲୋଚନ ଅଗୋଚରରେ ରଖିବାକୁ କେତେକ କ୍ଷେତ୍ରରେ ମିଥ୍ୟାର ଆଶ୍ରୟ ନେଇଛନ୍ତି । ମାତ୍ର ଏସବୁ ସତ୍ତ୍ୱେ ସୃଷ୍ଟି ସୌନ୍ଦର୍ଯ୍ୟ ଓ କଳ୍ପନାର ଅବାଧ ସଞ୍ଚରଣ, ସତ୍ୟ ଏବଂ ବାସ୍ତବ ଘଟଣାର ସମ୍ମିଶ୍ରଣରେ ଏହା ଏକ ଶ୍ରେଷ୍ଠ ସାହିତ୍ୟ କୃତିରେ ପରିଣତ ହୋଇଛି । ଊନବିଂଶ ଶତକ ଏବଂ ବିଂଶ ଶତକର ପ୍ରଥମାର୍ଦ୍ଧ ଓଡ଼ିଶାର ସାମାଜିକ ଇତିହାସ ଜାଣିବାକୁ ଏହା ଏକ ନିର୍ଭରଯୋଗ୍ୟ ପୁସ୍ତକ । ଓଡ଼ିଶାର ନୌବାଣିଜ୍ୟ, ଗଡ଼ଜାତର ଅନ୍ଧାରି ଶାସନ, ଇଂରେଜମାନଙ୍କ ଆଚରଣ, ଶିକ୍ଷାଗତ ଅବସ୍ଥା, ନ'ଅଙ୍କ ଦୁର୍ଭିକ୍ଷର ଜୀବନ୍ତ ଚିତ୍ର, ଭାଷା ସୁରକ୍ଷା ଆନ୍ଦୋଳନ, ତତ୍କାଳୀନ ବ୍ୟକ୍ତି ଚରିତ୍ର, ଜନସାଧାରଣଙ୍କ ସାମାଜିକ ଓ ଆର୍ଥିକ ଅବସ୍ଥା, ସାହିତ୍ୟିକ ପାଣିପାଗ, ରାଜାରାଜୁଡ଼ାମାନଙ୍କର ଅଭିଜାତ ଜୀବନ ପ୍ରଣାଳୀ, ଧର୍ମପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀ, କୃଷିଅବସ୍ଥା, ଜମିଜମା ବନ୍ଦୋବସ୍ତ ଆଦି ବହୁଘଟଣାରେ ଆତ୍ମଜୀବନୀଟି ଋଦ୍ଧିମନ୍ତ । ବର୍ଣ୍ଣନାର ଚମତ୍କାରିତା, ବାସ୍ତବ ଘଟଣାର ଯଥାଯଥ ବିନ୍ୟାସ ଫକୀରମୋହନଙ୍କ 'ଆତ୍ମଜୀବନୀ'ର ଅନ୍ୟତମ ବୈଶିଷ୍ଟ୍ୟ । ନ'ଅଙ୍କ ଦୁର୍ଭିକ୍ଷର କରାଳ ଚିତ୍ରର ବର୍ଣ୍ଣନା ଦେଇ ସେ ଲେଖିଛନ୍ତି - ''ଧାନଗଛଗୁଡ଼ିକ ଶୁଖି କୁଟାପରି ହୋଇଗଲାଣି । କେତେକ ଧାନ ଅଧାଅଧି ବାହାରି, କେତେ ବା ସଂପୂର୍ଣ୍ଣ ରୂପେ ବାହାରି ସାନ ସାନ ଧଳା ଧଳା ଅଣଖୁଆ ଚଅଁରପରି ଏପାଖ ସେପାଖ ଦୋହଲୁଥାଏ । ଲୋକେ ଗୋରୁଗାଈ ବିଲ ମଧ୍ୟରେ ଛାଡ଼ି ଦେଇଥାନ୍ତି; ମାତ୍ର ଗୋରୁଗୁଡ଼ାକ ଧାନଗଛ ସବୁ ଥରେ ଥରେ ଶୁଙ୍ଘି ଚାଲିଯାନ୍ତି । ଗଛ ଖାଆନ୍ତି ନାହିଁ ।'' (ଫ.ମୋ. ଗ୍ରନ୍ଥାବଳୀ - ପୃ-୩୪) ଓଡ଼ିଆ ଭାଷା ଓ ସାହିତ୍ୟର ସୁରକ୍ଷା ତଥା ସମୃଦ୍ଧି ପାଇଁ ସେ ଯେପରି ଛାପାକଳ ପ୍ରତିଷ୍ଠା, ପତ୍ରିକା ସଂପାଦନା, ଅନୁବାଦ ଓ ସର୍ଜନଶୀଳ ସୃଷ୍ଟିରେ ମନୋନିବେଶ କରିଥିଲେ, ତାର ନିଚ୍ଛକ ଚିତ୍ର ଏଥିରେ ପ୍ରକାଶିତ । ଫକୀରମୋହନଙ୍କ 'ଆତ୍ମଜୀବନଚରିତ'କୁ ସଂପୂର୍ଣ୍ଣ ସତ୍ୟର ଏକ ଆତ୍ମଦଲିଲ ଭାବରେ ଗ୍ରହଣ କରାଯାଇ ନ ପାରିଲେହେଁ ଏହା ଯେ ଏକ ଅପୂର୍ବ ଜୀବନୀ, ଅସ୍ୱୀକାର କରାଯାଇ ନ ପାରେ ।

ଓଡ଼ିଆ ଆତ୍ମଜୀବନୀ ଇତିହାସରେ ପ୍ରସିଦ୍ଧ ଦସ୍ୟୁ ବିହାରୀ ନାୟକଙ୍କ 'ଆତ୍ମକାହାଣୀ' (୧୯୩୮)ର ବିଶେଷ ଗୁରୁତ୍ୱ ରହିଛି । ଜଣେ ଦସ୍ୟୁ ନିଜ ଜୀବନର ସମସ୍ତ ପାପ, ଅନାଚାର ଓ ଲଂପଟତାକୁ ବିନା ସଂକୋଚରେ ପ୍ରକାଶ କରିଛନ୍ତି । ଯୁଦ୍ଧକ୍ଷେତ୍ରରେ ସାହସିକତା, ପ୍ରତ୍ୟାବର୍ତ୍ତନ ପରେ ଚୌର୍ଯ୍ୟବୃତ୍ତି, ଶଶିବାଈ ସହିତ ଅବୈଧ ସଂପର୍କ, ବିବାହ କ୍ଷେତ୍ରରେ

ବିଫଳତା, ପୋଲିସ୍‌ର ଅବିମୃଷ୍ୟକାରିତା ତଥା ଅନ୍ୟାନ୍ୟ କେତେକ ଅସାମାଜିକ କାର୍ଯ୍ୟକୁ ସେ ବିନା ଦ୍ୱିଧାରେ ପ୍ରକାଶ କରିଛନ୍ତି । ଏହା ସତ୍ତ୍ୱେ ତା' ମନର ଦରଦୀ ଭାବଟି ବେଶ୍ ଆକର୍ଷଣୀୟ । ସାମାଜିକ ନୀତିନିୟମ, ବାଧ୍ୟବାଧକତା ଓ ପ୍ରତିକୂଳ ପରିବେଶ କିପରି ଜଣେ ବ୍ୟକ୍ତିକୁ ଅମଣିଷ ସ୍ତରକୁ ନେଇଯାଇପାରେ, ତାର ଏକ ସ୍ପଷ୍ଟ ଚିତ୍ର ଏଥିରେ ଉପଲବ୍ଧ । ପ୍ରକାଶ ଭଙ୍ଗୀର ସରଳତା ପାଇଁ ପୁସ୍ତକଟି ସୁଖପାଠ୍ୟ । ଏହାର କଳାଗତ ମୂଲ୍ୟ ଉଚ୍ଚକୋଟୀର ନ ହେଲେହେଁ ଓଡ଼ିଆ ଆତ୍ମଜୀବନୀ ସାହିତ୍ୟର ଶିଶୁଅବସ୍ଥାରେ ଉକ୍ତ ଗ୍ରନ୍ଥଟି ଆଶ୍ୱାସନାର ବାଣୀ ଶୁଣାଇଥାଏ । ଶଶିଭୂଷଣ ରାୟଙ୍କ 'ଷାଠିଏ ବର୍ଷ ତଳର ଓଡ଼ିଶା' ସ୍ମୃତି ଚିତ୍ରଟି 'ଶଙ୍ଖ' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ହେଉଥିଲା । ଏଥିରେ ସେ ପୂର୍ବ ଷାଠିଏ ବର୍ଷ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଘଟଣାଗୁଡ଼ିକୁ ସନ୍ନିବେଶ କରିବାକୁ ଚେଷ୍ଟା କରିଛନ୍ତି ।

ସ୍ୱାଧୀନତା ସଂଗ୍ରାମୀ ଓ ଜାତୀୟବାଦୀ ନେତା ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ 'ଜାତୀୟ ଜୀବନର ଆତ୍ମବିକାଶ' ଅନ୍ୟତମ ବିଶିଷ୍ଟ ଆତ୍ମଜୀବନୀ । ଏହାର ତିନୋଟି ଭାଗ ରହିଛି । ପ୍ରଥମ ଭାଗ (୧୯୪୦)ରେ ତାଙ୍କର ଦୟନୀୟ, ଦାରିଦ୍ର୍ୟ ଜୀବନ, ଉପେନ୍ଦ୍ର ମିଶ୍ର ଏବଂ ରେବା ରାୟଙ୍କ ସହିତ ସଂପର୍କ, ସମସାମୟିକ ସମାଜ ଓ ଇତିହାସରୁ ପ୍ରେରଣା, କଟକ ମିସନ୍ ସ୍କୁଲରେ ଛାତ୍ରାବସ୍ଥାରେ ଦେଶହିତୈଷୀ 'ଗୁପ୍ତ ସମାଜ' ଗଠନ ମାଧ୍ୟମରେ ଜାତୀୟ ଚିନ୍ତା ଓ ଚେତନାର ବିକାଶ ପାଇଁ ଉଦ୍ୟମ, ତତ୍କାଳୀନ ବିଶିଷ୍ଟ ବ୍ୟକ୍ତିତ୍ୱମାନଙ୍କ ପରିଚୟ, ସମସାମୟିକ ସାମାଜିକ ଅବସ୍ଥା, ଗଡ଼ଜାତର ପ୍ରଶାସନ, ଶିକ୍ଷାନୀତି, ମାନବବାଦୀ ଚିନ୍ତାଧାରା, ଦଶପଲ୍ଲା ମେଳିରେ ସଂପୃକ୍ତି ଯୋଗୁଁ କାରାବରଣ, ସାମାଜିକ ନୀତିନିୟମ ଓ କୁସଂସ୍କାର ଆଦି ସ୍ଥାନ ପାଇଛି । ଦ୍ୱିତୀୟ ଭାଗରେ ଜାଲିଆନୱାଲାବାଗ ଘଟଣାର ବର୍ଣ୍ଣନା ବେଶ୍ ଜୀବନ୍ତ ଓ ରୋମାଞ୍ଚକର । ପ୍ରଥମ ଓ ଦ୍ୱିତୀୟ ଭାଗରେ ତାଙ୍କ ରାଜନୈତିକ ଜୀବନର ଉନ୍ମେଷ ଓ ଉତ୍ତରଣ ପରିଲକ୍ଷିତ ହୁଏ । ଏହାର ତୃତୀୟ ଭାଗ (୧୯୫୮)ରେ ରାଜନୀତିକ ଜୀବନର ବିଷାଦମୟ ଘଟଣା ବର୍ଣ୍ଣିତ । ସଂକ୍ଷେପରେ କହିଲେ ଗୋବିନ୍ଦଚନ୍ଦ୍ର ମିଶ୍ରଙ୍କ ଆତ୍ମଜୀବନୀରୁ ଭାରତର ସ୍ୱାଧୀନତା ସଂଗ୍ରାମ, ଜାତୀୟ କଂଗ୍ରେସର କାର୍ଯ୍ୟଧାରା, ଗାନ୍ଧିଜୀଙ୍କର ବିଭିନ୍ନ କାର୍ଯ୍ୟପନ୍ଥା ଓ ତତ୍କାଳୀନ ରାଜନୀତିକ ପରିବେଶର ବହୁ ବାସ୍ତବ ତଥ୍ୟ ଉପଲବ୍ଧ ହୋଇଥାଏ ।

ଓଡ଼ିଶାର ଅନ୍ୟତମ ସୁଯୋଗ୍ୟ ସନ୍ତାନ ଗୋପାଳଚନ୍ଦ୍ର ପ୍ରହରାଜ, ଡ଼ଃ କୁଞ୍ଜବିହାରୀ ଦାଶଙ୍କ ଅନୁରୋଧକ୍ରମେ ୧୯୪୧ ମସିହାରେ ନିଜର ଆତ୍ମଜୀବନୀ ରଚନା କରିଥିଲେହେଁ ୧୯୭୦ ମସିହାରେ ପୂଜ୍ୟପୂଜା ସଂସଦଦ୍ୱାରା ପ୍ରକାଶିତ 'ପ୍ରହରାଜ ପରିକ୍ରମା'ରେ କିଛି ଅଂଶ ପ୍ରକାଶିତ ହୋଇଛି । ଏହା ଅସଂପୂର୍ଣ୍ଣ । ଏଥିରେ ମୁଖ୍ୟତଃ ତାଙ୍କର ବାଲ୍ୟସ୍ମୃତିଠାରୁ କଲିକତା ଯାତ୍ରା ପର୍ଯ୍ୟନ୍ତ ଘଟଣା ବର୍ଣ୍ଣିତ । ଫକୀରମୋହନଙ୍କ ପରେ ଏ ଦେଶର ପାଠକ ପ୍ରହରାଜଙ୍କ ଆତ୍ମଜୀବନୀରୁ ଅନେକ କିଛି ଆଶା କରୁଥିଲେହେଁ ସେମାନଙ୍କୁ ନିରାଶ ହେବାକୁ

ପଡ଼ିଛି । ଏଥିରେ ବର୍ଣ୍ଣିତ ଘଟଣା ୧୮୯୪ ମସିହା ପର୍ଯ୍ୟନ୍ତ । ବଂଶ ପରିଚୟ, ବାଲ୍ୟଜୀବନ, ଶିକ୍ଷା, ନିଜ ପରିବାର ଓ ଜମିଦାରୀ ରୀତିନୀତି, ବିବାହ, କୁସଙ୍ଗ ସଂପର୍କରୁ ଚରିତ୍ର ସ୍ଖଳନ, ପଞ୍ଚମକାର ସେବା, ଇନ୍ଦ୍ରଧନୁ-ବିଜୁଳି ପ୍ରସଙ୍ଗ, ନ'ଅଙ୍କ ଦୁର୍ଭିକ୍ଷ, କେତେଜଣ ସାହିତ୍ୟିକଙ୍କ ସଂପର୍କରେ ସୂଚନା, ସାମାଜିକ ଓ ଶିକ୍ଷାଗତ ଅବସ୍ଥା ସମ୍ବନ୍ଧରେ ଆଲୋକପାତ କରାଯାଇଛି । ଏହି ବର୍ଣ୍ଣନା ଜୀବନ୍ତ ଓ କେତେକ କ୍ଷେତ୍ରରେ ଉପଭୋଗ୍ୟ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ କର୍ଣ୍ଣଧାର ତୁଙ୍ଗ ରାଜନୀତିଜ୍ଞ, ଐତିହାସିକ ଓ ସାହିତ୍ୟିକ ଡଃ ହରେକୃଷ୍ଣ ମହତାବଙ୍କ 'ସାଧନାର ପଥେ' ଗୋଟିଏ ଉଲ୍ଲେଖଯୋଗ୍ୟ ଆତ୍ମଜୀବନୀ । ଏଥିରେ ଡଃ ମହତାବଙ୍କ ଅର୍ଦ୍ଧଶତାବ୍ଦୀ (୧୮୯୯ ରୁ ୧୯୪୬) ଜୀବନର ଅନେକ ଘଟଣା ପ୍ରକାଶିତ । ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତବର୍ଷର ରାଜନୀତିକ ହଟଚମଟ, ସ୍ୱାଧୀନତା ସଂଗ୍ରାମ, ମହାତ୍ମା ଗାନ୍ଧୀଙ୍କ ଅହିଂସା ଓ ଅସହଯୋଗ ଆନ୍ଦୋଳନର ମୂଳତତ୍ତ୍ୱ, ଲବଣ ସତ୍ୟାଗ୍ରହ, ବିଦେଶୀ ଦ୍ରବ୍ୟ ବର୍ଜନ, ମାଦକଦ୍ରବ୍ୟ ସେବନ ପ୍ରତି ନିଷେଧାଦେଶ, ଇଂରେଜ ସରକାରଙ୍କ ସହିତ ବିଭିନ୍ନ ପର୍ଯ୍ୟାୟରେ ମହାତ୍ମା ଗାନ୍ଧୀଙ୍କ ଆଲୋଚନାର ସଫଳତା ଓ ବିଫଳତା, ରାଜନୀତିକ ମତାନ୍ତର, କାରାଗାର ଜୀବନର ଅନୁଭୂତି, ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର ପୃଷ୍ଠଭୂମି, ଲବଣ ସତ୍ୟାଗ୍ରହର ବିଭିନ୍ନ ପର୍ଯ୍ୟାୟ, ଇଞ୍ଚୁଡ଼ି ଯାତ୍ରା, କନିକା ଆନ୍ଦୋଳନ, ତାଙ୍କର ରାଜନୀତିକ ଜୀବନ ଓ ଜନଜୀବନ ସହିତ ସଂପର୍କ, ଶିକ୍ଷା ଓ ସଂଗଠକ ଜୀବନ, ପ୍ରତାରଣା ମଧ୍ୟରେ ମ୍ରିୟମାଣ ପୁଣି ଗଭୀର ନିଷ୍ଠା, ସଂଘର୍ଷ ଏବଂ କାର୍ଯ୍ୟସିଦ୍ଧି ପାଇଁ ତାଙ୍କର ସାଧନା ବାସ୍ତବରେ ପ୍ରଶଂସନୀୟ । ଭାରତୀୟ ରାଜନୀତିର ଏକ କ୍ରମବିକାଶ ଇତିହାସର ଚିତ୍ର ଏହି ଆତ୍ମଜୀବନୀରୁ ଉପଲବ୍ଧ । ଏହାର ରଚନାଶୈଳୀ ଏବଂ ଭାଷା ଜୀବନ୍ତ । ବର୍ଣ୍ଣନାର ଚମତ୍କାରିତା ପାଠକକୁ ମୁଗ୍ଧ କରେ । ଏହା ସତ୍ତ୍ୱେ ଅତିରଞ୍ଜନତା, ପ୍ରଚାରଧର୍ମିତା ଏବଂ କେତେକ ବ୍ୟକ୍ତିଙ୍କୁ ନିକୃଷ୍ଟ ପ୍ରତିପାଦିତ କରିବାର ଉଦ୍ଦେଶ୍ୟମୂଳକ ପ୍ରଚେଷ୍ଟା ଆତ୍ମଜୀବନୀଟିର ଗୌରବ ହାନି କରିଛି । 'ଆରବ ସାଗରରୁ ଚିଲିକା' (୧୯୮୭) ତାଙ୍କ ଜୀବନୀଗ୍ରନ୍ଥର ଦ୍ୱିତୀୟ ଭାଗ । ସ୍ୱାଧୀନତା ପରବର୍ତ୍ତୀ ଭାରତର ରାଜନୀତିକ ଚିତ୍ର ଓ ତାଙ୍କ ରାଜନୀତିକ ଜୀବନର ବହୁ ଅଧ୍ୟାୟ, ସର୍ବୋପରି ସ୍ୱାଧୀନତୋତ୍ତର ଭାରତର ସାମାଜିକ ଜୀବନ ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରିଛି ।

ପବିତ୍ର ମୋହନ ପ୍ରଧାନଙ୍କ 'ମୁକ୍ତିପଥେ ସୈନିକ' (୧୯୪୯) ଏହି ସମୟର ଅନ୍ୟତମ ସଫଳ ଆତ୍ମଜୀବନୀ । ଓଡ଼ିଶାର ଗଡ଼ଜାତ ଆନ୍ଦୋଳନର କର୍ଣ୍ଣଧାର ରୂପେ ଜଣେ ବିପ୍ଳବୀ ଓ ସ୍ୱାଧୀନତା ସଂଗ୍ରାମୀଭାବରେ ତାଙ୍କ ଜୀବନର ବହୁ ରୋମାଞ୍ଚକର କାହାଣୀରେ ଆତ୍ମଜୀବନୀଟି ପରିପୂର୍ଣ୍ଣ । ଗଡ଼ଜାତ ଆନ୍ଦୋଳନର ବିପ୍ଳବୀ ରୂପେ କାରାଗାରବରଣ, ୧୯୪୨ ଅଗଷ୍ଟ ୩୦ ତାରିଖରେ ଜେଲ୍‌ରୁ ପଳାୟନ, ଫେରାର ଜୀବନ, ଗାନ୍ଧୀ ଓ ସୁଭାଷଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ, ଗଡ଼ଜାତ ମିଶ୍ରଣ,

ଗୃହତାକର ରୂପେ ତ୍ୟାଗ ସ୍ୱୀକାର, ସମାଜସେବୀ ଏବଂ ନେତାମାନଙ୍କ ତ୍ୟାଗପୂତ କାହାଣୀ, ଭାରତର ବିଭିନ୍ନ ସ୍ଥାନର ଭୌଗୋଳିକ ବିବରଣୀରେ ଗ୍ରନ୍ଥଟି ଉପାଦେୟ ହୋଇପାରିଛି । ପରିବର୍ଦ୍ଧିତ ସଂସ୍କରଣରେ ଲେଖକଙ୍କ ଜନ୍ମଠାରୁ ଭାରତର ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ୪୦ବର୍ଷର ବିଭିନ୍ନ ଘଟଣା ବର୍ଣ୍ଣିତ । ଆତ୍ମଜୀବନୀର ଦ୍ୱିତୀୟ ଭାଗ (୧୯୭୩)ରେ ୧୯୪୮ ରୁ ୧୯୭୧ ମସିହା ପର୍ଯ୍ୟନ୍ତ ତାଙ୍କର ଏମ୍.ଏଲ୍.ଏ. ଏବଂ ମନ୍ତ୍ରୀରୂପେ ଜାତି ଗଠନର ଭୂମିକା ସଂପର୍କରେ ବର୍ଣ୍ଣିତ । ଏହି ଭାଗଟି ଲେଖକଙ୍କ ଆତ୍ମପ୍ରଶଂସାରେ ମୁଖର । ଆର୍ଥନୀତିକ ଓ ସାମାଜିକ ସ୍ୱାଧୀନତା ଗୋଟିଏ ସ୍ୱାଧୀନ ଦେଶର କି ପ୍ରକାର ଉନ୍ନତି ସାଧନ କରିପାରେ, ଏଥିରେ ତାର ସୂଚନା ରହିଛି । ଆତ୍ମଜୀବନୀର ୩ୟ ଭାଗ (୧୯୭୯) ଅନ୍ୟ ଦୁଇଟି ଭାଗ ତୁଳନାରେ ହୀନପ୍ରଭ । ଏଥିରେ ମଣିଷର ମନ ଓ ଶରୀର, ରାଜନୀତି, ଇତିହାସ ଆଦି ସଂପର୍କରେ କେତୋଟି ପ୍ରବନ୍ଧ ସ୍ଥାନ ଲାଭ କରିଛି କହିଲେ ଭୁଲ ହେବ ନାହିଁ ।

ସ୍ୱଭାବକବି ଗଙ୍ଗାଧର ମେହେରଙ୍କ 'ଆତ୍ମଜୀବନୀ' (୧୯୫୧)ର କିୟଦଂଶ ଗଙ୍ଗାଧର ଗ୍ରନ୍ଥାବଳୀରେ ସ୍ଥାନ ଲାଭ କରିଛି । ଆତ୍ମଜୀବନୀଟି ଅସଂପୂର୍ଣ୍ଣ । ତାଙ୍କର ଜନ୍ମଠାରୁ ପଦ୍ମପୁରରେ ଚାକିରି (୧୯୧୪) ପର୍ଯ୍ୟନ୍ତ ଘଟଣା ଏଥିରେ ବର୍ଣ୍ଣିତ । ତାଙ୍କ ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ଦଶବର୍ଷର ଘଟଣା ସବୁଦିନପାଇଁ ଜନ ଅନ୍ତରାଳରେ ରହିଯାଇଛି । ଯେତିକିମାତ୍ର ପ୍ରକାଶ ପାଇଛି, ସେଥିରୁ ତାଙ୍କର ଜୀବନ ଯନ୍ତ୍ରଣା, ସଂଘର୍ଷ, ଅଧ୍ୟୟନ, ବୃତ୍ତି ଆଦି ଅଳ୍ପ କେତୋଟି ଘଟଣା ସ୍ଥାନ ପାଇଛି । ସାଧନା ଏବଂ କର୍ମଦ୍ୱାରା ମଣିଷ କିପରି ସିଦ୍ଧିଲାଭ କରେ, ତାର ପ୍ରେରଣା ଉକ୍ତ ଗ୍ରନ୍ଥରୁ ମିଳିପାରିବ । ଆତ୍ମଜୀବନୀଟି ପୂର୍ଣ୍ଣାଙ୍ଗ ହୋଇଥିଲେ ଜଣେ ସାଧକଙ୍କ ସାଧନା ସଂପର୍କରେ ପାଠକ-ସମାଜ ପରିଚିତ ହୋଇପାରିଥାନ୍ତେ ।

'ସତ୍ୟବାଦୀରେ ସାତବର୍ଷ' (୧୯୫୩) ଚନ୍ଦ୍ରଶେଖର ମିଶ୍ରଙ୍କ ଏକ ଅନୁପମ ସ୍ମୃତିଚିତ୍ର । ସତ୍ୟବାଦୀର କିଛି ସ୍ମୃତିକୁ ପାଥେୟ କରି ଏହା ରଚିତ । ସତ୍ୟବାଦୀର ଛାତ୍ରଜୀବନ, ଅନୁଷ୍ଠାନର ମହତ୍ତ୍ୱ, ଆଦର୍ଶ ଶିକ୍ଷକଙ୍କର ମହନୀୟ ଗୁଣାବଳୀ, ଶୁଦ୍ଧପୂତ ଜୀବନଚର୍ଯ୍ୟା, ଦେଶ ଓ ବ୍ୟକ୍ତି ଗଠନରେ ଉକ୍ତ ଅନୁଷ୍ଠାନର ଗୁରୁତ୍ୱପୂର୍ଣ୍ଣ ଭୂମିକା, ବିଦ୍ୟା ବିନୋଦ ପ୍ରଣାଳୀ, ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ, ଶିକ୍ଷକମାନଙ୍କର ସାଧନା ଓ ଆଦର୍ଶବତ୍ତା, ଶୃଙ୍ଖଳା ଆଦିର ଯଥାସମ୍ଭବ ବାସ୍ତବ ବର୍ଣ୍ଣନା ଏଥିରେ ପ୍ରଦତ୍ତ । ଏହାର ଭାଷା ଚମତ୍କାର ଏବଂ କାହାଣୀ-ଧର୍ମିତାଯୋଗୁଁ ଗ୍ରନ୍ଥଟି ସୁଖପାଠ୍ୟ ହୋଇପାରିଛି ।

ଓଡ଼ିଆ ଗୀତିନାଟ୍ୟ ଜଗତର ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ବୈଷ୍ଣବ ପାଣିଙ୍କ 'ପାଣି କବିଙ୍କ ଆତ୍ମ କାହାଣୀ' (୧୯୫୫) ତତ୍କାଳୀନ ସମାଜ ଜୀବନର ଏକ ନିଛକ ପ୍ରତିଛବି । ତାଙ୍କ ଜୀବନର ବହୁଘଟଣା, ଉତ୍‌ଥାନ-ପତନ, ବାଧାବିଘ୍ନ, ସଂଘର୍ଷ, ନିଷ୍ଠା, ଉଦ୍ୟମ ଆଦିର ମନୋରମ ବର୍ଣ୍ଣନାରେ ଆତ୍ମଜୀବନୀଟି ଅତ୍ୟନ୍ତ ଉପାଦେୟ ହୋଇପାରିଛି । ଜୀବନରେ ସେ ଯେପରି ଲାଞ୍ଛନା ଓ ଅପମାନ ପାଇଛନ୍ତି, ସେହିପରି ପାଇଛନ୍ତି ଅଜସ୍ର ପ୍ରଶଂସା ।

ସମାଜର ଭ୍ରୂକୁଟି ପ୍ରତି ତାଙ୍କର ଭୟ ନ ଥିଲା, ଲଂପଟ ଜୀବନ ପାଇଁ ନ ଥିଲା ବି ଅନୁଶୋଚନା । ନିଜ ଜୀବନର କୌଣସି ଗୋପନୀୟତାକୁ ସେ ଲୋକଚକ୍ଷୁର ଅନ୍ତରାଳରେ ରଖିବାକୁ ଚାହି ନାହାନ୍ତି । ତାଙ୍କ ଜୀବନ ସତେଯେପରି ଏକ ଖୋଲାପୁସ୍ତକ । ଏହାର ପ୍ରତିଟି ପୃଷ୍ଠାରେ ଅଙ୍କିତ ଜୀବନର ନିନ୍ଦାପ୍ରଶଂସା । ସତ୍ୟ ଏବଂ ନ୍ୟାୟର ପ୍ରତିଷ୍ଠାପାଇଁ ସେ କେବେ ନିଜର ବିବେକର ଇଚ୍ଛାକୁ ବଳି ପକାଇ ନାହାନ୍ତି । ଅସବର୍ଣ୍ଣ ବିବାହ କରି ସେ ସାମାଜିକ ନୀତିର ବିରୋଧାଚରଣ କରି ନାହାନ୍ତି; ପରନ୍ତୁ ସମସାମୟିକ ସମାଜର ମଠର ମହନ୍ତ, ମାତାଜୀମାନଙ୍କର ଦୁର୍ନୀତି, ସାମାଜିକ ଆଚାର-ବିଚାର ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ନିଜର ଗୀତିନାଟ୍ୟ ଯୋଗୁଁ ସମାଜର କି ପ୍ରକାର ପ୍ରତିକ୍ରିୟା ସୃଷ୍ଟି ହେଉଥିଲା, ପୋଲିସ ଓ ରାଜକର୍ମଚାରୀମାନଙ୍କଦ୍ୱାରା କିପରି ବାରମ୍ବାର ବାସନ୍ଦର ସମ୍ମୁଖୀନ ହେଉଥିଲେ, ତାର ବାସ୍ତବ ଚିତ୍ର ଏଥିରେ ରୂପାୟିତ । ଭାଷାଦୃଷ୍ଟିରୁ ବିଚାର କଲେ ପାଣି କବିଙ୍କ ଗଦ୍ୟରୀତି ଉଚ୍ଚକୋଟୀର ନୁହେଁ; ମାତ୍ର ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ଅତ୍ୟନ୍ତ ଉପାଦେୟ ଓ ଉଚ୍ଚମାନର ।

ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' (୧୯୫୮) ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଦାବି କରେ । ଜଣେ ଶିକ୍ଷକ, ସଂଗଠକ, ରାଜନୀତିକ ଓ ସାହିତ୍ୟିକ ଭାବରେ ତାଙ୍କ ଆତ୍ମଜୀବନୀରେ ସମସାମୟିକ ଓଡ଼ିଶାର ବହୁ ଘଟଣା ବର୍ଣ୍ଣିତ । ଏହି ଆତ୍ମଜୀବନୀଟି ସ୍ୱୟଂସଂପୂର୍ଣ୍ଣ ନୁହେଁ । ତାଙ୍କ ଜନ୍ମ (୧୮୮୬) ଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ (ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପର୍ଯ୍ୟନ୍ତ) ଘଟଣାବଳୀ ଏଥିରେ ବର୍ଣ୍ଣିତ । ଏହାର ଦ୍ୱିତୀୟ ଭାଗ ସୂଚୀପତ୍ରରେ ୧୯୫୧ ମସିହା ପର୍ଯ୍ୟନ୍ତ ବିଭିନ୍ନ ଘଟଣା ସ୍ଥାନ ପାଇବାର ସୂଚନା ଥିଲେହେଁ, ଆକସ୍ମିକ ବିୟୋଗ ଯୋଗୁଁ ଗ୍ରନ୍ଥଟି ଅପୂର୍ଣ୍ଣାଙ୍ଗ ରହିଗଲା । ପ୍ରକାଶିତ ଗ୍ରନ୍ଥଟିରୁ ଜଣେ ଅନାସକ୍ତ ସାଧକଙ୍କର ଘଟଣାବହୁଳ ଜୀବନର ବହୁ ତଥ୍ୟ ଉପଲବ୍ଧ ହୋଇଥାଏ । ତାଙ୍କର ଏହି ଅଭିନବ ଆତ୍ମଜୀବନୀ ୧୯୬୨ ମସିହାରେ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ଗୋଦାବରୀଶ ମିଶ୍ରଙ୍କ ସଂଘର୍ଷମୟ ଜୀବନ୍ ଓ ସାଧନା ଯେକୌଣସି ପାଠକପାଇଁ ପ୍ରେରଣାର ଉତ୍ସ । ଏତଦ୍‌ବ୍ୟତୀତ ତତ୍କାଳୀନ ସାମାଜିକ ଅବସ୍ଥା, ସହକର୍ମୀମାନଙ୍କର ମହନୀୟ ଗୁଣାବଳୀ, ସାମାଜିକ ବିଚାର-ବେଭାର, ଶିକ୍ଷକ ଓ ସଂଗଠକ ଜୀବନ, ରାଜନୀତିକ ବାତାବରଣ, ଓଡ଼ିଶାର ସାଂସ୍କୃତିକ ଓ ରାଜନୀତିକ ଜୀବନ ଆଦିର ବାସ୍ତବ ଚିତ୍ର ଏଥିରୁ ଉପଲବ୍ଧ ହୋଇଥାଏ । ଏହି ଗ୍ରନ୍ଥଟିର ଶୈଳ୍ପିକ ମୂଲ୍ୟ ମଧ୍ୟ ଉଚ୍ଚକୋଟୀର । ଆବେଗମୟୀ ଭାଷା, ଚମକପ୍ରଦ ଘଟଣା, ବର୍ଣ୍ଣନାର ସ୍ୱାଭାବିକତା, କୌତୁକ କଥାର ସଂଯୋଜନା, ଦାର୍ଶନିକ ଭାବନା, ଢଗଢମାଳିର ପ୍ରୟୋଗ, କାବ୍ୟିକ ଛଟା, ଉପମା ନିର୍ବାଚନରେ ମୌଳିକତା, ତିର୍ଯ୍ୟକ୍ ବାକ୍ୟ ବିନ୍ୟାସ, ଭାବପ୍ରକାଶରେ ସ୍ୱଚ୍ଛତା ସର୍ବୋପରି ଅକୃତ୍ରିମ ଚିନ୍ତାଧାରା ଗ୍ରନ୍ଥଟିର ମର୍ଯ୍ୟାଦା ବୃଦ୍ଧି କରିଛି ।

ସଂସ୍କାରକ, ସମାଜସେବୀ ଶ୍ରୀବସ୍ତ ପଣ୍ଡାଙ୍କ 'ଶ୍ରୀବସ୍ତ ପଣ୍ଡା ଆତ୍ମଚରିତ' ଅନ୍ୟତମ ବିଶିଷ୍ଟ ଆତ୍ମଜୀବନୀ । ଏହା ଦିନଲିପି ପରି ବିବରଣୀ ଧର୍ମୀ । ମାତ୍ର ଏହାର ସାମାଜିକ ମୂଲ୍ୟ ଅତୀବ ଉପଯୋଗୀ । ଜଣେ ଉଦାରମନା ବ୍ୟକ୍ତିତ୍ୱ ଓ ନିଷ୍ଠାପର ସମାଜ ସଂସ୍କାରକ ଭାବେ ସେ ସୁପରିଚିତ । ବିଧବା ବିବାହର ସେ ଯେପରି ସମର୍ଥକ ଥିଲେ, ସେହିପରି ସମାଜରୁ ଅସ୍ପୃଶ୍ୟତା ନିବାରଣ, ଜାତିଭେଦ ପ୍ରଥାର ଦୂରୀକରଣ, ନାରୀଶିକ୍ଷାର ବିକାଶ, ବିଭିନ୍ନ ଉନ୍ନୟନ ଓ ସାମାଜିକ ମଙ୍ଗଳ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଓଡ଼ିଶାର ଉନ୍ନତି ସହିତ ଓଡ଼ିଆ ଭାଷା ସାହିତ୍ୟର ମର୍ଯ୍ୟାଦା ବୃଦ୍ଧି ନିମିତ୍ତ ସେ ଆପ୍ରାଣ ଉଦ୍ୟମ କରିଥିଲେ । ସେ ଆତ୍ମଜୀବନୀରେ ନିଜର ଅନେକ କୁ-କାର୍ଯ୍ୟ ଅକପଟ ଭାବରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଉତ୍କଳ ସମ୍ମିଳନୀ ଗଠନ, ନିଜର ପାରିବାରିକ ଜୀବନ, ବୃତ୍ତି, ସ୍ୱାଧୀନଚେତା ମନୋବୃତ୍ତି, ପତ୍ରପତ୍ରିକା ପ୍ରକାଶନ, ଗଞ୍ଜାମ ସମ୍ମିଳନୀ ଓ ତତ୍କାଳୀନ ଓଡ଼ିଶାର ରାଜନୀତିକ ଅବସ୍ଥା ସଂପର୍କରେ ଆଲୋକପାତ କରିଛନ୍ତି । ଆତ୍ମଜୀବନୀଟି ଅସଂପୂର୍ଣ୍ଣ ରହିଛି । ପରବର୍ତ୍ତୀ କାଳରେ ତାଙ୍କ ପ୍ରଦତ୍ତ ତଥ୍ୟର ସଂଯୋଜନା କରାଯାଇ ଏହାକୁ ପୂର୍ଣ୍ଣାଙ୍ଗ ରୂପ ପ୍ରଦାନର ଚେଷ୍ଟା କରାଯାଇଛି । ଏହି ଆତ୍ମଜୀବନୀଟିର ସାହିତ୍ୟିକମାନ ଉଚ୍ଚମାନର ନୁହେଁ । ସାମ୍ବାଦିକ କଥନରୀତି, ପରିବେଷଣଗତ ତ୍ରୁଟି, ଆବେଗହୀନ ଭାଷାଯୋଗୁଁ ଏହା ଏକ ନୀରସ ସୃଷ୍ଟିରେ ପରିଣତ ହୋଇଥିଲେହେଁ ଜଣେ ସମାଜସେବୀ ଓ ଦେଶପାଇଁ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱଙ୍କ ଆତ୍ମଜୀବନୀ ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ଯେ ଅତୀବ ଉପାଦେୟ, ଅସ୍ୱୀକାର କରାଯାଇ ନ ପାରେ ।

ନାରାୟଣ ବୀରବର ସାମନ୍ତଙ୍କ 'ଆତ୍ମଜୀବନୀ' (୧୯୫୯) ଓଡ଼ିଆ ପତ୍ରିକା 'ଦିଗନ୍ତ'ରେ ଧାରାବାହିକ ଭାବରେ ୧୯୫୯ ମସିହା ଡିସେମ୍ବର ମାସରୁ ପ୍ରକାଶ ଲାଭ କରୁଥିଲା । ଏଥିରେ ଶ୍ରୀ ସାମନ୍ତ ତାଙ୍କର ବ୍ୟକ୍ତିଗତ ଜୀବନ, ପରିବାର, ସମସାମୟିକ ଓଡ଼ିଶାର ସାମାଜିକ, ଶିକ୍ଷାଗତ ପରିସ୍ଥିତି, ଓଡ଼ିଶାର ଭୌଗୋଳିକ ସୀମା, ଅସହଯୋଗ ଆନ୍ଦୋଳନର ବିବରଣୀ, ୧୯୨୬ର ନିର୍ବାଚନ ସଂଗ୍ରାମ, ସତ୍ୟାଗ୍ରହ, ଭାରତୀୟ ଜାତୀୟ ସଂଗ୍ରାମର ଚିତ୍ର, ଗାନ୍ଧିଜୀ ଗୋପବନ୍ଧୁଙ୍କ ପ୍ରେରଣା ଆଦି ସଂପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ସମାଜ ସଂସ୍କାରକ ବିପ୍ଳବୀ ଶ୍ରୀ ବୈରାଗୀ ଚରଣ ମିଶ୍ରଙ୍କ ଆତ୍ମଜୀବନୀ 'ସ୍ୱଭାବ ନିୟତ ଜୀବନଯୁଦ୍ଧ' (୧୯୬୦) ଅନ୍ୟତମ ବିଶିଷ୍ଟ ଗ୍ରନ୍ଥ । ଜଣେ ନିଷ୍ଠାବାନ୍ ସଂସ୍କାରଧର୍ମୀ, ଧୈର୍ଯ୍ୟଶୀଳ, ଆତ୍ମସଚେତନ ବୈରାଗୀଚରଣ ତାଙ୍କ ଆତ୍ମଜୀବନୀରେ ସେ ସମୟର ବହୁ ଘଟଣା ସନ୍ନିବେଶିତ କରିଛନ୍ତି । ସାମାଜିକ କୁସଂସ୍କାର, ଅନ୍ଧବିଶ୍ୱାସ ବିରୋଧରେ ସଂଗ୍ରାମ କରିଛନ୍ତି । ବିଧବା ବିବାହ, ଯୌତୁକ ପ୍ରଥାର ନିରାକରଣ, ଜାତିଭେଦ ପ୍ରଥାର ବିଲୋପ, ନାରୀଶିକ୍ଷାର ପ୍ରସାର, ପରଦାପ୍ରଥା ଦୂରୀକରଣ ଆଦି ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୋଧରେ ସଂଗ୍ରାମ କରିଛନ୍ତି । ସେ ଯାହା କରିବାକୁ ଚାହୁଥିଲେ ପ୍ରଥମେ ତାଙ୍କ ନିଜ

ପରିବାରଠାରୁହିଁ ଆରମ୍ଭ କରୁଥିଲେ । ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନକୁ ସମର୍ଥନ କରି ନିଜ ପିଲାଙ୍କ ପାଠପଢ଼ା ବନ୍ଦ କରିଥିଲେ । ଦୁଇ କନ୍ୟାଙ୍କ ବିବାହରେ କୌଣସି ଯୌତୁକ ଦେଇ ନ ଥିଲେ । ଏଥିପାଇଁ ତାଙ୍କୁ ଯେ ପାରିବାରିକ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ି ନାହିଁ, ତାହା ନୁହେଁ ମାତ୍ର ଜଣେ ସଂଗ୍ରାମୀ ଭାବରେ ସମସ୍ତ ବିରୋଧକୁ ଅତିକ୍ରମ କରିବାକୁ ସେ ଚେଷ୍ଟା କରିଛନ୍ତି । ଗ୍ରନ୍ଥଟିର କଳାଗତ ମାନ ବିଶେଷ ଭାବରେ ଆଶାପ୍ରଦ ନୁହେଁ । ଶିଳ୍ପକଳା ଅପେକ୍ଷା ଆଦର୍ଶ, ନୀତିପୂର୍ଣ୍ଣ ଜୀବନ ଉପରେ ଗୁରୁତ୍ୱ ଦେଇଥିବାରୁ ଏହି ବିଭାଗଟି ଅବହେଳିତ ହୋଇପଡ଼ିଛି ।

ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଆତ୍ମଜୀବନୀ' (୧୯୬୩) ସମକାଳୀନ ସମାଜର ବହୁ ତଥ୍ୟ ପ୍ରଦାନରେ ସହାୟତା କରିଥାଏ । ଏହି ଗ୍ରନ୍ଥଟି ପାଇଁ ଲେଖକ ୧୯୬୪ ମସିହାରେ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଛନ୍ତି । ଜଣେ ପଣ୍ଡିତ ଶିକ୍ଷକ, ଦାର୍ଶନିକ, ସମାଜ ସଂସ୍କାରକ, ରାଜନୀତିଜ୍ଞ, ସାହିତ୍ୟିକ ଓ ସଂଗଠକ ଭାବରେ ସମକାଳୀନ ସମାଜର ଐତିହାସିକ ଓ ସାମାଜିକ ଚିତ୍ର ପ୍ରଦାନରେ ସମର୍ଥ ହୋଇଛନ୍ତି । ତାଙ୍କର ସେବା ଏବଂ ରାଜନୀତିକ ଜୀବନ ସଂପୂର୍ଣ୍ଣ ଭାବେ ଓଡ଼ିଶାପାଇଁ ଉତ୍ସର୍ଗୀକୃତ ହୋଇଥିଲା । ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେହେଁ ସମାଜରେ ପରିପୂରିତ କୁସଂସ୍କାରର ମୂଳୋତ୍ପାଟନ ନିମିତ୍ତ ସେ ଯେପରି ନିର୍ଭୀକ ପଦକ୍ଷେପ ଗ୍ରହଣ କରିଥିଲେ, ତାହା ସର୍ବଦା ଅନୁକରଣୀୟ । ପ୍ରସଙ୍ଗକ୍ରମେ ସେ ଏଥିରେ ଓଡ଼ିଶାର ଇତିହାସ ଓ ସାମାଜିକ ଜୀବନକୁ ଆଲୋଚନା କରିଛନ୍ତି । ମଧୁବାବୁ, ଉତ୍କଳମଣି ଗୋପବନ୍ଧୁ, ହରିହର, କେରୀସାହେବ ଆଦି ମହାନ୍ ବ୍ୟକ୍ତିଗଣ ଓଡ଼ିଶାର ସମାଜସଂସ୍କାର ଓ ଶିକ୍ଷାର ପ୍ରସାର କ୍ଷେତ୍ରରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ, ସେମାନଙ୍କୁ ଏଥିରେ ଭୂରି ଭୂରି ପ୍ରଶଂସା କରାଯାଇଛି । ଏତଦ୍‌ବ୍ୟତୀତ ପଣ୍ଡିତ ନୀଳକଣ୍ଠ ନିଜ ଜୀବନର ଅନେକ ଘଟଣା ବର୍ଣ୍ଣନା ପ୍ରସଙ୍ଗରେ ଯେଉଁ କୁସଂସ୍କାରଗୁଡ଼ିକ ସମାଜ ଜୀବନକୁ ପଙ୍ଗୁ କରି ଦେଉଥିଲା, ସେ ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି । 'ନବଭାରତ' ପତ୍ରିକା ବନ୍ଦ ହୋଇଯିବାରୁ ତାଙ୍କ ମନରେ ଯେଉଁ ଦୁଃଖ ଜାତ ହୋଇଥିଲା, ତାହା ସେ ବିନା ଦ୍ୱିଧାରେ ସ୍ୱୀକାର କରିଛନ୍ତି । ତାଙ୍କର ଯୁକ୍ତିବାଦୀ ଚିନ୍ତାଧାରା ଓ ଦାର୍ଶନିକ ଦୃଷ୍ଟିଭଙ୍ଗୀ 'ଆତ୍ମଜୀବନୀ'ର ବହୁସ୍ଥଳରେ ପ୍ରକାଶ ଲାଭ କରିଥିବାରୁ ଏହା ବ୍ୟକ୍ତିନିଷ୍ଠ ପ୍ରବନ୍ଧର ଗୌରବ ଲାଭ କରିଛି । ଭକ୍ତି ସଂପର୍କରେ ତାଙ୍କର ଚିନ୍ତାଧାରା ଦାର୍ଶନିକ ଦୃଷ୍ଟିଭଙ୍ଗୀର ପରିଚାୟକ । ଏହି ଗ୍ରନ୍ଥର କେତେକ ସ୍ଥଳରେ ପଣ୍ଡିତ ନୀଳକଣ୍ଠଙ୍କ ଅହଂ ମନୋଭାବ ଓ ପ୍ରଚାର ମନୋବୃତ୍ତିର ପରିପ୍ରକାଶ ଘଟିଛି । ବିଶେଷକରି ରାଧାନାଥ ଏବଂ ଗୋଦାବରୀଶଙ୍କ ସଂପର୍କୀୟ କେତେକ ମନ୍ତବ୍ୟ ଆଦୌ ରୁଚି ଅନୁକୂଳ ହୋଇପାରି ନାହିଁ । ଏହାସତ୍ତ୍ୱେ ବିଂଶ ଶତକ ଓଡ଼ିଶାର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ ଅବସ୍ଥାର ଏକ ପୁଷ୍କଳ ଚିତ୍ରରେ ଏହା ପରିପୂର୍ଣ୍ଣ ଥିବାରୁ ଏହାର ସାମାଜିକ ମୂଲ୍ୟ ନିଶ୍ଚିତ ଭାବରେ ମହତ୍ତ୍ୱପୂର୍ଣ୍ଣ ।

ବିଶିଷ୍ଟ ଶିକ୍ଷାବିତ୍ ଅଧିରାଜମୋହନ ସେନାପତିଙ୍କ ଆତ୍ମଜୀବନୀ 'ଦୃଷ୍ଟିପାତ' (୧୯୬୫)ରେ ଜଣେ ଆଦର୍ଶ ଶିକ୍ଷକଙ୍କ ଚିନ୍ତା ଓ ଚେତନାର ପରିପ୍ରକାଶ ଘଟିଛି । ନିଜର ଅନୁଭବର କଥାକୁ ସେ ଯେପରି ଆନ୍ତରିକତାର ସହିତ ପ୍ରକାଶ କରିଛନ୍ତି, ସେଥିରୁ ତାଙ୍କ ବ୍ୟକ୍ତିତ୍ୱର ପରିଚୟ ସ୍ପଷ୍ଟ ବାରିହୋଇ ପଡ଼େ । ଆଦର୍ଶ ଏବଂ ନୈତିକତା ସଂପର୍କରେ ସେ ଏଥିରେ ଉଲ୍ଲେଖ କରିଛନ୍ତି । ସମସାମୟିକ ସମାଜରେ ନାରୀଶିକ୍ଷାପ୍ରତି ସମାଜର ଦୃଷ୍ଟିଭଙ୍ଗୀ, ପାଠ୍ୟପୁସ୍ତକ କ୍ଷେତ୍ରରେ ଦୁର୍ନୀତି, ଛାତ୍ରମାନଙ୍କର ବିଶୃଙ୍ଖଳିତ ଆଚରଣ ଆଦି କେତେକ ବିଷୟରେ ସେ ଆତ୍ମଜୀବନୀରେ ଅବତାରଣା କରିଛନ୍ତି । ସନ୍ନିବେଶିତ କେତେକ ପ୍ରସଙ୍ଗ ସଂପୂର୍ଣ୍ଣ ଅପ୍ରାସଙ୍ଗିକ ହୋଇଥିବାରୁ ପୁସ୍ତକଟିର କଳାଗତ ମୂଲ୍ୟ ହ୍ରାସ ପାଇଛି । ସମ୍ବାଦଶୈଳୀରେ ରଚିତ ହୋଇଥିବାରୁ ତଥା ଐତିହାସିକ ତଥ୍ୟ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥିବାରୁ ଗ୍ରନ୍ଥଟି ସେପରି ସୁଖପାଠ୍ୟ ହୋଇପାରି ନାହିଁ ।

ଡଃ ମାୟାଧର ମାନସିଂହଙ୍କ 'ଶିକ୍ଷାବିତ୍‌ର ଗାଥା' (୧୯୬୫)ରେ ତାଙ୍କର ଦୀର୍ଘ ତିରିଶବର୍ଷର ଶିକ୍ଷା ବିଭାଗର ତିକ୍ତ-ମଧୁର ଅନୁଭୂତି ପ୍ରକାଶିତ । ତତ୍କାଳିକ ଶିକ୍ଷାବ୍ୟବସ୍ଥା, ଶିକ୍ଷାବିଭାଗର ଦୋଷତ୍ରୁଟି, ଶିକ୍ଷକମାନଙ୍କର କର୍ତ୍ତବ୍ୟାଦି ସଂପର୍କରେ ବିସ୍ତୃତ ବ୍ୟାଖ୍ୟା ରହିଛି । ଗ୍ରନ୍ଥଟିକୁ ପ୍ରମାଣିତ କରିବା ନିମିତ୍ତ ସେ ଏଥିରେ ବିଭିନ୍ନ ରିପୋର୍ଟ, ଚିଠିପତ୍ର ଏବଂ ଶିକ୍ଷା ସଂପର୍କୀୟ କେତୋଟି ଅଭିଭାଷଣ ସଂଯୋଜିତ କରିଛନ୍ତି । ଭାରତୀୟମାନଙ୍କ ସଂକୀର୍ଣ୍ଣ ମନୋବୃତ୍ତିକୁ ମଧ୍ୟ ଏଥିରେ ତୀବ୍ର ବ୍ୟଙ୍ଗୋକ୍ତି କରାଯାଇଛି । ପୁନରାୟ ଶିକ୍ଷାପ୍ରଶାସନର ଦୁର୍ବଳତା, ଦୁର୍ନୀତି ଓ ଆତ୍ମସ୍ୱାର୍ଥ କିପରି ଶିକ୍ଷାର ଗୁଣାତ୍ମକ ବିକାଶର ପରିପନ୍ଥୀ ହୋଇଛି, ତାର ମଧ୍ୟ ଆଲୋଚନା ରହିଛି । ଗ୍ରନ୍ଥଟିର ଶୈଳୀ ଉଚ୍ଚମାନର । ଲେଖକଙ୍କର ଅନ୍ତର୍ଦୃଷ୍ଟି, ନିଜ ସଂସ୍କୃତି ପ୍ରତି ଅତ୍ୟଧିକ ଆକର୍ଷଣ ଓ ଚିନ୍ତାଧାରାର ସ୍ୱାଭାବିକତା ପାଇଁ ପୁସ୍ତକଟି ଉପାଦେୟ ହୋଇପାରିଛି । ତାଙ୍କର 'ମୁଁ ଯେତେବେଳେ ମିଲିଟାରୀରେ ଥିଲି' (୧୯୬୫) ଅନ୍ୟ ଏକ ସ୍ମୃତିଗ୍ରନ୍ଥ । ଉକ୍ତ ଗ୍ରନ୍ଥରେ ଲେଖକଙ୍କର ପ୍ରତ୍ୟକ୍ଷ ଅନୁଭୂତି, ଯୁଦ୍ଧକୌଶଳ, ଶାସନନୀତି, ଜାତୀୟତାବୋଧ ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଲେଖକ ପ୍ରସଙ୍ଗକ୍ରମେ ଜର୍ମାନୀ ଓ ଜାପାନୀମାନଙ୍କର ଜାତୀୟତା, ଆଇ.ଏନ୍.ଏ. ଗଠନ, ସୁଭାଷ ବୋଷଙ୍କ କର୍ମମୁଖର ଜୀବନ, ଉଗ୍ରଜାତୀୟତାବୋଧ, ମଣିପୁରର ସାମାଜିକ ଚଳଣି, ସଂସ୍କୃତି, ଗୋରାସିପାହିମାନଙ୍କର ଅମାନବିକ ଆଚରଣ, ଯୁଦ୍ଧର ନିୟମକାନୁନ୍ ଆଦିର ଚମତ୍କାର ବର୍ଣ୍ଣନା ରହିଛି । ରୋମାଞ୍ଚକର ବର୍ଣ୍ଣନା, ଭାଷାର ସାବଲୀଳତା, ବ୍ୟଙ୍ଗାତ୍ମକ ଦୃଷ୍ଟି, ଅନୁଭୂତିରେ ନିବିଡ଼ତା ଗ୍ରନ୍ଥଟିକୁ ଉପନ୍ୟାସର ଗୌରବ ପ୍ରଦାନ କରିଛି ।

ଭାରତ ଚନ୍ଦ୍ର ନାୟକଙ୍କ 'ମୋର ପୂର୍ବ ସ୍ମୃତିକଥା' (୧୯୬୬) ଚରିତ ସାହିତ୍ୟ କ୍ଷେତ୍ରରେ ବିଶେଷ ମର୍ଯ୍ୟାଦାଲାଭ କରିଛି । ଏଥିରେ ଲେଖକଙ୍କର ସଂସ୍କାର ମନୋବୃତ୍ତିର ପ୍ରକାଶ ଘଟିବା ସଙ୍ଗେ ସଙ୍ଗେ ହୀରାକୁଦ ବନ୍ଧ ଆନ୍ଦୋଳନ, ଗଡ଼ଜାତର ଏକଛତ୍ର ଶାସନ ଓ

ଅତ୍ୟାଚାର, ଶିକ୍ଷାବ୍ୟବସ୍ଥା, ଶାସନ ପଦ୍ଧତି, ବଙ୍ଗଭଙ୍ଗ, କରାଳ ଦୁର୍ଭିକ୍ଷ, ସମ୍ବଲପୁରରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀଭାଷାର ପ୍ରଚଳନ ଯୋଗୁଁ ଦେଶବ୍ୟାପୀ ଆନ୍ଦୋଳନ, ଓଡ଼ିଶା ସହିତ ସମ୍ବଲପୁରର ମିଶ୍ରଣ, ପ୍ରାଚୀନ ଓଡ଼ିଶାର ଚଳଣି, ଇଂରେଜ କର୍ମଚାରୀଙ୍କ ବ୍ୟବହାର, ପ୍ରଶାସନିକ ଅବସ୍ଥାଦି ବହୁ ଐତିହାସିକ ଘଟଣାର ସଂଯୋଜନା ହୋଇଛି । ୧୮୯୦ ରୁ ୧୯୦୭ ମସିହା ପର୍ଯ୍ୟନ୍ତ ବହୁ ଘଟଣା ଏହାର କଳେବର ମଣ୍ଡନ କରିଥିବାରୁ ଗ୍ରନ୍ଥଟିର ସାମାଜିକ ଓ ଐତିହାସିକ ଉପଯୋଗିତା ସ୍ୱୀକାର୍ଯ୍ୟ । ଏହାର ରଚନାଶୈଳୀ ମଧ୍ୟ ପ୍ରଶଂସାଯୋଗ୍ୟ । କେତେକ କ୍ଷେତ୍ରରେ ଫକୀରମୋହନଙ୍କ ରଚନାଶୈଳୀକୁ ଅନୁକରଣ କରାଯିବା ସଙ୍ଗେ ସଙ୍ଗେ ଗ୍ରନ୍ଥଟିକୁ ରୋଚକ କରାଯିବା ପାଇଁ ସ୍ଥାନେ ସ୍ଥାନେ କୌତୁକପ୍ରଦ ଘଟଣାଗୁଡ଼ିକର ସଂଯୋଜନା କରାଯାଇଛି ।

ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ 'ଜାତୀୟ ଜୀବନର ଆତ୍ମବିଶ୍ୱାସ' (୧୯୬୭) ଜଣେ ସଂଗ୍ରାମୀ ଓ ବିପ୍ଳବୀଙ୍କର ଆତ୍ମଲିପି । ତତ୍କାଳୀନ ରାଜନୀତିକ ଘନଘଟା ଓ ସଂଗ୍ରାମ ସମ୍ବନ୍ଧରେ ଉକ୍ତ ଗ୍ରନ୍ଥଟି ବହୁ ରୋମାଞ୍ଚକର ତଥ୍ୟ ପ୍ରଦାନ କରିଥାଏ । ଅନ୍ଧାରି ଗଡ଼ଜାତର ପ୍ରଶାସନିକ ଅବସ୍ଥା, ସାଂସ୍କୃତିକ ବିଚାରଧାରା, ସାମାଜିକ ଜୀବନ ତଥା ସେ ସମୟରେ ସଂଘଟିତ ଜାତୀୟ ଆନ୍ଦୋଳନର ବହୁ ତଥ୍ୟ ପ୍ରଦାନ ସଙ୍ଗେ ସଙ୍ଗେ ନିଜ ସଂଗ୍ରାମୀ ଜୀବନର କେତେକ ଗୋପନୀୟ ତଥ୍ୟ ପ୍ରକାଶ କରିଛନ୍ତି ।

ଔପନ୍ୟାସିକ ଅନନ୍ତପ୍ରସାଦ ପଣ୍ଡାଙ୍କ 'ମୋ ଜୀବନ ସ୍ମୃତି' (୧୯୬୮)ରେ ତତ୍କାଳୀନ ଓଡ଼ିଶାର ସାହିତ୍ୟିକ ପାଣିପାଗ ଏବଂ ତାଙ୍କ କର୍ମବହୁଳ ଜୀବନର ବିବିଧ ଅନୁଭୂତି ପ୍ରକାଶିତ । ସେ ତାଙ୍କ ଭ୍ରାମ୍ୟମାଣ ଜୀବନରେ ବହୁ ସ୍ଥାନ ପରିଭ୍ରମଣ କରିବା ସମୟରେ ସେଠାକାର ବହୁ ଅନୁଷ୍ଠାନ ସହିତ କେବଳ ସଂପୃକ୍ତ ହୋଇ ନାହାନ୍ତି, ପରନ୍ତୁ ସେଠାରେ ଏକ ସାହିତ୍ୟିକ ବାୟୁମଣ୍ଡଳ ସୃଷ୍ଟିରେ ସମର୍ଥ ହୋଇଛନ୍ତି । ଫକୀରମୋହନ, ବିଶ୍ୱନାଥ କର, ଶଶିଭୂଷଣ ରାୟଙ୍କଦ୍ୱାରା ସେ ବହୁଭାବରେ ପ୍ରେରଣା ଲାଭ କରିଛନ୍ତି । ନିଜେ ଜଣେ କଥାକାର ହୋଇଥିବାରୁ ଆତ୍ମଜୀବନୀର ବହୁସ୍ଥଳ କାହାଣୀଧର୍ମିତା ଯୋଗୁଁ ସୁଖପାଠ୍ୟ ହୋଇପାରିଛି । ସାମୟିକ ଦାର୍ଶନିକ ଚିନ୍ତନ, ଚମତ୍କାର ବର୍ଣ୍ଣନା ଓ କବିତ୍ୱପୂର୍ଣ୍ଣ ଭାଷା ଗ୍ରନ୍ଥଟିକୁ ଅଧିକ ରୁଚିକର କରିପାରିଛି ।

ଯେଉଁ କେତେକ ସମାଜସେବୀ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଆନ୍ଦୋଳନରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛନ୍ତି, ସେମାନଙ୍କ ମଧ୍ୟରେ ସେବକ ଲକ୍ଷ୍ମୀନାରାୟଣ ସାହୁ ଅନ୍ୟତମ । ତାଙ୍କ ସଂଗ୍ରାମୀ ଜୀବନର ବହୁ ଘଟଣା ଏକଶହ ସାତଟି ସ୍ମୃତି ଚିତ୍ର 'ଡଗର' ପତ୍ରିକାରେ ୧୯୫୪ ରୁ ୧୯୫୯ ଖ୍ରୀ. ମଧ୍ୟରେ ମୋ 'ଜୀବନକଥା' ଶିରୋନାମାରେ ପ୍ରକାଶିତ ହୋଇଥିଲା । ପରେ ୧୯୬୮ ମସିହାରେ 'ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତି' ଦ୍ୱାରା ତାହା 'ମୋ ବାରବୁଲା ଜୀବନ' ନାମରେ ପ୍ରକାଶିତ ।

ତାଙ୍କର ସାଧନା ଓ ତ୍ୟାଗପୂତ ଜୀବନର ଅନେକ କାହାଣୀ ଗ୍ରନ୍ଥଟିର କଳେବର ମଣ୍ଡନ କରିଛି । ସମାଜରେ ଏକ ନୂତନ ଚେତନା ସୃଷ୍ଟି କରିବା ଏବଂ ନିଜକୁ ଅକପଟ ଭାବରେ ପ୍ରକାଶ କରି ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ପ୍ରେରଣାର ଉତ୍ସ ହେବା କ୍ଷେତ୍ରରେ ଏହି ଆତ୍ମଜୀବନୀଟିର ଭୂମିକା ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ସେ ଜଣେ ନେତା ନ ଥିଲେ, ଥିଲେ କର୍ମୀଟିଏ । ରାଜନୀତି ନୁହେଁ, ଦେଶପ୍ରୀତି ଥିଲା ତାଙ୍କର ମୂଳମନ୍ତ୍ର । ସମସ୍ତଙ୍କୁ ସେ ଆପଣେଇ ନେଇଛନ୍ତି ନିଜର ଅନାବିଳ ସ୍ନେହରେ । ତାଙ୍କ ଆତ୍ମଜୀବନୀରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଆତ୍ମପ୍ରକାଶ ଘଟିଛି । ବିଭିନ୍ନ ଦେଶର ଇତିହାସ, ଭୂଗୋଳ ଓ ସାମାଜିକ ଅବସ୍ଥା ସଂପର୍କରେ ସୂଚନା ଦେଇ ପାଠକର ଚିନ୍ତା ଓ ଚେତନାକୁ ବିକଶିତ କରିବାର ଉଦ୍ୟମ କରିଛନ୍ତି । ତାଙ୍କ ଜୀବନର କୌଣସି ଦୁର୍ବଳତାକୁ ପ୍ରକାଶ କରିବାରେ ତିଳେମାତ୍ର କୁଣ୍ଠାପ୍ରକାଶ କରି ନାହାନ୍ତି । ତଥ୍ୟ ପ୍ରଦାନରେ କପଟତାର ଆଶ୍ରୟ ନେଇ ନାହାନ୍ତି । ତାଙ୍କର ମାନବିକ ବ୍ୟକ୍ତିତ୍ୱଟିକୁ ଚିହ୍ନିବା କ୍ଷେତ୍ରରେ ଏହି ଆତ୍ମଜୀବନୀଟି ବହୁ ଭାବରେ ସାହାଯ୍ୟ କରେ । ଅବଶ୍ୟ ଏହାର କଳାଗତ ମୂଲ୍ୟ ବିଶେଷ ଉଚ୍ଚକୋଟୀର ନୁହେଁ । ଆବଶ୍ୟକ ନ ଥାଇ କେତେକ କ୍ଷେତ୍ରରେ ଅପ୍ରାସଙ୍ଗିକ ଘଟଣାର ଅବତାରଣା କରାଯାଇଛି । ସେଥିପାଇଁ ଏଥିରେ ସଙ୍ଗତି ଓ ସୌଷ୍ଠବ ରକ୍ଷା କରାଯାଇପାରି ନାହିଁ । ଏହା ସତ୍ତ୍ୱେ ଜଣେ ସଂଗ୍ରାମୀ ବ୍ୟକ୍ତିତ୍ୱକୁ ଜାଣିବା ତଥା ତତ୍କାଳିକ ସମାଜର ସାମାଜିକ, ଶୈକ୍ଷିକ ଓ ସାଂସ୍କୃତିକ ଅବସ୍ଥା ସଂପର୍କରେ ଅବଗତ ହେବା କ୍ଷେତ୍ରରେ ଗ୍ରନ୍ଥଟିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ନୀଳମଣି ସେନାପତିଙ୍କ 'ମୋ କାହାଣୀ' ୧୯୬୮ ମସିହାରେ 'ପୌରୁଷ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଥିରେ ଲେଖକ ତାଙ୍କ ଜୀବନର ସମସ୍ତ କାହାଣୀ ଲିପିବଦ୍ଧ କରି ନାହାନ୍ତି । ଜଣେ ପ୍ରଶାସକ ଭାବରେ ତାଙ୍କ ଚାକିରି ଜୀବନର କେତେକ ଘଟଣା ଏଥିରେ ରୂପଲାଭ କରିଛି । ଏଥିରୁ ତତ୍କାଳୀନ ପ୍ରଶାସନିକ ଅବସ୍ଥା, ଶିକ୍ଷା ଓ ଲୋକଚରିତ୍ର ସଂପର୍କରେ ସମ୍ୟକ୍ ଜ୍ଞାନ ଲାଭ ହୋଇଥାଏ । ଅନୁରୂପଭାବେ ବିଶିଷ୍ଟ ଶିକ୍ଷାବିତ୍, ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜାଙ୍କ 'ଅକିଞ୍ଚନର ଜୀବନ ସ୍ମୃତି' ୧୯୬୮ମସିହା 'ପୌରୁଷ'ରେ ଧାରାବାହିକ ଭାବେ ଆତ୍ମପ୍ରକାଶ କରିଥିଲା । ଏହି ଆଲୋଚନାରେ ସେ ତତ୍କାଳିକ ଶିକ୍ଷାବ୍ୟବସ୍ଥା, ତାଙ୍କର ଶିକ୍ଷକ ଜୀବନ, କେମ୍ବ୍ରିଜରେ ଅଧ୍ୟୟନ ସ୍ମୃତି, ଶିକ୍ଷାକ୍ଷେତ୍ରରେ ଶୃଙ୍ଖଳାର ଭୂମିକା ଓ ପ୍ରଶାସନିକ ଅବସ୍ଥା ସଂପର୍କରେ ଆଲୋକପାତ କରିଛନ୍ତି ।

'ଗୋଟାଏ କଲମ ଟୋପାଏ କାଳି' (୧୯୬୯) ଶିକ୍ଷକ ଉପେନ୍ଦ୍ର ତ୍ରିପାଠୀଙ୍କ ନିଷ୍କପଟ ଆତ୍ମକାହାଣୀ । ଜଣେ ଶିକ୍ଷକ ରୂପେ ତାଙ୍କ ଜୀବନରେ ଲାଭ କରିଥିବା ତିକ୍ତ-ମଧୁର ଅନୁଭୂତି ଏଥିରେ ରୂପାୟିତ । ଶିକ୍ଷାର ଗୁଣାତ୍ମକ ବିକାଶ ନିମିତ୍ତ ସେ ଉଦ୍ୟମ କରିଥିଲେ । ଜଣେ ଆଦର୍ଶ ଶିକ୍ଷକ ଭାବରେ ଶିକ୍ଷାଦାନ ସଙ୍ଗେ ସଙ୍ଗେ ସାହିତ୍ୟ ପଠନ-

ପାଠନ ପ୍ରତି ଅଭିନିବେଶ ଜାରି ରଖିଥିଲେ । କୁନ୍ତଳାକୁମାରୀଙ୍କର ଉତ୍ସାହପୂର୍ଣ୍ଣ ପତ୍ର ତାଙ୍କୁ କବିତା ରଚନା କରିବାକୁ ପ୍ରେରଣା ଦେଇଥିବା ବିଷୟ ସ୍ୱୀକାର କରିଛନ୍ତି । ଏହି ଆତ୍ମଜୀବନୀଟିର ଅନ୍ୟତମ ବିଶେଷତ୍ୱ ହେଉଛି ସମସାମୟିକ କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସଂପର୍କରେ ନୂତନ ତଥ୍ୟ ପ୍ରଦାନ । ବୈଷ୍ଣବ ପାଣିଙ୍କ ସଂପର୍କରେ ସେ ଯେଉଁ ନୂତନ ତଥ୍ୟ ଦେଇଛନ୍ତି, ତାହା ପାଣି କବିଙ୍କ ଆତ୍ମଜୀବନୀରେ ନାହିଁ । ସେହିପରି ବାମଣ୍ଡା, ଜୟପୁର, ଆଠମଲ୍ଲିକ ଆଦି ରାଜାମାନଙ୍କର ସାହିତ୍ୟ ରୁଚି ସମ୍ବନ୍ଧରେ ଆଲୋକପାତ କରିଛନ୍ତି । ପ୍ରତ୍ୟକ୍ଷ କଥନଭଙ୍ଗୀର ଅନୁକରଣ, ସମୟେ ସମୟେ ଦାର୍ଶନିକ ସୁଲଭ ଚିନ୍ତାଧାରାର ପରିପ୍ରକାଶ ଏହାର କଳାଗତ ମୂଲ୍ୟ ହ୍ରାସ କରିଛି ।

ବିଶିଷ୍ଟ ଶିଶୁ ସାହିତ୍ୟିକ, ଶିକ୍ଷାବିତ୍ ରାମକୃଷ୍ଣ ନନ୍ଦଙ୍କ ଆତ୍ମଜୀବନୀ 'ଜୀବନତରଙ୍ଗ' (୧୯୬୯) ଓଡ଼ିଆ ସାହିତ୍ୟର ଅନ୍ୟତମ ମୂଲ୍ୟବାନ ଗ୍ରନ୍ଥ । ଜଣେ ଶିକ୍ଷକର ଦୃଷ୍ଟିନେଇ ଜୀବନକୁ ଦେଖିଛନ୍ତି । ସେଥିପାଇଁ ପ୍ରତି କ୍ଷେତ୍ରରେ ଆଦର୍ଶବତ୍ତା, ସଂଯମତା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ସଂଗ୍ରାମୀ ଜୀବନର ନିଷ୍କପଟ ଆତ୍ମଲିପି 'ଜୀବନତରଙ୍ଗ' । କିଶୋରାବସ୍ଥା ପିଲାଙ୍କର ଦାୟିତ୍ୱ ବିନା ଦ୍ୱିଧାରେ ଗ୍ରହଣ କରିଛନ୍ତି । ତାଙ୍କର ତ୍ୟାଗପୂତ ଜୀବନ, ଆଶା-ନିରାଶା, ଉପଲବ୍ଧି ଓ ଅନୁଭବରେ ଆତ୍ମଜୀବନୀଟି ବେଶ୍ ଉପାଦେୟ । ସଂଗ୍ରାମ ମାଧ୍ୟମରେ ସେ ଚାହିଁଛନ୍ତି ଜୀବନର ମହତ୍ତ୍ୱ ଉପଲବ୍ଧ କରିବାକୁ । ଅର୍ଥାଭାବରୁ ଏମ୍.ଏ. ପାଠପଢ଼ା ବନ୍ଦ ରଖିଥିଲେହେଁ ଜୀବନ ସଂଗ୍ରାମରୁ କେବେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ତାଙ୍କର କର୍ମପ୍ରବଣତା, ଆଦର୍ଶବତ୍ତା, ସିଦ୍ଧି ଓ ସ୍ୱାବଲମ୍ବନଶୀଳତା ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ପ୍ରେରଣାର ଉତ୍ସ ହୋଇ ରହିବ । ତାଙ୍କର କର୍ମମୟଜୀବନ, ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ, ସମସାମୟିକ ସମାଜର ସାଂସ୍କୃତିକ, ରାଜନୀତିକ ଓ ଶିକ୍ଷାଗତ ଅବସ୍ଥା ସଂପର୍କରେ ସେ ଉକ୍ତ ଗ୍ରନ୍ଥରେ ସୂଚନା ପ୍ରଦାନ କରିଛନ୍ତି । ଜଣେ ଶିଶୁ ସାହିତ୍ୟିକ ହୋଇଥିବାରୁ ଭାଷାର ସହଜ ସରଳ ପ୍ରବାହ ପୁସ୍ତକଟିକୁ ଆମୂଳାନ୍ତ ଆଚ୍ଛନ୍ନ ରଖିଛି । ବାଲ୍ୟସ୍ମୃତି ବା ପଲ୍ଲୀର ପର୍ବପର୍ବାଣି ସଂପର୍କରେ ଆଲୋଚନା କଲାବେଳେ ଭାବର ଚମତ୍କାରିତା ପାଠକକୁ ଅଭିଭୂତ କରିଥାଏ ।

ରଘୁନାଥ ପାଣିଗ୍ରାହୀଙ୍କ 'ଆତ୍ମଜୀବନୀ' (୧୯୬୯) ତାଙ୍କ ଗ୍ରନ୍ଥାବଳୀରେ ସନ୍ନିବେଶିତ । ଆତ୍ମଜୀବନୀକାର ଜଣେ କବି ଥିବାରୁ ସରଳପଦ୍ୟାକାରରେ ସଂକ୍ଷେପରେ ନିଜ ଜୀବନଟିକୁ ଲିପିବଦ୍ଧ କରିଛନ୍ତି । ଏଥିରେ ତାଙ୍କର ପାରିବାରିକ, ସାମାଜିକ, ଆଧ୍ୟାତ୍ମିକ ତଥା ସାହିତ୍ୟିକ ଜୀବନର କେତେକ ପରିଚୟ ମିଳେ । ଏତଦ୍‌ବ୍ୟତୀତ ତାଙ୍କ ଜାତୀୟବାଦୀ ମନୋଭାବର ଚିତ୍ର ମଧ୍ୟ ଏଥିରେ ଉତ୍କୀର୍ଣ୍ଣ । ସମସାମୟିକ କେତେକ ବିଶିଷ୍ଟ ବ୍ୟକ୍ତି, ସାହିତ୍ୟିକ, ଦେଶସେବକ ତଥା ସାଂସ୍କୃତିକ ଜୀବନର ପରିଚୟ ପ୍ରଦାନ କରି ଗ୍ରନ୍ଥଟିକୁ ଉପାଦେୟ କରିପାରିଛନ୍ତି ।

ଚିନ୍ତାମଣି ମହାନ୍ତିଙ୍କ 'ଜୀବନପଞ୍ଜିକା' (୧୯୭୦)ରୁ ଜଣେ ଆଦର୍ଶ ଶିକ୍ଷକ, ସଚ୍ଚୋଟ ସାମ୍ବାଦିକ ଓ ବିଶିଷ୍ଟ ସାହିତ୍ୟିକଙ୍କର ଯଥାର୍ଥ ପରିଚୟ ମିଳେ । ଶିକ୍ଷାଦାନ ତାଙ୍କ ଜୀବନର ଆଦର୍ଶ ହୋଇଥିଲେହେଁ ପ୍ରତିକୂଳ ପରିସ୍ଥିତି ତାଙ୍କୁ ସାମ୍ବାଦିକ ଜୀବନ ଗ୍ରହଣ କରିବାକୁ ବାଧ୍ୟ କରିଥିଲା । 'ଉତ୍କଳବାସୀ, ଗଞ୍ଜାମ ଓଡ଼ିଆ ହିତବାଦିନୀ, ଜ୍ଞାନଦର୍ପଣ' ଆଦି ବହୁ ବିଶିଷ୍ଟ ପତ୍ରିକାର ସଂପାଦକ ରୂପେ ସେ ପ୍ରଶଂସାଲାଭ କରିଛନ୍ତି । ଜଣେ ନିଷ୍ଠାପର ସାଧକଙ୍କ ଇତିବୃତ୍ତ ଏଥିରେ ପ୍ରକାଶଲାଭ କରିବା ସହିତ ସେ ସମୟର ଧାର୍ମିକ ଭାବଧାରା, ସାମାଜିକ, ରାଜନୀତିକ ଜୀବନ, ଶିକ୍ଷା ଓ ସାଂସ୍କୃତିକ ଅବସ୍ଥା, ସାହିତ୍ୟିକ ପାଣିପାଗ ଆଦି ସଂପର୍କରେ ଧାରଣା ଆସିଥାଏ । ଉତ୍କଳ ସମ୍ମିଳନୀର କେତେକ ଘଟଣା ତାତ୍କାଳିକ ବ୍ୟକ୍ତି ଚରିତ୍ର ମଧ୍ୟ ଏହାର ପରିସରଭୁକ୍ତ ହୋଇଛି । ତତ୍‌ସମ ଶବ୍ଦ ସହିତ ଦେଶଜ ଶବ୍ଦର ସମନ୍ୱୟ ସାଧନ କରି ସେ ତାଙ୍କ ଗଦ୍ୟଶୈଳୀର ଗୁରୁତ୍ୱ ବୃଦ୍ଧି କରିଛନ୍ତି । କେତେକ କ୍ଷେତ୍ରରେ ଘଟଣାର ଧାରାବାହିକତା ରକ୍ଷା କରାଯାଇପାରି ନ ଥିବାରୁ ଗ୍ରନ୍ଥଟିର ମହତ୍ତ୍ୱ ହାନି ଘଟିଛି ।

ଉଦୟନାଥ ରଥଙ୍କ 'ସଂସାର ପଥେ' (୧୯୭୨) ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କ ଆତ୍ମଜୀବନୀ । ଏଥିରେ ତାଙ୍କ କର୍ମମୟ ଜୀବନର ଅଭିଜ୍ଞତା, ସରକାରୀ ନୀତିନିୟମ ଆଦି ସଂପର୍କରେ ଉଲ୍ଲେଖ ରହିଛି । ଚାକିରିଜୀବୀମାନଙ୍କ ନିମିତ୍ତ ଏହି ଗ୍ରନ୍ଥଟିର କେତେକାଂଶରେ ମହତ୍ତ୍ୱ ରହିଛି । ଆତ୍ମଜୀବନୀଟି ବକ୍ତବ୍ୟଧର୍ମୀ ଏବଂ ଆବରଣମୁକ୍ତ ହୋଇଥିବାରୁ ଏହାର କଳାଗତ ମୂଲ୍ୟ ହ୍ରାସ ପାଇଛି ।

'ମୋ ଜୀବନର ଏକ ଅଧ୍ୟାୟ : ଅଗଷ୍ଟ ବିପ୍ଳବ' (୧୯୭୨)ର ଲେଖକ ହେଉଛନ୍ତି ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀ । ଏହା ଏକ ସ୍ମୃତି ଚିତ୍ର । ୧୯୪୨ ମସିହା ଅଗଷ୍ଟ ମାସରେ ଘଟିଥିବା ବିପ୍ଳବର କାହାଣୀ ଏହାର ମୁଖ୍ୟ ଉପଜୀବ୍ୟ ବିଷୟ । ଏଥିରେ କେବଳ ଶୁଷ୍କତଥ୍ୟ ବା ବିବରଣୀ ସନ୍ନିବେଶ କରାଯାଇ ନାହିଁ; ରୋମାଞ୍ଚଧର୍ମୀ ବର୍ଣ୍ଣନା ଓ ଆବେଗଧର୍ମୀ ଭାଷାଯୋଗୁଁ ଗ୍ରନ୍ଥଟିର କଳାଗତ ମୂଲ୍ୟ ବୃଦ୍ଧି ପାଇଛି । ଏଥିରେ ମୁଖ୍ୟତଃ ଇଂରେଜ ଶାସକମାନଙ୍କର ଅତ୍ୟାଚାର, ବିପ୍ଳବୀମାନଙ୍କ ସାହସିକ କାର୍ଯ୍ୟକଳାପ, ତ୍ୟାଗ, କାରାଗାର ଜୀବନ, ପୋଲିସ୍‌ର ନିର୍ମମତା ଆଦିର ଚମତ୍କାର ବିଶ୍ଳେଷଣ ରହିଛି । ତାଙ୍କର 'ମୋ ଜୀବନ ସଂଗ୍ରାମ ଅର୍ଦ୍ଧ ଶତାବ୍ଦୀର ସମାଜବାଦୀ ଆନ୍ଦୋଳନର କାହାଣୀ' (୧୯୮୪) ଏକ ରୋମାଞ୍ଚଧର୍ମୀ ଆତ୍ମକାହାଣୀ । ସର୍ବମୋଟ ଊଣେଇଶଟି ପରିଚ୍ଛେଦ ବିଶିଷ୍ଟ ଉକ୍ତ ଗ୍ରନ୍ଥର ପ୍ରଥମ ପରିଚ୍ଛେଦରେ କେବଳ ତାଙ୍କ ପାରିବାରିକ ଜୀବନ ସଂପର୍କରେ ସୂଚନା ରହିଛି । ଅନ୍ୟ ଅଠରଟି ପରିଚ୍ଛେଦରେ ୧୯୩୦-୮୨ ମସିହା ମଧ୍ୟରେ ତାଙ୍କ ଜୀବନର ବହୁ ଘଟଣା ଉତ୍କୀର୍ଣ୍ଣ । ମୁଖ୍ୟତଃ ଓଡ଼ିଶା ତଥା ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ, ସଂଗ୍ରାମୀମାନଙ୍କ ଜୀବନ, କାରାବରଣ, ଶାସକମାନଙ୍କର ଅତ୍ୟାଚାର, ରାଜନୀତିକ ଘନଘଟା, ଅସହଯୋଗ ଆନ୍ଦୋଳନଠାରୁ ସ୍ୱାଧୀନତାଲାଭ ପର୍ଯ୍ୟନ୍ତ ଏବଂ

ସ୍ୱାଧୀନତୋତ୍ତର ଭାରତବର୍ଷର ରାଜନୀତି, ସ୍ୱାର୍ଥସର୍ବସ୍ୱ ମନୋବୃତ୍ତି ତଥା ସମସାମୟିକ ସାମାଜିକ ଜୀବନର ଆଲେଖ୍ୟ ଏଥିରେ ରହିଛି । ଶୈଳୀ ସୁନ୍ଦର ଏବଂ ଭାବ ହୃଦୟସ୍ପର୍ଶୀ ହୋଇଥିବାରୁ ଗ୍ରନ୍ଥଟି ମନଛୁଆଁ ହୋଇପାରିଛି । ତାଙ୍କର 'ଜଣେ ରାଜ୍ୟପାଳର ଅନୁଭୂତି', 'ସ୍ମୃତିସଂପର୍କ', 'କାରାଅନୁଭୂତି' ଗୋଟିଏ ଗୋଟିଏ ସ୍ମୃତିଗ୍ରନ୍ଥ ।

ବିଶିଷ୍ଟ ସମାଜସେବୀ, ସାହିତ୍ୟିକ, ସବୁଜ ଆନ୍ଦୋଳନର ଅନ୍ୟତମ ପୁରୋଧା ପଦ୍ମଭୂଷଣ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି' (୧୯୭୩) ପ୍ରଥମେ 'କଳନା' ପତ୍ରିକାରେ ୧୯୬୫ ମସିହାରେ, ପରେ 'ଡଗର' ପତ୍ରିକାରେ ୧୯୬୮ ମସିହାରୁ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ତତ୍ପରେ ଏହା ସ୍ୱତନ୍ତ୍ର ପୁସ୍ତକ ରୂପେ ଆତ୍ମପ୍ରକାଶ କରିଛି । ଏଥିରେ ମୁଖ୍ୟତଃ ତାଙ୍କର ପାରିବାରିକ ଜୀବନ, ବିଶିଷ୍ଟ ବ୍ୟକ୍ତିମାନଙ୍କ ସଂପର୍କରେ ସୂଚନା, ସାହିତ୍ୟିକ ଜୀବନ, ଦାର୍ଶନିକ ଭାବଧାରା, ମାନବବାଦୀ ଦୃଷ୍ଟିଭଙ୍ଗୀ, ରାଜନୀତିକ ଅବସ୍ଥା, ସମସାମୟିକ ସାମାଜିକ ଜୀବନ, ସାମ୍ବାଦିକତା, ଓଡ଼ିଶାର ସାଂସ୍କୃତିକ ଜୀବନ ଆଦିର ପରିଚୟ ମିଳେ । ଗ୍ରନ୍ଥଟିକୁ ତଥ୍ୟଭିତ୍ତିକ କରିବାପାଇଁ ଲେଖକ କେତେକ ଚିଠିପତ୍ର ଏବଂ ଅଭିମତ ଉଦ୍ଧାର କରିଛନ୍ତି । ବିଭିନ୍ନ ବ୍ୟକ୍ତିବିଶେଷଙ୍କ ସଂପର୍କରେ ମତାମତ ତାଙ୍କ ଉଦାର ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ । ଗ୍ରନ୍ଥଟିର ସାହିତ୍ୟିକ ମୂଲ୍ୟ ଅକଳନୀୟ । ସ୍ଥଳବିଶେଷରେ ସୁନ୍ଦର ସୁନ୍ଦର ପ୍ରତୀକ ଏବଂ ଚିତ୍ରକଳ୍ପର ପ୍ରୟୋଗ ଏହାର କଳାଗତ ସୌକର୍ଯ୍ୟ ବୃଦ୍ଧି କରିଛି । ମୌଳିକ ଚିନ୍ତାଧାରା, ବର୍ଣ୍ଣନାର ସ୍ୱାଭାବିକତା, ଚରିତ୍ର ଚିତ୍ରଣରେ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ, ମନସ୍ତତ୍ତ୍ୱ ବିଶ୍ଳେଷଣରେ ପଟୁତା, ହାସ୍ୟରସ ଓ କୌତୁକ କଥାର ସଂଯୋଜନା ଏବଂ ଭାଷାର ସହଜ ସରଳ ଅଭିବ୍ୟକ୍ତି ଏହାର ସାହିତ୍ୟିକ ଉତ୍କର୍ଷ ପ୍ରତିପାଦନ କରିଥାଏ ।

'ଜଣେ ଶିକ୍ଷକର ଆତ୍ମକଥା' (୧୯୭୩) ଶ୍ରୀ ବନମାଳୀ ବ୍ରହ୍ମଚାରୀଙ୍କ ଆତ୍ମଜୀବନୀ । ସେ ଜଣେ ଶିକ୍ଷକ ଥିବାରୁ ଜଣେ ଶିକ୍ଷକର ଆଦର୍ଶ ଗ୍ରନ୍ଥର ଛତ୍ରେ ଛତ୍ରେ ପ୍ରତିଫଳିତ । ଏଥିରୁ ତାଙ୍କର କର୍ତ୍ତବ୍ୟନିଷ୍ଠା, ଶିକ୍ଷାପ୍ରତି ଆନ୍ତରିକତା, ସାଧନା, ସତ୍ୟ ଓ ନ୍ୟାୟପ୍ରତି ଅକୁଣ୍ଠିତ ଅନୁରକ୍ତି, ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ନୀତି ଏବଂ ଆଦର୍ଶର ମହତ୍ତ୍ୱ, ସମକାଳୀନ ସାମାଜିକ ଜୀବନ ଆଦି ସମ୍ବନ୍ଧରେ ଉଲ୍ଲେଖ ରହିଛି ।

ବୈକୁଣ୍ଠନାଥ ମହାନ୍ତିଙ୍କ 'ଆତ୍ମକାହାଣୀ' 'ମନପବନ' ପତ୍ରିକାରେ ୧୯୭୩ ସାଲ ଜୁଲାଇଠାରୁ ଡିସେମ୍ବର ପର୍ଯ୍ୟନ୍ତ ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ 'ସ୍ମୃତିର ସୁରଭି' ନାମରେ ଏହା ପ୍ରକାଶିତ ହୋଇଛି । ସେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିବାରୁ ତତ୍କାଳୀନ ରାଜନୀତିକ ପରିବେଶ, ଅଗଷ୍ଟ ବିପ୍ଳବ ଏବଂ ସ୍ୱାଧୀନତା ସଂଗ୍ରାମର ବହୁ ଘଟଣା ଏଥିରେ ସ୍ଥାନ ପାଇଛି । ଭାଷା ସରଳ ଓ ଜୀବନ୍ତ ଥିବାରୁ ଗ୍ରନ୍ଥଟି ଆଦର ଲାଭ କରିପାରିଛି ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଆତ୍ମଜୀବନୀ 'କୁମ୍ଭାର ଚକ' (୧୯୭୫) ଓଡ଼ିଶାର ଅର୍ଦ୍ଧ ଶତାବ୍ଦୀ ଓଡ଼ିଆ ରଙ୍ଗମଞ୍ଚ, ନାଟକ ଓ ନାଟ୍ୟାନୁଷ୍ଠାନର ଇତିହାସ କହିଲେ ଭୁଲ୍ ହେବ ନାହିଁ । ଏହା ପୁସ୍ତକାକାରରେ ପ୍ରକାଶ ପାଇବା ପୂର୍ବରୁ 'ସହକାର, କଳିଙ୍ଗ, ଆସନ୍ତାକାଲି' ଆଦି ପତ୍ରିକାରେ ପ୍ରକାଶିତ ହୋଇଥିଲା । ୧୯୭୫ ମସିହାରେ ଏହା ଗ୍ରନ୍ଥାକାରରେ ପ୍ରକାଶ ପାଇଲା ଏବଂ ୧୯୭୭ ମସିହାରେ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହେଲା । ସେ ଜଣେ ନାଟ୍ୟକାର, କବି ଭାବରେ ଓଡ଼ିଶାରେ ପ୍ରସିଦ୍ଧ । ଓଡ଼ିଶାର ନାଟକ ଏବଂ ରଙ୍ଗମଞ୍ଚର ବିକାଶରେ ତାଙ୍କର ଭୂମିକା ସର୍ବାଦୌ ଗୁରୁତ୍ୱପୂର୍ଣ୍ଣ । ତେଣୁ ତାଙ୍କ ଆତ୍ମଜୀବନୀରେ ବ୍ୟକ୍ତିଗତ ଜୀବନ ସହିତ କର୍ମମୟ ଓ ନଟଜୀବନ ଓତପ୍ରୋତ ଜଡ଼ିତ । 'କୁମ୍ଭାର ଚକ' ତାଙ୍କ ଜୀବନବ୍ୟାପୀ ସାଧନାର ଅମର କାହାଣୀ । ଉକ୍ତ ଗ୍ରନ୍ଥରୁ ତାଙ୍କ କଳା ଓ ସଂସ୍କୃତି ପ୍ରୀତି, ଜାତୀୟତାବୋଧ, ନାଟ୍ୟ ଏବଂ ସଙ୍ଗୀତ ପ୍ରତି ଥିବା ଅନୁରାଗର ପରିଚୟ ମିଳେ । ସେ ନିଜର ବଂଶଗତ ପରିଚୟ ସଂକ୍ଷେପରେ ପ୍ରକାଶ କରି ନିଜ ଦେଶର ଐତିହ୍ୟ, ଗୌରବ, ଗୁଣୀ, ରାଜା ତଥା ଅନ୍ୟାନ୍ୟ ବ୍ୟକ୍ତିବିଶେଷଙ୍କ ଚରିତ୍ର, ଓଡ଼ିଶାର କଳା ଓ ସଂସ୍କୃତି ବିଷୟରେ ବିଶଦ ବିବରଣୀ ପ୍ରଦାନ କରିଛନ୍ତି । କୌତୁକ କଥା, ମନୋରଞ୍ଜକ କାହାଣୀ, ଦେଶଜ ଭାଷାର ପ୍ରୟୋଗ, ଚମତ୍କାର ବର୍ଣ୍ଣନା କୌଶଳ, ମଣିଷର ମନସ୍ତତ୍ତ୍ୱ ବିଚାରରେ ସୂକ୍ଷ୍ମ ବିଚାରବୋଧ ଓ ସର୍ବୋପରି ଭାବର ଅବାଧ ପ୍ରବାହ ଗ୍ରନ୍ଥଟିକୁ ଏକ ବିଶିଷ୍ଟ ସାହିତ୍ୟିକ କୃତିରେ ପରିଣତ କରିଛି । ତାଙ୍କ ଜୀବନର ଅନେକ ଘଟଣା ଏଥିରେ ପ୍ରକାଶିତ ହୋଇ ନ ଥିଲେହେଁ ଓଡ଼ିଶାର ଅର୍ଦ୍ଧଶତାବ୍ଦୀର କଳା ଓ ସଂସ୍କୃତିକୁ ଚିହ୍ନିବା କ୍ଷେତ୍ରରେ ଏହା ବିଶେଷ ସହାୟକ ହୋଇଥାଏ ।

ଭରତ ନାୟକଙ୍କ ଆତ୍ମଜୀବନୀ 'ନବଜୀବନ' (୧୯୭୬)ରେ ତାତ୍କାଳିକ ସାମାଜିକ ଓ ସାଂସ୍କୃତିକ ଜୀବନର ପରିଚୟ ଘଟିବା ସଙ୍ଗେ ସଙ୍ଗେ, ଲେଖକଙ୍କ ସାଧନା ଓ ଜୀବନ ସଂଗ୍ରାମର ବିବିଧ ଅନୁଭୂତି ପାଠକଙ୍କୁ ଭବିଷ୍ୟତ ଜୀବନ ସଂଗ୍ରାମ ନିମିତ୍ତ ପ୍ରେରଣା ଦେଇଥାଏ ।

ଲୋକରତ୍ନ ଡଃ କୁଞ୍ଜବିହାରୀ ଦାଶଙ୍କ 'ମୋ କାହାଣୀ' (୧୯୭୬) ବିପୁଳ ଅନୁଭବର ପରିପୂର୍ଣ୍ଣ ଏକ ଜୀବନ୍ତ କାହାଣୀ । ଏହି ଗ୍ରନ୍ଥପାଇଁ ୧୯୭୯ ମସିହାରେ ସେ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଛନ୍ତି । ଏହା କେବଳ ଏକ ଆତ୍ମକାହାଣୀ ନୁହେଁ, ଓଡ଼ିଶାର ଲୋକଜୀବନ ଓ ଲୋକସଂସ୍କୃତିକୁ ଚିହ୍ନିବା ନିମିତ୍ତ ଏକ ନିର୍ଦ୍ଦେଶିକା ପୁସ୍ତକ ମଧ୍ୟ । ଓଡ଼ିଶାର କେଉଁ ଅଖ୍ୟାତ ଅଞ୍ଚଳରେ ସଂଗୁପ୍ତ ରହିଥିବା ଲୋକକାହାଣୀ ଓ ଗୀତିକା ଆଦି ସଂଗ୍ରହ କରି ସେ ଯେପରି ପ୍ରକୃତ ଓଡ଼ିଶାକୁ ଚିହ୍ନିବାପାଇଁ ଚେଷ୍ଟା କରିଛନ୍ତି, ଠିକ୍ ସେହିପରି ସେ 'ଆତ୍ମଜୀବନୀ'ରେ ଗୋଟିଏ ଜାତିର ସଂସ୍କୃତି ଓ ଐତିହ୍ୟର ପରିଚୟ ଦେବାକୁ ଉଦ୍ୟମ କରିଛନ୍ତି । ସେ ତାଙ୍କର ସଂଘର୍ଷମୟ ଜୀବନ ସଂପର୍କରେ ଆଲୋଚନା ବେଳେ ଓଡ଼ିଶାର

ସାମାଜିକ ଜୀବନକୁ ଆନ୍ତରିକତା ସହିତ ପ୍ରକାଶ କରିଛନ୍ତି । ବିଭିନ୍ନ ସ୍ଥାନ ଭ୍ରମଣଜନିତ ଅନୁଭୂତିର ଚଟୁଳ ବର୍ଣ୍ଣନା, ଓଡ଼ିଶାର ବର୍ଣ୍ଣାଢ଼୍ୟ ପ୍ରାକୃତିକ ସୁଷମାର ଭାବପ୍ରବଣ ଅଭିବ୍ୟକ୍ତି ବେଶ୍ ମନୋରମ । ତାଙ୍କର ଘଟଣାବହୁଳ ଜୀବନ, ଆତ୍ମ-ଅନ୍ୱେଷୀ ମଣିଷର ହୃଦୟଖୋଲା ଉଚ୍ଚାରଣ ଏବଂ ଜଣେ ସଂସ୍କୃତିପ୍ରାଣ ବ୍ୟକ୍ତିର ଅଭିବ୍ୟକ୍ତି ନିଶ୍ଚିତରୂପେ ଭବିଷ୍ୟତ ବଂଶଧରମାନଙ୍କ ନିମିତ୍ତ ପଥପ୍ରଦର୍ଶକ ହୋଇପାରିବ । ଓଡ଼ିଶାର ଭାଷା, ସଂସ୍କୃତି, ଜୀବନ ଓ ମଣିଷକୁ ଚିହ୍ନିବାପାଇଁ ସେ ଯେଉଁ ଆନ୍ତରିକତା ପ୍ରକାଶ କରିଥିଲେ, ତାର କଳାତ୍ମକ ରୂପ ହେଉଛି 'ମୋ କାହାଣୀ' । ଗ୍ରନ୍ଥ ଶେଷରେ ସଂଯୋଜିତ ଡାଏରୀ ବ୍ୟକ୍ତି କୁଞ୍ଜ ବିହାରୀଙ୍କୁ ଚିହ୍ନିବାରେ ସହାୟତା କରିଥାଏ ।

ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ 'ବିଚ୍ଛନ୍ଦ ଆତ୍ମଚରିତ' ଅସଂପୂର୍ଣ୍ଣ । କଳିଙ୍ଗ ଭାରତୀଦ୍ୱାରା ୧୯୭୭ ମସିହାରେ ଏହା ପ୍ରକାଶ ପାଇଥିଲା । ଏହି ଗ୍ରନ୍ଥଟିରେ ଲେଖକଙ୍କର ୩୦ ବର୍ଷର ଘଟଣା ଆତ୍ମପ୍ରକାଶ କରିଛି । ଅବଶିଷ୍ଟ ଜୀବନର ଘଟଣା ପ୍ରକାଶ ପାଇବାର ଅବକାଶ ପାଇ ନାହିଁ । ଏହି ସ୍ୱଳ୍ପକାଳୀନ ଅଭିଜ୍ଞତାରୁ ଲେଖକଙ୍କର ସଂଗଠନ ପାରଦର୍ଶିତା, ସଂସ୍କୃତି, ସଚେତନତା, ପ୍ରାଚୀନ ସାହିତ୍ୟପ୍ରୀତି ଓ ପ୍ରେମ-ପ୍ରଣୟ ସଂପର୍କରେ ସୂଚନା ମିଳିଥାଏ । ଓଡ଼ିଶାର ପ୍ରାଚୀନ ପରମ୍ପରା, ଐତିହ୍ୟ ଓ ସଂସ୍କୃତି ପ୍ରତି ବିଚ୍ଛନ୍ଦଙ୍କର ରହିଥିଲା ଗଭୀର ସମ୍ମାନବୋଧ । ତାଙ୍କ ମତରେ ବ୍ରିଟିଶ ପୂର୍ବଯୁଗ ସାହିତ୍ୟହିଁ କେବଳ ଜାତୀୟ ସାହିତ୍ୟ ପଦବାଚ୍ୟ । ଏଥିପାଇଁ ସେ ବିଶ୍ୱନାଥ କର ଏବଂ ତାଙ୍କ 'ଉତ୍କଳ ସାହିତ୍ୟ' ପତ୍ରିକାକୁ ତୀବ୍ର ବ୍ୟଙ୍ଗୋକ୍ତି କରିଛନ୍ତି । ପ୍ରାଚୀନ ସାହିତ୍ୟ, ଦାସକାଠିଆ, ପାଲା, ଓଡ଼ିଶୀନୃତ୍ୟ ଓ ସଙ୍ଗୀତର ପରିପ୍ରଚାର କ୍ଷେତ୍ରରେ ତାଙ୍କର ଅବଦାନ ସ୍ମରଣୀୟ । ଏହି ଗ୍ରନ୍ଥଟିର ଭାଷା ତତ୍ସମବହୁଳ । ବର୍ଣ୍ଣନା ଚମତ୍କାରହୀନ । ପରିବେଷଣ ଶୈଳୀ ମଧ୍ୟ ପୁରାତନ ।

କାନ୍ତକବି ଲକ୍ଷ୍ମୀକାନ୍ତଙ୍କ କେତେକ ରଚନା ଯଥା - 'ଶୈଶବର ସ୍ମୃତି', 'ବାଲ୍ୟ ସ୍ମୃତି', 'କୈଶୋର ସ୍ୱପ୍ନ', 'ଯୌବନ ପଥେ', 'ନବବସନ୍ତର ସମ୍ଭାଷଣ', 'ମଙ୍ଗଳ ମହୁରି', 'ରୋଗଶଯ୍ୟା', 'ଜୀବନ୍ତ ମରଣ' ଆଦିରେ ନିଜ ଜୀବନ ସ୍ମୃତି କେତେକାଂଶରେ ପରିଲକ୍ଷିତ ହୋଇଥାଏ । ଏହି ସ୍ମୃତି ମଧ୍ୟରେ କବିଙ୍କର ଦାର୍ଶନିକ ଚିନ୍ତାଧାରା ଓ ବାସ୍ତବବାଦୀ ଦୃଷ୍ଟିଭଙ୍ଗୀର ପ୍ରତିଫଳନ ଘଟିଛି । ଲକ୍ଷ୍ମୀକାନ୍ତ ନିଜ ଅନୁଭୂତିକୁ ଆବେଗମୟୀ ଭାଷାରେ ପରିପ୍ରକାଶ କରି ପାଠକପ୍ରାଣରେ ସମ୍ବେଦନଭାବ ସୃଷ୍ଟି କରିବାରେ ସମର୍ଥ ହୋଇଛନ୍ତି । ଦାମୋଦର ଦାସଙ୍କ 'ମୋ ଡାଏରୀ' ପ୍ରକୃତ ଅର୍ଥରେ 'ଦିନଲିପି' ନୁହେଁ । ଏହା ମଧ୍ୟ ଠିକ୍ ଅର୍ଥରେ ଆତ୍ମଜୀବନୀ ହୋଇ ନ ପାରେ । ଲେଖକଙ୍କ ଚାକିରି ଜୀବନର କେତେକ ଅନୁଭୂତି ଏଥିରେ ପ୍ରକାଶିତ । ଜଣେ ପୋଲିସ୍ କର୍ମଚାରୀ ଭାବରେ କାର୍ଯ୍ୟ କରିଥିବାରୁ ଏଥିରେ ମୁଖ୍ୟତଃ ସେହିପରି କିଛି ଚୋରି, ଡକାୟତି ଘଟଣା ରାଜା, ସରକାରଙ୍କ ଅତ୍ୟାଚାର, ଆଦିବାସୀମାନଙ୍କ ଜୀବନ ଧାରଣ ପ୍ରଣାଳୀ, ଗଡ଼ଜାତ ଶାସନର ଅତ୍ୟାଚାର,

ପ୍ରଜାମାନଙ୍କର ଅସହାୟ ଅବସ୍ଥା, ପୋଲିସ୍‌ର କର୍ତ୍ତବ୍ୟରେ ଅବହେଳା ଆଦି ବିଷୟ ସଂଯୋଜିତ । ଗ୍ରନ୍ଥଟିର କଳାତ୍ମକମାନ ଉଚ୍ଚକୋଟୀର ନୁହେଁ ।

ନାରୀଲେଖିକା ସୀତାଦେବୀ ଖାଡ଼ଙ୍ଗାଙ୍କ ଆତ୍ମଜୀବନୀ 'ମୋ ଜୀବନ ସ୍ମୃତି' ୧୯୭୮ ମସିହାରେ ପ୍ରକାଶ ଲାଭ କରେ । ନିଜେ ଜଣେ ସର୍ଜନଶୀଳ ସ୍ରଷ୍ଟା ହୋଇଥିବାରୁ ତାଙ୍କ ଆତ୍ମକଥାଟି କଳାପରିପାଟୀପୂର୍ଣ୍ଣ, ପିଲାଟି ଦିନରୁ ସଂସ୍କାରକ ଶ୍ରୀବତ୍ସ ପଣ୍ଡାଙ୍କଦ୍ୱାରା ଅନୁପ୍ରାଣିତ ହୋଇ ସମାଜରେ ପରିପୂରିତ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କର ବୈପ୍ଳବିକ ଚିନ୍ତାଧାରା ଆତ୍ମଜୀବନୀର ବହୁସ୍ଥଳରେ ସ୍ୱତଃ ଆତ୍ମପ୍ରକାଶ କରିଯାଇଛି । ସେ ସମୟର ସାମାଜିକ କୁସଂସ୍କାର, ବାଲ୍ୟବିବାହ ପ୍ରଥା, ନାରୀଶିକ୍ଷା, ପାରିବାରିକ ଜୀବନ, ସାମାଜିକ ଜୀବନର ବହୁ ତିକ୍ତମଧୁର ଅନୁଭୂତି ଏଥିରେ ପ୍ରକାଶିତ ।

ଜନସେବକ, ଜନନାୟକ, ଓଡ଼ିଶାର ପୂର୍ବତନ ବାଚସ୍ପତି ନନ୍ଦକିଶୋର ଦାସଙ୍କ 'ମୋ ଜୀବନ ଓ ଜଞ୍ଜାଳ' (୧୯୮୧) ଏକ ଅନବଦ୍ୟ ଆତ୍ମଜୀବନୀ । ଜଣେ ସଂଗ୍ରାମୀ, ଶିକ୍ଷାବିତ୍, ଶାସକ, ଜନସେବକ, ଆଦର୍ଶବାଦୀ ବ୍ୟକ୍ତିତ୍ୱ ଭାବେ ତାଙ୍କ ଜୀବନର ବହୁ ବାସ୍ତବ ଅନୁଭୂତି ସେ ଏଥିରେ ଉଲ୍ଲିଖିତ କରିଛନ୍ତି । ସେ ଥିଲେ ସ୍ୱାଧୀନଚେତା । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଜନସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ବିଭିନ୍ନ ଗଠନମୂଳକ କାର୍ଯ୍ୟ, ତତ୍କାଳୀନ ରାଜନୀତିକ ଭାବଧାରା, ସାମାଜିକ କ୍ରିୟାକର୍ମ, ସ୍ୱାଧୀନତା ଆନ୍ଦୋଳନ, ସ୍ୱାଧୀନତୋତ୍ତର ଭାରତର ସ୍ୱାର୍ଥ ପ୍ରଣୋଦିତ ରାଜନୀତି, ବ୍ୟକ୍ତି ଚରିତ୍ରର ଅଧୋପତନ ଆଦିକୁ ଚମତ୍କାର ଭାବେ ରୂପାୟିତ କରିଛନ୍ତି । ଏତଦ୍‌ବ୍ୟତୀତ ନିଜର ତଥା ପାରିବାରିକ ଜୀବନର ଦୁଃଖଯନ୍ତ୍ରଣାକୁ ପ୍ରକାଶ କରିବାରେ କୁଣ୍ଠାବୋଧ କରି ନାହାନ୍ତି । ସରଳ ଭାଷା, ଅକୃତ୍ରିମଭାବ, ଦରଦୀମନର ଅଭିବ୍ୟକ୍ତିରେ ଆତ୍ମଜୀବନୀଟି ସୁଖପାଠ୍ୟ ।

'ଗାନ୍ଧୀ ମହାରାଜଙ୍କ ଶିଷ୍ୟ' (୧୯୮୧) ସ୍ୱାଧୀନତା ସଂଗ୍ରାମୀ ଉଦୟନାଥ ଷଡ଼ଙ୍ଗୀଙ୍କ ଆତ୍ମଲିପି । ସେ ଏହି ଗ୍ରନ୍ଥଟିପାଇଁ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଛନ୍ତି । ଏଥିରେ ମୁଖ୍ୟତଃ ତାଙ୍କର ଶୈଶବ ସମୟରୁ ୧୯୭୯ ମସିହା ପର୍ଯ୍ୟନ୍ତ ଜୀବନଚିତ୍ର ପ୍ରକାଶିତ । ଜଣେ ସ୍ୱାଧୀନତା ସଂଗ୍ରାମୀ, ସଂଗଠକ, ସାମ୍ବାଦିକ, ସମାଜସେବୀ, ଅନୁବାଦକ, କବି, ଶିଶୁ ସାହିତ୍ୟିକ ଭାବେ ଓଡ଼ିଶାରେ ସେ ସୁପରିଚିତ । ମହାତ୍ମାଗାନ୍ଧୀ ଏବଂ ଗୋପବନ୍ଧୁଙ୍କ ପ୍ରେରଣାରେ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ତେଣୁ ସ୍ୱାଧୀନତା ପୂର୍ବବର୍ତ୍ତୀ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମର ଇତିହାସ ଏବଂ ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ସାମାଜିକ ଆଦର୍ଶ, ରାଜନୀତି, ବିଭିନ୍ନ ବ୍ୟକ୍ତିତ୍ୱ ଓ ତାଙ୍କର ସାମ୍ବାଦିକ ଏବଂ ସାହିତ୍ୟିକ ଜୀବନ ଉକ୍ତ ଗ୍ରନ୍ଥରେ ପ୍ରକାଶିତ । ଲେଖକ ସ୍ୱୟଂ ଜଣେ ବିଶିଷ୍ଟ ସାହିତ୍ୟିକ ହୋଇଥିବାରୁ ଗ୍ରନ୍ଥଟିର ଶୈଳୀ ଉଚ୍ଚକୋଟୀର ହୋଇପାରିଛି ।

ଡଃ ଶ୍ରଦ୍ଧାକର ସୂପକାର ଜଣେ ସ୍ୱାଧୀନତା ସଂଗ୍ରାମୀ, ସାମ୍ବାଦିକ, ସାହିତ୍ୟିକ, ଆଇନଜ୍ଞ ଓ ରାଜନୀତିକ ନେତାଭାବେ ଓଡ଼ିଶାରେ ସୁପରିଚିତ । ସେ ଦୁଇଖଣ୍ଡ ଆତ୍ମଜୀବନୀ ରଚନା କରିଛନ୍ତି । ତାଙ୍କର 'ମଧ୍ୟମପୁରୁଷ' (୧୯୮୨)ରେ ବାଲ୍ୟଜୀବନଠାରୁ ୧୯୬୫ ମସିହାପର୍ଯ୍ୟନ୍ତ ଘଟଣା ବର୍ଣ୍ଣିତ ହୋଇଥିବା ସମୟରେ 'ଅସ୍ତରାଗ' (୧୯୯୩)ରେ ୧୯୬୫ ମସିହାଠାରୁ ୧୯୯୨ ମସିହାପର୍ଯ୍ୟନ୍ତ ଘଟଣା ବର୍ଣ୍ଣିତ । ତାଙ୍କ 'ଆତ୍ମଜୀବନୀ' ଦ୍ୱୟରେ ସ୍ୱାଧୀନତା ସଂଗ୍ରାମର ଇତିହାସ ସହିତ ରାଜନୀତିକ ଘନଘଟା, ସାମାଜିକ ଅବସ୍ଥା, ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱମାନଙ୍କ ଜୀବନଧାରା, ଶିକ୍ଷା ଓ ସାଂସ୍କୃତିକ ଅବସ୍ଥା, ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ରାଜନୀତିକ କୂଟକାପଟ୍ୟ, ପ୍ରତାରଣା, ବ୍ୟକ୍ତିସ୍ୱାର୍ଥ, ପଙ୍କିଳ ରାଜନୀତି, ବ୍ୟକ୍ତି ଚରିତ୍ରର ଅଧୋପତନ, ବିଧାନସଭାରେ ରାଜନୀତିକ ନେତାଙ୍କ ବିଶୃଙ୍ଖଳିତ ଆଚରଣ, ପ୍ରଶାସନିକ ଅବସ୍ଥା ଆଦିର ଚମତ୍କାର ଚିତ୍ର ରହିଛି । ବୋଧଗମ୍ୟ ଭାଷା ଏବଂ ନିଷ୍କପଟ ଅଭିବ୍ୟକ୍ତି ଏହାର ସାରସ୍ୱତ ସଂପଦ ।

ଚିନ୍ତାମଣି ମିଶ୍ରଙ୍କର 'ଅର୍ଦ୍ଧ ଶତାବ୍ଦୀର ଅନୁଭୂତି' (୧୯୮୩) ଅନ୍ୟତମ ସଫଳ ଆତ୍ମଜୀବନୀ । ଏଥିରେ ବର୍ଣ୍ଣିତ ଘଟଣା ଷାଠିଏ ବର୍ଷର । ସେଥିପାଇଁ ଗ୍ରନ୍ଥାରମ୍ଭରେ ଲେଖକ କହିଛନ୍ତି, 'ମୋ ଅନୁଭୂତିର ଆୟୁଷ ପଚାଶବର୍ଷରୁ ଦଶବର୍ଷ ବେଶି । ତେଣୁ ଶିରୋନାମାରେ ଭୁଲ୍ ରହିଯାଉଛି' (ପୃ-୧) । ଏହି ଆତ୍ମଜୀବନୀରେ ତାଙ୍କର ବାଲ୍ୟଜୀବନ, ଶିକ୍ଷା, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସହିତ ସଂପର୍କ, ସେ ସମୟର ସାମାଜିକ କୁସଂସ୍କାର, ଶିକ୍ଷାବ୍ୟବସ୍ଥା, ଗଡ଼ଜାତ ଶାସନ, ମହାତ୍ମା ଗାନ୍ଧୀଙ୍କ ପ୍ରଭାବରେ ଓଡ଼ିଶାରେ କଂଗ୍ରେସର ଅଭ୍ୟୁତ୍‌ଥାନ, ସ୍ୱାଧୀନତା ସଂଗ୍ରାମ, ଶିକ୍ଷକମାନଙ୍କର ନୈତିକତା ଓ ଶିକ୍ଷାଦାନ ପଦ୍ଧତି, ସାମ୍ବାଦିକତା, କାରାଗାର ଜୀବନ, ସାଂପ୍ରତିକ ରାଜନୀତି ଓ ସାଂସ୍କୃତିକ ଜୀବନଧାରା, ପ୍ରଶାସନିକ ଅବସ୍ଥା ସମ୍ବନ୍ଧରେ ଜୀବନ୍ତ ଅନୁଭୂତି ପ୍ରକାଶିତ । ସେ ଜଣେ ପ୍ରଶାସକ, ସାମ୍ବାଦିକ, ସ୍ୱାଧୀନତା ସଂଗ୍ରାମୀ ହୋଇଥିବାରୁ - ଉପରୋକ୍ତ ଚାରୋଟିର ଅନୁଭୂତି ଏଥିରେ ବେଶ୍ ପ୍ରାଞ୍ଜଳ । ଗ୍ରନ୍ଥଟି ଅପୂର୍ଣ୍ଣାଙ୍ଗ ।

ନାରୀନେତ୍ରୀ, ଜନସେବିକା, ସ୍ୱାଧୀନତା ସଂଗ୍ରାମରେ ଉତ୍ସର୍ଗୀକୃତ ପ୍ରାଣା ରମାଦେବୀ ଚୌଧୁରୀଙ୍କ ଆତ୍ମଜୀବନୀ 'ଜୀବନ ପଥେ' ପ୍ରଥମେ ସର୍ବୋଦୟ ପତ୍ରିକାରେ ଧାରାବାହିକଭାବେ ପ୍ରକାଶ ଲାଭ କରି ପରବର୍ତ୍ତୀ କାଳରେ ସ୍ୱତନ୍ତ୍ର ପୁସ୍ତକ ରୂପେ ୧୯୮୪ ମସିହାରେ ପ୍ରକାଶିତ ହୋଇଥିଲା ଏବଂ ୧୯୮୭ ମସିହାରେ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲା । ଏଥିରେ ତାଙ୍କର ବାଲ୍ୟ ଜୀବନଠାରୁ ୧୯୭୬ ମସିହା ପର୍ଯ୍ୟନ୍ତ (ଜାତୀୟ ଜରୁରିକାଳୀନ ପରିସ୍ଥିତି ଘୋଷଣା) ଦୀର୍ଘ ୮୫ ବର୍ଷର ଓଡ଼ିଶା ତଥା ଭାରତର ବହୁ ଘଟଣା ଲିପିବଦ୍ଧ । ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଭାରତର ସାମାଜିକ, ରାଜନୀତିକ ଏବଂ ସାଂସ୍କୃତିକ ଜୀବନ ଚିତ୍ର ଏଥିରେ ସ୍ପଷ୍ଟ । ସ୍ୱାଧୀନତା ସଂଗ୍ରାମ ଆନ୍ଦୋଳନ, ସର୍ବୋଦୟ

ଆନ୍ଦୋଳନ, କାରାବରଣ, ଲବଣ ସତ୍ୟାଗ୍ରହ, ଅସହଯୋଗ ଆନ୍ଦୋଳନ, ଭୂଦାନ ଆନ୍ଦୋଳନ, ଶାନ୍ତିସେନା ଗଠନ, ସାଂପ୍ରଦାୟିକ ଦଙ୍ଗା, ଜାତୀୟ ଜରୁରୀ ପରିସ୍ଥିତି ସମୟରେ ତାଙ୍କର ଭୂମିକା ଆଦିର ଚମତ୍କାର ବର୍ଣ୍ଣନା ରହିଛି । ଦେଶପାଇଁ ଉତ୍ସର୍ଗୀକୃତ ଏହି ନାରୀଟିର ଜୀବନ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ଓଡ଼ିଶାର ସାମାଜିକ ଏବଂ ରାଜନୀତିକ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ରକ୍ଷଣଶୀଳ ଓଡ଼ିଆ ସମାଜରେ ସେ ଯେପରି ଅସବର୍ଣ୍ଣ ବିବାହକୁ ସମର୍ଥନ କରି ନିଜ ପରିବାରରେ ତାହାକୁ କାର୍ଯ୍ୟକାରୀ କରାଇଛନ୍ତି, ସେହିପରି ଗାନ୍ଧିଜୀଙ୍କର ପ୍ରେରଣାରେ ହରିଜନମାନଙ୍କର ସେବାକରି ଜଣେ ଯଥାର୍ଥ ସେବିକାର ପରିଚୟ ଦେଇଛନ୍ତି । ସ୍ୱାମୀ ଗୋପବନ୍ଧୁ ଚୌଧୁରୀ, ଦେବର ନବକୃଷ୍ଣ ଚୌଧୁରୀ, ପୁତ୍ର ମନମୋହନ ଚୌଧୁରୀ, ଯାଆ ମାଳତୀ ଚୌଧୁରୀ, କନ୍ୟା ଅନ୍ନପୂର୍ଣ୍ଣା ମହାରଣା - ସମସ୍ତେ  ଦେଶ ସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଭାଷାରେ ଆଡ଼ମ୍ବର ନାହିଁ, ବର୍ଣ୍ଣନାରେ ବାହୁଲ୍ୟ ନାହିଁ କିମ୍ବା ଆତ୍ମମ୍ଭରିତା ନାହିଁ । ଅବଶ୍ୟ କେତେକ କ୍ଷେତ୍ରରେ ଇତିହାସର ଧାରାବାହିକତାରେ ତ୍ରୁଟି ପରିଲକ୍ଷିତ ହୁଏ । ସ୍ମୃତିକୁ ପାଥେୟ କରି ଦୀର୍ଘ ୮୫ ବର୍ଷର ଇତିହାସ ରଚନା ସମୟରେ ଏପରି ତ୍ରୁଟି ରହିବା ସ୍ୱାଭାବିକ ।

ସମାଜବାଦୀନେତା, ଚିରସଂଗ୍ରାମୀ ରବି ସିଂଙ୍କ ଆତ୍ମଜୀବନୀ 'ନିଃସଙ୍ଗ ପଦାତିକ' ପାଠକର ସମ୍ବେଦନା ଦାବି କରେ । ପାରଂପରିକ ସ୍ଥିତାବସ୍ଥା ପ୍ରତି ସେ ସର୍ବଦା ବୀତସ୍ପୃହ । ସମାଜରେ ଯେଉଁଠି ସେ ଅନ୍ୟାୟ, ଅନୀତି ଦେଖନ୍ତି, ସେଠାରେ ସେ ହୋଇଉଠନ୍ତି ପ୍ରତିକ୍ରିୟାଶୀଳ । ତାଙ୍କ ଆତ୍ମଜୀବନୀରେ ସମସାମୟିକ ସାମାଜିକ ଜୀବନର ଅଧୋପତନ, କଳୁଷ ରାଜନୀତି, ସାଂସ୍କୃତିକ ବିଚାରବୋଧ ଏବଂ ସଂଗ୍ରାମୀ ବ୍ୟକ୍ତିତ୍ୱମାନଙ୍କର ପରିଚୟ ରହିଛି । ନିଃସଙ୍ଗ ପଦାତିକ ଭାବରେ ପାରଂପରିକ ଓ ପଙ୍କିଳ ସାମାଜିକ ବ୍ୟବସ୍ଥା ଏବଂ ରାଜନୀତିକ ହଟଚମଟ ବିରୋଧରେ ସେ ସଂଗ୍ରାମ ବଜାୟ ରଖିଛନ୍ତି । ଭାଷାରେ ଉଷ୍ଣତା ଏବଂ ବର୍ଣ୍ଣନାରେ ରୋମାଞ୍ଚକତା ତାଙ୍କ ଆତ୍ମଜୀବନୀର ବୈଶିଷ୍ଟ୍ୟ ।

ନୀଳମଣି ରାଉତରାୟଙ୍କ ଆତ୍ମଜୀବନୀ 'ସ୍ମୃତି ଓ ଅନୁଭୂତି' (୧୯୮୬) ଦୀର୍ଘ ପଚାଶବର୍ଷ ଓଡ଼ିଶାର ସମସାମୟିକ ରାଜନୀତିକ ଇତିହାସ । ଏଥିରେ ତାଙ୍କ ସଂଗ୍ରାମୀ ଜୀବନର ବହୁ ତଥ୍ୟ ଉପଲବ୍ଧ । ଛାତ୍ରାବସ୍ଥାରୁ ସ୍ୱାଧୀନତା ସଂଗ୍ରାମରେ ଝାସଦେଇ ଦେଶମାତୃକାର ସେବାପାଇଁ ସେ ଶପଥ ଗ୍ରହଣ କରିଥିଲେ । ତେଣୁ ତାଙ୍କ ତ୍ୟାଗ, ସଂଘର୍ଷ, ଉତ୍ଥାନ-ପତନ ଓ ସଂଗଠକ ଜୀବନାଦିର.ମାର୍ମିକ ଆଲେଖ୍ୟ ଏହି ଜୀବନୀଟିରେ ଦେଖିବାକୁ ମିଳେ । ଛାତ୍ରାବସ୍ଥାରୁ ରେଭେନ୍ସା ମହାବିଦ୍ୟାଳୟର ପରିସର ମଧ୍ୟରେ ବିଧାନସଭା କାର୍ଯ୍ୟକ୍ରମରେ ଉପସ୍ଥିତ ରହି ଏହାର କାର୍ଯ୍ୟପନ୍ଥା ଲକ୍ଷ୍ୟ କରିଛନ୍ତି ଓ ପରବର୍ତ୍ତୀ ରାଜନୀତିକ ଜୀବନପାଇଁ ନିଜକୁ ପ୍ରସ୍ତୁତ କରିଛନ୍ତି । ଏଥିରେ କେବଳ ସ୍ୱାଧୀନତା ସଂଗ୍ରାମ, ଅସହଯୋଗ ଆନ୍ଦୋଳନର ଘଟଣା ବର୍ଣ୍ଣିତ ହୋଇ ନାହିଁ, ପରନ୍ତୁ ସ୍ୱାଧୀନତା ପରବର୍ତ୍ତୀ

ରାଜନୀତିକ ଅବସ୍ଥାର ଏକ ତୁଳନାତ୍ମକ ଚିତ୍ର ପ୍ରଦର୍ଶିତ ହୋଇଛି । ଶ୍ରୀ ରାଉତରାୟଙ୍କ ଦୀର୍ଘ ପଚାଶବର୍ଷର ତିକ୍ତ ମଧୁର ଅନୁଭୂତିରେ ଆତ୍ମଜୀବନୀଟି ରସସ୍ନିଗ୍ଧ ।

ବିଶିଷ୍ଟ ରାଜନୀତିଜ୍ଞ, କାଳଜୟୀ ସ୍ରଷ୍ଟା, ସାମ୍ବାଦିକ ସୁରେନ୍ଦ୍ର ମହାନ୍ତିଙ୍କ ଆତ୍ମଜୀବନୀ 'ପଥ ଓ ପୃଥିବୀ' (୧୯୮୬) ଓଡ଼ିଆ ସାହିତ୍ୟର ଏକ ବିଶିଷ୍ଟ ସଂପଦ । ଏହି ଆତ୍ମଜୀବନୀର କେତେକାଂଶ ପୂର୍ବରୁ ଗନ୍ଧରାଗ, ପାଞ୍ଚଜନ୍ୟ, ନିଃସ୍ୱନ ଆଦି ପତ୍ରିକାରେ ପ୍ରକାଶିତ ହୋଇ ପାଠକମାନଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିଲା । ପରବର୍ତ୍ତୀ ସମୟରେ ଏହା 'ପଥ ଓ ପୃଥିବୀ' ନାମରେ ଇଷ୍ଟର୍ଣ୍ଣ ମିଡିଆଦ୍ୱାରା ପ୍ରକାଶଲାଭ କରିଛି । ଜଣେ ସୁସାହିତ୍ୟିକ, ଆଦର୍ଶ ରାଜନୀତି ଉପରେ ବିଶ୍ୱାସ ସ୍ଥାପନ କରିଥିବା ମହନୀୟ ବ୍ୟକ୍ତିତ୍ୱଙ୍କର ଏହି ଆତ୍ମଜୀବନୀ ପାଠକମାନଙ୍କ ନିମିତ୍ତ ଅଶେଷ ପ୍ରେରଣାର ଉତ୍ସ । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନ, ସାହିତ୍ୟିକ ବାତାବରଣ, ପଙ୍କିଳ ରାଜନୀତି ସଂପର୍କରେ ଏହି ଗ୍ରନ୍ଥଟିରେ ଆଲୋକପାତ କରାଯାଇଛି । ସେ ସର୍ବଦା ସ୍ଥିତାବସ୍ଥାର ବିରୋଧୀ । ଏହାହିଁ ତାଙ୍କ ଚରିତ୍ରର ବିଶିଷ୍ଟ ଦିଗ । ଦୁଇଜଣ ବ୍ୟକ୍ତିଙ୍କ ପ୍ରତି ସର୍ବଦା ସେ ସମ୍ମାନ ପ୍ରଦର୍ଶନ କରିଛନ୍ତି । ଜଣେ ଜାତିର ପିତା ମହାତ୍ମାଗାନ୍ଧୀ ଓ ଅନ୍ୟଜଣେ ଓଡ଼ିଶାର ସ୍ୱାଭିମାନର ପ୍ରତୀକ କୁଳବୃଦ୍ଧ ମଧୁସୂଦନ । ଆତ୍ମଜୀବନୀରେ ସେ ତାଙ୍କ ସାହିତ୍ୟିକ ଜୀବନ ସଂପର୍କରେ ମଧ ଆଲୋଚନା କରିଛନ୍ତି । ରଥଯାତ୍ରାର ବିବରଣୀ ପ୍ରଦାନ ସମୟରେ ସେ କିପରି ନୀଳଶୈଳ ରଚନା କରିବାର ପ୍ରେରଣା ଲାଭ କରିଥିଲେ, ତାର ସୂଚନା ଦେଇଛନ୍ତି । ନିଜ ଚରିତ୍ରର ତ୍ରୁଟି ବିଚ୍ୟୁତି ଗୋପନ କରିବାର ଚେଷ୍ଟା କରି ନାହାନ୍ତି । ନିର୍ବାଚନରେ ଶଠତା ଆଚରଣ, ରାଜେନ୍ଦ୍ର ନାରାୟଣଙ୍କ ପର୍ସରୁ ଟଙ୍କା ଚୋରି, ମଦ୍ୟପାନ, ପଡ଼ୋଶିନୀ ନର୍ସଙ୍କ ପରିଚାରିକା ମୁରାପ୍ରତି କୌତୂହଳ ଆଦି ଘଟଣାକୁ ବିନା ସଙ୍କୋଚରେ ପ୍ରକାଶ କରିଛନ୍ତି । ରାଜନୀତିରେ ଅସଫଳତା ଯୋଗୁଁ ସାହିତ୍ୟ କ୍ଷେତ୍ରରେ ସଫଳ ହୋଇଛନ୍ତି ବୋଲି ବିନା ଦ୍ୱିଧାରେ ସ୍ୱୀକାର କରିଛନ୍ତି । ସେ କୁହନ୍ତି, ''ରାଜନୀତି ମୋର ସାହିତ୍ୟ ଦିଗନ୍ତକୁ ସୁଦୂରପ୍ରସାରୀ କରିଛି ।'' ପ୍ରେମ ପ୍ରତି ମୂଳରୁହିଁ ସେ ବୀତସ୍ପୃହ । ତାଙ୍କ ମତରେ ପ୍ରେମ 'ଟଚ୍ ଆଣ୍ଡ ଗୋ', ଶୋଷ ଓ ପାଣି ଗ୍ଲାସର ସଂପର୍କ । ସମକାଳୀନ କେତେକ ରାଜନୀତିକ ବ୍ୟକ୍ତିତ୍ୱଙ୍କ ଚରିତ୍ରକୁ ସେ ଆକଳନ କରି ନିଜସ୍ୱ ମତ ବ୍ୟକ୍ତ କରିବାରେ ଦ୍ୱିଧା କରି ନାହାନ୍ତି । ଏତଦ୍‌ବ୍ୟତୀତ ଓଡ଼ିଶାର ସାଂସ୍କୃତିକ ଓ ରାଜନୀତିକ ଅବସ୍ଥା, ଉତ୍କଳ ସମ୍ମିଳନୀ, ଗଡ଼ଜାତ ମିଶ୍ରଣ, ସୀମା ଆନ୍ଦୋଳନ, ପ୍ରଥମ ସାଧାରଣ ନିର୍ବାଚନ, କୋଶଳ-ଉତ୍କଳ-ପ୍ରଜା ପରିଷଦ ଆଦି ବହୁ ଐତିହାସିକ ଘଟଣାର ଉଲ୍ଲେଖ କରି ଗ୍ରନ୍ଥଟିର ଐତିହାସିକ ମୂଲ୍ୟ ବୃଦ୍ଧି କରିଛନ୍ତି । ଆତ୍ମଜୀବନୀକାର ଜଣେ ବିଶିଷ୍ଟ ସାହିତ୍ୟିକ ହୋଇଥିବାରୁ ଗ୍ରନ୍ଥଟିର କଳାଗତ ମାନ ଉଚ୍ଚକୋଟୀର । କାବ୍ୟିକ ଭାଷା, ପ୍ରତୀକ ଓ ଚିତ୍ରକଳ୍ପର ବ୍ୟବହାର, ବର୍ଣ୍ଣନାରେ ଔଚିତ୍ୟ, କଥନଧର୍ମିତା, ସାମ୍ବାଦିକ ସୁଲଭ ଚଟୁଳତା ଓ ମାର୍ଜିତ ଶୈଳୀ ଗ୍ରନ୍ଥଟିର ଗୁରୁତ୍ୱ ବୃଦ୍ଧିରେ ସହାୟତା କରିଛି ।

ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ 'ମୋ ସମୟର ଓଡ଼ିଶା' (୧୯୮୭) ଓଡ଼ିଆ ସାହିତ୍ୟର ଅନ୍ୟତମ ଉପାଦେୟ ଆତ୍ମଜୀବନୀ । ସମକାଳୀନ ଓଡ଼ିଶାର ସାମାଜିକ, ରାଜନୀତିକ, ସାଂସ୍କୃତିକ ଜୀବନର ପ୍ରଚୁର ଉପାଦାନ ଏଥିରେ ସଂରକ୍ଷିତ । ବର୍ତ୍ତମାନ ଜୀବନଧାରା ପରିପ୍ରେକ୍ଷୀରେ ଓଡ଼ିଶାର ଅତୀତ ଐତିହ୍ୟ, ସାଂସ୍କୃତିକ ଉତ୍‌ଥାନ-ପତନ, ଧର୍ମନୀତି, ଜୀବନଧାରା ଆଦିର ଚମତ୍କାର ବର୍ଣ୍ଣନା ଏଥିରେ ରହିଛି । ନିବେଦନ ପର୍ଯ୍ୟାୟରେ ଲେଖକଙ୍କ ସ୍ୱୀକାରୋକ୍ତି 'ମୋ ସମୟର ଓଡ଼ିଶା'ରେ ମୋ ଜୀବନୀ ସମ୍ବନ୍ଧରେ କେତେକ କଥା ଥିଲେହେଁ ଏଥିରେ ମୋ ସମୟର ଓଡ଼ିଶାର ସାଂସ୍କୃତିକ ଘଟଣାବଳୀ ବହୁଳଭାବରେ ଥିବାରୁ ବାସ୍ତବରେ ବିଶେଷ ଗୁରୁତ୍ୱପୂର୍ଣ୍ଣ । ସତ୍ୟାଶ୍ରୟୀ ବୈଜ୍ଞାନିକ ଗବେଷଣା କ୍ଷେତ୍ରରେ ଡଃ ପାଣିଗ୍ରାହୀ ଏକ ପରିଚିତ ନାମ । ତୁଚ୍ଛ ଆଞ୍ଚଳିକତା, ସଂକୀର୍ଣ୍ଣ ଜାତୀୟ ବୋଧ, ବ୍ୟକ୍ତିସ୍ୱାର୍ଥ, ଅତୀତ ଐତିହ୍ୟ ପ୍ରତି ପରାଙ୍ମୁଖତା, ଧର୍ମନାମରେ ବ୍ୟଭିଚାର ଓ କ୍ଲୀବତା, ଭାବପ୍ରବଣତା, ବ୍ୟକ୍ତିଗତ ଦ୍ୱେଷ, ପରଶ୍ରୀକାତରତା ଓ ଆତ୍ମପ୍ରଚାର କିପରି ଗୌରବଶାଳୀ ଓଡ଼ିଶାକୁ ଅଧୋଗାମୀ ତଥା ତାର ଜୀବନଧାରାକୁ ବିପର୍ଯ୍ୟସ୍ତ କରିଛି, ତାର ଏକ ମନ୍ମୟ ଚିତ୍ର ସତ୍ୟ ଆଧାରିତ ଉପାଦାନ ଭିତ୍ତିରେ ଆଲୋଚନା କରାଯାଇଛି । ଆତ୍ମଜୀବନୀର ପ୍ରଥମ ପର୍ଯ୍ୟାୟରେ ବ୍ୟକ୍ତିଗତ ଜୀବନ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ସମସାମୟିକ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଜୀବନ ସହିତ ଅତୀତ ଇତିହାସର ତୁଳନାତ୍ମକ ଆଲୋଚନା ପ୍ରଦତ୍ତ କରି ଗ୍ରନ୍ଥଟିକୁ ତଥ୍ୟନିଷ୍ଠ ଓ ମନୋରଞ୍ଜକ କରିପାରିଛନ୍ତି । 'ମୋର ପ୍ରତିବେଶୀବୃନ୍ଦ' ଅଧ୍ୟାୟରେ ମୟୂରଭଞ୍ଜର ଖିଚିଂ ଅଞ୍ଚଳରେ ବସବାସ କରୁଥିବା ଆଦିବାସୀମାନଙ୍କର ସାମାଜିକ ଜୀବନର ଚିତ୍ର ପ୍ରଦାନ କରିଛନ୍ତି । ଡଃ ପାଣିଗ୍ରାହୀ ଜଣେ ଐତିହାସିକ ଓ ଗବେଷକ ହୋଇଥିବାରୁ ଓଡ଼ିଶାରେ ଯେଉଁ ମିଥ୍ୟା, ଜାଲ ଇତିହାସ ଏବଂ ଗବେଷଣାର ଧାରା ଚାଲିଛି ସେ ପ୍ରମାଣ ସହ ତାର ବ୍ୟଙ୍ଗୋକ୍ତି କରିଛନ୍ତି । ଭାକ୍ତିକ ମିଥ୍ୟା, ଜାଲ ଗବେଷଣା, ଆତ୍ମପ୍ରଚାରଦ୍ୱାରା କୌଣସି ଜାତି କେବେ ବିରାଟ ହୋଇପାରେନା ବୋଲି ସେ ଦୃଢ଼ବିଶ୍ୱାସୀ । ଓଡ଼ିଶାର ସାଂସ୍କୃତିକ ଦାରିଦ୍ର୍ୟ ତାଙ୍କୁ ବ୍ୟଥିତ କରିଛି । ସାଧନାର ସୁମହତ୍ ଆଦର୍ଶ ଅଭାବରୁ ସର୍ବଭାରତୀୟ ସ୍ତରରେ ଓଡ଼ିଶା ଅତ୍ୟନ୍ତ ଗୌଣ ହୋଇ ପଡ଼ିଛି ବୋଲି ତାଙ୍କର ଅଭିମତ ବାସ୍ତବରେ ଯଥାର୍ଥ । ସ୍ୱାଧୀନ ଚିନ୍ତାର ଅଭାବ ଓ ଆତ୍ମସମ୍ମାନ ବୋଧ ନ ଥିବାରୁ ଆମର ଅତୀତ ଐତିହ୍ୟ ଅତି ରୁଗ୍‌ଣ ହୋଇପଡ଼ିଛି । ସମସାମୟିକ ବ୍ୟକ୍ତି ଚରିତ୍ର ଅଧ୍ୟୟନ ଓ ସର୍ବଭାରତ ପରିପ୍ରେକ୍ଷୀରେ ଓଡ଼ିଶାର ସାମାଜିକ ଏବଂ ସାଂସ୍କୃତିକ ଘାଣୁତା ପ୍ରମାଣ କ୍ଷେତ୍ରରେ ଏହାର ଉପାଦେୟତା ସ୍ୱୀକାର୍ଯ୍ୟ । ଐତିହାସିକ ତଥ୍ୟ, ବୈଜ୍ଞାନିକ ବିଚାର ବିଶ୍ଳେଷଣ, ଭାଷା ପ୍ରୟୋଗରେ କାବ୍ୟିକତା, ଚମତ୍କାର ବର୍ଣ୍ଣନା, ଚଟୁଳ ବ୍ୟଙ୍ଗୋକ୍ତି ଆତ୍ମଜୀବନୀଟିର ମହତ୍ତ୍ୱ ବୃଦ୍ଧି କରିଛି ।

ଫତୁରାନନ୍ଦ (ରାମଚନ୍ଦ୍ର ମିଶ୍ର)ଙ୍କ 'ମୋ ଫୁଟା ତଙ୍ଗାର କାହାଣୀ' (୧୯୮୯) ସାଂପ୍ରତିକ କାଳର ଅନ୍ୟତମ ରସାଳ ଆତ୍ମଜୀବନୀ । ଅନ୍ୟମାନଙ୍କୁ ହସେଇ ହସେଇ ନାକେଦମ୍ କରି ଦେଉଥିବା ଏହି ଜୀବନବାଦୀ ଶିଳ୍ପୀଙ୍କ ବାସ୍ତବ ଜୀବନ ଯେ କେତେ କରୁଣ, ତାହା ତାଙ୍କ ବ୍ୟକ୍ତିଗତ ଜୀବନୀକୁ ଆଲୋଚନା ନ କଲେ ଜାଣିହୁଏ ନାହିଁ । 'ଆତ୍ମଜୀବନୀ'ର ଶିରୋନାମାଟି ପାଠକପ୍ରାଣରେ ହାସ୍ୟରସ ସୃଷ୍ଟି କରେ । ଏଥିରେ ବର୍ଣ୍ଣିତ ବହୁ ଘଟଣାରେ ମଧ୍ୟ ତାଙ୍କ ଚିରାଚରିତ ହସର ଖୋରାକ୍ ଭରପୂର । ମାତ୍ର ତା' ଅନ୍ତରାଳରେ ସେହି ବ୍ୟକ୍ତି ଜୀବନର ଯେଉଁ କରୁଣ ଧାରାଟି ଚିରପ୍ରବାହମାନ, କେତେଜଣ ଫତୁରାନନ୍ଦ ପାଠକ ତାହା ଜାଣିବାକୁ ଚେଷ୍ଟା କରିଛନ୍ତି ? ଇତିହାସ ଏବଂ ତଥ୍ୟ ଦୃଷ୍ଟିରୁ ମଧ୍ୟ ଏହା ଅତ୍ୟନ୍ତ ମୂଲ୍ୟବାନ୍ । ଏଥିରେ ସେ ତାଙ୍କ ବ୍ୟକ୍ତିଗତ ଜୀବନପର୍ଯ୍ୟାୟରେ ଜନ୍ମ, ପାରିବାରିକ ଜୀବନ, ଶିକ୍ଷା, କର୍ମସଂସ୍ଥାନ, ସାହିତ୍ୟ ସୃଷ୍ଟି ଆଦି ସଂପର୍କରେ ଉଲ୍ଲେଖ କରିବା ସମୟରେ ଅନ୍ୟ ପର୍ଯ୍ୟାୟରେ ତତ୍କାଳୀନ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନକୁ ଜାଣିବାର ଅବକାଶ ସୃଷ୍ଟି କରିଛନ୍ତି । କଟକ ସହର ସମ୍ପର୍କରେ ଆଲୋଚନା ପରିପ୍ରେକ୍ଷୀରେ ସେ ସମଗ୍ର ଓଡ଼ିଶାର ସାମାଜିକ ଜୀବନକୁ ଆଲୋଚନା କରିଛନ୍ତି । ସମସାମୟିକ ଓଡ଼ିଶାର ଜନଜୀବନ, ଯୋଗାଯୋଗ ବ୍ୟବସ୍ଥା, ଶିକ୍ଷାଗତ ଅବସ୍ଥା, ଅଧ୍ୟୟନ ପଦ୍ଧତି, ଶିକ୍ଷାନୁଷ୍ଠାନ, ସାଂସ୍କୃତିକ ଐକ୍ୟ, ପର୍ବପର୍ବାଣି, ବିଶ୍ୱାସବୋଧ, ସାମାଜିକ କୁସଂସ୍କାର, ଯୌଥ ପରିବାରର ମହନୀୟତା, କ୍ରୀଡ଼ାକୌତୁକ, ରାଜନୀତିକ ଚିନ୍ତାଧାରା, ସାମ୍ବାଦିକତା, ସ୍ୱାସ୍ଥ୍ୟ ବ୍ୟବସ୍ଥାଦି ବହୁ ବିଷୟରେ ସୂଚନା ପ୍ରଦାନ କରିଛନ୍ତି । ଉପମା, ପ୍ରତୀକ ଓ ଚିତ୍ରକଳ୍ପର ପ୍ରୟୋଗ, ଚିତ୍ତାକର୍ଷକ ବର୍ଣ୍ଣନା ରୀତି, ସରଳଭାଷା, ବ୍ୟଙ୍ଗାତ୍ମକ ଶୈଳୀ ଏହାର ଶୈଳ୍ପିକ ମୂଲ୍ୟ ବୃଦ୍ଧି କରିଛି ।

ଖ୍ୟାତିସଂପନ୍ନ ଚିତ୍ରଶିଳ୍ପୀ ଡଃ ଦୀନାନାଥ ପାଠୀଙ୍କ 'ଦିଗପହଣ୍ଡିର ଡ୍ରଇଂ ମାଷ୍ଟ୍ରେ' (୧୯୯୦) ଏକ ଭିନ୍ନସ୍ୱାଦର ଆତ୍ମଜୀବନୀ । ଏଥିରେ ଲେଖକ ନିଜ ପରିବାର ସଂପର୍କରେ ବିଶେଷ ସୂଚନା ପ୍ରଦାନ କରି ନ ଥିଲେହେଁ, ଦକ୍ଷିଣ ଓଡ଼ିଶାର କଳା, ସଂସ୍କୃତି ଓ କଳାର ତାତ୍ତ୍ୱିକ ଦିଗ ସଂପର୍କରେ ବୈଜ୍ଞାନିକ ବିଶ୍ଳେଷଣ କରିଛନ୍ତି । ଏହା ମଧ୍ୟରେ ଅତୀତ ଓଡ଼ିଶାର ଚିତ୍ରଶିଳ୍ପ, ସାଂସ୍କୃତିକ ଜୀବନ, ଶିକ୍ଷା ସମ୍ବନ୍ଧରେ ବିସ୍ତୃତ ଆଲୋଚନା ରହିଛି । ପ୍ରାଚୀନ ଲୋକନାଟ୍ୟ, ନୃତ୍ୟ, ସଙ୍ଗୀତ, ଭାସ୍କର୍ଯ୍ୟ, ଚିତ୍ର ଆଦି ସମ୍ବନ୍ଧରେ ଯେଉଁ ତାତ୍ତ୍ୱିକ ଆଲୋଚନା ରହିଛି, ସେଥିରୁ ଉତ୍କୃଷ୍ଟ କଳାର ଦେଶ ଉତ୍କଳକୁ ଚିହ୍ନିବାରେ ସହାୟତା ମିଳିଥାଏ । ସରଳ ଭାଷା ଓ କାବ୍ୟିକ ବର୍ଣ୍ଣନା ଯୋଗୁଁ ଗ୍ରନ୍ଥଟିର ମହତ୍ତ୍ୱ ବୃଦ୍ଧି ପାଇଛି ।

କଥାକାର ଅଖିଳମୋହନ ପଟ୍ଟନାୟକଙ୍କ 'ଆତ୍ମଜୀବନୀ' ସ୍ୱତନ୍ତ୍ର ଭାବେ ପ୍ରକାଶ ପାଇ ନାହିଁ । 'ଆସନ୍ତାକାଲି' ପତ୍ରିକାରେ ଏହାର ଦୁଇଟି ପରିଚ୍ଛେଦ ଯଥାକ୍ରମେ 'ନିର୍ଜନ ସଂଳାପ' ଓ 'ଶୈଶବର ଶବ' ଶିରୋନାମାରେ ପ୍ରକାଶ ପାଇଥିଲା । ଏଥିରେ ଲେଖକ ତାଙ୍କ ବ୍ୟକ୍ତିଗତ ଜୀବନର କେତେକ ଅନୁଭୂତିକୁ କଳାତ୍ମକ ଢଙ୍ଗରେ ପ୍ରକାଶ କରିଛନ୍ତି ।

ଜଷ୍ଟିସ୍ ରାଜକିଶୋର ଦାସଙ୍କ 'ଅନେକ ଦିନ ଅନେକ କଥା' (୧୯୯୦) ଏକ ତଥ୍ୟ ପରିପୂର୍ଣ୍ଣ ଆତ୍ମଜୀବନୀ । ଏହି ଆତ୍ମକଥାଟିରେ ଲେଖକ ନିଜର ବାଲ୍ୟଜୀବନ ଏବଂ ଶିକ୍ଷା ସଂପର୍କରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ଓଡ଼ିଶାର ଶିକ୍ଷା ବ୍ୟବସ୍ଥା, ସ୍ୱାଧୀନତା ସଂଗ୍ରାମ, ଉତ୍କଳ ସମ୍ମିଳନୀ ଗଠନ, ମଧୁବାବୁଙ୍କ ବ୍ୟକ୍ତିତ୍ୱ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ପାରଳା ମହାରାଜାଙ୍କ ଭୂମିକା, ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନ, ତାଙ୍କର ସେବକ ଓ ଓକିଲାତି ଜୀବନ ସମ୍ବନ୍ଧରେ ଆଲୋଚନା ରହିଛି ।

ବିଶିଷ୍ଟ ପ୍ରାବନ୍ଧିକ ଓ କଥାକାର ଚନ୍ଦ୍ରଶେଖର ରଥଙ୍କ ଷଷ୍ଟିପୂର୍ତ୍ତି ଅଭିନନ୍ଦନ ଗ୍ରନ୍ଥ 'ଚର୍ଚ୍ଚା' (୧୯୯୦)ରେ ଲେଖକ 'ଆତ୍ମକଥନ' ପର୍ଯ୍ୟାୟରେ ନିଜ ଜୀବନର କିୟଦଂଶ ପ୍ରକାଶ କରିଛନ୍ତି । ଏଥିରେ ସେ ନିଜ ଅନୁଭୂତିକୁ ପ୍ରକାଶ କଲାବେଳେ ରମ୍ୟରଚନା କଳାକୁ ଅନୁସରଣ କରିଥିବାରୁ ତାହା ଏକ ବିଶିଷ୍ଟ ସାହିତ୍ୟ କୃତିରେ ପରିଣତ ହୋଇଛି । ପ୍ରସଙ୍ଗକ୍ରମେ ଲେଖକ ଏଥିରେ ନିଜର ଜନ୍ମ, ବାସସ୍ଥାନ, ପରିବାର ଶିକ୍ଷା, କର୍ମଜୀବନ, ସମସାମୟିକ ସାହିତ୍ୟିକ ଅବସ୍ଥା, ବ୍ୟକ୍ତିତ୍ୱ, ଅଭିନନ୍ଦନ ଓ ପୁରସ୍କାର, ନିନ୍ଦା-ପ୍ରଶଂସା ଆଦି ସଂପର୍କରେ ଆଲୋକପାତ କରିଛନ୍ତି । ସଂକ୍ଷିପ୍ତ ହେଲେହେଁ ଏହି ଆତ୍ମକଥନ ଶୈଳୀ ଓଡ଼ିଆ ସାହିତ୍ୟରେ ସଂପୂର୍ଣ୍ଣ ନୂତନ । ଭାଷା ଯେପରି ସଂକେତଧର୍ମୀ ଓ ଭାବଗର୍ଭକ, ଶୈଳୀ ସେହିପରି ଅଭିନବ ।

ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍, ବରିଷ୍ଠ ଅଧିବକ୍ତା, ବାଗ୍ମୀପ୍ରବର ଡଃ ଶ୍ରୀରାମଚନ୍ଦ୍ର ଦାଶଙ୍କ ଆତ୍ମଜୀବନୀ 'ମୋ ଅକୁହା କାହାଣୀ' (୧୯୯୨)ରୁ ପାଠକ ତତ୍କାଳୀନ ଓଡ଼ିଶା ଓ ଭାରତର ସାମାଜିକ, ସାଂସ୍କୃତିକ, ରାଜନୀତିକ ଏବଂ ଆର୍ଥନୀତିକ ଜୀବନ ସଂପର୍କରେ ଯାହା ଆଶା କରୁଥିଲା, ସେଥିରୁ ତାଙ୍କୁ ବଞ୍ଚିତ ହେବାକୁ ପଡ଼ିଛି । ନିଜ ଜୀବନ ସହିତ ସଂପର୍କାନ୍ୱିତ କେତେକ ରାଜନୀତିକ ଘଟଣାବଳୀ ସଂପର୍କରେ ସେ ଅବଶ୍ୟ ଆଲୋଚନା କରିଛନ୍ତି । ଏହାଛଡ଼ା ସମସାମୟିକ କେତେକ ବ୍ୟକ୍ତିବିଶେଷ ଉତ୍କଳ, ସମ୍ବଲପୁର, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଜନ୍ମଜାତକ; ବିଦେଶଯାତ୍ରାର ବିଭିନ୍ନ ଅନୁଭୂତି ସଂପର୍କରେ ଚମତ୍କାର ଆଲୋଚନା ରହିଛି ।

ଭୁବନେଶ୍ୱର ବେହେରା ବୃତ୍ତିରେ ଜଣେ ଯନ୍ତ୍ରୀ ହେଲେହେଁ ପ୍ରାଣରେ ଜଣେ ସାହିତ୍ୟିକ । ପ୍ରଶାସକ ଭାବରେ ମଧ୍ୟ ଖ୍ୟାତି ଲାଭ କରିଛନ୍ତି । ତାଙ୍କର ଆତ୍ମଜୀବନୀ 'ଗାଁର ଡାକ' (୧୯୯୩) ପାଇଁ ସେ ସାରଳା ପୁରସ୍କାର ଲାଭ କରିଛନ୍ତି । ଏଥିରେ ସେ ସମସାମୟିକ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ଶୈକ୍ଷିକ ଜୀବନ ସଂପର୍କରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ପଲ୍ଲୀର ମାଧୁରିମା, ସାଂପ୍ରତିକ ସମୟ ପରିପ୍ରେକ୍ଷୀରେ ତାର ଅବସ୍ଥା ଏବଂ ନିଜ ବ୍ୟକ୍ତିଗତ ଜୀବନ ସହିତ ସଂପର୍କ ଥିବା ବହୁ ଘଟଣା ସରଳ ତଥା ଭାବଗର୍ଭକ ଭାବରେ ବର୍ଣ୍ଣନା କରି ଗ୍ରନ୍ଥଟିକୁ ସୁଖପାଠ୍ୟ କରିପାରିଛନ୍ତି ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ ପ୍ରାବନ୍ଧିକ, ଆଲୋଚକ ଚିତ୍ତରଞ୍ଜନ ଦାସଙ୍କ 'ମିତ୍ରସ୍ୟ ଚକ୍ଷୁସା' (୧୯୯୩) ଅନ୍ୟତମ ବିଶିଷ୍ଟ ଆତ୍ମଜୀବନୀ । ଅନ୍ୟାନ୍ୟ ଆତ୍ମଜୀବନୀ ପରି ଏଥିରେ କେବଳ ତାଙ୍କ ବ୍ୟକ୍ତିଗତ ଜୀବନର ପରିଚୟ ନାହିଁ, ପରନ୍ତୁ ଏହା ତତ୍କାଳୀନ ଓଡ଼ିଶା ଓ ଭାରତର ସାମାଜିକ ଏବଂ ସାଂସ୍କୃତିକ ଜୀବନର ଏକ ଚମତ୍କାର ଆକଳନ । କଥାସାହିତ୍ୟର ଶୈଳ୍ପିକ ଭାବଭଙ୍ଗୀ, ସମସାମୟିକ ଭାରତବର୍ଷର ବିଭିନ୍ନ ଚିନ୍ତାଧାରା ସହିତ ବ୍ୟକ୍ତିଗତ ଅନୁଭୂତିର ଗଭୀରତା ଯୋଗୁଁ ଏହା ବେଶ୍ ପ୍ରାଣବନ୍ତ । ସ୍ୱାଧୀନତା ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଭାରତର ଗାନ୍ଧିବାଦୀ ଚିନ୍ତାଧାରା ମଧ୍ୟରେ ତୁଳନାତ୍ମକ ବିଶ୍ଳେଷଣ କରି ଗାନ୍ଧିଜୀଙ୍କ ସାମାଜିକ ବିପ୍ଳବକୁ ଠିକ୍ ଭାବରେ ରୂପାୟିତ କରାଯାଇ ନ ଥିବାରୁ ଭାରତର ସାମାଜିକ ସ୍ଥାଣୁତା ଦେଖାଯାଇଛି ବୋଲି ସେ ମତବ୍ୟକ୍ତ କରିଛନ୍ତି । ସମସାମୟିକ ଭାରତବର୍ଷର ସାମାଜିକ, ରାଜନୀତିକ, ସାଂସ୍କୃତିକ ଓ ଶିକ୍ଷାଗତ ଅବସ୍ଥା ସମ୍ବନ୍ଧରେ ଅବତାରଣା କରି ବ୍ୟକ୍ତିଗତ ସ୍ୱାର୍ଥ, ବିଜାତୀୟ ମନୋଭାବ, ଆଞ୍ଚଳିକ ସଂକୀର୍ଣ୍ଣତା ଓ ଶଠତା ଭାରତୀୟ ଜୀବନଧାରା ତଥା ପ୍ରଗତିକୁ କିପରି ଗତିରୋଧ କରିଛି, ତାର ସୂଚନା ଦେଇଛନ୍ତି । ବର୍ଣ୍ଣନାର ଚମତ୍କାରିତା ଓ ଇଙ୍ଗିତଧର୍ମୀ ଭାଷା ଏହାର ଗୌରବ ବୃଦ୍ଧି କରିଛି ।

ବିଶିଷ୍ଟ ଆଡ଼ଭୋକେଟ ଜେନେରାଲ ଗଙ୍ଗାଧର ରଥଙ୍କ ଆତ୍ମଜୀବନୀ 'ଭୁଲି ନାହିଁ' (୧୯୯୪)ର ଦୁଇଟି ପର୍ଯ୍ୟାୟ ପରିଲକ୍ଷିତ ହୋଇଥାଏ । ପ୍ରଥମ ପର୍ଯ୍ୟାୟରେ ତାଙ୍କର ବ୍ୟକ୍ତିଗତ ଜୀବନ, ଶିକ୍ଷା, ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ, କମ୍ୟୁନିଷ୍ଟଙ୍କ ପ୍ରତି ଆକର୍ଷଣ, ବିଭିନ୍ନ ଆନ୍ଦୋଳନରେ ଯୋଗଦାନ, ବିଶିଷ୍ଟ ବ୍ୟକ୍ତିମାନଙ୍କ ସଂପର୍କରେ ସୂଚନା, ବିବାହ, ପ୍ରେସ୍ ସ୍ଥାପନା, ଓକିଲାତି ପାଠପଢ଼ା, ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ଇତିହାସ ଆଦି ସଂପର୍କରେ ଆଲୋଚନା ହୋଇଥିବା ସମୟରେ ଦ୍ୱିତୀୟ ପର୍ଯ୍ୟାୟ ସଂପୂର୍ଣ୍ଣ ଭାବରେ ତାଙ୍କର ବୃତ୍ତିଗତ ଜୀବନ ଏବଂ ବିଭିନ୍ନ ସଂଗଠନ ସହିତ ସଂପୃକ୍ତି, ସର୍ବୋପରି ଅନୁଷ୍ଠାନ ନିର୍ମାଣ ଓ ପରିଚାଳନା, ଆଡ଼ଭୋକେଟ ଜେନେରାଲ ଭାବରେ କାର୍ଯ୍ୟାବଳୀଗୁଡ଼ିକର ଆଲୋଚନା ହୋଇଛି । ବିଭିନ୍ନ ପ୍ରସଙ୍ଗକୁ ରୋଚକ କରିବାପାଇଁ ସେ ବିଭିନ୍ନ ଲେଖକଙ୍କର ଉଦ୍ଧୃତି ମଧ୍ୟ ଗ୍ରହଣ କରିଛନ୍ତି । ସରଳଭାଷା ପୁସ୍ତକଟିକୁ ସୁଖପାଠ୍ୟ କରିପାରିଛି ।

ଓଡ଼ିଶାରେ ମୂଲ୍ୟବୋଧର ପ୍ରତୀକ, ସ୍ୱାଧୀନତା ଆନ୍ଦୋଳନରେ ଉତ୍ସର୍ଗୀକୃତ ପରିବାର, ଭୂଦାନ ଆନ୍ଦୋଳନରେ ଓଡ଼ିଶାର ସାରଥି, ଦେଶ ଓ ଜାତିପାଇଁ ଉତ୍ସର୍ଗୀକୃତ ପରିବାରର ସୁଯୋଗ୍ୟ ସନ୍ତାନ ମନମୋହନ ଚୌଧୁରୀଙ୍କ ଆତ୍ମଜୀବନୀ 'କସ୍ତୁରୀ ମୃଗ ସମ' (୧୯୯୫), ୧୯୯୦ ମସିହା ପର୍ଯ୍ୟନ୍ତ ଭାରତ ତଥା ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ, ସାମାଜିକ ବିପ୍ଳବ, ରାଜନୀତିକ ଇତିହାସର ଏକ ଜ୍ୱଳନ୍ତ ପ୍ରତିଚ୍ଛବି । ଲବଣ ସତ୍ୟାଗ୍ରହ, ଅସହଯୋଗ ଆନ୍ଦୋଳନ, ମାଦକଦ୍ରବ୍ୟ ଦୋକାନ ଆଗରେ ପିକେଟିଂ, କାରାବରଣ, ବିନୋବାଙ୍କ ଭୂଦାନ ଆନ୍ଦୋଳନରେ ଅଂଶ ଗ୍ରହଣ ଆଦି ବିଭିନ୍ନ କ୍ଷେତ୍ରରେ

ମନମୋହନଙ୍କ ସକ୍ରିୟ ଅଂଶଗ୍ରହଣ ଅତୀବ ମହତ୍ତ୍ୱପୂର୍ଣ୍ଣ । ତାଙ୍କର ଆତ୍ମଜୀବନୀ ଜଣେ ବ୍ୟକ୍ତିର ଆତ୍ମକାହାଣୀ ନ ହୋଇ ଗୋଟିଏ ଜାତିର ଧାରାବାହିକ ଇତିହାସରେ ପରିଣତ ହୋଇଛି ।

ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଆତ୍ମଜୀବନୀ 'ପଥିକ' (୧୯୯୫)ରେ ସମସାମୟିକ ସାମାଜିକ, ରାଜନୀତିକ, ସାଂସ୍କୃତିକ ଜୀବନର ପରିପ୍ରକାଶ ଘଟିଛି । ଓଡ଼ିଶାରେ ଗୋପବନ୍ଧୁଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ, ଗୋପବନ୍ଧୁ ଚୌଧୁରୀଙ୍କ ଅଳକାଶ୍ରମ, ଲବଣ ସତ୍ୟାଗ୍ରହ, ଗାନ୍ଧିଜୀଙ୍କ ପ୍ରେରଣାରେ ଖଦି ପରିଧାନ, ସ୍ୱରାଜ ଆଶ୍ରମ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ, ନ'ଅଙ୍କ ଦୁର୍ଭିକ୍ଷ, ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟଙ୍କରିତା, ବିଭିନ୍ନ ସଂଗ୍ରାମୀଙ୍କ ବ୍ୟକ୍ତିତ୍ୱ, ଗାନ୍ଧିଜୀଙ୍କ ହତ୍ୟା, ସ୍ୱାଧୀନ ଗଣତନ୍ତ୍ର ଭାରତରେ ପ୍ରଥମ ନିର୍ବାଚନ, ଜରୁରିକାଳୀନ ପରିସ୍ଥିତି, ଆନନ୍ଦଲହରୀ ଉପନ୍ୟାସମାଳା, ଭାଷାକୋଷ ପ୍ରଣୟନ, ତତ୍କାଳୀନ ଓଡ଼ିଶାର ସମ୍ବାଦପତ୍ର ଆଦି ବହୁ ଘଟଣା ସଂପର୍କରେ ବିଶଦ ବିବରଣୀ ପ୍ରଦତ୍ତ ହୋଇଛି । ଏତଦ୍‌ବ୍ୟତୀତ ଲେଖକଙ୍କର ନିଜର ବ୍ୟକ୍ତିଗତ ଓ ନାଟ୍ୟଜୀବନ, ରଙ୍ଗମଞ୍ଚ ସହିତ ସଂପୃକ୍ତି, ସଂଗ୍ରାମୀ ଜୀବନ, ଶିକ୍ଷା, ଆକାଶବାଣୀ ସହିତ ସଂପର୍କ ଆଦି ବିଷୟରେ ମଧ୍ୟ ସୂଚନା ପ୍ରଦାନ କରାଯାଇଛି । ଏହାର କଳାଗତ ମୂଲ୍ୟ ମଧ୍ୟ ଉଚ୍ଚକୋଟୀର ।

ବିଶିଷ୍ଟ ଶିକ୍ଷାବିତ୍, ଅର୍ଥନୀତିଜ୍ଞ, ଡଃ ବିଦ୍ୟାଧର ମିଶ୍ରଙ୍କ 'ବିଂଶ ଶତାବ୍ଦୀର ଓଡ଼ିଶା-ମୋ ଅନୁଭୂତି' (୧୯୯୬) ଏହି ସମୟର ଅନ୍ୟତମ ସ୍ମରଣୀୟ ଆତ୍ମଜୀବନୀ । ଏଥିରେ ଲେଖକ ବିଂଶ ଶତାବ୍ଦୀ ଓଡ଼ିଶାର ଆର୍ଥନୀତିକ, ସାମାଜିକ, ସାଂସ୍କୃତିକ ଜୀବନ ସଂପର୍କରେ ଆଲୋକପାତ କରିବା ସଙ୍ଗେ ସଙ୍ଗେ ଦେଶମିଶ୍ରଣ, ଓଡ଼ିଶାରାଜ୍ୟ ଗଠନ, ଜମିଦାର ଓ ରୟତ, ଶିକ୍ଷାପ୍ରସାର ଆଦି କେତେକ ଐତିହାସିକ ଘଟଣା ସଂପର୍କରେ ସୂଚନା ପ୍ରଦାନ କରିଛନ୍ତି ।

ଓଡ଼ିଆ ସାହିତ୍ୟର ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତିଙ୍କ ଆତ୍ମଜୀବନୀ 'ସ୍ରୋତସ୍ୱତୀ' (୧ମ ଭାଗ-୧୯୯୭, ୨ୟ ଭାଗ -୧୯୯୯) ଓଡ଼ିଆ ଜୀବନୀ ସାହିତ୍ୟ କ୍ଷେତ୍ରରେ ଏକ ଅନୁପମ ସୃଷ୍ଟି । ଜଣେ ଚିନ୍ତାନାୟକ ଭାବରେ ସାଧାରଣ ବିବରଣୀ ପ୍ରଦାନ ଶୈଳୀରେ ଆତ୍ମଜୀବନୀ ନ ଲେଖି ରମ୍ୟରଚନା ଶୈଳୀରେ ଜୀବନର କେତେକ କଥା, ସାହିତ୍ୟିକ, ପ୍ରଶାସନିକ ଜୀବନର ଅନୁଭୂତି, ପରଜାଙ୍କ ସହିତ ସଂପର୍କ, ସମସାମୟିକ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଜୀବନ ଉପରେ ଆଲୋକପାତ କରିଛନ୍ତି । ଏହି ଗ୍ରନ୍ଥଟିର ଶୈଳୀ ଉଚ୍ଚମାନର । ଉପମା, ଚିତ୍ରକଳ୍ପାଦିର ପ୍ରୟୋଗ, ସଂକେତଧର୍ମୀ ଭାଷା, ଦେଶଜ ଶବ୍ଦର କାବ୍ୟିକ ପ୍ରୟୋଗ ଉକ୍ତ ଆତ୍ମଜୀବନୀଟିକୁ ଏକ ବିଶିଷ୍ଟ ସାହିତ୍ୟ କୃତିରେ ପରିଣତ କରିପାରିଛି ।

ଖ୍ୟାତନାମା ଐତିହାସିକ ଡଃ ମନ୍ମଥନାଥ ଦାସଙ୍କ 'ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ' (୧୯୯୭) ଆତ୍ମଜୀବନୀ ଏବଂ ଭ୍ରମଣ ସାହିତ୍ୟର ଏକ ସମ୍ମିଳିତ ରୂପ । ଏଥିରେ ତାଙ୍କ ପାରିବାରିକ ଜୀବନ, ଅଧ୍ୟୟନ-ଅଧ୍ୟାପନା, ଇଂଲଣ୍ଡ, ସିଂହଳ, ମିଶର, ଇଟାଲୀ, କାଶ୍ମୀର, ରୁଷ, ଅଷ୍ଟ୍ରେଲିଆ, ପ୍ୟାରିସ, କାନାଡ଼ା, ଜାପାନ, ଆମେରିକା ଆଦି ସ୍ଥାନର ଅନୁଭୂତି, ସ୍ୱାଧୀନତା ସଂଗ୍ରାମ ତଥା ଜାତୀୟ କଂଗ୍ରେସର କାର୍ଯ୍ୟକାରିତା ଏବଂ ସମସାମୟିକ ଓଡ଼ିଶାର ସାମାଜିକ ଜୀବନ ସରଳ ଅଥଚ ଭାବଗର୍ଭକ ଭାବେ ବର୍ଣ୍ଣିତ ।

ପ୍ରଗତିବାଦୀ ଆନ୍ଦୋଳନର ଅନ୍ୟତମ ସାରଥି, ସଂଗ୍ରାମୀ, ବିଶିଷ୍ଟ ସାହିତ୍ୟିକ ସଚ୍ଚିଦାନନ୍ଦ ରାଉତରାୟଙ୍କ ଆତ୍ମଜୀବନୀ 'ଉତ୍ତରକକ୍ଷ' (୧୯୯୮) ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଓଡ଼ିଶାର ସାମାଜିକ ଓ ରାଜନୀତିକ ଇତିହାସ କହିଲେ ଭୁଲ୍ ହେବ ନାହିଁ । ଓଡ଼ିଶାର ସାମ୍ୟବାଦୀ ଆନ୍ଦୋଳନ, ଶ୍ରମିକ ସଂଗଠନ, ସ୍ୱାଧୀନତା ଆନ୍ଦୋଳନ, ଅଗଷ୍ଟ ବିପ୍ଳବ, ସାହିତ୍ୟିକ ଜୀବନ, ସମସାମୟିକ ସାମାଜିକ ଆନ୍ଦୋଳନ, ସ୍ୱାଧୀନତା ପ୍ରାପ୍ତି, ସ୍ୱାଧୀନତୋତ୍ତର ଭାରତରେ ସ୍ୱାର୍ଥପରାୟଣ ମନୋବୃତ୍ତି, ବିଭିନ୍ନ ସ୍ଥାନର ଅନୁଭୂତି ଆଦିର ଚମତ୍କାର ପରିପ୍ରକାଶ ଏଥିରେ ଘଟିଛି । କାବ୍ୟିକ ଭାଷା, କଥାସାହିତ୍ୟର କାହାଣୀଧର୍ମିତା ଓ ସମାଲୋଚନାର ତିର୍ଯ୍ୟକ୍ ଦୃଷ୍ଟିଭଙ୍ଗୀ ଏହାକୁ ଏକ ଅନୁପମ ଜୀବନୀ ସାହିତ୍ୟରେ ପରିଣତ କରିଛି ।

ମନୋରଞ୍ଜନ ଦାସଙ୍କ 'ସ୍ମୃତି ସଂଳାପ' (୧୯୯୯)ରେ ତାଙ୍କ ଜୀବନର ବିବିଧ ଅନୁଭୂତି କଳାତ୍ମକ ରୀତିରେ ପ୍ରକାଶିତ । ସମସାମୟିକ ଓଡ଼ିଶାର ସାମାଜିକ, ରାଜନୀତିକ, ସାଂସ୍କୃତିକ ଅବସ୍ଥା ସହିତ ନିଜର ସାହିତ୍ୟିକ (ନାଟ୍ୟ) ଜୀବନ, ଓଡ଼ିଶାରେ ନାଟ୍ୟ ଆନ୍ଦୋଳନ, ପ୍ରଶଂସା ଓ ନିନ୍ଦା, ଆକାଶବାଣୀ ସହିତ ସଂପର୍କାଦିର ଚମତ୍କାର ଆଲେଖ୍ୟ ରହିଛି । ବିଶିଷ୍ଟ କଥାକାର ସାତକଡ଼ି ହୋତାଙ୍କ 'ମୋ ସମୟ' (୧୯୯୯)ରେ ତାଙ୍କ ଜୀବନର ବିଭିନ୍ନ ଅନୁଭୂତି, ପରିବାର, ଚାକିରି ଜୀବନ ଓ ସମସାମୟିକ ସମାଜର କେତେକ ବିଶିଷ୍ଟ ଘଟଣା ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ଜନଜୀବନ ସହିତ ବିଭିନ୍ନ କ୍ଷେତ୍ରରେ ତାଙ୍କର ଯେଉଁ ସଂପର୍କ ସ୍ଥାପିତ ହୋଇଥିଲା, ତାର ଚମତ୍କାର ପରିପ୍ରକାଶ ଘଟିଛି । ବୈକୁଣ୍ଠନାଥ ରଥଙ୍କ 'ଗବାକ୍ଷ' (୧୯୯୯) ଆତ୍ମଜୀବନୀରେ ତାଙ୍କର ଶିକ୍ଷକ ଜୀବନ ଓ ସମସାମୟିକ ଓଡ଼ିଶା ସଂପର୍କରେ ବହୁ ତଥ୍ୟ ଉପଲବ୍ଧ ହୋଇଥାଏ । ଡଃ ବେଣୀମାଧବ ପାଢ଼ୀଙ୍କ 'ସ୍ମୃତି ଅଶୀବରଷର' (୨୦୦୦)ଏକ ମନୋଜ୍ଞ ଆତ୍ମଜୀବନୀ । ଏହି ଗ୍ରନ୍ଥଟିରେ ଲେଖକଙ୍କ ବ୍ୟକ୍ତିଗତ ଜୀବନ ଠାରୁ ଆରମ୍ଭ କରି ଦକ୍ଷିଣ-ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ବହୁ ପ୍ରାମାଣିକ ବିଷୟ ଉପଲବ୍ଧ । ସମସାମୟିକ ଓଡ଼ିଶାର ଶିକ୍ଷା, ସାହିତ୍ୟ ତଥା କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ସଂପର୍କରେ ଅନେକ ସୂଚନା । ଭାଷା ସରଳ ଓ ଭାବ ପ୍ରାକୃତିକ ହୋଇଥିବାରୁ ଗ୍ରନ୍ଥଟି ସୁଖପାଠ୍ୟ ହୋଇପାରିଛି ।

ବସନ୍ତ ଶତପଥୀଙ୍କ 'ମନେପଡ଼େ' ଆତ୍ମଜୀବନୀଟି 'ନବଲିପି' ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶ ଲାଭ କରିଛି । ଏଥିରେ ତାଙ୍କ ଜୀବନର ବିବିଧ ଅନୁଭୂତି ସହିତ ସମସାମୟିକ ସମୟର କେତେକ ବିଶିଷ୍ଟ ଘଟଣା ପ୍ରକାଶିତ । ବିଶିଷ୍ଟ କଥାକାର ରାଜକିଶୋର ରାୟଙ୍କ 'ଆଦ୍ୟପ୍ରାଣ ଚିନ୍ମୟ'ରେ ନିଜ ଜୀବନକଥା ସହିତ ତତ୍କାଳୀନ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ବହୁ ସାହିତ୍ୟିକ ଘଟଣାବଳୀ ଆତ୍ମପ୍ରକାଶ କରିଛି । ଏତଦ୍‌ବ୍ୟତୀତ ପୀତାମ୍ବର ପ୍ରଧାନ 'ଘାସଫୁଲର ନିଜ କଥା', ରବି ସିଂ ମାଝିଙ୍କ 'ଜଣେ ସ୍ୱାଧୀନତା ସଂଗ୍ରାମୀର କାହାଣୀ' ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କ 'ହଜିଲା ଦିନର ସ୍ମୃତି' ଆଦି ଓଡ଼ିଆ ଆତ୍ମଜୀବନୀ ସାହିତ୍ୟକୁ ବହୁ ପରିମାଣରେ ସମୃଦ୍ଧ କରିପାରିଛି । ଇତି ମଧ୍ୟରେ ଓଡ଼ିଶାର ଅନ୍ୟ କେତେକ ଗୁଣୀବ୍ୟକ୍ତି ନିଜର ଆତ୍ମଚରିତ ଲେଖିବାରେ ମନୋନିବେଶ କରିଛନ୍ତି । କେତେକ ଧାରାବାହିକ ଭାବେ ବିଭିନ୍ନ ପତ୍ରପତ୍ରିକାରେ ଆତ୍ମକଥା ପ୍ରକାଶ କରୁଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ଏହି ଆତ୍ମଜୀବନୀ ବିଭାଗଟି ଯେ ଅତ୍ୟନ୍ତ ସମୃଦ୍ଧ ଓ ତାର ଭବିଷ୍ୟତ ଅତୀବ ଉଜ୍ଜ୍ୱଳମୟ, ଏଥିରେ ସନ୍ଦେହ ନାହିଁ ।

# ଚିଠିରେ ସାହିତ୍ୟ

ପରସ୍ପର ମଧ୍ୟରେ ଭାବର ଆଦାନ ପ୍ରଦାନର ମାଧ୍ୟମ ହେଉଛି ଚିଠି । ଏହାଦ୍ୱାରା ଏକାଧିକ ବ୍ୟକ୍ତିଙ୍କ ଅନ୍ତରର ବହୁ ଗୋପନ ତଥ୍ୟ ଉନ୍ମୋଚିତ ହୋଇଥାଏ । ବ୍ୟକ୍ତି ଅନ୍ତରର ସ୍ୱରୂପ ତଥା ସମସାମୟିକ ଘଟଣାବଳୀର ନିଛକ ପରିପ୍ରକାଶ ଚିଠି ମାଧ୍ୟମରେ ପ୍ରକାଶିତ ହେଉଥିବାରୁ ଏହାର କଳାତ୍ମକ ଓ ସାମାଜିକ ମୂଲ୍ୟ ଉପରେ ସନ୍ଦେହ ପ୍ରକାଶ କରାଯାଇ ନ ପାରେ । ଏତଦ୍‌ବ୍ୟତୀତ ଜୀବନ ଓ ଜଗତ ପ୍ରତି ଚିଠି ଲେଖକର ଦୃଷ୍ଟଭଙ୍ଗୀ, ତାର ବ୍ୟକ୍ତିତ୍ୱ, ସମସାମୟିକ ସମାଜର ବହୁ ଅନୁଦ୍‌ଘାଟିତ ତଥ୍ୟ, ବ୍ୟକ୍ତିବିଶେଷଙ୍କ ସାହିତ୍ୟକୃତି, ପ୍ରକାଶଶୈଳୀର ଏକ ପ୍ରାମାଣିକ ତଥ୍ୟ ହେଉଛି ଚିଠି । ବିଶ୍ୱରେ ବହୁ ସ୍ରଷ୍ଟା ଚିଠି ମାଧ୍ୟମରେ ସେମାନଙ୍କ ଜୀବନର ବହୁ ଗୋପନ କଥା ପ୍ରକାଶ କରିଯାଇଛନ୍ତି । ''ଚିଠିରୁ ମଣିଷର ମାନସିକ ଭାବନା, ଜୀବନଦର୍ଶନ, ମାନବିକ ଆଦର୍ଶ, ନୀତିନିଷ୍ଠ ଚିନ୍ତାଧାରା ପ୍ରଭୃତି ସହଜରେ ଜାଣିହୁଏ । ଏଥିରୁ ମଣିଷ ଅନ୍ତରର ସୁଖଦୁଃଖର ସ୍ୱରକୁ ଭଲଭାବରେ ଶୁଣିହୁଏ । ଜୀବନର ଆବେଗଗତ ମୁହୂର୍ତ୍ତର କଳାତ୍ମକ ରୂପ ଏଥିରେ ଅଦ୍ଭୁତ ଢଙ୍ଗରେ ପ୍ରକାଶ ପାଇଥାଏ ।'' (କର ବାଉରୀବନ୍ଧୁ - ନାନା ଆଲୋଚନା - ପୃ ୯୨, ୧୯୯୪) । ଏହି ଦୃଷ୍ଟିରୁ କୌଣସି ସାହିତ୍ୟରେ ଚିଠିପତ୍ରର ଏକ ସ୍ୱତନ୍ତ୍ର ଗୁରୁତ୍ୱ ଉପଲବ୍‌ଧି ହୋଇଥାଏ ।

ବ୍ୟକ୍ତି ଚରିତ୍ର, ଦେଶ ଓ ଜାତିର ଅଧ୍ୟୟନ ତଥା ନିଜ ପ୍ରତିଭା ପରିଚୟର ଏକ ମାଧ୍ୟମ ରୂପେ କେତେକ କ୍ଷେତ୍ରରେ ଚିଠିକୁ ଗ୍ରହଣ କରାଯାଇଥାଏ । 'ଦିଲ୍ଲୀ ଚିଠି' (୧୯୩୧) ଶିରୋନାମାରେ କୁନ୍ତଳାକୁମାରୀ ସାବତ ତାଙ୍କ ଜୀବନର ଅନେକ କଥା ଚିଠି ମାଧ୍ୟମରେ 'ସହକାର' ପତ୍ରିକାରେ ସଂପାଦକଙ୍କ ନିକଟକୁ ଲେଖୁଥିଲେ । ଏଥିରୁ ତାଙ୍କର ବ୍ୟକ୍ତିଗତ ଜୀବନ, ଦୃଷ୍ଟିଭଙ୍ଗୀ ଓ ସାହିତ୍ୟିକ ପ୍ରତିଭାର ବହୁ ପରିଚୟ ମିଳେ । ଏହା ମଧ୍ୟରେ ଓଡ଼ିଶାର ଦେଶ ମିଶ୍ରଣଠାରୁ ଆରମ୍ଭକରି ନାରୀଜାଗରଣ, ପଲ୍ଲୀବାସୀଙ୍କ ରୀତିନୀତି, ଜୀବିକାଧାରଣ ପଦ୍ଧତି, ବିଭିନ୍ନ ବ୍ୟକ୍ତିବିଶେଷଙ୍କ ଚରିତ୍ର, ଦର୍ଶନୀୟ ସ୍ଥାନ ସଂପର୍କରେ ସୂଚନା, ସାହିତ୍ୟ, ରାଜନୀତି, ସମାଜରେ ପ୍ରଚଳିତ ବିଭିନ୍ନ କୁସଂସ୍କାର, ଜାତୀୟତା, ପରଂପରା, ଦର୍ଶନ ଓ ଆଦର୍ଶବତ୍ତା ସଂପର୍କରେ ବହୁ ବିଷୟରେ ଉଲ୍ଲେଖ ରହିଛି । କୁନ୍ତଳାକୁମାରୀ ଜଣେ ବିଶିଷ୍ଟ ଲେଖିକା ହୋଇଥିବାରୁ ଏହି ଚିଠିଗୁଡ଼ିକର ସାହିତ୍ୟିକ ମୂଲ୍ୟ ଉଚ୍ଚକୋଟୀର । ପ୍ରତୀକାତ୍ମକ

ଭାଷା ପ୍ରୟୋଗ, ଅନୁଭବର ତୀବ୍ରତା, ଭାବର ସହଜ ପରିପ୍ରକାଶ ଏହି ଚିଠିଗୁଡ଼ିକର ଗୁରୁତ୍ୱ ବୃଦ୍ଧି କରିଛି ।

ଶିବପ୍ରସାଦ ଦାଶଙ୍କଦ୍ୱାରା ସଂକଳିତ 'ଗଙ୍ଗାଧରଙ୍କ ପତ୍ରାବଳୀ' (୧୯୫୫) ଅନ୍ୟତମ ବିଶିଷ୍ଟ ଚିଠି ସାହିତ୍ୟ । ଗଙ୍ଗାଧରଙ୍କ କାବ୍ୟ-କବିତା ତୁଳନାରେ ଏହି ଚିଠିଗୁଡ଼ିକ ହୀନପ୍ରଭ ହେଲେହେଁ ଏଥିରୁ ତାଙ୍କର ବ୍ୟକ୍ତିଗତ ଜୀବନଚିତ୍ର ସାମାଜିକ ଦୃଷ୍ଟିଭଙ୍ଗୀ, ବ୍ୟକ୍ତି ଚରିତ୍ର ଅନୁଶୀଳନ ଓ ସାହିତ୍ୟିକ ପ୍ରତିଭା ସଂପର୍କରେ କେତେକ ତଥ୍ୟ ଉପଲବ୍ଧ ହୋଇଥାଏ । କବିଙ୍କର ସାଂସାରିକ ଜଞ୍ଜାଳ, ମାନସିକ ଅଶାନ୍ତି, ସ୍ୱଳ୍ପ ବେତନ, ଆଦର୍ଶବତ୍ତା ଓ ନୀତିପୂର୍ଣ୍ଣ ଜୀବନ, ସାହିତ୍ୟିକ କୃତି, ପ୍ରତିକୂଳ ସମାଲୋଚନାରେ ନିର୍ବିକାର ଭାବ, ଅନ୍ୟ ସାହିତ୍ୟିକମାନଙ୍କ ପ୍ରତି ସମ୍ବେଦନଶୀଳତା ଓ ସୁ-ପରାମର୍ଶ ତଥା ଉତ୍ସାହ ପ୍ରଦାନାଦି ବହୁ ବିଷୟରେ ଉଲ୍ଲେଖ ଦେଖିବାକୁ ମିଳେ ।

ଚିତ୍ତରଞ୍ଜନ ଦାସଙ୍କ 'ଡେନ୍‌ମାର୍କ ଚିଠି' (୧୯୫୩) ଅନ୍ୟତମ ବିଶିଷ୍ଟ ପତ୍ର ସାହିତ୍ୟ । ଏହି ପତ୍ରଗୁଡ଼ିକ ବ୍ୟକ୍ତିଗତ ହେଲେହେଁ ଏଥିରେ ଇଉରୋପର ବିଭିନ୍ନ ଦର୍ଶନୀୟ ସ୍ଥାନ, ଜଳବାୟୁ, ସେମାନଙ୍କ ଚାଲିଚଳଣି, ଜାତୀୟତା, ଶିକ୍ଷାବ୍ୟବସ୍ଥା, ସାମାଜିକ ଆଚାର, ଆଦର୍ଶ ଓ ନୀତିବୋଧ, ନିଜ ସୁଖଦୁଃଖର ଅନୁଭୂତି ଚମତ୍କାରରୂପେ ବର୍ଣ୍ଣିତ । ଇଉରୋପର ବିଭିନ୍ନ ସ୍ଥାନ ବର୍ଣ୍ଣନା ସଂପର୍କୀୟ ପତ୍ରଗୁଡ଼ିକ ଭ୍ରମଣ ସାହିତ୍ୟ ପର୍ଯ୍ୟାୟବାଚୀ । ବ୍ୟକ୍ତିଗତ ଅନୁଭୂତି ମଧ୍ୟରେ ଯେଉଁ ସାର୍ବଜନୀନ ଚିନ୍ତାଧାରାର ପରିପ୍ରକାଶ ଘଟିଛି, ତାହା ଏହି ପତ୍ରଗୁଡ଼ିକର କାଳଜୟୀ ମୂଲ୍ୟ ।

ଡଃ ଦେବୀପ୍ରସନ୍ନ ପଟ୍ଟନାୟକଙ୍କଦ୍ୱାରା ସଂପାଦିତ 'କବି ଲିପି' (ରାଧାନାଥଙ୍କ ପତ୍ରାବଳୀ - ୧୯୫୭) ଏ କ୍ଷେତ୍ରରେ ଏକ ମହତ୍ତ୍ୱପୂର୍ଣ୍ଣ ପଦକ୍ଷେପ । ଏହି ପତ୍ରଗୁଡ଼ିକରୁ ରାଧାନାଥଙ୍କ ବ୍ୟକ୍ତିତ୍ୱ, ସମସାମୟିକ ସାମାଜିକ ଅବସ୍ଥା, ତାଙ୍କର ଆବେଗୋଚ୍ଛ୍ୱାସ, ଜାତୀୟବାଦୀ ମନୋବୃତ୍ତି, ଗୁଣୀଜନଙ୍କ ପ୍ରତି ଶ୍ରଦ୍ଧା, ସାହିତ୍ୟସାଧନା, ପାଠ୍ୟପୁସ୍ତକ ସମାଲୋଚନା ଓ ତାର ପ୍ରତିକ୍ରିୟା, ପତ୍ରପତ୍ରିକା ସଂପର୍କୀୟ ମୂଲ୍ୟବାନ ମନ୍ତବ୍ୟ, ସାମାଜିକ ସଂପର୍କ, ସାମାଜିକ କୁସଂସ୍କାର ଆଦି ବହୁ ବିଷୟରେ ଉଲ୍ଲିଖିତ । ଗଙ୍ଗାଧର ମେହେର, ଚନ୍ଦ୍ରମୋହନ ମହାରଣା, ଗୋପାଳ ବଲ୍ଲଭ ଦାସ, ଅଜୟଚନ୍ଦ୍ର, ଫକୀରମୋହନ, ନନ୍ଦକିଶୋର ଆଦିଙ୍କୁ ଏହି ଚିଠି ମାଧ୍ୟମରେ ସେ କମ୍ ପ୍ରେରଣା ଦେଇ ନାହାନ୍ତି । ଗଙ୍ଗାଧରଙ୍କ ସୃଷ୍ଟି ସଂପର୍କରେ ତାଙ୍କ ନିକଟକୁ ପ୍ରେରିତ ରାଧାନାଥଙ୍କ ମନ୍ତବ୍ୟ ପତ୍ରଗୁଡ଼ିକ ଉତ୍କୃଷ୍ଟ ସମାଲୋଚନା ପର୍ଯ୍ୟାୟବାଚୀ । ଏଥିରୁ ରାଧାନାଥଙ୍କ ସମାଲୋଚନାତ୍ମକ ଦୃଷ୍ଟିଭଙ୍ଗୀ ଏବଂ ଗୁଣୀଜନମାନଙ୍କ ପ୍ରତି ଥିବା ସଦିଚ୍ଛା ଓ ସମ୍ମାନ ସମ୍ବନ୍ଧରେ ଜ୍ଞାନଲାଭ ହୋଇଥାଏ । ଏତଦ୍‌ବ୍ୟତୀତ ତାଙ୍କ ବ୍ୟକ୍ତିଗତ ଜୀବନର ଅନେକ ଅନୁଦ୍‌ଘାଟିତ ତଥ୍ୟ ଏଥିରେ ଉପଲବ୍ଧ ।

ସୁଧୀରଞ୍ଜନଙ୍କଦ୍ୱାରା ସଂକଳିତ 'ଭୁଲି ନାହିଁ' (୧୯୫୮)ରେ ଦୁଇଟି ତରୁଣ ତରୁଣୀଙ୍କ ଆବେଗାତ୍ମକ ପତ୍ରାବଳୀ ସଂଯୋଜିତ । ଏଥିରେ ସୁଧୀରଞ୍ଜନ ଓ ସ୍ନେହଙ୍କର ମଞ୍ଚ ଜୀବନଠାରୁ ଆରମ୍ଭ କରି ବ୍ୟକ୍ତିଗତ ଜୀବନ ପର୍ଯ୍ୟନ୍ତ ବହୁ ଅନୁଭୂତି ପ୍ରକାଶିତ ହୋଇଛି । ସ୍ନେହର ବ୍ୟକ୍ତିଗତ ଜୀବନର ଦୁଃଖ, ଅସହାୟତା, ବ୍ୟର୍ଥଜୀବନ, କଳାପ୍ରତି ଅନୁରକ୍ତି, ସୁଧୀରଞ୍ଜନଙ୍କ ଆଦର୍ଶବତ୍ତା, ନଟଜୀବନ, କାଲିଫର୍ଣ୍ଣିଆର ଅନୁଭୂତି, ଉଭୟଙ୍କ ବ୍ୟର୍ଥ ପ୍ରେମଜୀବନ ସୁନ୍ଦର ଭାବେ ଚିତ୍ରିତ । ଉକ୍ତ ଗ୍ରନ୍ଥରେ ପ୍ରଦତ୍ତ କାଳୀଚରଣ ପଟ୍ଟନାୟକଙ୍କ ଅଭିମତ ଚିଠିଗୁଡ଼ିକର ମହତ୍ତ୍ୱ ବୃଦ୍ଧି କରିଛି ।

ଡଃ ଅସିତ କବିଙ୍କଦ୍ୱାରା ସଂପାଦିତ 'ପତ୍ର ଭାରତୀ' (୧୯୬୪) ଅନ୍ୟତମ ବିଶିଷ୍ଟ ପତ୍ର ସଂକଳନ । ଓଡ଼ିଶାର ଜାତୀୟ ଓ ସାହିତ୍ୟ ଜୀବନକୁ ସମୃଦ୍ଧ ଓ ଉନ୍ନତ କରିଥିବା ବ୍ରଜମୋହନ ପଣ୍ଡା, ବିଶ୍ୱନାଥ କର ଏବଂ ଦୟାନିଧି ମିଶ୍ରଙ୍କ କେତେକ ପତ୍ରର ସମାହାର ଏଥିରେ ଦେଖିବାକୁ ମିଳେ । ସନ୍ନିବେଶିତ ଅଧିକାଂଶ ପତ୍ର ହେଉଛି ବ୍ରଜମୋହନ ପଣ୍ଡାଙ୍କର । ଓଡ଼ିଶାର ଜାତୀୟ ଜୀବନର ବିକାଶରେ ବ୍ରଜମୋହନ ପଣ୍ଡାଙ୍କ ଅବଦାନ ସର୍ବାଦୌ ସ୍ମରଣୀୟ । ଏଥିରେ ସମକାଳୀନ ଓଡ଼ିଶାର ସାମାଜିକ, ଜାତୀୟ ଜୀବନ ସମ୍ବନ୍ଧରେ ବହୁ ବିଷୟ ସୂଚିତ । ଏତଦ୍‌ବ୍ୟତୀତ ସାହିତ୍ୟିକମାନଙ୍କ ମଧ୍ୟରେ ଥିବା ସଂପର୍କ ଓ ସାମୟିକ ତର୍କ-ବିତର୍କ ସଂପର୍କରେ ମଧ୍ୟ ଏଥିରୁ ସୂଚନା ମିଳେ ।

ଏତଦ୍‌ବ୍ୟତୀତ ଫକୀରମୋହନ ସେନାପତି, ନନ୍ଦକିଶୋର ବଳ, ବିଶ୍ୱନାଥ କର, ମଧୁସୂଦନ ଦାସ ଆଦିଙ୍କ ବିଭିନ୍ନ ସମୟରେ ବିଭିନ୍ନ ବ୍ୟକ୍ତିମାନଙ୍କ ନିକଟକୁ ପଠାଇଥିବା କେତେକ ପତ୍ରରୁ ସେମାନଙ୍କର ଅନୁଭୂତି, ସମସାମୟିକ ବ୍ୟକ୍ତି ଚରିତ୍ର, ସାହିତ୍ୟିକ ଜୀବନ, ଜାତୀୟବାଦୀ ଚିନ୍ତାଧାରା, ଗୁଣୀବନ୍ଦନା ଆଦି ସଂପର୍କରେ ସୂଚନା ମିଳିଥାଏ । ଡଃ ମାୟାଧର ମାନସିଂହଙ୍କ କେତେକ ପତ୍ରରୁ ତାଙ୍କ ରସିକପ୍ରାଣତା ଓ ପ୍ରେମଭାବନା ସଂପର୍କରେ ଭୂରିଭୂରି ନିଦର୍ଶନ ମିଳେ । ସୂର୍ଯ୍ୟକାନ୍ତ ଦାସଙ୍କ ଉପକ୍ରମଣିକାରେ ପ୍ରକାଶିତ 'ମାନସିଂହଙ୍କ ପ୍ରଣୟ ଚିଟାଉ' ଗୁଡ଼ିକରୁ ମାନସିଂହଙ୍କ ଭାବାବେଗ ଅନୁଭବ କରି ହୋଇଥାଏ ।

ଡଃ କୁଞ୍ଜବିହାରୀ ଦାଶଙ୍କ 'ମୋ କାହାଣୀ'ରେ ସନ୍ନିବେଶିତ କେତେକ ପତ୍ର ତଥା 'ଚର୍ଚ୍ଚା'ରେ ସଂଯୋଜିତ ସାହିତ୍ୟିକ ଚନ୍ଦ୍ରଶେଖର ରଥଙ୍କ ନିକଟକୁ ପତ୍ରରୁ ମଧ୍ୟ ସେହି ବିଶିଷ୍ଟ ବ୍ୟକ୍ତିମାନଙ୍କ ପ୍ରତିଭା, ଆତ୍ମାଭିବ୍ୟକ୍ତି ସମ୍ବନ୍ଧରେ ଧାରଣା ଆସିଥାଏ । ଚନ୍ଦ୍ରଶେଖର ରଥଙ୍କର ବିଭିନ୍ନ ବନ୍ଧୁମାନଙ୍କ ନିକଟକୁ ପ୍ରେରିତ ପତ୍ରଗୁଡ଼ିକ ଗୋଟିଏ ଗୋଟିଏ ଲଳିତ ନିବନ୍ଧ ପରି ମନେ ହୋଇଥାଏ । ଏହି ପତ୍ରଗୁଡ଼ିକ ମଧ୍ୟ ପାଠକର ବୌଦ୍ଧିକ ବିକାଶରେ ସହାୟତା କରିଥାଏ । ଦୈନିକ 'ସମାଜ'ରେ ରବିବାର ସଂଖ୍ୟାରେ ପ୍ରକାଶିତ ଜ୍ଞାନରଞ୍ଜନ ଦାଶଙ୍କ 'ଆମେରିକା ଚିଠି' ଅତୀବ ଉପାଦେୟ ଓ ମୂଲ୍ୟବାନ୍ । ଏଥିରେ ଶ୍ରୀ ଦାସ ବିଜ୍ଞାନ, କଳା, ସାହିତ୍ୟ, ବାଣିଜ୍ୟ, ଶିଳ୍ପ, ରାଜନୀତି, ସମାଜନୀତି ଆଦି ସଂପର୍କରେ ବହୁ ମୂଲ୍ୟବାନ୍

ଆଲୋଚନା ପ୍ରଦତ୍ତ କରିଛନ୍ତି । ଏହା ବ୍ୟତୀତ ଆନ୍ତର୍ଜାତୀୟ ସ୍ତରର ବହୁ ଜ୍ଞାତବ୍ୟ ବିଷୟ ଏଥିରୁ ଉପଲବ୍ଧ ହୋଇଥାଏ । ଗୋଦାବରୀଶ ମିଶ୍ର ଗ୍ରନ୍ଥାବଳୀ (୪ର୍ଥ ଭାଗ)ରେ ତାଙ୍କର ବହୁ ପତ୍ର ସଂଯୋଜିତ । ଏଥିରେ ରାଜନୀତି, ଅର୍ଥନୀତି, ଆୟୁର୍ବେଦ, ସାହିତ୍ୟ ଓ ସମାଜ ସଂପର୍କୀୟ ବହୁ ମୂଲ୍ୟବାନ୍ ତଥ୍ୟ ଉପଲବ୍ଧ ।

ଚିଠିପତ୍ର କେବଳ ଦ୍ୱୈତ ହୃଦୟର ପରିପ୍ରକାଶ ନୁହେଁ, ସଚେତନ ପତ୍ର ପ୍ରେରକଙ୍କ ପତ୍ରରୁ ସମକାଳୀନ ସାମାଜିକ ଜୀବନ, ସେମାନଙ୍କର ଆଦର୍ଶବତ୍ତା, ଭାବପ୍ରବଣ ମନ, କଳାଚେତନା, ବ୍ୟକ୍ତି ଜୀବନର ପରିବର୍ତ୍ତନ ସର୍ବୋପରି ଗୋଟିଏ ଜାତିର ମାନସିକତା, ଆତ୍ମଚେତନା ସମ୍ବନ୍ଧରେ ଜାଣି ହୋଇଥାଏ । ସଂପ୍ରତି ବିଶ୍ୱରେ ପତ୍ର ସାହିତ୍ୟ ଏକ ବିଶିଷ୍ଟ ସାହିତ୍ୟିକ ବିଭାବ ଭାବେ ପରିଗୃହୀତ ହୋଇଛି । ଆମ ସମାଜରେ ବହୁ ଗୁଣୀ ବ୍ୟକ୍ତିଙ୍କର ଅନେକ ପତ୍ର ସଂପାଦନା ଓ ପ୍ରକାଶ ଅଭାବରୁ ନଷ୍ଟବିନଷ୍ଟ ହୋଇଯାଉଛି । ବହୁ ପତ୍ର ସଂକଳିତ ହୋଇ ନ ପାରି କୀଟଦଷ୍ଟ ହେଉଛି । ଏହା ଯେ ଜାତୀୟ ଜୀବନର ଏକ ମସ୍ତବଡ଼ କ୍ଷତି, ଅସ୍ୱୀକାର କରାଯାଇ ନ ପାରେ । ଡଃ ଲାବଣ୍ୟ ନାୟକ ତାଙ୍କ ସନ୍ଦର୍ଭରେ (ଓଡ଼ିଆଚରିତ ସାହିତ୍ୟ) ଡଃ କୃଷ୍ଣଚରଣ ବେହେରାଙ୍କ ନିକଟକୁ ପଠାଇଥିବା କେତେଜଣ ବିଶିଷ୍ଟ ବ୍ୟକ୍ତିଙ୍କ ପତ୍ରଗୁଡ଼ିକୁ ସ୍ଥାନଦେଇ ଏକ ବିଶିଷ୍ଟ କାର୍ଯ୍ୟ ସଂପାଦନ କରିଛନ୍ତି । ସେହିପରି ଏ ଯାବତ୍ ସଂକଳିତ ହୋଇପାରି ନ ଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କର ପତ୍ରଗୁଡ଼ିକର ସଂପାଦନ ନିମିତ୍ତ ସରକାର ଏବଂ ବ୍ୟକ୍ତିବିଶେଷ ଧ୍ୟାନ ପ୍ରଦାନ କଲେ ଆମ ଜାତୀୟ ଜୀବନର ଯେ ଏକ ବିରାଟ ଅଭାବ ପରିପୂରଣ ହୋଇପାରିବ, କହିବା ଅନାବଶ୍ୟକ ମାତ୍ର ।

# ଡାଏରୀ ସାହିତ୍ୟ

ଡାଏରୀ ବା 'ଦିନଲିପି'ରେ ଲେଖକଙ୍କ ଜୀବନର ଭଗ୍ନାଂଶ ପ୍ରତିଫଳିତ ହୋଇଥାଏ । ଏହା ମଧ୍ୟରେ ଲେଖକର ଅନ୍ତରାତ୍ମାର ବିଶେଷ ମୁହୂର୍ତ୍ତଟି ଦ୍ୟୋତିତ ହୋଇଉଠେ । ସାଧାରଣତଃ ଡାଏରୀ ବା ଦିନଲିପି କହିଲେ ଘଟଣାପୂର୍ଣ୍ଣ ଜୀବନ ମଧ୍ୟରୁ ଗୋଟିଏ ଗୋଟିଏ ଦିନର ବିଶେଷ ଘଟଣା ଲିପିବଦ୍ଧ ହୋଇଥାଏ । କେବଳ ଘଟଣାର ଭାଷାଗତ ପରିପ୍ରକାଶ 'ଦିନଲିପି' ବା ଡାଏରୀ ହୋଇ ନ ପାରେ । ଏହା ମଧ୍ୟରେ ଲେଖକର ପ୍ରତିକ୍ରିୟା ଶୈଳ୍ପିକ ରୂପରେଖ ନେଇ ପ୍ରକାଶିତ ହେବା ଆବଶ୍ୟକ ।

ଓଡ଼ିଆ ସାହିତ୍ୟରେ 'ଡାଏରୀ ସାହିତ୍ୟ' ବିଶେଷ ସମୃଦ୍ଧଶାଳୀ ନୁହେଁ । ଏ କ୍ଷେତ୍ରରେ ବିଶ୍ୱରେ ସୁଇସ୍ ଲେଖକ ଆମିଏଲ୍ (Henri Fredric Amiel, 1821-1881) ଏକ ଆଦର୍ଶ ସ୍ଥାନୀୟ ବ୍ୟକ୍ତିତ୍ୱ । ସେ ତାଙ୍କ ଜୀବନରେ ଏହି ଡାଏରୀ ବ୍ୟତୀତ ଅନ୍ୟ କିଛି ଲେଖି ନ ଥିଲେ ମଧ୍ୟ ଏଥିପାଇଁ ସେ ଅମର ହୋଇ ରହିଛନ୍ତି । ବିଶ୍ୱ ସାହିତ୍ୟରେ ଆନ୍ଦ୍ରେଜିଦ୍‌ଙ୍କ Journals, ଜର୍ମାନ୍ ଲେଖିକା ଶ୍ରୀମତୀ ଆନେନ୍‌ଙ୍କ ଡାଏରୀ ଏହିପରି କେତେକ ପ୍ରସିଦ୍ଧ ଡାଏରୀ ସାହିତ୍ୟର ଅନ୍ତର୍ଭୁକ୍ତ ।

ଓଡ଼ିଆ ସାହିତ୍ୟରେ ଏହି ଦୃଷ୍ଟିରୁ ଯେଉଁ କେତୋଟି ଡାଏରୀ ଦୃଷ୍ଟି ଆକର୍ଷଣ କରେ ତନ୍ମଧ୍ୟରୁ ଚିତ୍ତରଞ୍ଜନ ଦାସଙ୍କ 'ଜୀବନ ବିଦ୍ୟାଳୟ' (୧ମ ଭାଗ- ୧୯୬୦, ୨ୟ ଭାଗ- ୧୯୬୫), 'ରୋହିତର ଡାଏରୀ' (ପ୍ରଥମ ପର୍ବ-୧୯୮୪, ଦ୍ୱିତୀୟାର୍ଦ୍ଧ-୧୯୮୮), ଲକ୍ଷ୍ମଣ ମିଶ୍ରଙ୍କ 'ସତ୍ୟର ସନ୍ଧାନ' (୧୯୬୩), କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ଦିନଲିପି' (୧୯୭୪) ଆଦି ପ୍ରଧାନ ।

ଚିତ୍ତରଞ୍ଜନ ଦାସ ସୁଇସ୍ ଲେଖକ ଆମିଏଲ୍‌ଙ୍କ ଡାଏରୀ ଏବଂ ଡେନମାର୍କରେ ଅବସ୍ଥାନ କାଳରେ କୋପେନ୍ ହେଗେନ୍ ସହରର ମାଓଲୋସ୍ ଗଣବିଦ୍ୟାଳୟର ପ୍ରଧାନ ଶିକ୍ଷକଙ୍କ ପ୍ରତ୍ୟେକ ଦିନ ପ୍ରାର୍ଥନା ପରେ ଛାତ୍ରଛାତ୍ରୀଙ୍କୁ ନିଜ ଘରୁ ଲେଖି ଆଣିଥିବା ଡାଏରୀ ଶୁଣି ତାଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ । ଏହାକୁ ସେ ଚମ୍ପତିମୁଣ୍ଡା ବିଦ୍ୟାଳୟରେ ଶିକ୍ଷକତା କରିବା ସମୟରେ ପ୍ରୟୋଗକରି ସଫଳକାମ ହୋଇଥିଲେ । ତାଙ୍କ ଡାଏରୀ ନିବିଡ଼

ଅନୁଭୂତିର କଳାତ୍ମକ ପରିପ୍ରକାଶ । ତାଙ୍କ ଭାଷାରେ କହିଲେ ''ଏହି ଡାଏରୀ ଆତ୍ମଜୀବନୀ ନୁହେଁ; ଏହା କେବଳ ଦିନ ଦିନର ବିଚାର ଓ ଭାବନା ନୁହେଁ । ଏଗୁଡ଼ିକ ହେଉଛି ଅନୁଭୂତି, ଅନ୍ତର୍ଯାତ୍ରାର ଅନୁଭୂତି । ତେଣୁ ଏହାର ଭାଷା, ଅନୁଭୂତିର ଭାଷା ।'' (ଦାସ ଚିତ୍ତରଞ୍ଜନ - ରୋହିତର ଡାଏରୀ) ୧୯୫୫ରୁ ୧୯୬୦ ପର୍ଯ୍ୟନ୍ତ ଚମ୍ପତିମୁଣ୍ଡା ବିଦ୍ୟାଳୟରେ ଥିବା ସମୟରେ ଡାଏରୀ (ଜୀବନ ବିଦ୍ୟାଳୟ) ମଧ୍ୟରେ ତାଙ୍କ ଜୀବନର ବିବିଧ ଅନୁଭୂତି ପ୍ରକାଶିତ । ଏହା ମଧ୍ୟରେ ଦେଶର ସାଂସ୍କୃତିକ ପରଂପରା, ସ୍ୱାଧୀନତା ଆନ୍ଦୋଳନ, ଭୂଦାନ ଆନ୍ଦୋଳନ, ଗଣତନ୍ତ୍ର ଓ ସମାଜବାଦ ଆଦି ବହୁ ବିଷୟରେ ଆଲୋକପାତ କରାଯାଇଛି । ଇତିହାସ, ରାଜନୀତି, ସଂସ୍କୃତି, ସାହିତ୍ୟ, ଅର୍ଥନୀତି ଆଦିକୁ ଅବଲମ୍ବନକରି ଡାଏରୀଗୁଡ଼ିକ ଲିଖିତ ହୋଇଥିବାରୁ ଏବଂ ଏଥିରେ ଲେଖକଙ୍କର ଅନ୍ତର୍ଦୃଷ୍ଟି ପ୍ରକାଶଲାଭ କରିଥିବାରୁ ଏହା ଏକ କାଳଜୟୀ ସୃଷ୍ଟିରେ ପରିଣତ ହୋଇପାରିଛି । ସେହିପରି 'ରୋହିତର ଡାଏରୀ' ଦୁଇଟି ଭାଗ ୭।୧୧।୧୯୪୨ ଠାରୁ ୧୯।୯।୪୯ ପର୍ଯ୍ୟନ୍ତ ସମୟସୀମା ମଧ୍ୟରେ ଲିଖିତ । ଏହି ଡାଏରୀଗୁଡ଼ିକରେ ତାଙ୍କ ଜୀବନର ବିଶେଷ କେତେକ ଅନୁଭୂତି ପ୍ରକାଶଲାଭ କରିଛି । ବର୍ତ୍ତମାନରେ ଥାଇ ସେ ଅତୀତ ସହିତ ବର୍ତ୍ତମାନକୁ ସଂଯୋଗ କରିବାକୁ ଚାହିଛନ୍ତି । ଏହାରି ମଧ୍ୟରେ ପ୍ରକାଶ ଲାଭ କରିଛି ଇତିହାସର କେତେକ ବିଶିଷ୍ଟ ଘଟଣା ଯଥା - ଜାଲିଆନାୱାଲାବାଗର ହତ୍ୟାକାଣ୍ଡ, ସ୍ୱାଧୀନତା ଆନ୍ଦୋଳନ, ସାଂପ୍ରଦାୟିକ ସମସ୍ୟା, ସାଂପ୍ରତିକ ସାମାଜିକ ବ୍ୟବସ୍ଥା, ଦେଶର ଐତିହ୍ୟ ଓ ସଂସ୍କୃତି, ରାଜନୀତି, ଧର୍ମନୀତି, ଅର୍ଥନୀତି, ବିଶ୍ୱଯୁଦ୍ଧର ଘନଘଟା, ସ୍ୱାଧୀନତା ପରବର୍ତ୍ତୀ ଭାରତର ସାଂପ୍ରଦାୟିକ ଗଣ୍ଡଗୋଳ, ଗାନ୍ଧୀ ଅର୍ଥନୀତିର ଶୋଚନୀୟ ଅବସ୍ଥା, ଶାନ୍ତିନିକେତନ ତଥା ଭାରତ ବାହାର କେତେକ ଦେଶର ଅନୁଭୂତି । ସେ ଯାହା ଦେଖିଛନ୍ତି ବା ଅନୁଭବ କରିଛନ୍ତି, ତାହାକୁ କେବଳ ଭାଷାରେ ପରିପ୍ରକାଶ କରି ନାହାନ୍ତି, ପରନ୍ତୁ ଅନ୍ତର୍ଦୃଷ୍ଟି ବଳରେ ତାର ସତ୍ୟତା ଓ ବାସ୍ତବତାକୁ ପାଠକ ଆଗରେ ତୋଳି ଧରିଛନ୍ତି । ଏହି ପୁସ୍ତକର କଳାଗତ ମୂଲ୍ୟ ସଂପର୍କରେ କୌଣସି ସନ୍ଦେହ ପ୍ରକାଶ କରାଯାଇ ନ ପାରେ । ଅନୁଭୂତିର ନିବିଡ଼ତା, ସାଂକେତିକ ଭାଷା, ଚମତ୍କାର ବର୍ଣ୍ଣନାରୀତି ଏହି ପୁସ୍ତକର ବୈଶିଷ୍ଟ୍ୟ ।

ଲକ୍ଷ୍ମଣ ମିଶ୍ରଙ୍କ 'ସତ୍ୟର ସନ୍ଧାନ'ରେ ପ୍ରଦତ୍ତ ବିଷୟବସ୍ତୁର ସମୟ ସୀମା ୧୯୬୦-୬୧ ମସିହା । ଉକ୍ତ ଗ୍ରନ୍ଥରେ ଲେଖକଙ୍କର ମାନସିକ ଚିନ୍ତାଧାରା ବହୁଭାବରେ ପ୍ରକାଶିତ । ସେ ଜୀବନକୁ ଦେଖିଛନ୍ତି ଜଣେ ଦାର୍ଶନିକର ଦୃଷ୍ଟିନେଇ । ତେଣୁ ଜଗତ ଓ ଜୀବନର ସୁଖ-ଦୁଃଖରୁ ଊର୍ଦ୍ଧ୍ୱରେ ରହିବାକୁ ଚେଷ୍ଟା କରିଛନ୍ତି । ତାଙ୍କ ଆତ୍ମନିରୀକ୍ଷଣ ଏବଂ ଉପଲବ୍ଧିର ତୀବ୍ରତା ଗ୍ରନ୍ଥଟିର ପ୍ରକୃତ ବୈଶିଷ୍ଟ୍ୟ । ଆତ୍ମଜିଜ୍ଞାସା, ଗଭୀର ବିଭୁବୋଧ, ବୈଷ୍ଣବାନୁଭୂତିର ଦାର୍ଶନିକ ଜିଜ୍ଞାସା ମଧ୍ୟରେ ସେ ନିଜର ଅନ୍ତଃରୂପଟିକୁ ପ୍ରକାଶ କରିବାକୁ ଚେଷ୍ଟା କରିଛନ୍ତି । ବହୁ ବୈଷୟିକ ବିଷୟକୁ ସେ ଆଧ୍ୟାତ୍ମିକ ଦୃଷ୍ଟିରୁ ବିଚାର କରି ତାର ସମାଧାନ କରିବାକୁ

ପ୍ରୟାସ କରିଛନ୍ତି । ତାଙ୍କର ବିଶୁଦ୍ଧ ଚେତନା ଏବଂ ଅନ୍ତର୍ଦୃଷ୍ଟି ଏହି ଗ୍ରନ୍ଥଟିର ମହତ୍ତ୍ୱ ବୃଦ୍ଧିରେ ସହାୟକ ହୋଇପାରିଛି ।

କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ଦିନଲିପି'ର ସମୟସୀମା ୧୯୧୮ ମସିହାରୁ ୧୯୨୦ ମସିହା ପର୍ଯ୍ୟନ୍ତ । ତରୁଣ ବୟସର ଅନୁଭୂତି, ଚିନ୍ତା-ଚେତନା ଏବଂ ବ୍ୟକ୍ତିକ ଅନୁଭୂତିରେ ଏହା ରସାଣିତ । କେତେକ କ୍ଷେତ୍ରରେ ତାଙ୍କର ଦାର୍ଶନିକ ଚିନ୍ତନ, ସୌନ୍ଦର୍ଯ୍ୟାନୁଭୂତି, ଜୀବନପ୍ରତି ଦୃଷ୍ଟିଭଙ୍ଗୀ ତାଙ୍କ ମସ୍ତିଷ୍କର ପରିପକ୍ୱତାକୁ ପ୍ରମାଣିତ କରିଥାଏ । ତଥାପି ତରୁଣ ପ୍ରାଣର ଚପଳତା ଏଥିରେ ଦୁର୍ଲଭ ନୁହେଁ । ସମସାମୟିକ ସାମାଜିକ ରୀତିନୀତି ଓ ସାହିତ୍ୟିକ ଘଟଣାବଳୀର ସୂଚନା କେତେକାଂଶରେ ପ୍ରଦତ୍ତ ହୋଇଥିବାର ଲକ୍ଷ୍ୟ କରାଯାଏ । ଡଃ କୁଞ୍ଜବିହାରୀ ଦାଶଙ୍କ 'ଦିନଲିପି'ରେ ବହୁ ଘଟଣା ସଂଯୋଜନା ହୋଇଛି । ଏହାର ପ୍ରକାଶଭଙ୍ଗୀରେ ଜଣେ ଦିବ୍ୟଦୃଷ୍ଟିସଂପନ୍ନ ବ୍ୟକ୍ତିତ୍ୱର ଆଭା ପରିଲକ୍ଷିତ ।

ଓଡ଼ିଆ ସାହିତ୍ୟରେ ବହୁ ଲେଖକ ସେମାନଙ୍କ 'ଦିନଲିପି' ରଚନା କରିଥିଲେହେଁ, ତାହା ଏ ଯାବତ୍ ପ୍ରକାଶଲାଭ କରିପାରି ନାହିଁ । ସେଗୁଡ଼ିକ ପ୍ରକାଶ ଲାଭ କଲେ ସେଥିରୁ ଲେଖକଙ୍କର ଦୃଷ୍ଟିଭଙ୍ଗୀ ସହିତ ସମସାମୟିକ ସାମାଜିକ ବ୍ୟବସ୍ଥା ସଂପର୍କରେ ବହୁ ବିଷୟ ଅବଗତ ହେବାର ସୁଯୋଗ ମିଳିପାରନ୍ତା ଏବଂ ଓଡ଼ିଆ ସାହିତ୍ୟର ଏହି ଦୁର୍ବଳ ବିଭାଗଟି ବହୁପରିମାଣରେ ସମୃଦ୍ଧ ହୋଇପାରନ୍ତା ।

# ରୀତିରାତ୍ମା କାବ୍ୟସ୍ୟ

'ରୀଙ୍' ଧାତୁରେ 'କ୍ତିନ୍' ପ୍ରତ୍ୟୟ ଯୋଗ ହୋଇ 'ରୀତି' ଶବ୍ଦ ଗଠିତ, ଯା'ର ଅର୍ଥ ଶୈଳୀ, ଢଙ୍ଗ, ପ୍ରଣାଳୀ, ପଦ୍ଧତି, ଗତି, ମାର୍ଗ, ପନ୍ଥା ଇତ୍ୟାଦି । ନବମ ଶତକରେ ବାମନ ସଂପ୍ରଦାୟଦ୍ୱାରା ପ୍ରଥମେ ସଂସ୍କୃତରେ ଏହି ଶବ୍ଦଟି ଏକ ବିଶେଷ ଅର୍ଥରେ ବ୍ୟବହୃତ ହୋଇଥିଲା । ସଂସ୍କୃତ ବାଙ୍ମୟରେ ପ୍ରାଥମିକ ପର୍ଯ୍ୟାୟରେ ରୀତି ଏକ ବିଶେଷ ସାହିତ୍ୟିକ ଶୈଳୀ ଭାବରେ ଗୃହୀତ ହୋଇଥିଲେହେଁ ପରବର୍ତ୍ତୀ କାଳରେ ସେସବୁର ଖଣ୍ଡନମଣ୍ଡନ ହୋଇ ରୀତିକୁ କାବ୍ୟର ବାହ୍ୟାଙ୍ଗ ଭାବରେ ଗ୍ରହଣ କରାଯାଇଛି । ମାତ୍ର ବାମନଙ୍କର ରୀତି ସଂପର୍କୀୟ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ଓ ସୂକ୍ଷ୍ମ ବିଶ୍ଳେଷଣ ଏହାକୁ ସଂସ୍କୃତ ଅଳଂକାର ଶାସ୍ତ୍ରରେ ଏକ ବିଶେଷ ବାଦ ରୂପେ ପ୍ରତିଷ୍ଠିତ କରିପାରିଛି ।

'ରୀତି'ର ମୂଳ ଅର୍ଥ ସଂଘଟନା । ଏହି ସଂଘଟନା ଶବ୍ଦ ଓ ବାକ୍ୟ, କାବ୍ୟର ବସ୍ତୁପକ୍ଷର ସାଧନରୂପ ଅଭିବ୍ୟଞ୍ଜନା ମଧ୍ୟରେ ନିହିତ । ପ୍ରତ୍ୟେକ ପରିସ୍ଥିତିରେ ସଂଘଟନାର ସମ୍ବନ୍ଧ କାବ୍ୟର ବାହ୍ୟ ଉପାଦାନ ସହ ସଂପର୍କାନ୍ୱିତ X X X ରୀତି ସର୍ବଦା ବିଷୟଗତ । କେତେକ ଆଚାର୍ଯ୍ୟ ଏହାକୁ କବି ସ୍ୱଭାବଗତ ରୂପେ ବ୍ୟାଖ୍ୟା କରିଛନ୍ତି । କାବ୍ୟକର୍ତ୍ତା ସବୁବେଳେ କାବ୍ୟରେ ଯେଉଁ ଭାବ ଅଥବା ରସାନୁକୂଳ ଶବ୍ଦ ତଥା ଭାଷାର ପ୍ରୟୋଗ କରେ, ତାହା ଭାବ ଏବଂ ରସନିଷ୍ପତ୍ତିର ଅନୁକୂଳ ହୋଇଥିବାରୁ ଏହାକୁ ବିଷୟଗତ କୁହାଯାଇଥାଏ । ପୁନରାୟ କବି ନିଜର ନିର୍ଦ୍ଧାରିତ ବିଷୟାନୁଯାୟୀ ଶବ୍ଦ ଚୟନ ଏବଂ ଭାଷା ସଂଘଟନ କରୁଥିବାରୁ ଏହା ବିଷୟଗତ ହୋଇଥାଏ ।[୧]

ରୀତି ସର୍ବଦା ଗୁଣ ସମନ୍ୱିତ । ରୀତିର ସ୍ୱରୂପ ବିଶ୍ଳେଷଣ କରିବାକୁ ଯାଇ ଆଚାର୍ଯ୍ୟ କୁନ୍ତକ କହିଛନ୍ତି - ''ବିଶିଷ୍ଟ ପଦରଚନା ରୀତିଃ, ବିଶେଷୋ ଗୁଣାତ୍ମା ।'' ସଂକ୍ଷେପରେ କହିଲେ ବିଶିଷ୍ଟ ପଦରଚନା ରୀତି ଏବଂ ବିଶେଷର ଅର୍ଥ ଗୁଣଯୁକ୍ତ । ଗୁଣ ହେଉଛି କାବ୍ୟ ଶୋଭା ସଂପାଦନାର ନିତ୍ୟ ଧର୍ମ -

''କାବ୍ୟ ଶୋଭାୟାଃ କର୍ତାରୋ ଧର୍ମାଃ ଗୁଣାଃ''

(କାବ୍ୟାଳଂକାର ସୂତ୍ରବୃତ୍ତି - ୧, ୨, ୭୮)

କୁନ୍ତକ ରୀତିକୁ କବି ପ୍ରସ୍ଥାନ-ହେତୁ ଅର୍ଥାତ୍ କବିକର୍ମବିଧି ବୋଲି କହିଛନ୍ତି । ବାମନଙ୍କର ବିଶ୍ୱାସ ସମସ୍ତ ପଦର କୁଶଳ ପ୍ରୟୋଗ ଏବଂ ଶବ୍ଦ ତଥା ବର୍ଣ୍ଣର ଚାରୁଚୟନଦ୍ୱାରା ଅଥବା ଭାବର କ୍ରମବନ୍ଧନଦ୍ୱାରା କାବ୍ୟରେ ସୌନ୍ଦର୍ଯ୍ୟ ସୃଷ୍ଟି ହୋଇଥାଏ । ସେ ଅର୍ଥଗୁଣ କାନ୍ତିରେ ରସର ଦୀପ୍ତି ଅନିବାର୍ଯ୍ୟ ବୋଲି ସ୍ୱୀକାର କରିଥିଲେ । ଅନୁରୂପ ଭାବେ ଅର୍ଥଗୁଣ ସୌକୁମାର୍ଯ୍ୟ ଓ ଉଦାରତା ମଧ୍ୟ ଭାବସୌନ୍ଦର୍ଯ୍ୟ ସହିତ ଅଧିକ ସମ୍ବନ୍ଧ ରଖିଥାଏ । ଏତଦ୍‌ବ୍ୟତୀତ ସେ ଅର୍ଥଗୁଣକୁ ଶବ୍ଦଗୁଣ ପରି ମହତ୍ତ୍ୱ ପ୍ରଦାନ କରୁଥିଲେ ।[୨] ବାମନ ତାଙ୍କ ଆଲୋଚନାରେ କାବ୍ୟ ଶୋଭାକାରକ ଧର୍ମଯୁକ୍ତ ପଦରଚନାକୁ କାବ୍ୟର ଆତ୍ମା ରୂପେ ସ୍ୱୀକାର କରିଛନ୍ତି । ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ ଭେଦରେ ଏହି ରୀତି ତିନିପ୍ରକାର । ଏହି ତିନି ରୀତି ମଧ୍ୟରେ ରେଖାରେ ଚିତ୍ରପରି, କାବ୍ୟ ସମାବିଷ୍ଟ ହୋଇଯାଇଥାଏ -

''ଏତାସୁ ତିସୃଷୁ ରୀତିଷୁ ରେଖାସ୍ୱିବ ଚିତ୍ରଂ କାବ୍ୟଂ ପ୍ରତିଷ୍ଠିତମିତି''

(କାବ୍ୟାଳଂକାର ସୂତ୍ରବୃତ୍ତି - ୧, ୨, ୧୩)

ଅର୍ଥାତ୍ ଯେପରି ଚିତ୍ର କେବଳ ରେଖାମୟ ଏବଂ ରେଖା ବ୍ୟତୀତ ଅନ୍ୟ କୌଣସି ତାତ୍ତ୍ୱିକ ବସ୍ତୁ ତନ୍ମଧ୍ୟରେ ନ ଥାଏ, ସର୍ବୋପରି ରେଖାର ବିନାଶରେ ଚିତ୍ରର ଅସ୍ତିତ୍ୱ ଲୋପ ପାଏ, ଅନୁରୂପ କାବ୍ୟରେ ରୀତି ବ୍ୟତୀତ ଅନ୍ୟ କିଛି ତତ୍ତ୍ୱ ନ ଥାଏ । ରୀତି ବିନା କାବ୍ୟତ୍ୱର ଅଭାବ ରହିଯାଇଥାଏ । ତେଣୁ ରୀତି କାବ୍ୟର ସର୍ବପ୍ରଧାନ ବସ୍ତୁ ହୋଇଥିବାରୁ ଏହା କାବ୍ୟର ଆତ୍ମା ।[୩]

ରୀତିତତ୍ତ୍ୱ କାବ୍ୟର ଏକ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ । ଯେପରି ଈଶ୍ୱରଙ୍କ ନିର୍ମାଣ ଶକ୍ତିଦ୍ୱାରା ନିର୍ମିତ ଲାବଣ୍ୟବତୀ ନାରୀ ଅନିର୍ବଚନୀୟ ସୌନ୍ଦର୍ଯ୍ୟ ପ୍ରାପ୍ତ ହୋଇ ସହୃଦୟ ମାନବର ବିଳାସ ଏବଂ ଆକର୍ଷଣର ବସ୍ତୁ ହୋଇଥାଏ, ଅନୁରୂପ ଭାବେ ଲୋକୋତ୍ତର କାବ୍ୟ-ନିର୍ମାଣ-କୁଶଳ କବିଦ୍ୱାରା ନିର୍ମିତ କବିତା ସହୃଦୟ ହୃଦୟରେ ରସନିଷ୍ପତ୍ତି କରି ତାକୁ ଆନନ୍ଦ ସାଗରରେ ନିମଗ୍ନ କରିଥାଏ । ଏହି ଆନନ୍ଦ କବିଙ୍କ ରୀତି ବା ଶୈଳୀ ଉପରେ ନିର୍ଭର କରେ । କାରଣ କବିତା କାମିନୀ ଏହି ଭବ୍ୟ-ଭବନ ରୀତି ଉପରେ ହିଁ ଦଣ୍ଡାୟମାନ ।[୪] ବାମନ ତାଙ୍କ ଆଲୋଚନାରେ ରୀତିକୁ କାବ୍ୟର ଆତ୍ମା କହି ନିଶ୍ଚିନ୍ତ ହୋଇଯାଇ ନାହାନ୍ତି । ଅଧିକନ୍ତୁ କାବ୍ୟର ସମସ୍ତ ସୌନ୍ଦର୍ଯ୍ୟ ଏହି ରୀତି ଉପରେ ଆଶ୍ରିତବୋଲି ଦୃଢ଼ ମତ ପୋଷଣ କରିଛନ୍ତି । ଏହାଛଡ଼ା ବୈଦର୍ଭୀ ରୀତି ସମସ୍ତ ଗୁଣଯୁକ୍ତ ହୋଇଥିବାରୁ ଏହାକୁ ସେ ଶ୍ରେଷ୍ଠରୀତି ରୂପେ ସ୍ୱୀକାର କରି କହିଛନ୍ତି -

ତାସାଂ ପୂର୍ବଗ୍ରାହ୍ୟ ଗୁଣସାକଲ୍ୟାତ୍

(କାବ୍ୟାଳଙ୍କାର ସୂତ୍ରବୃତ୍ତି - ୧, ୨, ୧୪)

ବୈଦର୍ଭୀ ରୀତିରେ ଅର୍ଥଗୁଣର ବୈଭବ ବା ବସ୍ତୁସୌନ୍ଦର୍ଯ୍ୟ ଆସ୍ୱାଦ୍ୟ ହୋଇଥାଏ । କାବ୍ୟାଳଂକାର ସୂତ୍ରବୃତ୍ତିରେ ରୀତିରେ ବିଭିନ୍ନ ଗୁଣଗୁଡ଼ିକର ସମୀକରଣ ସମ୍ବନ୍ଧରେ

ଆଲୋକପାତ କରାଯାଇଛି । ଯେପରି ଅର୍ଥଗୁଣ ସଂପତ୍ତି ଓଜଃ ଅନ୍ତର୍ଗତ, ଉକ୍ତି ବୈଚିତ୍ର୍ୟ ମାଧୁର୍ଯ୍ୟ ଅନ୍ତର୍ଗତ, ନବୀନ ଅର୍ଥ କଳ୍ପନା ଅର୍ଥଦୃଷ୍ଟିରୂପ ସମାଧିର ଅନ୍ତର୍ଗତ, ରସପ୍ରକର୍ଷ କାନ୍ତି ଅନ୍ତର୍ଗତ, ଅର୍ଥବୈମତ୍ୟ ପ୍ରସାଦ ଅନ୍ତର୍ଗତ -

ଅର୍ଥସ୍ୟ ପ୍ରୌଢ଼ିରୋଜଃ (କାବ୍ୟ.ସୂ.ବୃ - ୩, ୨, ୨)
ଉକ୍ତି ବୈଚିତ୍ର୍ୟଂ ମାଧୁର୍ଯ୍ୟମ୍ (ଏଜନ୍-୩, ୨, ୧୧)
ଅର୍ଥଦୃଷ୍ଟିଃ ସମାଧିଃ (ଏଜନ୍-୨, ୨, ୭)
ଦୀପ୍ତ ରସତ୍ୱଂ କାନ୍ତିଃ (ଏଜନ୍-୩, ୨, ୧୪)
ଅର୍ଥ ବୈମଲ୍ୟଂ ପ୍ରସାଦଃ (ଏଜନ୍-୩, ୨, ୩)

ବାମନଙ୍କ ମତରେ ବୈଦର୍ଭୀ ରୀତି ଯୋଗୁଁ ଅର୍ଥଗୁଣ ବୈଭବ ଆସ୍ୱାଦିତ ହୋଇଥାଏ । ପୁନରାୟ ଏହା ଏକ ରୀତି ବିଶେଷ ହୋଇଥିବାରୁ ଏବଂ ଏହାଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧିପ୍ରାପ୍ତ ହେଉଥିବାରୁ ରୀତିକୁ କାବ୍ୟର ଆତ୍ମା କହିବା ଯୁକ୍ତିଯୁକ୍ତ । ବାମନ କାବ୍ୟରେ ରୀତି ବ୍ୟତୀତ ଅନ୍ୟ ବସ୍ତୁର ସତ୍ତାକୁ ଆଦୌ ଅସ୍ୱୀକାର କରୁ ନ ଥିଲେହେଁ, ତାଙ୍କ ମତାନୁଯାୟୀ ଏହି ବସ୍ତୁତତ୍ତ୍ୱକୁ ଚମତ୍କୃତ କରିବା କ୍ଷେତ୍ରରେ ରୀତିର ଏକ ବିଶେଷ ଭୂମିକା ବିଦ୍ୟମାନ । ଏହି ବିଶେଷ ଭୂମିକା ତୁଲାଇବାର ଦାୟିତ୍ୱ ଯେହେତୁ କେବଳ ରୀତିର, ସେଥିନିମିତ୍ତ ରୀତି କାବ୍ୟର ଆତ୍ମା ହେବା ବିଧେୟ ।

ଆଚାର୍ଯ୍ୟ କୁନ୍ତକ କୁହନ୍ତି - ''ବୈଦର୍ଭୀ ରୀତି ସଂପର୍କରେ ଆସିବାଦ୍ୱାରା ସାମାନ୍ୟ ଏବଂ ତୁଚ୍ଛ ଅର୍ଥ ମଧ ଚମତ୍କାରକ ଓ ଆହ୍ଲାଦକ ହୋଇ ଉଠିଥାଏ । ଏହି ରୀତିଯୋଗୁଁ କାବ୍ୟର ଶବ୍ଦ-ସୌନ୍ଦର୍ଯ୍ୟ ବୃଦ୍ଧି ଲାଭ କରିଥାଏ; ନୀରସ ବସ୍ତୁ ସରସତା ପ୍ରାପ୍ତି ହୋଇଥାଏ । ହୃଦୟରେ ଆହ୍ଲାଦଭାବ ସୃଷ୍ଟି କରି ତାକୁ ଅନିର୍ବଚନୀୟ ଆନନ୍ଦ ପ୍ରାପ୍ତିରେ ସହାୟତା କରିଥାଏ । ରୀତିମାନଙ୍କର କାବ୍ୟରେ ଏହି ବିଶେଷ ଭୂମିକା ତାକୁ କାବ୍ୟର ଆତ୍ମାରୂପେ ସ୍ୱୀକୃତି ପ୍ରଦାନ କରିଥାଏ ।''

ଆନନ୍ଦବର୍ଦ୍ଧନ ରସ ସହିତ ରୀତିର ଘନିଷ୍ଠ ସମ୍ବନ୍ଧ ସୂଚାଇଛନ୍ତି । ତାଙ୍କ ମତରେ କୌଣସି ପଦରଚନା ମାଧୁର୍ଯ୍ୟ ଗୁଣର ଆଧାର ଉପରେ ଆଶ୍ରିତ ରହିଥାଏ ଏବଂ ତା'ର ଅଭିବ୍ୟକ୍ତିରେ ସହାୟକ ହୋଇଥାଏ -

''ଗୁଣାନାଶ୍ରିତ୍ୟ ତିଷ୍ଠନ୍ତି ମାଧୁର୍ଯ୍ୟାଦୀନ୍ ବ୍ୟକ୍ତିସାରସାନ୍''

ବିଶ୍ୱନାଥ କବିରାଜ ରସବାଦୀ ହେଲେହେଁ ରୀତିର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ସଂପୂର୍ଣ୍ଣ ସଚେତନ ଥିଲେ । ତାଙ୍କ ମତରେ ହସ୍ତପଦାଦି ଅଙ୍ଗମାନଙ୍କର ଯଥାସ୍ଥାନ ସନ୍ନିବେଶ ପରି ପଦମାନଙ୍କର ଯଥାସ୍ଥାନରେ ପ୍ରୟୋଗ ହେଉଛି ରୀତି । ଏହି ପଦଯୋଜନା ଏପରି ହେବା ଉଚିତ, ଯଦ୍ୱାରା କାବ୍ୟର ଆତ୍ମା ରସ, ରସାଭାସ ଆଦିର ଉପକାରକ ହେଉଥିବ

ପଦସଂଘଟନା ରୀତିରଙ୍ଗସଂସ୍ଥା ବିଶେଷବତ୍
ଉପକର୍ତ୍ତ୍ରୀ ରସାଦୀନାଂ (ସାହିତ୍ୟ ଦର୍ପଣ - ୯ମ ପରିଚ୍ଛେଦ)

ବିଶ୍ୱନାଥ କବିରାଜ 'ରୀତି'କୁ 'ରସ'ର ଉପକାରକ ଭାବେ ଗ୍ରହଣ କରି କୁହନ୍ତି ''ଯେପରି ପୁରୁଷ ବା ନାରୀର ବିଭିନ୍ନ ଅଙ୍ଗ-ସଙ୍ଗଠନ ମନରେ ସୁକୁମାରତା, ମଧୁରତା ଅଥବା କ୍ରୂରତା, କଠିନତା ଆଦି ଗୁଣର ସୃଷ୍ଟି କରିଥାଏ ଏବଂ ତାହା ସେହି ଗୁଣଧାରୀ ବ୍ୟକ୍ତିର ବିଶେଷତା ସୂଚେଇଥାଏ । ଅନୁରୂପ କାବ୍ୟରେ ମାଧୁର୍ଯ୍ୟ ଆଦି ଗୁଣର ବ୍ୟଞ୍ଜନାଦ୍ୱାରା ରସର ଉପକାର ସାଧିତ ହୋଇଥାଏ ।''

ଆଚାର୍ଯ୍ୟ ବାମନ ରୀତିର ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ସଙ୍ଗେ ସଙ୍ଗେ ଏହା ଗୁଣାଶ୍ରୟୀ ବୋଲି ମତପ୍ରଦାନ କରିଥିଲେ । ବାମନ ବୈଦର୍ଭୀ, ଗୌଡ଼ୀ ଓ ପାଞ୍ଚାଳୀ - ଏହିପରି ତିନୋଟି ରୀତିକୁ ସ୍ୱୀକାର କରିଥିବା ସମୟରେ ଆଳଂକାରିକ ରୁଦ୍ରଟ 'ଲାଟୀ' ନାମକ ଅନ୍ୟ ଏକ ରୀତିକୁ ଗ୍ରହଣ କରି ଏହାର ସଂଖ୍ୟା ଚାରିକୁ ବୃଦ୍ଧି କରିଥିଲେ । ପରବର୍ତ୍ତୀ କାଳରେ ଭୋଜ, ମାଗଧୀ ଓ ଅବନ୍ତିକା ନାମରେ ଅନ୍ୟ ଦୁଇଟି ରୀତି ଉଦ୍ଭାବନ କରି ରୀତିର ସଂଖ୍ୟା ଛଅ ବୋଲି କହିଥିଲେ । ବିଶ୍ୱନାଥ କବିରାଜ ରୀତି ଓ ଗୁଣର ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ କରି ପ୍ରତ୍ୟେକ ରୀତିକୁ ଗୁଣାନୁସାରୀ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଚାରୋଟି ରୀତିର ଯଥାର୍ଥତା ସଂପର୍କରେ ଆଲୋଚନା କରିଛନ୍ତି । ତାଙ୍କ ମତରେ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଓ ଲାଟୀ ଭେଦରେ ରୀତିର ସଂଖ୍ୟା ଚାରି -

ସା ପୁନଃ ସ୍ୟାଚ୍ଚତୁର୍ବିଧା
ବୈଦର୍ଭୀ ଚାଥ ଗୌଡ଼ୀ ଚ ପାଞ୍ଚାଳୀ ଲାଟିକା ତଥା
(ସାହିତ୍ୟ ଦର୍ପଣ - ୯ମ ପରିଚ୍ଛେଦ)

ଏହି ଚତୁର୍ବିଧ ରୀତି ପୁଣି ବିଭିନ୍ନ ଗୁଣାଶ୍ରୟୀ । ନିମ୍ନରେ ରୀତି ଏବଂ ତା' ସହିତ ସଂପର୍କାନ୍ୱିତ ଗୁଣମାନଙ୍କର ଲକ୍ଷଣ ସଂପର୍କରେ ଆଲୋଚନା କରାଗଲା ।

## ବୈଦର୍ଭୀ ରୀତି

ବୈଦର୍ଭୀ ରୀତିର ଲକ୍ଷଣ ନିର୍ଦ୍ଦେଶ କରି ବିଶ୍ୱନାଥ କୁହନ୍ତି - ''ମାଧୁର୍ଯ୍ୟ ଗୁଣବ୍ୟଞ୍ଜକ ବର୍ଣ୍ଣମାନଙ୍କଦ୍ୱାରା କୋମଳ ରଚନା, ସମାସହୀନ ବା ଅଳ୍ପସମାସ ଯୁକ୍ତ ରଚନାକୁ ବୈଦର୍ଭୀ ରୀତି କୁହାଯାଏ -

ମାଧୁର୍ଯ୍ୟ ବ୍ୟଞ୍ଜକୈର୍ବର୍ଣ୍ଣୈଃରଚନା ଲଳିତାତ୍ମିକା
ଅବୃତ୍ତିରଳ୍ପବୃତ୍ତିର୍ବା ବୈଦର୍ଭୀରୀତିରିଷ୍ୟତେ
(ସା.ଦ. - ୯ମ ପରିଚ୍ଛେଦ)

ଉଭୟ ମମ୍ମଟ ଓ ବିଶ୍ୱନାଥ କବିରାଜ ବାମନଙ୍କର ଦଶବିଧ ଶବ୍ଦଗୁଣ ଓ ଅର୍ଥଗୁଣକୁ ସ୍ୱୀକାର କରି ନାହାନ୍ତି । ଉଭୟ ମାଧୁର୍ଯ୍ୟ, ଓଜଃ ଓ ପ୍ରସାଦ - ଏହିପରି ତିନୋଟି ଗୁଣକୁ ଗ୍ରହଣ କରିଛନ୍ତି । ବୈଦର୍ଭୀ ରୀତିରେ ମାଧୁର୍ଯ୍ୟଗୁଣର ପରିପ୍ରକାଶ ଘଟିଥାଏ । ଏହି ଗୁଣ ସଂପର୍କରେ ସୂଚନା ଦେଇ କାବ୍ୟପ୍ରକାଶକାର ଲେଖିଛନ୍ତି -

ଆହ୍ଲାଦକତ୍ୱଂ ମାଧୁର୍ଯ୍ୟଂ ଶୃଙ୍ଗାରେ ଦ୍ରୁତି କାରଣମ୍

(କାବ୍ୟପ୍ରକାଶ - ଅଷ୍ଟମଉଲ୍ଲାସ)

ଅର୍ଥାତ୍ ଚିତ୍ତକୁ ତନ୍ମୟ କରିଦେବା ରୂପ ଯେଉଁ ଦ୍ରୁତି, ତା'ର କାରଣ ଯେଉଁ ଆହ୍ଲାଦ, ତଦ୍‌ସ୍ୱରୂପ ହେଉଛି ମାଧୁର୍ଯ୍ୟ ଗୁଣ । ଏହି ମାଧୁର୍ଯ୍ୟ ଗୁଣ ସମ୍ଭୋଗ ଶୃଙ୍ଗାର ଅପେକ୍ଷା କରୁଣରେ ଅଧିକ ଏବଂ ତା' ଅପେକ୍ଷା ବିପ୍ରଲମ୍ଭ ଏବଂ ବିପ୍ରଲମ୍ଭ ଅପେକ୍ଷା ଶାନ୍ତରେ ଅଧିକଭାବେ ପ୍ରତୀତ ହୋଇଥାଏ ।

ସଂଭୋଗେ କରୁଣେ ବିପ୍ରଲମ୍ଭେ ଶାନ୍ତେଽଧିକଂ କ୍ରମାତ୍

(ସାହିତ୍ୟ ଦର୍ପଣ - ୮ମ ପରିଚ୍ଛେଦ)

ମୁଖ୍ୟତଃ ଶୃଙ୍ଗାର, କରୁଣ ଓ ଶାନ୍ତରସରେ ବୈଦର୍ଭୀ ରୀତିର ପ୍ରୟୋଗ କରାଯାଇଥାଏ । ମାଧୁର୍ଯ୍ୟଗୁଣ ବୈଦର୍ଭୀ ରୀତିର ବିଶେଷତ୍ୱ । ମାଧୁର୍ଯ୍ୟ ବ୍ୟଞ୍ଜକମାନଙ୍କ ସଂପର୍କରେ ସୂଚନା ଦେବାକୁ ଯାଇ ବିଶ୍ୱନାଥ କହିଛନ୍ତି, ଟ, ଠ, ଡ, ଢ ବ୍ୟତିରେକେ 'କ' ଠାରୁ 'ମ' ପର୍ଯ୍ୟନ୍ତ ବର୍ଣ୍ଣମାନେ ସେମାନଙ୍କ ଅନ୍ତ୍ୟବର୍ଣ୍ଣ ଅର୍ଥାତ୍ ପଞ୍ଚମ ବର୍ଣ୍ଣ ସହିତ ସଂଯୁକ୍ତ ହୋଇ ବ୍ୟବହୃତ ହୋଇଥାନ୍ତି । ଅର୍ଥାତ୍ ଙ୍କ, ଙ୍ଖ, ଙ୍ଗ, ଙ୍ଘ, ଞ୍ଚ, ଞ୍ଛ, ଞ୍ଜ, ଞ୍ଝ, ନ୍ତ, ନ୍ଥ, ନ୍ଦ, ନ୍ଧ, ମ୍ପ, ମ୍ଫ, ମ୍ବ, ମ୍ଭ । ମାତ୍ର ଣ୍ଟ, ଣ୍ଠ, ଣ୍ଡ, ଣ୍ଢ ଆଦି ବ୍ୟବହାର ହୋଇପାରିବେ ନାହିଁ । 'ର' ଓ 'ଣ' ସହ 'ନ' ମିଶି ରହିବେ । ଅନ୍ୟଭାବେ କହିଲେ 'ର' ଓ 'ଣ' ଦୁଇଟି ଲଘୁ ଅର୍ଥାତ୍ ପୂର୍ବରେ ହ୍ରସ୍ୱ ସ୍ୱର ଉପରେ ହ୍ରସ୍ୱ ସ୍ୱର ଯୋଗ ହୋଇ ବ୍ୟବହୃତ ହେବେ । ସମାସହୀନତା ବା ସମାସର ସ୍ୱଳ୍ପତା ରହିବ । ରଚନା ମାଧୁର୍ଯ୍ୟବତୀ ବା ଲାଳିତ୍ୟପୂର୍ଣ୍ଣ ଏବଂ କୋମଳ ହେବ । ଏ ସମସ୍ତ ହେଉଛି ମାଧୁର୍ଯ୍ୟ ଗୁଣବ୍ୟଞ୍ଜକ ।

'ମଥୁରାମଙ୍ଗଳ' କାବ୍ୟର ୬ଷ୍ଠ ଛାନ୍ଦରେ ଯଶୋଦାଙ୍କ ବିଳାପରେ ବୈଦର୍ଭୀ ରୀତିର ଚମତ୍କାର ପରିପ୍ରକାଶ ଘଟିଛି । ଏଥିରେ ପ୍ରୟୋଗ ହୋଇଥିବା ମାଧୁର୍ଯ୍ୟ ବ୍ୟଞ୍ଜକ ବର୍ଣ୍ଣମାଳା ଯେ କୌଣସି ପାଠକର ହୃଦୟକୁ ତରଳାଇବାରେ ସମର୍ଥ । ଏହା ଚିତ୍ତକୁ ଯେପରି ଅଶ୍ରୁରେ ବିମୋହିତ କରିପାରେ, ସେହିପରି ଦ୍ରୁତିର କାରଣ ମଧ୍ୟ ହୋଇପାରେ-

କାହା ଅଙ୍ଗେ ଚତୁଃସମ ଲେପିବି କରି ସୁଷମ
ନିଦ୍ରାରେ କେ ହେଉଥିବ ଘାରି
କାହାକୁ ଅଞ୍ଜନ ଦେବି, ବସ୍ତ୍ରପାରି ଶୁଆଇବି
ପିତାକୁ ମାଗିବ କେହୁ ହରିରେ
ଜୀବଧନ । ଏକଥା ସୁମରି ଯିବି ମରି
ନିଶ୍ଚେ ଯେବେ ଯିବୁ ମଧୁପୁରୀ (୬।୨)

**ଗୌଡ଼ୀ ରୀତି** - ଗୌଡ଼ୀ ରୀତିର ବିଶେଷତ୍ୱ ସଂପର୍କରେ ଆଲୋଚନା କରିବାକୁ ଯାଇ ବିଶ୍ୱନାଥ କବିରାଜ କହିଛନ୍ତି ''ଦୀର୍ଘ ସମାସ ଓ ଓଜଃଗୁଣ ପ୍ରକାଶକ ବର୍ଣ୍ଣଦ୍ୱାରା ରଚିତ ଆଡ଼ମ୍ବରପୂର୍ଣ୍ଣ ରଚନା ଗୌଡ଼ୀ ରୀତି ଭାବରେ ପରିଚିତ''-

ଓଜଃ ପ୍ରକାଶକୈର୍ବର୍ଣ୍ଣୈଃର୍ବନ୍ଧ ଆଡ଼ମ୍ବରଃ ପୁନଃ
ସମାସ ବହୁଳା ଗୌଡ଼ୀ (ସା.- ଦ.-୯ମ ପରିଚ୍ଛେଦ)

ବୀର ଅପେକ୍ଷା ବୀଭତ୍ସରେ ଏବଂ ତା' ଅପେକ୍ଷା ରୌଦ୍ରରେ ଏହି ଓଜଃଗୁଣ ଅଧିକ ମାତ୍ରାରେ ପରିଲକ୍ଷିତ ହୋଇଥାଏ ।[୫] ସାମାଜିକ ବା ସହୃଦୟର କୋମଳ ଚିତ୍ତରେ ଦ୍ୱେଷ୍ୟ ପଦାର୍ଥ ସଂପର୍କରୁ ଦୀପ୍ତତ୍ୱ ବା ଉଷ୍ଣତା ସୃଷ୍ଟି ହୋଇଥାଏ । ସେହି ଉଷ୍ଣତା ବୀରରେ ଦ୍ୱେଷ୍ୟ (ଶତ୍ରୁ)କୁ ଜୟ କରିବା ପାଇଁ ଜିଗୀଷା, କିନ୍ତୁ ବୀଭତ୍ସରେ ଘୃଣା ବିଷୟକ ବସ୍ତୁକୁ ତୁରନ୍ତ ତ୍ୟାଗ କରିବାର ଇଚ୍ଛା ଏବଂ ରୌଦ୍ରରେ ଅପକାରୀକୁ ମାରିବା ପର୍ଯ୍ୟନ୍ତ ଚେଷ୍ଟା କରାଯାଇଥାଏ । ସଂକ୍ଷେପରେ କହିଲେ ଏହି ଗୁଣର ବୈଶିଷ୍ଟ୍ୟ ହେଉଛି - ବୀରରେ ଜିଣିବାକୁ ଇଚ୍ଛା ବା ଜିଗୀଷା, ବୀଭତ୍ସରେ ତ୍ୟାଗ କରିବାର ଇଚ୍ଛା ବା ତିତିକ୍ଷା ଏବଂ ରୌଦ୍ରରେ ମାରିବାର ଇଚ୍ଛା ବା ଜିଘାଂସା । ଓଜଃଗୁଣ ବ୍ୟଞ୍ଜକ ବର୍ଣ୍ଣମାନଙ୍କ ସଂପର୍କରେ ଆଲୋଚନା କରାଯାଇ 'ସାହିତ୍ୟ ଦର୍ପଣ'ରେ କୁହାଯାଇଛି-

୧. ବର୍ଗର ଆଦ୍ୟ ଓ ତୃତୀୟ ବର୍ଣ୍ଣ ସହିତ ସେହି ବର୍ଗର ଅନ୍ୟ ତଦନ୍ତ୍ୟ ବର୍ଣ୍ଣ ଯୋଗ ହେବ । ଅର୍ଥାତ୍ କଚଟତପ ସହିତ ଖଛଠଥଫ, ତୃତୀୟ ବର୍ଣ୍ଣ ଗଜଡ଼ଦବ ସହିତ ତା'ର ଅନ୍ତିମ ବର୍ଣ୍ଣ ଘଝଢଧଭ ଯୁକ୍ତ ହେବ । ଯଥା - ପୁଚ୍ଛ, ବଦ୍ଧ ଇତ୍ୟାଦି ।

୨. 'ର' କାର 'ର' ଫଳା 'ରେଫ୍' ରୂପରେ ତଳେ ବା ଉପରେ ଯୋଗ ହେବ । ଯଥା - ବକ୍ର, ଅର୍କ ଆଦି ।

୩. ସଦୃଶ ଦୁଇଟି ବର୍ଣ୍ଣର ସଂଯୋଗ ଘଟିବ । ଯଥା - ଚିତ୍ତ, ବିତ୍ତ ଇତ୍ୟାଦି ।

୪. ଟ, ଠ, ଡ, ଢ, ଣ, ଷ - ଏହି ବର୍ଣ୍ଣମାନେ ଦୀର୍ଘ ସମାସ, ଔଦ୍ଧତ୍ୟବ୍ୟଞ୍ଜକ ବିକଟବର୍ଣ୍ଣ ରଚନା । ତେଣୁ ଏମାନେ ଓଜଃଗୁଣ ବ୍ୟଞ୍ଜକ ।

'ବିଦଗ୍‌ଧ ଚିନ୍ତାମଣି' କାବ୍ୟରୁ ଗୌଡ଼ୀରୀତିର ଏକ ଚମତ୍କାର ଉଦାହରଣ ଗ୍ରହଣ କରାଯାଇପାରେ -

ପୋଏ ସଜାଡ଼ି କାଛଟା ଭିଡ଼ି ଧାଡ଼ିକି ଧାଡ଼ି ଆଗେ ଦଉଡ଼ି
ଯୋଡ଼ିକି ଯୋଡ଼ି ବୁଲାନ୍ତି ବାଡ଼ି ତନୁକୁ ଆଡ଼ି ଯେ
କେହୁ ଘଉଡ଼ି ନିଅଇ ତଡ଼ି କେହୁ ବାହୁଡ଼ି ମାରଇ ଓଡ଼ି
ବାହାକୁ ମୋଡ଼ି ଛାଡ଼ଇ ରଡ଼ି ଶିରକୁ ଝାଡ଼ି ଯେ
କେ ମାଲ ବିନ୍ଧାଣରେ ଯାଉଛି ଗଡ଼ି କାହା ଉପରେ ପୁଣି ବସଇ ମାଡ଼ି
କେ ମୋଡ଼ାମୋଡ଼ି କେ ଭିଡ଼ାଭିଡ଼ି କେ ଜଡ଼ାଜଡ଼ି
କେ ଛଡ଼ାଛଡ଼ି କେ ପଡ଼ାପଡ଼ି କେ କୋଡ଼ାକୋଡ଼ି
କେ ହୁଡ଼ାହୁଡ଼ି ଯେ (୬୫/୨)

**ପାଞ୍ଚାଳୀ ରୀତି** - ପାଞ୍ଚାଳୀ ରୀତି ସଂପର୍କରେ ବିଶ୍ୱନାଥ କବିରାଜ କୁହନ୍ତି ''ବୈଦର୍ଭୀ ଓ ଗୌଡ଼ୀ ରୀତିରେ ପ୍ରଯୁକ୍ତ ବର୍ଣ୍ଣଗୁଡ଼ିକ ବ୍ୟତୀତ ଅବଶିଷ୍ଟ ବର୍ଣ୍ଣଯୁକ୍ତ ପାଞ୍ଚ ବା ଛଅ ପଦ ବିଶିଷ୍ଟ ସମାସ ଦ୍ୱାରା ସଂଶ୍ଲିଷ୍ଟ ରଚନାବଳୀକୁ ପାଞ୍ଚାଳୀ ରୀତି କୁହାଯାଏ'' -

ବର୍ଣ୍ଣୈଃଶେଷୈଃ ପୁନର୍ଦ୍ୱୟୋଃ
ସମସ୍ତ ପଞ୍ଚ ଷଟ୍ ପଦୈର୍ବନ୍ଧା ପାଞ୍ଚାଳିକା ମତା ।

ଭୋଜରାଜଙ୍କ ମତରେ ପଞ୍ଚ ବା ଷଟ୍‌ସଂଖ୍ୟକ ପଦାନ୍ୱିତ ଏବଂ ଓଜଃ, କାନ୍ତି, ମାଧୁର୍ଯ୍ୟ, ସୌକୁମାର୍ଯ୍ୟ ଗୁଣସଂପନ୍ନ ରଚନାବଳୀକୁ ପାଞ୍ଚାଳୀ ରୀତି କୁହାଯାଇଥାଏ ।[୬] ସାଧାରଣ ଭାବରେ କହିଲେ ବୈଦର୍ଭୀ ଓ ଗୌଡ଼ୀ ରୀତିର ମଧ୍ୟବର୍ତ୍ତୀ ରଚନାହିଁ ପାଞ୍ଚାଳୀ ରୀତି । ପ୍ରସାଦ ଗୁଣ ଏହି ରୀତିର ସର୍ବଶ୍ରେଷ୍ଠ ବୈଶିଷ୍ଟ୍ୟ । ଯାହାଦ୍ୱାରା ଚିତ୍ତ ଆମୋଦିତ ଓ ପୁଲକିତ ହୋଇଥାଏ, ତାହା ପ୍ରସାଦ ଗୁଣ । ପାଞ୍ଚାଳୀ ରୀତିରେ ସ୍ୱଭାବସୁଲଭ ବର୍ଣ୍ଣନା, ଅଳ୍ପସମାସାଦିର ସନ୍ନିବେଶ ହୋଇଥାଏ ।

ଦୀନକୃଷ୍ଣ ଦାସଙ୍କ 'ରସକଲ୍ଲୋଳ' କାବ୍ୟରୁ ପାଞ୍ଚାଳୀ ରୀତିର ଏକ ଉଦାହରଣ ପ୍ରଦତ୍ତ କରାଗଲା -

''କୁଟିଳ କୁନ୍ତଳା କାମକେଳି କଳାକୁଶଳା କମଳବଦନା
କରୀନ୍ଦ୍ରଗମନା କରିକୁମ୍ଭସ୍ତନା କୁନ୍ଦକଳିଜିତରଦନା
କମ୍ବୁ କଣ୍ଠିନୀ, ବନ୍ଧୁଲୀ ଦଶନବସନା
କେଶରୀ ମଧ୍ୟମା ମହାସୁଖ ସୀମା କଉକ୍ଷେୟ ଝୀନବସନା'' (୯/୧୭)

**ଲାଟୀ ରୀତି** - ବୈଦର୍ଭୀ ଓ ପାଞ୍ଚାଳୀ ରୀତି ମିଶ୍ରିତ ଭାବରେ ରହିଲେ ଲାଟୀ ରୀତି ହୁଏ ବୋଲି ବିଶ୍ୱନାଥ କବିରାଜ କୁହନ୍ତି । ଅର୍ଥାତ୍ ବୈଦର୍ଭୀ ଓ ପାଞ୍ଚାଳୀର ମଧ୍ୟବର୍ତ୍ତୀ

ରୀତି ହେଉଛି ଲାଟୀ । ''ଲାଟୀ ତୁ ରୀତି ବୈଦର୍ଭୀ-ପାଞ୍ଚାଲ୍ୟୋରନ୍ତରେ ସ୍ଥିତା'' (ସା.ଦ. - ୯ମ ପରିଚ୍ଛେଦ) । ସମାସର ସ୍ୱଳ୍ପତା ଏବଂ କୋମଳ ପଦାବଳୀଦ୍ୱାରା ପରିଶୋଭିତ ଲାଟୀରୀତି ସହୃଦୟ ପାଠକ ପ୍ରାଣରେ ଆନନ୍ଦ ଭାବ ସୃଷ୍ଟି କରିଥାଏ । ରୁଦ୍ରଟଙ୍କ ଅନୁଯାୟୀ ମଧ୍ୟମ ସମାସଯୁକ୍ତ ରଚନା ଲାଟୀ ରୀତି ପଦବାଚ୍ୟ । ସେ ଏହାର ପ୍ରୟୋଗ ଉଗ୍ରରସରେ ହୋଇଥାଏ ବୋଲି ମତପ୍ରଦାନ କରିଛନ୍ତି । 'ଲାବଣ୍ୟବତୀ' କାବ୍ୟରୁ ଲାଟୀରୀତିର ଏକ ଉଦାହରଣ ପ୍ରଦତ୍ତ କରାଯାଇପାରେ -

''ସେ ସମୟେ ପୁରୁଷ କହିଲା ଯୋଡ଼ି କର
ହେ ରସ-ଉଦୟା ସୁହୃଦୟା ଦୟା କର ହେ
ତପନ ତପନୀୟାଙ୍ଗୀ ତପଫଳ ମୋର
ଦ୍ରୁହସିତେ ଈକ୍ଷିତେ ସଫଳ କରି କର ଯେ
ଅତିଦୀନ କ୍ଷୀଣ ହୀନ ମୁଁ ମଦନଶରେ
ରକ୍ଷାକର ରକ୍ଷାକରି କୁଟିଳାକ୍ଷା ବାରେ ଯେ
ଏ ବଚନ ସୀଉକାର କଟାକ୍ଷେ ଆଣିଲା
ରସିକା ଉଜିଲା ଭାବ ରସିକ ଛାଣିଲା ଯେ'' (୧/୪୫-୪୮)

ରୀତିର ସାହିତ୍ୟିକ ପରିଭାଷା ସଂପର୍କରେ ବିଦ୍ୱାନମାନଙ୍କ ମଧ୍ୟରେ ମତାନୈକ୍ୟ ପରିଲକ୍ଷିତ ହୋଇଥାଏ । ସଂସ୍କୃତ ଅଳଂକାର ଶାସ୍ତ୍ରରେ 'ରୀତି'କୁ ଏକ ବିଶିଷ୍ଟବାଦରୂପେ ଆଲୋଚନା କରାଯାଇଥିଲେହେଁ ବାସ୍ତବ ପକ୍ଷେ ସାହିତ୍ୟରେ ଏହାର ରୂପ ସ୍ୱତନ୍ତ୍ର ପରି ମନେହୁଏ । ସାହିତ୍ୟ ବା କଳାକ୍ଷେତ୍ରରେ ଏହା ଏକ ରଚନାପ୍ରଣାଳୀ ବା ବିଶିଷ୍ଟ ଶୈଳୀକୁ ବହୁ ସମୟରେ ଦ୍ୟୋତିତ କରିଥାଏ । ଅନ୍ୟ ଭାବରେ କହିଲେ କବି ସ୍ୱଭାବ ବା ରୁଚି ଅଥବା ଲେଖକର ବ୍ୟକ୍ତିଗତ ଅଭିରୁଚି ରୀତିରୂପ ଗ୍ରହଣ କରିଥାଏ । ଏହା କବି-ସ୍ୱଭାବଦ୍ୱାରା ନିୟନ୍ତ୍ରିତ ହେବା ସଙ୍ଗେ ସଙ୍ଗେ ସାହିତ୍ୟର ଇତିହାସରେ ଏକ ସ୍ୱତନ୍ତ୍ର ମାର୍ଗର ପ୍ରଦର୍ଶନ କରିଥାଏ । ସଂସ୍କୃତ ସାହିତ୍ୟର ବିଶିଷ୍ଟ ଆଲୋଚକ ସୁଶୀଲ କୁମାର ଦେ ରୀତିର ବିଭିନ୍ନ ସିଦ୍ଧାନ୍ତ ଓ ମତାମତ ସମ୍ବନ୍ଧରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରି ଏହାକୁ କବିସ୍ୱଭାବ ବା କବିମାନସର ଏକ ବିଶେଷ ଶୈଳୀ ଭାବରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ବିଭିନ୍ନ କବିଙ୍କ କ୍ଷେତ୍ରରେ ଏହା ଭିନ୍ନ ହୋଇଥାଏ ବୋଲି ମତବ୍ୟକ୍ତ କରିଛନ୍ତି -

"In this sense 'riti' becomes synonymous with the manner of individual poets and not with prescribed or universalised modes or grades and all aspects of expression can be comprehended in it. But since the manner of expression varies with various poets, it is of infinite kind.[୨]

ରୀତି ସଂପର୍କରେ ସଂସ୍କୃତ ଅଳଂକାର ଶାସ୍ତ୍ରରେ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା ହୋଇଥିଲେହେଁ, କେବଳ ବାମନହିଁ ରୀତିକୁ କାବ୍ୟର ଆତ୍ମା ରୂପେ ସ୍ୱୀକୃତି ପ୍ରଦାନ କରିଛନ୍ତି । ଅନ୍ୟମାନେ ମୁଖ୍ୟତଃ ଏହାକୁ କାବ୍ୟର ବାହ୍ୟାଙ୍ଗ ଭାବରେ ଗ୍ରହଣ କରିଛନ୍ତି । ଓଡ଼ିଆରେ କାବ୍ୟ ବିଶେଷଭାବରେ ମଧ୍ୟଯୁଗୀୟ କାବ୍ୟମାନଙ୍କରେ ବାମନଙ୍କ ନିର୍ଦ୍ଦେଶିତ ଦଶଗୁଣର ସୁଷ୍ଠୁ ବିକାଶ ସାଧିତ ହୋଇଥିଲେହେଁ, ଅଧିକନ୍ତୁ ରୀତିକୁ ଏକ ରୂଢ଼ିବଦ୍ଧ ରଚନା ଭାବରେ ଗ୍ରହଣ କରାଯାଇଛି । ଏହା ସତ୍ତ୍ୱେ ସଂସ୍କୃତ ଅଳଂକାର ଶାସ୍ତ୍ରରେ ଏହାର ବିଶେଷ ଭୂମିକାକୁ ଅସ୍ୱୀକାର କରାଯାଇ ନ ପାରେ ।

## ସହାୟକ ସୂଚୀ


୧. ରୀତି ଔର ଶୈଳୀ - ଆଚାର୍ଯ୍ୟ ନନ୍ଦଦୁଲାରେ ବାଜପେୟୀ - ପୃ-୧୬୧-୬୨, ବାଣୀ ପ୍ରକାଶନ, ୬୧-ଏଫ୍, କମଳାନଗର, ଦିଲ୍ଲୀ-୧୧୦୦୦୭ ।

୨. ରୀତି କାବ୍ୟ କୀ ଭୂମିକା - ଡଃ ନଗେନ୍ଦ୍ର । ପୃ-୯୭-୯୮-ନେସ୍‌ନାଲ ପବ୍ଲିସିଂ ହାଉସ୍, ନୟାସଡ଼କ, ଦିଲ୍ଲୀ । ୪ର୍ଥ ପ୍ରକାଶ-୧୯୬୧ ।

୩. କାବ୍ୟାମ୍ ମୀମାଂସା - ଡଃ ଶ୍ରୀ ଜୟମନ୍ତ ମିଶ୍ର । ପୃ-୧୪୫-୪୬ । ଚୌଖମ୍ବା ବିଦ୍ୟାଭବନ, ବାରାଣସୀ-୧ ।

୪. ଭାରତୀୟ କାବ୍ୟଶାସ୍ତ୍ରକେ ସିଦ୍ଧାନ୍ତ - ଡଃ ରାଜକିଶୋର ସିଂହ । ପୃ-୧୩୧ ପ୍ରକାଶନ କେନ୍ଦ୍ର, ଲକ୍ଷ୍ନୌ-୭ ।

୫. ''ଚିତ୍ତସ୍ୟ ବିସ୍ତାରରୂପ ଦୀପ୍ତତ୍ୱଜନକ ମୋଜଃ
ବୀଭତ୍ସ ରୌଦ୍ର ରସୟୋସ୍ତସ୍ୟାଧିକ୍ୟଂ କ୍ରମେଣ ଚ ।''
(କାବ୍ୟପ୍ରକାଶ - ଆଚାର୍ଯ୍ୟ ମମ୍ମଟ - ୮ମ ଉଲ୍ଲାସ)

୬. ''ସମସ୍ତ ପଞ୍ଚଷଟ୍ ପଦାମୋଜଃ କାନ୍ତି-ସମନ୍ୱିତାମ୍
ମଧୁରାଂ ସୁକୁମାରାଂଚ ପାଞ୍ଚାଳୀଂ କବୟୋ ବିଦୁଃ''

୭. Sanskrit poetics as a study of Aesthetic - S.K.De. P-32, Bombay, Oxford University Press, 1963.

# ବକ୍ରୋକ୍ତି କାବ୍ୟଜୀବିତମ୍

ବକ୍ରୋକ୍ତି (ବକ୍ର + ଉକ୍ତି)ର ଅର୍ଥ ଆଭିଧାନିକ ଦୃଷ୍ଟିରୁ ବଙ୍କା କଥା ବା ଟେଢ଼ା କଥା ହେଲେହେଁ ସାହିତ୍ୟରେ ଏହାର ଏକ ବିଶେଷ ମର୍ଯ୍ୟାଦାବନ୍ତ ଅର୍ଥ ରହିଛି । ଚମତ୍କାର ପରିପୂର୍ଣ୍ଣ ବଚନବିନ୍ୟାସ ରୀତି ସାହିତ୍ୟରେ ବକ୍ରୋକ୍ତି ରୂପେ ପରିଚିତ । ବକ୍ରୋକ୍ତି ମୁଖ୍ୟତଃ ସଂରଚନା ବିବେଚନା ଶାସ୍ତ୍ର । ଏହା ମାଧ୍ୟମରେ କାବ୍ୟରେ ପ୍ରବନ୍ଧ, ପ୍ରକରଣ, ପଦ, ବାକ୍ୟ, ଶବ୍ଦ, କ୍ରିୟା ଓ ବିଶେଷଣାଦିର ଚମତ୍କାର ସର୍ଜନାର ବିବେଚନା ହୋଇଥାଏ । ବକ୍ରୋକ୍ତିର ସ୍ୱରୂପ ଅଥର୍ବ ବେଦ ସମୟରୁ ପରିଲକ୍ଷିତ ହେଲେହେଁ, ଏହାକୁ ଶାସ୍ତ୍ରୀୟ ରୂପ ପ୍ରଦାନ କ୍ଷେତ୍ରରେ କୁନ୍ତକଙ୍କର ଭୂମିକା ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ଆଚାର୍ଯ୍ୟ କୁନ୍ତକ 'ବୈଦଗ୍ଧ ଭଙ୍ଗୀଭଣିତି'କୁ ବକ୍ରୋକ୍ତି ଅର୍ଥରେ ଗ୍ରହଣ କରିଥିଲେ - ''ବକ୍ରୋକ୍ତିରେବ ବୈଦଗ୍ଧ-ଭଙ୍ଗୀ-ଭଣିତି ରୁଚ୍ୟତେ'' । ଏହାକୁ ଅଧିକ ସ୍ପଷ୍ଟ କରିବାକୁ ଯାଇ ସେ କହିଥିଲେ ''ପ୍ରସିଦ୍ଧ କଥନରେ ଭିନ୍ନ ବିଲକ୍ଷଣ ପ୍ରକାର ବର୍ଣ୍ଣନାଶୈଳୀହିଁ ବକ୍ରୋକ୍ତି - ବକ୍ରୋକ୍ତି ପ୍ରସିଦ୍ଧାଭିଧାନ-ବ୍ୟତିରେ କିଣି ବିଚିତ୍ରୈବାଭିଧା ।''

(ବକ୍ରୋକ୍ତି ଜୀବିତମ୍-୧/୧୦)

ଏହି ବୈଦଗ୍ଧର ଅର୍ଥ ନିପୁଣ କବିର କାବ୍ୟନିର୍ମାଣ କୌଶଳ ଏବଂ ଭଙ୍ଗୀର ଅର୍ଥ ବିଚ୍ଛିତ୍ତି, ଚମତ୍କାର, ଚାରୁତା, ଶୋଭା ଏବଂ ଭଣିତିର ଅର୍ଥ ବର୍ଣ୍ଣନା ।[୧] କୁନ୍ତକଙ୍କ 'ବକ୍ରୋକ୍ତିଜୀବିତ' ଗ୍ରନ୍ଥର ତିନୋଟି ଭାଗ ରହିଛି । ଯଥା - ୧ - କାରିକାଭାଗ ୨ - ବୃତ୍ତିଭାଗ, ୩- ଉଦାହରଣ ଭାଗ । ବକ୍ରୋକ୍ତି ସମ୍ବନ୍ଧୀୟ ଧାରଣାକୁ ସ୍ପଷ୍ଟ କରିବାକୁ ଯାଇ କୁନ୍ତକ ଅନେକ ପର୍ଯ୍ୟାୟବାଚୀ ଶବ୍ଦର ବ୍ୟବହାର କରିଛନ୍ତି । ଯଥା - (i) ବକ୍ର-ଶାସ୍ତ୍ରାଦି ପ୍ରସିଦ୍ଧ ଶବ୍ଦାର୍ଥୋ ବନିବନ୍ଧବ୍ୟତିରେକୀ, (ii) ବକ୍ରୋକ୍ତି-ବୈଦଗ୍ଧ ଭଙ୍ଗୀ ଭଣିତି (iii) ବକ୍ରୋକ୍ତି-ପ୍ରସିଦ୍ଧାଭିଧାନବ୍ୟତିରେକିଣୀ (iv) ବିଚିତ୍ରୈବାଭିଧା ବକ୍ରୋକ୍ତି, (v) ବକ୍ରତ୍ୱଂ ବକ୍ରଭାବ - ପ୍ରସିଦ୍ଧ ପ୍ରସ୍ଥାନାତିରେକିଣୀ ବୈଚିତ୍ର୍ୟେଣୋପନିଷଦ୍ (vi) ବକ୍ରୋକ୍ତିଃ ସକଳାଳଙ୍କାର ସାମାନ୍ୟମ୍, (vii) ସ୍ୱଭାବସ୍ୟାଞ୍ଜସେନ ପ୍ରକାରେଣ ପରିପୋଷଣ ମେବ ବକ୍ରତାୟାଃ ପର ରହସ୍ୟମ୍ । କାବ୍ୟକୁ ସୌନ୍ଦର୍ଯ୍ୟ ପ୍ରଦାନ କରୁଥିବା ସମସ୍ତ ସାଧନରେ ବ୍ୟାପ୍ତ ବକ୍ରତା ଏପରି ଏକ ତତ୍ତ୍ୱ, ଯାହା କବି ବ୍ୟାପାର କୌଶଳ ଉକ୍ତିରେ ଶାସ୍ତ୍ରୀୟ ଏବଂ ବ୍ୟାବହାରିକ ବାକ୍

ପ୍ରୟୋଗରେ ବିଲକ୍ଷଣତା ଆଣିଥାଏ । ଦ୍ୱିତୀୟ କଥା ହେଉଛି - ବକ୍ରୋକ୍ତି ଏକ ବିଶିଷ୍ଟ ପ୍ରକାର ଉକ୍ତି । ଏହି ବକ୍ରତାର ଶ୍ରେଷ୍ଠ ରହସ୍ୟ ହେଉଛି - ବସ୍ତୁର ସ୍ୱଭାବର ସରଳ ଢଙ୍ଗର ପରିପୋଷଣ ।[୨] କୁନ୍ତକଙ୍କ ପୂର୍ବରୁ ଅଳଙ୍କାରବାଦୀଗଣ ଅଳଂକାରକୁ କାବ୍ୟର ଅନିବାର୍ଯ୍ୟ ତତ୍ତ୍ୱରୂପେ ଘୋଷଣା କରି ତା'ର ବ୍ୟାପକତାକୁ ସୂଚାଇଥିଲେ । କୁନ୍ତକଙ୍କ ମତାନୁଯାୟୀ ଆହ୍ଲାଦକାରୀ ସାଳଙ୍କାର ଶବ୍ଦାର୍ଥ ହେଉଛି କାବ୍ୟ । ଏହାର ଅର୍ଥ ହେଉଛି କେବଳ ଲୋକ ବ୍ୟବହାରରେ ପ୍ରଚଳିତ ଶବ୍ଦ ପ୍ରୟୋଗକୁ ଭିନ୍ନ ଅର୍ଥରେ ପ୍ରଚଳନ କଲେ ତାହା କାବ୍ୟ ହୋଇପାରିବ ନାହିଁ । ଏହି ଭିନ୍ନ ପ୍ରୟୋଗ ଯେ ପର୍ଯ୍ୟନ୍ତ ସହୃଦୟ ହୃଦୟରେ ଆହ୍ଲାଦ ବା ଆନନ୍ଦ ସୃଷ୍ଟି କରି ନ ପାରିଛି, ସେହି ଶବ୍ଦ ପ୍ରୟୋଗର କୌଣସି ମୂଲ୍ୟ ନାହିଁ । ତେଣୁ ବକ୍ରୋକ୍ତି ରୂପେ ତାହାକୁ ଅଭିହିତ କରାଯାଇପାରେ, ଯାହା ସହୃଦୟ ହୃଦୟରେ ଆହ୍ଲାଦ ଉତ୍ପନ୍ନ କରିଥାଏ । ଏଥିରୁ ମୁଖ୍ୟତଃ ତିନୋଟି ଜିନିଷ ସ୍ପଷ୍ଟ ହୋଇଥାଏ -

(କ) ଶାସ୍ତ୍ର ତଥା ଲୋକ ବ୍ୟବହାରରେ ପ୍ରସିଦ୍ଧ ଶବ୍ଦାର୍ଥ ପ୍ରୟୋଗରେ ଭିନ୍ନତା ।

(ଖ) ପ୍ରାକ୍ତନ ତଥା ଅଦ୍ୟତନ ପ୍ରତିଭାଜନ୍ୟ ଚମତ୍କାର ।

(ଗ) ସହୃଦୟ ହୃଦୟରେ ଆହ୍ଲାଦ ଉତ୍ପନ୍ନ କରିବାର କ୍ଷମତା ।

କାବ୍ୟର ଲକ୍ଷଣ ସମ୍ବନ୍ଧରେ ସୂଚନା ଦେଇ ଆଚାର୍ଯ୍ୟ କୁନ୍ତକ କୁହନ୍ତି -

> ''ଶବ୍ଦାର୍ଥୌ ସହିତୌ ବକ୍ର-କବି ବ୍ୟାପାର ଶାଳିନୀ
> ବନ୍ଧେ ବ୍ୟବସ୍ଥିତୌ କାବ୍ୟଂ ତଦ୍ବିଦାହ୍ଲାଦକାରିଣୀ'' (ବକ୍ରୋକ୍ତି ଜୀବିତମ୍ ୧/୭)

ଅର୍ଥାତ୍ କାବ୍ୟମର୍ମଜ୍ଞ ସହୃଦୟରେ ଆହ୍ଲାଦାକାରକ ସୁନ୍ଦର ବକ୍ରକବି ବ୍ୟାପାରରେ ଯୁକ୍ତ ରଚନାରେ ବ୍ୟବସ୍ଥିତ ଶବ୍ଦ ଓ ଅର୍ଥର ଅପୂର୍ବ ମିଳନହିଁ କାବ୍ୟ । ଆଚାର୍ଯ୍ୟ କୁନ୍ତକ ବକ୍ରୋକ୍ତିକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ଏହାର ଲକ୍ଷ୍ୟ ଲୋକୋତ୍ତର ଚମତ୍କାରକାରୀ ବୈଚିତ୍ର୍ୟର ସିଦ୍ଧି ବୋଲି ମତପ୍ରଦାନ କରିଛନ୍ତି -

> ''ଲୋକୋତ୍ତର ଚମତ୍କାରକାରୀ ବୈଚିତ୍ର୍ୟସିଦ୍ଧୟେ
> କାବ୍ୟସ୍ୟାୟ ମଳଂକାରଃ କୋଽପ୍ୟପୂର୍ବା ବିଧୀୟତେ'' (୧/୮)

କୁନ୍ତକ ଏହି ପ୍ରକାର ବକ୍ରୋକ୍ତିକୁ କାବ୍ୟର ପ୍ରାଣ ଏବଂ ସକଳାଳଙ୍କାରର ମୂଳଭାବରେ ଗ୍ରହଣ କରିଛନ୍ତି ।

କୁନ୍ତକଙ୍କ ମତାନୁସାରେ କେବଳ ବକ୍ରଶବ୍ଦଜାଲ ବୈଚିତ୍ର୍ୟ ବକ୍ରୋକ୍ତି ନୁହେଁ । ପୁଣି ସେ କହିଛନ୍ତି - ''କେବଳ ଶବ୍ଦ ଓ ଅର୍ଥକୁ କାବ୍ୟରୂପେ ଘୋଷଣା କରାଯାଇ ନ ପାରେ କିମ୍ବା ରମଣୀୟତାପୂର୍ଣ୍ଣ ବିଶିଷ୍ଟ ଶବ୍ଦ ମଧ୍ୟ କାବ୍ୟ ନୁହେଁ । ବକ୍ରୋକ୍ତିକୁ କାବ୍ୟର ଆତ୍ମାରୂପେ ସ୍ୱୀକାର କରିବା ସମୟରେ ତାଙ୍କର ଧ୍ୟାନ ସର୍ବଦା କାବ୍ୟର ଆନ୍ତରିକ ବିଶିଷ୍ଟତା ଉପରେ

ନିବଦ୍ଧ ଥିଲା । କୁନ୍ତକଙ୍କ ଦୃଷ୍ଟିକୋଣ ଅଧିକ ଗଭୀର ଓ ବ୍ୟାପକ । ସେ ବକ୍ରୋକ୍ତିକୁ କାବ୍ୟର ଆତ୍ମା ଭାବରେ ସ୍ୱୀକାର କରିବା ସମୟରେ, ପୂର୍ବରୁ ସ୍ୱୀକୃତି ଲାଭ କରିଥିବା ଅନ୍ୟାନ୍ୟ କାବ୍ୟତତ୍ତ୍ୱଗୁଡ଼ିକର ଗଭୀର ବିଶ୍ଳେଷଣ କରିଥିଲେ । ଅଲଂକାର, ରସ, ରୀତି, ଧ୍ୱନି ଆଦି ସମସ୍ତ କାବ୍ୟ ତତ୍ତ୍ୱଗୁଡ଼ିକୁ ସମାହିତ କରି ବ୍ୟାପକ ଓ ବିଶିଷ୍ଟ ବକ୍ରୋକ୍ତିକୁ ସେ କାବ୍ୟର ଆତ୍ମାରୂପେ ଘୋଷଣା କଲେ । ତାଙ୍କ ଦୃଷ୍ଟିରେ ପ୍ରସିଦ୍ଧ କଥାଶୈଳୀଠାରୁ ଭିନ୍ନ, ଚାରୁତର, ବିଚିତ୍ର ଏବଂ ଅସାଧାରଣ ବର୍ଣ୍ଣନାଶୈଳୀ ହେଉଛି ବକ୍ରୋକ୍ତି । ତାଙ୍କ ମତରେ କାବ୍ୟ ମୂଳତଃ କବିବ୍ୟାପାର । କବିର ସଂସ୍କାର-ସ୍ୱଭାବ ସୁକୁମାରତା କାରଣରୁ କାବ୍ୟ ରମଣୀୟ ସୃଷ୍ଟିରେ ପରିଣତ ହୋଇଥାଏ । କୁନ୍ତକ କାବ୍ୟକୁ କବି-ପ୍ରତିଭା-ପ୍ରସୂତ ଭାବେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କାବ୍ୟାନନ୍ଦକୁ ମୂଳତଃ କଳାଜନ୍ୟ ଆନନ୍ଦଭାବେ ଗ୍ରହଣ କରିଛନ୍ତି । ସଂସ୍କୃତ କାବ୍ୟଶାସ୍ତ୍ର ଇତିହାସରେ ପ୍ରଥମକରି କୁନ୍ତକ ସୁବ୍ୟବସ୍ଥିତ ଏବଂ ବୈଜ୍ଞାନିକ ଢଙ୍ଗରେ କଳାବାଦୀ ମୂଲ୍ୟର ସ୍ଥାପନ କରିଛନ୍ତି ।[୩]

କୁନ୍ତକଙ୍କ ବକ୍ରୋକ୍ତି ସିଦ୍ଧାନ୍ତାନୁଯାୟୀ ''କାବ୍ୟ ଏକ କଳା ଏବଂ କଳା ହେଉଛି ସୌନ୍ଦର୍ଯ୍ୟର ରଚନା'' । ସୌନ୍ଦର୍ଯ୍ୟ ପୁଣି ରୂପର ଆତିଶଯ୍ୟ । ରୂପ ଅଭିବ୍ୟକ୍ତିର ମାଧ୍ୟମ ଓ ଅଭିବ୍ୟକ୍ତିହିଁ କାବ୍ୟର ମର୍ମ । ଅଭିବ୍ୟକ୍ତି ବିନା କାବ୍ୟର କଳ୍ପନା କରାଯାଇ ନ ପାରେ ଏବଂ ଏହା ବ୍ୟତିରେକେ କଳାର ଅସ୍ତିତ୍ୱ ମଧ୍ୟ ସମ୍ଭବ ନୁହେଁ । ଏହି କଳାତ୍ମକ ଅଭିବ୍ୟକ୍ତି ସାଧାରଣ ଅଭିବ୍ୟକ୍ତି ଠାରୁ ଭିନ୍ନ ।[୪] କୁନ୍ତକଙ୍କ ମତରେ ଏହି କଳାତ୍ମକ ଅଭିବ୍ୟକ୍ତି କେବଳ ବକ୍ରୋକ୍ତିଦ୍ୱାରା ପ୍ରକାଶ ଲାଭ କରିଥାଏ ।

ଭାମହଙ୍କ ସମୟରେ ବକ୍ରୋକ୍ତି ମାଧ୍ୟମରେ କାବ୍ୟ-ସୌନ୍ଦର୍ଯ୍ୟ ଉପଲବ୍ଧ ହୁଏ ବୋଲି ଆଳଙ୍କାରିକଗଣ ବିଶ୍ୱାସ କରୁଥିଲେ ।

''ସୈଷା ସର୍ବୈବ ବକ୍ରୋକ୍ତିରନୟାର୍ଥୋ ବିଭାବ୍ୟତେ

ଯତ୍ନୋଽସ୍ୟାଂ କବିନା କାର୍ଯ୍ୟଃ କୋଽଲଙ୍କାରୋଽନୟା ବିନା'' (କାବ୍ୟାଳଂକାର - ୨/୮୫)

ପରବର୍ତ୍ତୀକାଳରେ ଦଣ୍ଡୀ ସମସ୍ତ ବାଙ୍ମୟକୁ ସ୍ୱଭାବୋକ୍ତି ଓ ବକ୍ରୋକ୍ତି ଭେଦରେ ବିଭକ୍ତ କରି ଜାତି, ଗୁଣ, କ୍ରିୟା, ଦ୍ରବ୍ୟାଦି ପଦାର୍ଥର ସ୍ୱାଭାବିକ କଥନ ମଧ୍ୟରେ ସ୍ୱଭାବୋକ୍ତି ଓ ଉପମାଦି ସମସ୍ତ ଅଳଙ୍କାର ଚିତ୍ରଣରେ ବକ୍ରୋକ୍ତି ନିହିତ ବୋଲି ମତବ୍ୟକ୍ତ କରିଥିଲେ ।[୫] ଭୋଜରାଜ ସମସ୍ତ ବାଙ୍ମୟକୁ ବକ୍ରୋକ୍ତି, ସ୍ୱଭାବୋକ୍ତି ଏବଂ ରସୋକ୍ତି ଭେଦରେ ତିନି ଭାଗରେ ବିଭକ୍ତ କରି ଉପମାଦି ଅଳଙ୍କାରର ପ୍ରାଧାନ୍ୟରେ ବକ୍ରୋକ୍ତି, ଗୁଣର ପ୍ରାଧାନ୍ୟରେ ସ୍ୱଭାବୋକ୍ତି ଓ ବିଭାବାଦି ସଂଯୋଗରେ ରସ ନିଷ୍ପତ୍ତି ହୋଇଥାଏ ବୋଲି ମତପ୍ରଦାନ କରିଥିଲେ । ବକ୍ରୋକ୍ତି ସଂପର୍କରେ ଆଚାର୍ଯ୍ୟ କୁନ୍ତକଙ୍କ ଦୃଷ୍ଟିଭଙ୍ଗୀର ପରିଚୟ ଦେବାକୁ ଯାଇ ସୁଶୀଲ କୁମାର ଦେ ଲେଖିଛନ୍ତି - "Taking this broad connotation of

vakrokti, Kuntak maintains that this vakrokti constitutes the only possible embelishment or alamkar of poetry. No doubt for the sake of convenience of treatment, one speaks conventionally of alamkarya (That which is to be embelished viz. Sabda and Artha) and its alamkara (embelishment viz. the poetic Figures) but this distinction in his opinion, is not essential. The embellished speech itself in its entirely is poetry and the addition of poetic figures is not adventitious. ।[୨]

ଭାମହ ଅଳଙ୍କାରର ଲକ୍ଷଣ ସଂପର୍କରେ ସୂଚନା ପ୍ରଦାନ କରିବାକୁ ଯାଇ କହିଥିଲେ ''ବାଚାଂ ବକ୍ରାର୍ଥଶବ୍ଦୋକ୍ତିରଳଂକାରାୟ କଳ୍ପତେ'' ଅର୍ଥାତ୍ କବି ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସାଧନରେ ବ୍ୟବହାର କରୁଥିବା ବକ୍ରତା-ସମ୍ବଳିତ ଉକ୍ତିହିଁ କାବ୍ୟର ଅଳଙ୍କାର । ତାଙ୍କ ଦୃଷ୍ଟିରେ ଚାତୁର୍ଯ୍ୟୋକ୍ତି-ପରିପୂର୍ଣ୍ଣ ଅର୍ଥାଳଙ୍କାରହିଁ ବକ୍ରୋକ୍ତି ଓ ଏହା କାବ୍ୟର ଯଥାର୍ଥ ମହତ୍ତ୍ୱ ବିକାଶରେ ସହାୟତା କରେ । କାବ୍ୟଶାସ୍ତ୍ର-ଜ୍ଞାନଜନିତ ପାଣ୍ଡିତ୍ୟ ତଥା ଜୀବନବୋଧ ଓ ଭୂୟୋଦର୍ଶନ ବସ୍ତୁତଃ ଅନୁଭୂତିଦ୍ୱାରା ଯେଉଁ ମାନସିକ ପ୍ରସ୍ତୁତି ଆସେ, ତାହାରି ଭିତ୍ତିରେ ଶକ୍ତିମାନ୍ କବି କାବ୍ୟ ସୃଷ୍ଟି କରିବାରେ ପ୍ରବୃତ୍ତ ହେଲେ ତାଙ୍କର ପ୍ରତ୍ୟେକ ଉକ୍ତି ସେହି ଅବବୋଧମୟ ଚୈତନ୍ୟଦ୍ୱାରା ଅବଶ୍ୟ ଅନୁରଞ୍ଜିତ ହେବ । ସ୍ରଷ୍ଟା ବେଳେବେଳେ ସତ୍ୟର ସରଳତମ ପ୍ରକାଶମାତ୍ର କରି ସ୍ୱଭାବୋକ୍ତି ରଚନା କରିବେ । ପୁଣି ଯେତେବେଳେ ଈଷତ୍ ଚାତୁରୀ ସହ ଆପଣା ମନୋନୀତ ଭାବର ପ୍ରକାଶ କରିବସିବେ, ସେତେବେଳେ ତାହା ହେବ ବକ୍ରୋକ୍ତି ଏବଂ ଅର୍ଥାଳଙ୍କାର ।[୨]

ଆଚାର୍ଯ୍ୟ କୁନ୍ତକ ବକ୍ରୋକ୍ତିର ସତ୍ତା ସର୍ବତ୍ର ଉପଲବ୍ଧି କରିଛନ୍ତି । ସେଥିପାଇଁ ସେ କବି ବ୍ୟାପାରକୁ ମୁଖ୍ୟତଃ ଛଅ ଭାଗରେ ବିଭକ୍ତ କରିଛନ୍ତି । କୁନ୍ତକଙ୍କ 'ବକ୍ରୋକ୍ତି ଜୀବିତମ୍' ଗ୍ରନ୍ଥଟିରେ ଚାରୋଟି ଉନ୍ମେଷ ରହିଛି । ଏହାର ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଉନ୍ମେଷରେ ବକ୍ରୋକ୍ତିର ବିଭାଗୀକରଣ ପରିଦୃଷ୍ଟ । ବକ୍ରୋକ୍ତିକୁ ସେ ମୁଖ୍ୟତଃ ଛଅ ଭାଗରେ ବିଭକ୍ତ କରି ତା'ର ଭେଦ-ପ୍ରଭେଦକୁ ଚମତ୍କାର ଢଙ୍ଗରେ ଆଲୋଚନା କରିଛନ୍ତି । ଏହାର ଦ୍ୱିତୀୟ ଉନ୍ମେଷରେ ବର୍ଣ୍ଣବିନ୍ୟାସ ବକ୍ରତା, ପଦପୂର୍ବାର୍ଦ୍ଧ-ବକ୍ରତା, ପଦପରାର୍ଦ୍ଧ-ବକ୍ରତା; ତୃତୀୟ ଉନ୍ମେଷରେ ବାକ୍ୟବକ୍ରତା (ବସ୍ତୁ ବକ୍ରତା) ଏବଂ ଚତୁର୍ଥ ଉନ୍ମେଷରେ ପ୍ରକରଣ ବକ୍ରତା ଓ ପ୍ରବନ୍ଧ ବକ୍ରତା ସମ୍ବନ୍ଧରେ ବିଶଦ ଆଲୋଚନା ରହିଛି । କୁନ୍ତକଙ୍କ ମତାନୁସାରେ କାବ୍ୟରେ ଏହି ବକ୍ରୋକ୍ତି ଛଅ ରୂପରେ ପରିଲକ୍ଷିତ ହୋଇଥାଏ ଏବଂ କାବ୍ୟର ଯାହା କିଛି ସୁନ୍ଦର ତଥା ଚମତ୍କାର, ତାହା କେବଳ ବକ୍ରୋକ୍ତିଦ୍ୱାରା ସମ୍ଭବ ହୋଇଥାଏ । କାବ୍ୟର ଲଘୁତମ ଅଂଶ ବର୍ଣ୍ଣରୁ ଏହି ବକ୍ରୋକ୍ତି ଆରମ୍ଭ ହୋଇ କାବ୍ୟର ମହତ୍ତମ ରୂପ ପ୍ରବନ୍ଧରେ ଏହାର

ପରିସମାପ୍ତି ଘଟିଛି । ତେଣୁ କ୍ଷୁଦ୍ରତମ ଅଂଶ ବର୍ଣ୍ଣଠାରୁ ବୃହତ୍ତମ ଅଂଶ ପ୍ରବନ୍ଧ ପର୍ଯ୍ୟନ୍ତ ସବୁକ୍ଷେତ୍ରରେ ବକ୍ରୋକ୍ତିର ଉପସ୍ଥିତି ଅପରିହାର୍ଯ୍ୟ । ବର୍ଣ୍ଣ, ପଦ, ବାକ୍ୟ, ପ୍ରକରଣ ଓ ପ୍ରବନ୍ଧ-ପ୍ରତ୍ୟେକ କ୍ଷେତ୍ରରେ ବକ୍ରୋକ୍ତିର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବାରୁ ଏହା କାବ୍ୟର ଆତ୍ମା ବା ଜୀବିତ ହେବା ଉଚିତ ବୋଲି ଆଚାର୍ଯ୍ୟ କୁନ୍ତକ ମତ ଦେଇଛନ୍ତି । କୁନ୍ତକ କବି ବ୍ୟାପାରକୁ ଯେଉଁ ଛଅ ଭାଗରେ ବିଭକ୍ତ କରିଛନ୍ତି, ତା'ର ସୂଚନା ନିମ୍ନରେ ପ୍ରଦତ୍ତ କରାଗଲା ।

**ବର୍ଣ୍ଣବିନ୍ୟାସ ବକ୍ରତା**

କୌଣସି କାବ୍ୟରେ ବର୍ଣ୍ଣର ବିଶେଷ ପ୍ରକାର ରଚନାକୁ ବର୍ଣ୍ଣବିନ୍ୟାସ ବକ୍ରତା କୁହାଯାଇଥାଏ । ବୈଚିତ୍ର୍ୟ ଉତ୍ପାଦନ କାବ୍ୟର ଆକର୍ଷଣର ହେତୁ ହୋଇଥିବାରୁ ଏବଂ ବର୍ଣ୍ଣବିନ୍ୟାସ ବକ୍ରତାଦ୍ୱାରା କାବ୍ୟରେ ବୈଚିତ୍ର୍ୟ ଉତ୍ପନ୍ନ ହେଉଥିବାରୁ, ଏହି ବକ୍ରତାର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । କୁନ୍ତକଙ୍କ ମତରେ -

''କବି ବ୍ୟାପାର-ବକ୍ରତ୍ୱ-ପ୍ରକାରାଃ ସମ୍ଭବନ୍ତି ଷଟ୍<br>
ପ୍ରତ୍ୟେକଂ ବହବୋ ଭେଦାସ୍ତେଷାଂ ବିଚ୍ଛିତ୍ତିଶୋଭିନଃ<br>
ବର୍ଣ୍ଣବିନ୍ୟାସ ବକ୍ରତ୍ୱମିତ୍ୟାଦି''

ଏହି ବର୍ଣ୍ଣବିନ୍ୟାସ ବକ୍ରତାର ବହୁଭେଦ ସଂପର୍କରେ କୁନ୍ତକ ଉଲ୍ଲେଖ କରିଛନ୍ତି । ମାତ୍ର ଏହାର କେତେକ ମୁଖ୍ୟଭେଦ ହେଉଛି -

''ଏକୌ ଦ୍ୱୌ ବହବୋ ବର୍ଣ୍ଣା ବଧମାନାଃ ପୁନଃ ପୁନଃ<br>
ସ୍ୱଳ୍ପାନ୍ତରାଶ୍ରୟା ସୋକ୍ତା ବର୍ଣ୍ଣବିନ୍ୟାସ ବକ୍ରତା x x<br>
ବର୍ଗାନ୍ତଯୋଗିନଃ ସ୍ପର୍ଶା ଦ୍ୱିରୁକ୍ତାସ୍ୟ-ଲ-ନାଦୟଃ<br>
ଶିଷ୍ଟାଃ ସ୍ୱରାଦି ସଂଯୁକ୍ତାଃ ପ୍ରସ୍ତୁତୌଚିତ୍ୟ ଶୋଭିନଃ ।''

କୁନ୍ତକଙ୍କ ମତରେ ଯେତେବେଳେ ଏକ, ଦୁଇ ବା ବହୁତ ବର୍ଣ୍ଣ ସ୍ୱଳ୍ପାନ୍ତରରେ ବାରମ୍ବାର ବ୍ୟବହୃତ ହୁଅନ୍ତି, ସେତେବେଳେ ବର୍ଣ୍ଣବିନ୍ୟାସ ବକ୍ରତା ହୋଇଥାଏ । ପୁନରାୟ ବର୍ଗାନ୍ତ ସହିତ ଯୁକ୍ତ ସ୍ପର୍ଶବର୍ଣ୍ଣ ତାର ଶେଷବର୍ଣ୍ଣ ବା ବର୍ଗାନ୍ତ 'ଡ' କାର ଆଦି ସହିତ ସଂଯୁକ୍ତ ହେଲେ ବର୍ଗାନ୍ତ ସହିତ ସଂଯୁକ୍ତ ସ୍ପର୍ଶ ବର୍ଣ୍ଣର ବକ୍ରତା ହୋଇଥାଏ । କୁନ୍ତକଙ୍କ ବର୍ଣ୍ଣବିନ୍ୟାସ ବକ୍ରତାର ବିଭିନ୍ନ ବିଭାଗରୁ ଉଦାହରଣ ପ୍ରଦତ୍ତ କରା ନ ଯାଇ ଏଠାରେ ଗୋଟିଏ ମାତ୍ର ଉଦାହରଣ ମାଧ୍ୟମରେ ବର୍ଣ୍ଣବିନ୍ୟାସ ବକ୍ରତା ସଂପର୍କରେ ସୂଚନା ପ୍ରଦାନ କରାଗଲା -

''ଶ୍ରବଣେ ଧୀରେ ଶ୍ରବଣେ ଧୀରେ ଲଭିବ ମହାନନ୍ଦ<br>
ଭାବି ନିରତ ଭାବିନୀରତ ହୋଇ ପରମାନନ୍ଦ ।''

(ବିଦଗ୍ଧ ଚିନ୍ତାମଣି-୧୪/୧)

ସଂକ୍ଷେପରେ କହିଲେ ବର୍ଣ୍ଣବିନ୍ୟାସ ବକ୍ରତା ମୁଖ୍ୟତଃ ଦୁଇପ୍ରକାର । ପ୍ରଥମ ବିଭାଗରେ ତିନୋଟି ଭେଦ ରହିଛି । ଯଥା- ଏକ ବର୍ଣ୍ଣର ଆବୃତ୍ତିରେ, ଦୁଇଟି ବର୍ଣ୍ଣର ଆବୃତ୍ତିରେ ଓ ବହୁବର୍ଣ୍ଣର ଆବୃତ୍ତିରେ । ଏହାକୁ ଅନୁପ୍ରାସ ମଧ୍ୟ କୁହାଯାଇପାରେ । ଦ୍ୱିତୀୟ ପ୍ରକାର ବର୍ଣ୍ଣବିନ୍ୟାସ ବକ୍ରତାରେ ମାଧୁର୍ଯ୍ୟ ଆଦି ଗୁଣ, ଉପନାଗରିକା, ପରୁଷା, କୋମଳା ଆଦି ବୃତ୍ତି ରହିଥାଏ । କେତେକ ଆଲୋଚକ ଏହାକୁ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଆଦି ରୀତି ନାମରେ ଆଖ୍ୟାତ କରିଥାନ୍ତି । ଯମକ, ଯମକାଭାସ ଆଦି ମଧ୍ୟ ଏହାର ଅନ୍ତର୍ଭୁକ୍ତ ।

## ପଦପୂର୍ବାର୍ଦ୍ଧ ବକ୍ରତା

ପ୍ରତ୍ୟେକ ପଦର ଦୁଇଟି ଭାଗ ରହିଥାଏ, ଯଥା- ପଦର ପୂର୍ବାର୍ଦ୍ଧ ଓ ପଦର ପରାର୍ଦ୍ଧ । ଯେଉଁଠାରେ ପଦର ପୂର୍ବାର୍ଦ୍ଧରେ ଚମତ୍କାରିତା ରହିଥାଏ, ସେଠାରେ ପଦପୂର୍ବାର୍ଦ୍ଧ ବକ୍ରତା ହୋଇଥାଏ । ପଦପୂର୍ବାର୍ଦ୍ଧର ଅନ୍ୟ ନାମ ପ୍ରକୃତି । ତେଣୁ ପ୍ରକୃତି ଉପରେ ଆଧାରିତ କାବ୍ୟ ବକ୍ରତା ପଦପୂର୍ବାର୍ଦ୍ଧ ବକ୍ରତା ଭାବରେ ପରିଚିତ । ଏହାର ଦଶଟି ମୁଖ୍ୟ ଭେଦ ହେଲା, ରୂଢ଼ି ବୈଚିତ୍ର୍ୟ ବକ୍ରତା, ପର୍ଯ୍ୟାୟ ବକ୍ରତା, ଉପଚାର ବକ୍ରତା, ବିଶେଷଣ ବକ୍ରତା, ସଂବୃତ୍ତି ବକ୍ରତା, ପ୍ରତ୍ୟୟ ବକ୍ରତା, ଆଗମ ବକ୍ରତା, ବୃତ୍ତି ବକ୍ରତା, ଲିଙ୍ଗ ବୈଚିତ୍ର୍ୟ ବକ୍ରତା ଓ କ୍ରିୟା ବୈଚିତ୍ର୍ୟ ବକ୍ରତା । ପଦପୂର୍ବାର୍ଦ୍ଧ ବକ୍ରତାର ବିଭିନ୍ନ ଭେଦରୁ ଉଦାହରଣ ଦିଆ ନ ଯାଇ ଗୋଟିଏ ମାତ୍ର ଉଦାହରଣ ମାଧ୍ୟମରେ ଏହାର ସୂଚନା ପ୍ରଦାନ କରାଗଲା ।

> ବିମଳ କେମନ୍ତ ଚନ୍ଦ୍ର ସେ ନ ମାରୁ ମରି
> ବସିଲା କଳଙ୍କ ହୋଇ ଅଙ୍କେ ସେହିପରି
> ବଧ ମୋହ ଯୋଗୁଁ ଏହି
> ବିଶ୍ୱେ କଳଙ୍କ ନ କରୁ ରାମଚନ୍ଦ୍ର ମୁହିଁ ।

## ପଦ ପରାର୍ଦ୍ଧବକ୍ରତା

ପଦର ପରାର୍ଦ୍ଧ ଅର୍ଥାତ୍ ପ୍ରତ୍ୟୟ-ବୈଚିତ୍ର୍ୟଦ୍ୱାରା ଯେଉଁ ବକ୍ରତା ସୃଷ୍ଟି ହୋଇଥାଏ, ତାହାକୁ 'ପଦପରାର୍ଦ୍ଧ ବକ୍ରତା' କୁହାଯାଇଥାଏ । ପଦପରାର୍ଦ୍ଧ ବକ୍ରତାକୁ ପ୍ରତ୍ୟୟ ବକ୍ରତା ମଧ୍ୟ କହିଥାନ୍ତି । କୁନ୍ତକ ପଦ-ପରାର୍ଦ୍ଧ ବକ୍ରତାର ମୁଖ୍ୟ ଛଅଟି ଭେଦ ସଂପର୍କରେ ସୂଚନା ଦେଇଛନ୍ତି । ସେହି ଛଅଟି ଭେଦ ହେଉଛି - 'କାଳବୈଚିତ୍ର୍ୟ ବକ୍ରତା', 'କାରକ ବକ୍ରତା', 'ବଚନ ବକ୍ରତା', 'ପୁରୁଷ ବକ୍ରତା', 'ଉପଗ୍ରହ ବକ୍ରତା' ଓ 'ପ୍ରତ୍ୟୟ ବକ୍ରତା' । ପ୍ରତ୍ୟେକ ବକ୍ରତାରୁ ଗୋଟିଏ ଗୋଟିଏ ଉଦାହରଣ ପ୍ରଦତ୍ତ କରାଗଲା -

